ସାଧୁଚରିତମାଳା—୧ମ ଖଣ୍ଡ

# ଭଗବାନ ଶଙ୍କରାଚାର୍ଯ୍ୟ

ଶ୍ରୀ ଦୁର୍ଗାଚରଣ ମହାନ୍ତି

ପ୍ରକାଶକ :
ନୀଳାଚଳ ସାରସ୍ୱତ ସଂଘ, ପୁରୀ
କେନ୍ଦ୍ର ଆସନ ମନ୍ଦିର, ବୀରତୁଙ୍ଗ

# ଭଗବାନ ଶଙ୍କରାଚାର୍ଯ୍ୟ

ସଂପାଦକ:
**ଶ୍ରୀ ଦୁର୍ଗାଚରଣ ମହାନ୍ତି**

ପ୍ରକାଶକ:
ନୀଳାଚଳ ସାରସ୍ୱତ ସଂଘ
କେନ୍ଦ୍ର ଆସନ ମନ୍ଦିର, ବୀରତୁଙ୍ଗ
ପୋ.ଅ.-ବୀରତୁଙ୍ଗ, ଜି.ପୁରୀ

ତୃତୀୟ ସଂସ୍କରଣ—୧୯୯୭
ଚତୁର୍ଥ ସଂସ୍କରଣ—**୨୦୧୭**

ପ୍ରଚ୍ଛଦ:
ଅସିତ୍ ମୁଖାର୍ଜି

ମୁଦ୍ରଣ :
ଗୁରୁପ୍ରସନ୍ନ ପ୍ରେସ୍
ଝୋଲାସାହି (ନିଉ କଲୋନୀ)
କଟକ-୧

ମୂଲ୍ୟ :
**ଅଶୀ ଟଙ୍କା ମାତ୍ର**

ORISSA SAHITYA AKADEMI
BHUBANESWAR.

This is to certify that Sri Durga Charan Mohanty was awarded the 1st prize in respect of biographies for his book 'PHAGAVAN SANKARACHARYA' by the Orissa Sahitya Akademi on the occasion of the Orissa Sahitya Akademi awards made to the authors of the best books published during 1956-58.

Bhubaneswar
Dated the 3rd September, 1964.

GK Brahma 3.9.64
SECRETARY

ଜୟଗୁରୁ

# ଉତ୍ସର୍ଗ

ଯାହାଙ୍କ
ମତ ଓ ପଥର
ଅବତାରଣା କରିବାକୁ ଯାଇ
ଏହି ପୁସ୍ତକର ସଂକଳନ,
ସେହି ପରମାରାଧତମ ଗୁରୁଦେବ ପରିବ୍ରାଜକାଚାର୍ଯ୍ୟ ପରମହଂସ
**ଶ୍ରୀମତ୍ ସ୍ୱାମୀ ନିଗମାନନ୍ଦ ସରସ୍ୱତୀ ଦେବଙ୍କ**
ଶ୍ରୀଚରଣକମଳରେ ଏହା ଅର୍ପିତ ହେଲା ।

ଶ୍ରୀଚରଣସେବକ
**ଦୁର୍ଗାଚରଣ**

ଜୟଗୁରୁ

# ନୂତନ ସଂସ୍କରଣ ଭୂମିକା

ଉପାସତେ ଯଂ ମୁନୟଃ ଶୁକାଦ୍ୟା ନିରାଶିଷୋ ନିର୍ମମତାଧିବାସାଃ
ତାଂ ଦକ୍ଷିଣାମୂର୍ତ୍ତି ତନୁଂ ମହେଶମୁପାସ୍ମହେ ମୋହ-ମୁହାର୍ତ୍ତି-ଶାନ୍ତ୍ୟୈ-୧୨ ।
—ଶ୍ରୀମତ୍ ଶଙ୍କରାଚାର୍ଯ୍ୟକୃତ ଦକ୍ଷିଣାମୂର୍ତ୍ତି ସ୍ତୋତ୍ର

ଶୁକଦେବ ପ୍ରଭୃତି ମମତ୍ୱ ଦୋଷରହିତ ନିଷ୍କାମ ମୁନିଗଣ ଯାହାଙ୍କୁ ଉପାସନା କରନ୍ତି, ମୋହରୂପ ମହାଦୁଃଖରେ ଶାନ୍ତିନିମିତ୍ତ ସେହି ଦକ୍ଷିଣାମୂର୍ତ୍ତିଧାରୀ ଶ୍ରୀଗୁରୁଦେବଙ୍କୁ ମୁଁ ଉପାସନା କରୁଅଛି ।

ଶ୍ରୀ ଶ୍ରୀ ଠାକୁରଙ୍କ ଅହେତୁକୀ କୃପାବଳରୁ ସାଧୁ ଚରିତମାଳା ପ୍ରଥମ ଖଣ୍ଡ 'ଭଗବାନ ଶଙ୍କରାଚାର୍ଯ୍ୟ' ପୁସ୍ତକର ତୃତୀୟ ସଂସ୍କରଣ ବହୁ ବାଧାବିଘ୍ନ ମଧ୍ୟ ଦେଇ ପ୍ରକାଶିତ ହେଲା ।

ପାଠକମାନଙ୍କୁ ସ୍ମରଣ ରଖିବାକୁ ହେବ ଯେ, ମାନବ ସମାଜକୁ ଧର୍ମଶିକ୍ଷା ପ୍ରଦାନ କରିବା ଏବଂ ଧର୍ମପଥରେ ପରିଚାଳିତ କରିବା ହେଉଛି ଜଗତରେ ଅବତାର ମହାପୁରୁଷମାନଙ୍କର ଦେହ ଧାରଣର ପ୍ରଧାନ ଉଦ୍ଦେଶ୍ୟ । ସାଧାରଣ ମାନବ ଯେପରି ସେମାନଙ୍କ ପଦାଙ୍କ ଅନୁସରଣର କରି ଚଳିପାରିବେ, ସେହି ଭାବର ଆଦର୍ଶ ପ୍ରତିଷ୍ଠା କରିବାକୁ ସେମାନେ ସତତ ପ୍ରଯତ୍ନଶୀଳ । ଏପରି ନ କଲେ କେହି ସେମାନଙ୍କରଠାରୁ ମନୁଷ୍ୟତ୍ୱର ଆଦର୍ଶ ଗ୍ରହଣ କରିପାରିବେ ନାହିଁ । ମାୟାଶକ୍ତିର ଅଧୀନରେ ପରିଚାଳିତ ନହେଲେ ମାନବୀୟ ଦେହ ଏବଂ ମାନବତ୍ୱ ରକ୍ଷା ହୋଇପାରିବ ନାହିଁ। ସେମାନେ ବ୍ୟଷ୍ଟି ଜଗତର କର୍ମାଧୀନ ହୋଇ ଚଳିବାବେଳେ ମଧ୍ୟ ସମୟ ସମୟରେ ଅତିନ୍ଦ୍ରୀୟ ଶକ୍ତି ପ୍ରକାଶ କରୁଥିବାରୁ ସେମାନଙ୍କୁ ଅବତାର ବା ମହାପୁରୁଷ ବୋଲି କୁହାଯାଇଥାଏ । ଏହା ହିଁ ସେମାନଙ୍କର ମହାପୁରୁଷତ୍ୱର ଲକ୍ଷଣ । ସୁତରାଂ, ମହାପୁରୁଷ ଏବଂ ଅବତାରମାନଙ୍କୁ ଏ ପୃଥିବୀରେ ଦେହ ଧାରଣ କରିବାକୁ ହେଲେ ଯେଉଁ ବ୍ୟଷ୍ଟିଜୀବଙ୍କ କର୍ମର ଆଶ୍ରୟ ନେଇ ସେମାନେ ଦେହଧାରଣ କରନ୍ତି, ସେହି ଜୀବମାନଙ୍କ କର୍ମଶକ୍ତି ଓ ବିଧି ଅଧୀନରେ ସେମାନଙ୍କୁ ଅବସ୍ଥାନ କରିବାକୁ ହୁଏ ଏବଂ କର୍ମ ସମ୍ପାଦନ କରିବାକୁ ପଡ଼େ । ଯେପରି ନାରାୟଣ ନାମକ ଋଷିଙ୍କ ଦେହକୁ ଆଶ୍ରୟ କରି ପୂର୍ଣ୍ଣ ଭଗବାନ୍ ଶ୍ରୀକୃଷ୍ଣ ରୂପରେ ଅବତୀର୍ଣ୍ଣ ହୋଇଥିଲେ, ସେହିପରି ଧର୍ମାଚାର୍ଯ୍ୟମାନଙ୍କ ମଧ୍ୟରେ ଶ୍ରୀମଦ୍ ଶଙ୍କରାଚାର୍ଯ୍ୟ ଏବଂ ଶ୍ରୀମନ୍ ମହାପ୍ରଭୁ ଗୌରାଙ୍ଗଦେବ ଅଧିକ ପ୍ରସିଦ୍ଧି ଲାଭ କରିଛନ୍ତି । ସେମାନେ ଭଗବାନଙ୍କର ଅବତାର

ମଧ୍ୟରେ ଗଣ୍ୟ । ଏମାନଙ୍କ ମଧ୍ୟରୁ ଜଗଦ୍‌ଗୁରୁ ଭାବରେ ସତ୍ୟଯୁଗରେ ବେଦବର ବ୍ରହ୍ମା, ତ୍ରେତାଯୁଗରେ ଋଷିଶ୍ରେଷ୍ଠ ବ୍ରହ୍ମର୍ଷି ବଶିଷ୍ଠଦେବ, ଦ୍ୱାପର ଯୁଗରେ ପରମ ତପସ୍ୱୀ ବ୍ୟାସଦେବଙ୍କ ସଦୃଶ ଶ୍ରୀମତ୍ ଶଙ୍କରାଚାର୍ଯ୍ୟ ଭଗବାନ୍ ଶିବଙ୍କର ସାକ୍ଷାତ୍ ଅବତାର ଏବଂ ତାଙ୍କ କାର୍ଯ୍ୟ ଫଳରେ ସେ ସର୍ବୋପରି ଏହି କଳିଯୁଗରେ ଜଗଦ୍‌ଗୁରୁ ଭାବେ ସର୍ବତ୍ର ପୂଜିତ ଓ ବନ୍ଦିତ ।

ଭଗବାନ୍ ଶଙ୍କରାଚାର୍ଯ୍ୟ କିଏ ? ତାଙ୍କର ସ୍ୱରୂପ କ'ଣ ? ଏବଂ ଶ୍ରୀଶ୍ରୀ ଠାକୁର ତାଙ୍କର ଭାବଧାରାରେ କାହିଁକି ଓ କିପରି ଶଙ୍କରାଚାର୍ଯ୍ୟଙ୍କ ମତକୁ ଆଦର୍ଶ କରି ପ୍ରାଧାନ୍ୟ ଦେଇଛନ୍ତି, ସେହି ସମସ୍ତ ବିଷୟ ସମୂହକୁ ଦୃଷ୍ଟି ଆଗରେ ରଖି ଭକ୍ତମାନଙ୍କର ଆଗ୍ରହାତିଶଯ୍ୟରେ ଆମର ପୂଜ୍ୟ ପରିଚାଳକ ଶ୍ରୀଯୁକ୍ତ ଦୁର୍ଗାଚରଣ ମହାନ୍ତି ମହୋଦୟ ସାଧୁ ଚରିତମାଳା କ୍ରମରେ ଶ୍ରୀଶ୍ରୀ ଠାକୁରଙ୍କ ଆଶ୍ରିତ ସମଗ୍ର ଉତ୍କଳୀୟ ନିଗମପରିକର ଭକ୍ତ ସମାଜ ତଥା ସାଧାରଣ ସୁଧୀ ପାଠକ ବୃନ୍ଦଙ୍କୁ ଏ ସମ୍ପର୍କରେ ସମ୍ୟକ୍ ଅବଧାରଣା ଦେବାନିମିତ୍ତ ସରଳ, ସାବଲୀଳ ଅଥଚ ତଥ୍ୟପୂର୍ଣ୍ଣ ଶୈଳୀରେ ଶଙ୍କରାଚାର୍ଯ୍ୟଙ୍କ ଜୀବନୀକୁ ଲେଖନୀ ମୁନରେ ଏପରି ଅନବଦ୍ୟ ଭାବରେ ରୂପାୟିତ କରିଛନ୍ତି, ଯାହାକି, ୧୯୬୪ ମସିହାରେ ଶ୍ରେଷ୍ଠ ଜୀବନୀ ସାହିତ୍ୟ ହିସାବରେ ଓଡ଼ିଶା ସାହିତ୍ୟ ଏକାଡେମୀଦ୍ୱାରା ପ୍ରଥମ ପୁରସ୍କାର ପ୍ରାପ୍ତ ହେବାର ଗୌରବ ଅର୍ଜନ କରିପାରିଛି । ସେହି ପ୍ରମାଣପତ୍ରର ଏକ ଫଟୋଷ୍ଟାର୍ଟ ନମୂନା ମଧ୍ୟ ଏହି ପୁସ୍ତକରେ ସନ୍ନିବେଶିତ ହୋଇଅଛି । ଏତଦ୍‌ବ୍ୟତୀତ ପରିଚାଳକ ମହୋଦୟଙ୍କ ନିର୍ଦ୍ଦେଶରେ ଭଗବାନ୍ ଶଙ୍କରାଚାର୍ଯ୍ୟଙ୍କ କୃତ ବହୁଳଭାବରେ ପ୍ରଚାରିତ ଗୁର୍ବଷ୍ଟକମ୍, ମୋହମୁଦ୍‌ଗର ଏବଂ ଦକ୍ଷିଣାମୂର୍ତ୍ତି ସ୍ତୋତ୍ରର ଯେଉଁ ସରଳ, ଛନ୍ଦୋବନ୍ଧ ଉତ୍କଳୀୟ ଅନୁବାଦ ଆମର ସାଧକ କବି ଶ୍ରୀଗୁରୁଦାସ ଭାଇ ରୂପ ପ୍ରଦାନ କରିଛନ୍ତି, ତାହା ମଧ୍ୟ ଏଥିରେ ପ୍ରଦତ୍ତ ହୋଇଅଛି ।

ପରିଶେଷରେ, ବର୍ତ୍ତମାନ ଯେପରି ଆଶାତିରିକ୍ତ ଭାବରେ ପୁସ୍ତକର ମୁଦ୍ରଣ ବ୍ୟୟ ବୃଦ୍ଧି ପାଇଅଛି, ସେ ସମସ୍ତକୁ ଦୃଷ୍ଟି ଆଗରେ ରଖି ଏହି ପୁସ୍ତକର ମୂଲ୍ୟ କିଞ୍ଚିତ ବର୍ଦ୍ଧିତ କରାଗଲା । ଆଶା, ସୁଧୀ ପାଠକବୃନ୍ଦ ଏଥିନିମିତ୍ତ କ୍ଷମା ପ୍ରଦାନ କରି ସ୍ୱକାର୍ଯ୍ୟ ସାଧନରେ ବ୍ରତୀ ହେବେ ।

ବୀରତୁଙ୍ଗ
ତା ୨୧-୨-୧୯୯୭

ଶ୍ରୀ ଶ୍ରୀ ଠାକୁର ଚରଣାଶ୍ରିତ
ସଭାପତି
କେନ୍ଦ୍ର ଆସନମନ୍ଦିର,
ପରିଚାଳନା କମିଟି, ବୀରତୁଙ୍ଗ

# ସୂଚୀପତ୍ର



ଭଗବାନ ଶଙ୍କରାଚାର୍ଯ୍ୟ

ଜୟଗୁରୁ

# 'ଭଗବାନ ଶଙ୍କରାଚାର୍ଯ୍ୟ' ବିଷୟରେ ପଦେ

ଆବ୍ରହ୍ମସ୍ତମ୍ଭପର୍ଯ୍ୟନ୍ତଂ ପରମାତ୍ମାସ୍ୱରୂପକଂ ।
ସ୍ଥାବରଂ ଜଙ୍ଗମଞ୍ଚୈବ ପ୍ରଣମାମି ଜଗନ୍ମୟମ୍ ॥

ଅଣୁଠାରୁ ବ୍ରହ୍ମପର୍ଯ୍ୟନ୍ତ ସ୍ଥାବର ଜଙ୍ଗମାଦି ମଧ୍ୟରେ ଯେଉଁ ପରମ ପୁରୁଷ ପରମାତ୍ମ ସ୍ୱରୂପରେ ସମଗ୍ର ଜଗତରେ ପରିବ୍ୟାପ୍ତ, ସେହି ଗୁରୁଦେବଙ୍କୁ ମୁଁ ପ୍ରଣାମ କରୁଅଛି ।

ପରମାରାଧ୍ୟତମ ଶ୍ରୀଶ୍ରୀ ଠାକୁର ମହାରାଜାଙ୍କ ଅହେତୁକୀ କୃପାବଳରେ 'ସାଧୁ ଚରିତମାଳା'ର ପ୍ରଥମ ଗ୍ରନ୍ଥ 'ଭଗବାନ ଶଙ୍କରାଚାର୍ଯ୍ୟ'ବହୁ ବାଧାବିଘ୍ନ ମଧ୍ୟ ଦେଇ ଦ୍ୱିତୀୟ ଥର ପ୍ରକାଶିତ ହେଲା । ୧୯୫୬ ମସିହାରେ ଏହାର ପ୍ରଥମ ମୁଦ୍ରଣ । ବହୁଦିନରୁ ଏହାର ପ୍ରଥମ ମୁଦ୍ରଣ ଶେଷ ହୋଇଯାଇଥିଲେ ମଧ୍ୟ ନାନାବିଧ ପ୍ରତିବନ୍ଧକହେତୁ ଏହାର ପୁନଃ ମୁଦ୍ରଣ ସମ୍ଭବପର ହୋଇପାରୁ ନ ଥିଲା । ସହୃଦୟ ପାଠକମାନଙ୍କ ଐକାନ୍ତିକ ଉତ୍ସାହ ଓ ଆଗ୍ରହବଶତଃ ଏହାର ପୁନଃମୁଦ୍ରଣ କରାଗଲା ।

ଭଗବାନ ଶଙ୍କରଙ୍କ ପ୍ରଚାରିତ ଅଦ୍ୱୈତ ତତ୍ତ୍ୱଜ୍ଞାନ ସାଧାରଣଙ୍କର ବୋଧଗମ୍ୟ ନୁହେଁ । ଶଙ୍କରଙ୍କ ମତ ଉଦାର ହେଲେ ମଧ୍ୟ ତାହା ଲାଭ କରିବାର ପଥ ଅତିଶୟ ସଂକୀର୍ଣ୍ଣ । ବିଶେଷତଃ ବ୍ରାହ୍ମଣ କିମ୍ବା ପ୍ରକୃତ ସନ୍ନ୍ୟାସୀମାନଙ୍କ ବ୍ୟତୀତ ଏହି ତତ୍ତ୍ୱ ଆଲୋଚନାର ଅଧିକାର ମଧ୍ୟ ସର୍ବସାଧାରଣଙ୍କର ନାହିଁ । ଯେଉଁ ବ୍ୟକ୍ତି ମନରୁ ଭୋଗ୍ୟବିଷୟପ୍ରତି ଆସକ୍ତିତ୍ୟାଗ କରିଛନ୍ତି ତାଙ୍କୁ ହିଁ ସନ୍ନ୍ୟାସୀ କୁହାଯାଏ । ଯେଉଁମାନେ ସମସ୍ତ କାମନା-ବାସନାର ଜଳାଞ୍ଜଳି ଦେଇ ଅବଶେଷରେ ଭଗବାନଙ୍କ ଚରଣତଳେ ନିଜକୁ ସମର୍ପଣ କରିପାରିଛନ୍ତି, ସେହିମାନଙ୍କୁ ହିଁ ପ୍ରକୃତ ସନ୍ନ୍ୟାସୀ କୁହାଯାଏ । ଯେତେବେଳେ ତୁମର ଅହଂତ୍ୱକୁ ବ୍ରହ୍ମସତ୍ତାରେ ବ୍ରହ୍ମସ୍ୱରୂପରେ କିମ୍ବା ଭଗବାନଙ୍କସତ୍ତାରେ ବୁଡ଼ାଇଦେଇ ପାରିବ, ଯେତେବେଳେ ତୁମ ଅସ୍ତିତ୍ୱରେ ବିନ୍ଦୁମାତ୍ର ସ୍ୱତନ୍ତ୍ରତା ରହିବ ନାହିଁ; ସେତେବେଳେଯାଇ ତୁମେ ହେବ ତ୍ୟାଗୀ, ତୁମେ ହେବ ବୈରାଗୀ । ସେତିକିବେଳେ ତୁମେ ପ୍ରକୃତ ସନ୍ନ୍ୟାସୀ । ସନ୍ନ୍ୟାସୀମାନେ ଗୁଣରେ ଲିପ୍ତ ନରହି ମଧ୍ୟ ଗୁଣଦ୍ୱାରା କର୍ମ କରିଥାନ୍ତି । ସେଥିରେ ବିରକ୍ତ କିମ୍ବା

ଆସକ୍ତ ହୁଅନ୍ତି ନାହିଁ। ଏହାହିଁ ପ୍ରକୃତ ସନ୍ନ୍ୟାସ । ଗୃହସ୍ଥାଶ୍ରମରେ ରହି ମଧ୍ୟ ମୁମୁକ୍ଷୁବ୍ୟକ୍ତି ସନ୍ନ୍ୟାସୀ ହୋଇପାରନ୍ତି । ତେଣୁ ଜନକ, ଅମ୍ବରୀଷ ପ୍ରଭୃତି ଗୃହୀମାନେ ମଧ୍ୟ ସନ୍ନ୍ୟାସୀ ପଦବାଚ୍ୟ । ଆଉ, ଯେଉଁମାନେ ବାହ୍ୟିକଭାବରେ ସଂସାର ତ୍ୟାଗକରି ମଧ୍ୟ ନିଜ କୌପୀନ କମଣ୍ଡଳୁର ମାୟା ତ୍ୟାଗ କରି ପାରିନାହାନ୍ତି, ସେମାନେ ସନ୍ନ୍ୟାସୀ ମଧ୍ୟ ହୋଇ ଗୃହସ୍ଥାଧର୍ମୀ । ପୁଣି ଯେ କୌଣସି ଆଶ୍ରମୀ ହୋଇଥିଲେ ମଧ୍ୟ ନିର୍ଲିପ୍ତଭାବରେ ସଂସାରକର୍ମ ସମ୍ପାଦନ କରିପାରିଲେ, ତାଙ୍କୁ ହିଁ ପ୍ରକୃତ ସନ୍ନ୍ୟାସୀ କୁହାଯାଇଥାଏ । ସେହିମାନେ ହିଁ ମୁକ୍ତିଲାଭର ଅଧିକାରୀ । ନିର୍ଲିପ୍ତଗୃହୀ ଓ ପ୍ରକୃତ ସନ୍ନ୍ୟାସୀ ଏକାସନରେ ଅବସ୍ଥିତ । ଏମାନଙ୍କ ମଧ୍ୟରେ ବ୍ୟାବହାରିକ ଭାବରେ ପାର୍ଥକ୍ୟ ଥିଲେ ମଧ୍ୟ ପାରମାର୍ଥିକ ଭାବରେ କୌଣସି ବିଭିନ୍ନତା ନାହିଁ ।

ସେ ଆଜକୁ ପ୍ରାୟ ୪୦ ବର୍ଷ ତଳର କଥା । ସେତେବେଳେ ଆମେ କେତେଜଣ ସ୍କୁଲଛାତ୍ର ଗୁରୁଦେବ ଶ୍ରୀମତ୍‌ସ୍ୱାମୀ ନିଗମାନନ୍ଦ ସରସ୍ୱତୀଦେବଙ୍କୁ ପୁରୀଧାମରେ ଦର୍ଶନ କରି ତାଙ୍କ ଶ୍ରୀମୁଖରୁ ଶଙ୍କର-ଗୌରାଙ୍ଗ, ହରି-ହର, ଏବଂ ଗୃହୀ ସନ୍ନ୍ୟାସୀଙ୍କ ବିଷୟରେ ଅମୃତ ମଧୁରବାଣୀ ଶ୍ରବଣ କରି ଆତ୍ମହରା ହୋଇଯାଉଥିଲୁ । ଆଦର୍ଶ ଗୃହସ୍ଥ ଓ ପ୍ରକୃତ ସନ୍ନ୍ୟାସୀଙ୍କ ଭିତରେ ଯେ କିଛି ପ୍ରଭେଦ ନାହିଁ, ହରି-ହରଙ୍କ ଉଦାହରଣ ଦେଇ ଶ୍ରୀ ଶ୍ରୀ ଠାକୁର ତାହା ବୁଝାଇ କହିଲେ—"ହରିହର ଅଭେଦ । ଜଣେ ସର୍ବତ୍ୟାଗୀ ଶ୍ମଶାନବାସୀ, ଖର୍ପରମାତ୍ର ସମ୍ବଳ—ବିରୂପବେଶରେ ଭ୍ରମଣକରୁଛନ୍ତି । ତେଣୁ ହର ତ୍ୟାଗୀ, ବୈରାଗୀ, ସନ୍ନ୍ୟାସୀ । ପୁଣି ଅନ୍ୟ ଜଣେ ମଣିମୁକ୍ତାଖଚିତ ନୃତ୍ୟଗୀତ ପରିପୂରିତ ବୈକୁଣ୍ଠବିହାରୀ । ତେଣୁ ହରି ଭୋଗୀ, ବିଳାସୀ, ଗୃହବାସୀ । ବାହ୍ୟିକଭାବରେ ଉଭୟଙ୍କ ମଧ୍ୟରେ ପାର୍ଥକ୍ୟ ପରିଦୃଷ୍ଟ ହେଉଥିଲେ ମଧ୍ୟ ମୂଳରେ କୌଣସି ବିଭିନ୍ନତା ନାହିଁ । ଶିବ ସନ୍ନ୍ୟାସୀ ସତ୍ୟ; ମାତ୍ର ସେ ଜଗତ୍ ସଂସାରକୁ ହୃଦୟରେ ଧାରଣ କରିଛନ୍ତି । ସେ ପରନିମିତ୍ତ ସ୍ୱାର୍ଥକୁ ପଦଦଳିତ କରିଛନ୍ତି । ତାଙ୍କର ନିଜର ବୋଲି କିଛି ନାହିଁ, ଅଥଚ ସେ ପ୍ରତ୍ୟେକ ଭୂତର ହିତ ସାଧନରେ ରତ । ଏଥିପାଇଁ ସେ 'ଭୂତନାଥ' ନାମରେ ପରିଚିତ । ତେଣୁ ଶିବ ସନ୍ନ୍ୟାସୀ ହୋଇ ମଧ୍ୟ ସଂସାରରେ ଲିପ୍ତ । ପୁଣି ଆମେ ହରିଙ୍କୁ ଗୋକୁଳବିହାରୀ ରୂପରେ ଦେଖିଥାଉଁ

ଯେ, ସେ ଗୋପୀମାନଙ୍କ ପ୍ରେମରେ ଉନ୍ମତ୍ତ । ଶ୍ରୀରାଧାଙ୍କ ସାମାନ୍ୟ ଅବହେଳାରେ ସେ ରାଧାକୁଣ୍ଡରେ ପ୍ରାଣବିସର୍ଜ୍ଜନ କରିବାକୁ ଉଦ୍ୟତ । ସମସ୍ତେ ଜାଣନ୍ତି କୃଷ୍ଣ ରାଧାଗତ ପ୍ରାଣ । କିନ୍ତୁ କାହିଁ ? ଯେତେବେଳେ ଅକ୍ରୁର ଆସି ତାଙ୍କୁ ମଥୁରା ଯିବାପାଇଁ ସମ୍ବାଦ ଦେଲେ, ତତ୍‌କ୍ଷଣାତ୍ ସେ ମଥୁରା ଗମନ କଲେ; ଶ୍ରୀରାଧାଙ୍କ ନିକଟରୁ ବିଦାୟ ନେବାର ମଧ୍ୟ ଆବଶ୍ୟକତା ବୋଧ କଲେ ନାହିଁ । ରାମ ଅବତାରରେ ପତିପ୍ରାଣା ଜାନକୀଙ୍କୁ ବିନାଅପରାଧରେ ପ୍ରଜାରଞ୍ଜନନିମିତ୍ତ ବନକୁ ପ୍ରେରଣ କରିବାପାଇଁ ଟିକିଏ ହେଲେ କୁଣ୍ଠିତ ହେଲେ ନାହିଁ । ଏଥିରୁ ଜଣାଯାଉଛି ଯେ—ହରି, ବିଷୟ ମଧ୍ୟରେ ବୁଡ଼ିରହି ମଧ୍ୟ ସେଥିରେ ଲିପ୍ତ ନୁହଁନ୍ତି; ଅର୍ଥାତ୍ ପରିବାର-ପରିଜନଙ୍କ ପ୍ରତି ଆସକ୍ତ ହୋଇ କର୍ତ୍ତବ୍ୟରେ ଟିକିଏ ହେଲେ ଅବହେଳା ପ୍ରଦର୍ଶନ କରି ନାହାନ୍ତି । ଆତ୍ମସୁଖରେ ଅନ୍ଧ ହୋଇ ଜୀବଦୁଃଖ ବିସ୍ମୃତ ହୋଇ ନାହାନ୍ତି । ନିଜ ହିତନିମିତ୍ତ ସେ ଜଗତ୍‌ହିତକୁ ଭୁଲିଯାଇ ନାହାନ୍ତି । ତେଣୁ ହରି ଗୃହସ୍ଥ ହୋଇ ମଧ୍ୟ ନିର୍ଲିପ୍ତ ଏବଂ ହର ସନ୍ନ୍ୟାସୀ ହୋଇ ମଧ୍ୟ ଲିପ୍ତ । ସୁତରାଂ ଲିପ୍ତ ସନ୍ନ୍ୟାସୀ ଓ ନିର୍ଲିପ୍ତ ଗୃହୀ ଏକାସନ ପ୍ରାପ୍ତ ହୋଇଛନ୍ତି । ହରିହର ଅଭେଦ । ଯେଉଁମାନେ ଏମାନଙ୍କ ମଧ୍ୟରେ ଉଚ୍ଚ ନୀଚ ଭେଦଭାବ ଆରୋପ କରନ୍ତି, ସେମାନେ ନରକଗାମୀ ହୁଅନ୍ତି । ଗୃହୀମାନଙ୍କ ଆଦର୍ଶ ହରି ଏବଂ ସନ୍ନ୍ୟାସୀମାନଙ୍କ ଆଦର୍ଶ ହର । ଅତଏବ ଯେଉଁ ଗୃହସ୍ଥ ହରିଙ୍କ ଆଦର୍ଶରେ ଜୀବନ ଗଠନ କରିପାରିଛନ୍ତି ଏବଂ ଯେଉଁ ସନ୍ନ୍ୟାସୀ ହରଙ୍କ ଆଦର୍ଶରେ ଜୀବନପୋତ ପରିଚାଳିତ କରୁଛନ୍ତି; ସେମାନେ ଉଭୟେ ସମାନ । ସେମାନଙ୍କ ମଧ୍ୟରେ କୌଣସି ବିଭିନ୍ନତା ନାହିଁ । ତେଣୁ ପ୍ରାଚୀନ ଯୁଗର ବ୍ରାହ୍ମଣ କ୍ଷତ୍ରିୟମାନେ ବ୍ରହ୍ମବିଦ୍ୟାରେ ସମାନଭାବରେ ପାରଦର୍ଶୀ ହୋଇଥିଲେ ମଧ୍ୟ ବିଳାସୀ ରାଜାମାନେ ତ୍ୟାଗୀ ସନ୍ନ୍ୟାସୀମାନଙ୍କୁ ଶ୍ରେଷ୍ଠଆସନ ପ୍ରଦାନପୂର୍ବକ ସେମାନଙ୍କ ସେବା କରୁଥିଲେ । ରାଜା ଜନକ ବହୁବ୍ରାହ୍ମଣଙ୍କର ଶିକ୍ଷାଦାତା ଗୁରୁହୋଇ ମଧ୍ୟ ସେମାନଙ୍କ ନିକଟରେ ଶିଷ୍ୟସଦୃଶ ବିନୀତଭାବ ଧାରଣପୂର୍ବକ ଅବସ୍ଥାନ କରୁଥିଲେ । ସୁତରାଂ ହରି-ହର ଅଭିନ୍ନାତ୍ମା ହେଲେ ମଧ୍ୟ ସନ୍ନ୍ୟାସୀ ହର ଜଗଦ୍‌ଗୁରୁ ବୋଲି ଅଭିହିତ ହୋଇଛନ୍ତି । ଅତଏବ ଗୃହସ୍ଥ କିମ୍ବା ସନ୍ନ୍ୟାସୀ ଯେ କେହି ହୁଅନ୍ତୁ; ଯେ ଆତ୍ମସ୍ୱରୂପରେ ଅବସ୍ଥାନପୂର୍ବକ

ନିର୍ଲିପ୍ତ ଭାବରେ କର୍ମାନୁଷ୍ଠାନ ଓ ଅନାସକ୍ତ ଭାବରେ ବିଷୟ ଭୋଗ କରି ମଧ୍ୟ ଜଗତର ହିତାନୁଷ୍ଠାନରେ ଜୀବନ ଉତ୍ସର୍ଗ କରିଛନ୍ତି, ସେହି କେବଳ ଶ୍ରେଷ୍ଠ । ଏତାଦୃଶ ସନ୍ନ୍ୟାସୀ ଓ ଗୃହସ୍ଥଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ତେଣୁ ଗୃହୀ ବ୍ୟାସଦେବ ଏବଂ ସନ୍ନ୍ୟାସୀ ଶଙ୍କରାଚାର୍ଯ୍ୟ ଏକାସନ ପାପ୍ତ ହୋଇଛନ୍ତି ।★

ପରମ ଆରାଧ୍ୟତମ ଗୁରୁଦେବ ଶ୍ରୀମତ୍ ସ୍ୱାମୀ ପରମହଂସ ନିଗମାନନ୍ଦ ଦେବଙ୍କ ଶ୍ରୀମୁଖରୁ ଶଙ୍କରାଚାର୍ଯ୍ୟଙ୍କ ସମ୍ବନ୍ଧରେ ବିବିଧ ଉପଦେଶ ଶ୍ରବଣ କରି ଏବଂ ତାଙ୍କର ମତବାଦ ଶଙ୍କରଙ୍କ ଭାବଧାରା ଉପରେ ପ୍ରତିଷ୍ଠିତ ଥିବା ଜାଣି ବହୁଦିନରୁ ସେହି ମହାପୁରୁଷଙ୍କ ପୂତ ଜୀବନ କଥା ଗ୍ରନ୍ଥାକାରରେ ପ୍ରକାଶ କରିବାର ଇଚ୍ଛା ଥିଲା । ଗୁରୁଦେବ ୧୯୩୫ ମସିହା ଡିସେମ୍ବର ମାସରେ ଅନ୍ତର୍ଦ୍ଧାନ ହେବାର ପ୍ରାୟ ଛ'ବର୍ଷ ପରେ ପ୍ରଥମେ ୧୯୪୨ ମସିହାରେ ମସିହାରେ ତାଙ୍କ ପୂତ ଜୀବନୀ ''ଶ୍ରୀଶ୍ରୀ ଠାକୁର ନିଗମାନନ୍ଦ'' ପୁସ୍ତକ ଉତ୍କଳଭାଷାରେ ପ୍ରକାଶିତ ହେଲା । ତତ୍ପରେ ତଦୀୟ ମତାନୁସରଣକାରୀ ଭକ୍ତମାନଙ୍କ ଆଗ୍ରହାତିଶଯ୍ୟରେ ୧୯୫୬ ମସିହାରେ 'ଭଗବାନ ଶଙ୍କରାଚାର୍ଯ୍ୟ' ପୁସ୍ତକର ପ୍ରଥମ ମୁଦ୍ରଣ ହେଲା । ସେହି ପୁସ୍ତକ ସର୍ବସାଧାରଣ ଧର୍ମପିପାସୁ ପାଠକମାନଙ୍କ ନିକଟରେ ଏଭଳି ଆଦୃତହେଲା ଯେ, ତାହାର ପ୍ରଥମ ସଂସ୍କରଣ ଅଳ୍ପଦିନ ମଧ୍ୟରେ ଶେଷ ହୋଇଗଲା ଏବଂ ନାନାବିଧ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ତାହାର ଦ୍ୱିତୀୟ ସଂସ୍କରଣ ଏ ଯାବତ୍ ପ୍ରକାଶିତ ହୋଇପାରି ନ ଥିଲା ।

ଶଙ୍କର ହିଁ ଜଗଦ୍‌ଗୁରୁ । ସେହି ଜଗଦ୍‌ଗୁରୁ ଶଙ୍କର ଦେବତାମାନଙ୍କ ଅନୁରୋଧରେ ଅଦ୍ୱୈତ ବ୍ରହ୍ମଜ୍ଞାନ ପ୍ରଚାର ଉଦ୍ଦେଶ୍ୟରେ ଭାରତଭୂମିରେ ଶଙ୍କରାଚାର୍ଯ୍ୟରୂପରେ ଅବତୀର୍ଣ୍ଣ ହୋଇଥିଲେ । ଏହି ମତ ଅର୍ଥାତ୍ ଅଦ୍ୱୈତ ବ୍ରହ୍ମବାଦ ସାଧାରଣଙ୍କର ବୋଧଗମ୍ୟ ନୁହେଁ । ତାଙ୍କ ମତ ଉଦାର ହେଲେ ମଧ୍ୟ ତାହା ଲାଭ କରିବାନିମିତ୍ତ ସେ ଯେଉଁ ପଥର ଅବତାରଣା କରିଛନ୍ତି ତାହା ଅତ୍ୟନ୍ତ ସଂକୀର୍ଣ୍ଣ; ଅର୍ଥାତ୍ ବ୍ରାହ୍ମଣମାନଙ୍କ ବ୍ୟତୀତ ଅନ୍ୟମାନଙ୍କର ସେ ପଥରେ ଗତି କରିବାର ଅଧିକାର ନାହିଁ । ତେଣୁ ଏହି ଅଦ୍ୱୈତ ତତ୍ତ୍ୱରେ ଉପନୀତ ହେବାନିମିତ୍ତ

---

★ ପୂଜ୍ୟ ଗୁରୁଦେବ ଶ୍ରୀ ଶ୍ରୀ ଠାକୁର ପରମହଂସ ନିଗମାନନ୍ଦ ସରସ୍ୱତୀଦେବଙ୍କ ପ୍ରଣୀତ 'ପ୍ରେମିକଗୁରୁ' ଗ୍ରନ୍ଥ ଦ୍ରଷ୍ଟବ୍ୟ ।

ଶ୍ରୀଗୌରାଙ୍ଗ ମହାପ୍ରଭୁଙ୍କ ପ୍ରଚାରିତ ଭକ୍ତିପଥରେ ଗତି କରିବା କର୍ତ୍ତବ୍ୟ । ଅଦ୍ୱୈତ ତତ୍ତ୍ୱ ଭିତରେ ଗୁରୁତତ୍ତ୍ୱ ତଥା ଗୁରୁଭକ୍ତି କିଭଳି ପ୍ରଚ୍ଛନ୍ନଭାବରେ ବିଦ୍ୟମାନ, ତାହା ପାଠକମାନେ ତାଙ୍କ ଜୀବନୀ ପାଠ କରି ଜାଣି ପାରିବେ ।

ଭାରତଭୂମି ଶ୍ରୀଭଗବାନଙ୍କ ଲୀଳା ନିକେତନ । ଅନାଦି କାଳରୁ ଏହି ପୁଣ୍ୟ ଭୂମିରେ ଯେ କେତେ ଅବତାର, କେତେ ମହାପୁରୁଷ, କେତେ ସିଦ୍ଧ ସାଧୁ ଜନ୍ମଗ୍ରହଣ କରି ଏହାର ପ୍ରତି ଧୂଳିକଣାକୁ ପବିତ୍ର ଓ ମହିମାମଣ୍ଡିତ କରିଛନ୍ତି ତାହାର ଇୟତ୍ତା ନାହିଁ । ପ୍ରତି ଯୁଗରେ ସେହି ପରମପୁରୁଷ ଶ୍ରୀଭଗବାନ ଧର୍ମର ଗ୍ଲାନି ଦୂରୀକରଣ, ଅଧର୍ମର ବିନାଶ ଏବଂ ଧର୍ମ ସଂସ୍ଥାପନ ନିମିତ୍ତ ଅବତାର ଗ୍ରହଣ କରିଥାନ୍ତି । ଧର୍ମାଚାର୍ଯ୍ୟମାନଙ୍କ ମଧ୍ୟରେ ଶ୍ରୀମତ୍ ଶଙ୍କରାଚାର୍ଯ୍ୟ ଓ ଶ୍ରୀମନ୍ ମହାପ୍ରଭୁ ଗୌରାଙ୍ଗଦେବ ଅଧିକ ପ୍ରସିଦ୍ଧି ଲାଭ କରିଛନ୍ତି । ସେମାନେ ଭଗବାନଙ୍କ ଅବତାର ମଧ୍ୟରେ ଗଣ୍ୟ । ଶଙ୍କରାଚାର୍ଯ୍ୟ ଭଗବାନ ଶିବଙ୍କର ଏବଂ ମହାପ୍ରଭୁ ଗୌରାଙ୍ଗଦେବ ଭଗବାନ ଶ୍ରୀକୃଷ୍ଣଙ୍କ ଅବତାର ରୂପେ ପୂଜିତ । ଭଗବାନ ଶଙ୍କରାଚାର୍ଯ୍ୟଙ୍କ ପ୍ରଚାରରେ ଯେଉଁ ଧର୍ମର ସୃଷ୍ଟି ହୋଇଥିଲା, ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁଙ୍କଦ୍ୱାରା ତାହା ପୂର୍ଣ୍ଣତା ପ୍ରାପ୍ତ ହୋଇଛି ।

ଭଗବାନ ବୁଦ୍ଧଦେବଙ୍କ ତିରୋଧାନ ପରେ ଆଜକୁ ପ୍ରାୟ ବାରଶହ ବର୍ଷ ପୂର୍ବେ ପଥଭ୍ରଷ୍ଟ ବୌଦ୍ଧମାନଙ୍କ ଶୂନ୍ୟବାଦ ଓ ନାସ୍ତିକତାର ବଜ୍ର ନିର୍ଘୋଷରେ ଭାରତଭୂମି ପ୍ରକମ୍ପିତ ହୋଇଉଠିଲା । ଏହି ସୁଯୋଗରେ ବୌଦ୍ଧତାନ୍ତ୍ରିକ ଓ କାପାଳିକମାନେ ବିକଟ ବଦନରେ ଭାରତଭୂମିକୁ ଗ୍ରାସ କରିଗଲେ । ପଞ୍ଚ 'ମ'କାର ସାଧନ ନାମରେ ସମଗ୍ର ଦେଶରେ ମଦ୍ୟ-ମାଂସର ସ୍ରୋତ ପ୍ରବାହିତ ହେବାକୁ ଲାଗିଲା । ନାରୀର ସତୀତ୍ୱରନ୍ ଲୁଣ୍ଠିତ ହେଲା । ଜପ, ତପ, ପୁଣ୍ୟ, ଧର୍ମ, ଯାଗ ଯଜ୍ଞ ଓ ଶାସ୍ତ୍ରଚର୍ଚ୍ଚା ସମସ୍ତ ତିରୋହିତ ହେଲା । ରାହୁଗ୍ରହ ଚନ୍ଦ୍ରମାକୁ ଗ୍ରାସ କଲାପରି ଘୋର ବିଷୟାସକ୍ତି ନିବୃତ୍ତିପରାୟଣ ଭାରତ ଭୂମିକୁ କବଳିତ କଲା । ଏହା ଦେଖି ତପସ୍ତେଜସମ୍ପନ୍ନ ବ୍ରହ୍ମବାଦୀ ଋଷିଗଣ ନିଭୃତ ଗିରିଗୁହାରେ ଆଶ୍ରୟ ଗ୍ରହଣ କଲେ । ସାଧାରଣ ଲୋକେ ବିଷୟର ଦାସ ହୋଇ ଇହକାଳସର୍ବସ୍ୱ ଓ ନରକର କ୍ରିମିକୀଟସଦୃଶ ବିଷୟାନନ୍ଦରେ ମଗ୍ନ ରହିଲେ ଏବଂ ସ୍ୱର୍ଗସୁଖ କାମନାରେ ଜ୍ଞାନ ଓ ଆତ୍ମସମାହିତଭାବ ତ୍ୟାଗ କରି କର୍ମକାଣ୍ଡରେ ମାତିଗଲେ । ଭାରତ ସନ୍ତାନଗଣ ତ୍ୟାଗର ମହିମା ବିସ୍ମୃତ ହୋଇ ଜଗତ୍ ପିତାଙ୍କ ସେବା ପରିତ୍ୟାଗପୂର୍ବକ ବିଷୟ

ସେବାରେ ଅର୍ଥାତ୍ ଜଡ଼ଜଗତ ସେବାରେ ମନୋନିବେଶ କଲେ ଏବଂ ଭୋଗାସକ୍ତି ଓ ଇନ୍ଦ୍ରିୟପରାଣତାହେତୁ ନାରାୟଣଙ୍କୁ ପରିତ୍ୟାଗପୂର୍ବକ ସଂସାର ସୁଖକୁ ଶ୍ରେଷ୍ଠ ମନେ କରି ସ୍ୱାର୍ଥ ସେବାରେ ବ୍ରତୀ ହେଲେ । ଭାରତର ବୈଦିକ ଯୁଗର ଉଜ୍ଜ୍ୱଳ ପ୍ରତିଭା ଅନ୍ତର୍ହିତ ହୋଇଗଲା । ବ୍ରାହ୍ମଣ୍ୟ ଧର୍ମର ମନୋହର ହେମପ୍ରଭା ନିଷ୍ଠୁର କାଳର ନିର୍ମମ ନିଷ୍ପେଷଣରେ ଭୂଲୁଣ୍ଠିତ ହେଲା । ଭାରତର ଚତୁର୍ଦ୍ଦିଗ ଘୋର ଅଜ୍ଞାନତମସାଚ୍ଛନ୍ନ ହୋଇଗଲା । ଭାରତର ଏତାଦୃଶ ଦୁରବସ୍ଥା ଦର୍ଶନ କରି ଭଗବାନଙ୍କର ଅଟଳ ସିଂହାସନ କମ୍ପମାନ ହେଲା । ତେଣୁ ସମସ୍ତ ଦେବତା ମିଳିତ ହୋଇ ବ୍ରହ୍ମାଙ୍କୁ ଅଗ୍ରବର୍ତ୍ତୀ କରାଇ ଦେବଦେବ ମହାଦେବଙ୍କୁ ସେମାନଙ୍କ ଅନ୍ତର ବେଦନା ନିବେଦନ କଲେ । କିଭଳି ଭାବରେ ସେମାନେ କୈଳାସରେ ଉମାପତିଙ୍କୁ ନିବେଦନ କଲେ ସେ ସମ୍ବନ୍ଧରେ ନାଟ୍ୟସମ୍ରାଟ୍ ମହାତ୍ମା ଗିରୀଶ ଘୋଷ ଲେଖିଛନ୍ତି, ବ୍ରହ୍ମା କହିଲେ—

ହେ ସର୍ବଜ୍ଞ ! କିବା ତବ ଅଜ୍ଞାତ ଭୁବନେ;
ତଥାପି ଚରଣାମ୍ବୁଜେ କରୁ ନିବେଦନ ।
ନିରେଖି ରୋରୁଦ୍ୟମାନ କ୍ଷୁଧାର୍ତ୍ତ ବାଳକେ,
ମାତାର ମମତା ହୁଏ ଯେ ରୂପ ବର୍ଦ୍ଧିତ;
ସେ ରୂପ ଏକାନ୍ତ ଆର୍ତ୍ତ ଦେବତା ମଣ୍ଡଳ;
ଆସିଛନ୍ତି ମନସ୍ତାପ କରିବେ ଜ୍ଞାପନ,
ଜଗତ-ଜନକ ତବ ସ୍ନେହ ବୃଦ୍ଧିପାଇଁ ।
ନିଷ୍ଠୁରତା ବାରଣ କାରଣ ନାରାୟଣ
ବ୍ରାହ୍ମଣର ବିଦ୍ୟାଦର୍ପ ଦମନ ମାନସେ
ହୋଇଥିଲେ ବୁଦ୍ଧ ଅବତାର;
ଯୁକ୍ତିବଳେ ପରାଜିଲେ ଦେବଜ୍ଞ ମଣ୍ଡଳେ ।
ଶୂନ୍ୟବାଦ ପ୍ରଚାରିଲେ ରମେଶ ସଂସାରେ ।
ହୀନମତି ନରେ, ଦେବ ମାୟା ବୁଝି ନ ପାରିଲେ
ବେଦ ବିଧି ଯାଗଯଜ୍ଞ ହେଲା ତିରୋହିତ;
ନିରୀଶ୍ୱର ସ୍ୱେଚ୍ଛାଚାର ଶୂନ୍ୟବାଦ ମତେ
ପାପଭାର ବୃଦ୍ଧି ଦିନୁଦିନ, ଯଜ୍ଞଭାଗ ବିନା ଯେତେ ଦେବତା ମଳିନ ।
କର ଦେବ ! ଉପାୟ ତାହାର, ବେଦବିଧି କର ହେ ଉଦ୍ଧାର,

ସଂସାର କଲ୍ୟାଣ ପୁନଃ ହେଉ ସଂସ୍ଥାପନ ।

ଉତ୍ତରରେ ମହାଦେବ କହିଲେ—

ଚିନ୍ତା ଦୂର କର ଦେବଗଣ ! ଧରାର ରୋଦନ ନିତ୍ୟ ସ୍ପର୍ଶେ ମମ କର୍ଣ୍ଣେ ।

ତାହା ଶୁଣି ମନେ ମନେ କରିଛି ମୁଁ ସ୍ଥିର, ଧରି ଭବେ ନର କଳେବର
ଅତି ଗୁହ୍ୟତତ୍ତ୍ୱ କରିବି ପ୍ରଚାର ମୁହିଁ ମାନବ କଲ୍ୟାଣ ପାଇଁ ।
ସେହି ଗୁହ୍ୟତତ୍ତ୍ୱ ଆତ୍ମାର ସ୍ୱରୂପ ପ୍ରିୟ ଗୌରୀ ଗଣପତି କାର୍ତ୍ତିକେୟ ଠାରେ,
ବିଶୁଦ୍ଧ ଅଦ୍ୱୈତ ଜ୍ଞାନ ଦାନିବି ସଂସାରେ ।
ଯିବେ କାର୍ତ୍ତିକେୟ ଭବେ ବୌଦ୍ଧଗଣେ ଦମିବେ ପ୍ରଭାବେ,
କର୍ମକାଣ୍ଡ କରିବେ ଉଦ୍ଧାର କୁମାରିଲ ଭଟ୍ଟ ନାମେ ।
ଧରି ନର କଳେବର, ଶିଷ୍ୟରୂପେ ତାଙ୍କ ପଦ୍ମଯୋନି !
କର୍ମକାଣ୍ଡ କର ହେ ପ୍ରଚାର
ମଣ୍ଡନ ନାମରେ ଖ୍ୟାତ ହୁଅ ଧରାତଳେ । ନରରୂପ ଧରାତଳେ ଧର
ଜଣେ ଜଣେ ।
ନିଜ ଆଚରଣେ ଆଦର୍ଶ ପ୍ରଦାନେ, ବୈଦିକ ନିୟମ କର ପୁନଃ ସଂସ୍ଥାପନ ।
ବ୍ରହ୍ମସୂତ୍ର ବେଦାର୍ଥର ପ୍ରଚାର ମନାସି ନେଲି ମୁହିଁ ଭାର,
ଶିଷ୍ୟସହ ହେବ ମମ ଧରାରେ ବିହାର । ଯୁକ୍ତିବଳେ ବୌଦ୍ଧମତ କରିବି ଖଣ୍ଡନ
ଦମିବି ଦୁଷ୍କୃତଗଣେ ଛନ୍ତି ଯେ ସେ ଠାବେ । ଯାଅ ଇନ୍ଦ୍ର ଧର ନରକାୟ
ରାଜେଶ୍ୱର ହୋଇ ରହ ମମ ପ୍ରତୀକ୍ଷାରେ—ଘୋଷିବେ ସୁଧର୍ମା ନାମେ ତୁମକୁ ଏ ଭବେ ।

ଯାଅ ସର୍ବେ ସଂସାରରେ ଧର ନରକାୟ ।

ଶିବ ତେଜବୀର୍ଯ୍ୟ ପ୍ରଦୀପ୍ତ ପୃଥିବୀ ପ୍ରସିଦ୍ଧ ପ୍ରାତଃସ୍ମରଣୀୟ ଭଗବାନ ଶଙ୍କରାଚାର୍ଯ୍ୟ ଭାରତଭୂମିରେ ଆବିର୍ଭୂତ ହୋଇ ନାସ୍ତିକ ବୌଦ୍ଧଧର୍ମର ବିଲୟ ସାଧନ ଏବଂ ସୋଽହଂଭାବର ପୁନଃପ୍ରତିଷ୍ଠା କରି ଭାରତର ସିଂହାସନରେ ବେଦାନ୍ତର ବିଜୟ ମୁକୁଟ କିଭଳି ସ୍ଥାପନ କଲେ, ଏହି ପୁସ୍ତକରେ ତାହାର ଅବତାରଣା କରାଯାଇଛି ।

ଭଗବାନ ଶଙ୍କରାଚାର୍ଯ୍ୟ ଦ୍ରାବିଡ଼ ଦେଶରେ ବ୍ରାହ୍ମଣ କୁଳରେ ଆବିର୍ଭୂତ ହୋଇ ମାତ୍ର ଅଷ୍ଟମ ବର୍ଷ ବୟସରେ ସମସ୍ତ ଶାସ୍ତ୍ର ଅଧିଗତ କରି ଦ୍ୱାଦଶ ବର୍ଷ

ବୟଃକ୍ରମରେ ସନ୍ନ୍ୟାସ ଗ୍ରହଣ କଲେ । ଷୋଡ଼ଶ ବର୍ଷ ବୟସରେ ସେ ପରମହଂସତ୍ୱ ଲାଭ କରି ହିନ୍ଦୁ ଶାସ୍ତ୍ରସମୂହର ପୁନରୁଦ୍ଧାରରେ ବ୍ରତୀ ହେଲେ । ଶ୍ରୀମଦ୍ ଭଗବଦ୍‌ଗୀତା, ବ୍ରହ୍ମସୂତ୍ର ଓ ଉପନିଷଦ୍ ଆଦିର ଭାଷ୍ୟ ରଚନା କରି ସ୍ୱୀୟ ପ୍ରତିଭାବଳରେ ପ୍ରାୟ ଷାଠିଏ ଖଣ୍ଡ ସଂସ୍କୃତ ଗ୍ରନ୍ଥ ପ୍ରଣୟନ କଲେ । ଅତି ଅଳ୍ପକାଳ ମଧ୍ୟରେ ସେ ପଦବ୍ରଜରେ ଆକୁମାରୀ ହିମାଚଳ ପର୍ଯ୍ୟଟନ କରି ବେଦାନ୍ତଧର୍ମର ବିଜୟ ଘୋଷଣାପୂର୍ବକ ଭାରତର ଚାରିଦିଗରେ ଚାରିଗୋଟି ମଠ ସ୍ଥାପନ କରି ତାଙ୍କର ପ୍ରଧାନ ଶିଷ୍ୟ-ଚତୁଷ୍ଟୟଙ୍କ ଉପରେ ସେହି ସବୁ ମଠର ତତ୍ତ୍ୱାବଧାନ ଭାର ଅର୍ପଣ କରିଥିଲେ । ମାତ୍ର ବତ୍ରିଶ ବର୍ଷ ବୟସରେ ସେ କେଦାରନାଥ ତୀର୍ଥରେ ଯୋଗବଳରେ ବ୍ରହ୍ମନିର୍ବାଣ ଲାଭ କଲେ । ସେ ସ୍ୱାମୀ ଗୋବିନ୍ଦପାଦଙ୍କ ଶିଷ୍ୟ ଥିଲେ । ତାଙ୍କର ସୁକୁମାର ତନୁ, ସୁମିଷ୍ଟଯୁକ୍ତିପୂର୍ଣ୍ଣବାକ୍ୟ ଓ ଅସାଧାରଣ ପାଣ୍ଡିତ୍ୟ ପ୍ରଭାବରେ ମୁଗ୍ଧ ହୋଇ ବହୁ ରାଜନ୍ୟବର୍ଗ ତଦୀୟ ସେବାରେ ଜୀବନ ଉତ୍ସର୍ଗ କଲେ । ସେ ବେଦାନ୍ତ-ଉପନିଷଦର ଭାଷ୍ୟାଦି ପ୍ରଣୟନ କରି ସ୍ୱୀୟ ଶିଷ୍ୟମାନଙ୍କୁ ତାହା ଶିକ୍ଷା ଦେଲେ । ବେଦାନ୍ତ ଶାସ୍ତ୍ରର ସତ୍ୟ ଓ ତତ୍ତ୍ୱଜ୍ଞାନ ପ୍ରଚାର ନିମିତ୍ତ ସେ ଭାରତର ସର୍ବତ୍ର ପରିଭ୍ରମଣ କଲେ । ସମଗ୍ର ଭାରତର ଘରେ ଘରେ ତାଙ୍କର ଜୟଧ୍ୱନି ନିନାଦିତ ହେଲା । ସେ ମୁମୁକ୍ଷୁମାନଙ୍କନିମିତ୍ତ ସନ୍ନ୍ୟାସ ଓ ବ୍ରହ୍ମଜ୍ଞାନର ବ୍ୟବସ୍ଥା କଲେ । ସାଧାରଣଙ୍କନିମିତ୍ତ ସଗୁଣବ୍ରହ୍ମଉପାସନା ଓ ଦୁର୍ବଳ ଅଧିକାରୀଙ୍କ ନିମିତ୍ତ ଦେବ-ଦେବୀ ପ୍ରଭୃତି ପ୍ରତୀକ ଉପାସନାର ପ୍ରଚଳନ କଲେ । ସଂସାରମୁଗ୍ଧ ମାନବମାନଙ୍କ ମୋହ ନାଶନିମିତ୍ତ ବର୍ଣ୍ଣାଶ୍ରମ ଧର୍ମର ଅନୁମୋଦନ କଲେ । ଫଳରେ ସର୍ବାଧିକାରୀ ଜନଗଣ ତାଙ୍କ ପ୍ରଚାରିତ ଧର୍ମର ଉଦାର ଗର୍ଭରେ ସ୍ଥାନ ଲାଭ କରି ଧନ୍ୟ ହେଲେ । କାଶ୍ମୀରର ଶାରଦା ପୀଠରେ ଆରୋହଣ ଏବଂ ସମଗ୍ର ଭାରତର ଗୁରୁଙ୍କ ଆସନରେ ଉପବେଶନ କରିବାର ସୌଭାଗ୍ୟ ଏକମାତ୍ର ଶଙ୍କରାଚାର୍ଯ୍ୟ ହିଁ ଲାଭ କରିଛନ୍ତି । ତେଣୁ ସେ ଜଗଦ୍‌ଗୁରୁ ନାମରେ ଖ୍ୟାତ । ଶଙ୍କରାଚାର୍ଯ୍ୟ ବେଦାନ୍ତ ଶାସ୍ତ୍ରର ପୁନଃ ପ୍ରତିଷ୍ଠା କରି କର୍ମକାଣ୍ଡର ଅସାରତା, ଜଗତର ଅସତ୍ୟତା ଓ ସଂସାରର ଅନିତ୍ୟତା ପ୍ରତିପାଦନପୂର୍ବକ ବ୍ରହ୍ମ ହିଁ ସତ୍ୟ, ଜଗତ୍ ବ୍ରହ୍ମମୟ; ଏହି ଭାବ ପ୍ରଚାର କଲେ । ତାଙ୍କର ପ୍ରତିଭା ସହ୍ୟକରି ନ ପାରି ପଥଭ୍ରଷ୍ଟ ବୌଦ୍ଧମାନଙ୍କ ମଧ୍ୟରୁ ଅଧିକାଂଶ ତତ୍କାଳୀନ ଅନାର୍ଯ୍ୟ ଦେଶମାନଙ୍କୁ ପଳାୟନପୂର୍ବକ ସେଠାରେ ଆଧିପତ୍ୟ ବିସ୍ତାର

କଲେ । ମଣ୍ଡନ ମିଶ୍ର ପ୍ରଭୃତି ପଣ୍ଡିତମାନେ ତାଙ୍କ ପ୍ରତିଭା ନିକଟରେ ଜଡ଼ ହୋଇଗଲେ । ସମସ୍ତେ ତାଙ୍କର ଶିଷ୍ୟତ୍ୱ ସ୍ୱୀକାରପୂର୍ବକ ଦ୍ୱିଗୁଣ ଉତ୍ସାହରେ ଶ୍ରୀଗୁରୁଙ୍କ କାର୍ଯ୍ୟରେ ଆତ୍ମନିୟୋଗ କଲେ । ଅତି ଅଳ୍ପଦିନ ମଧ୍ୟରେ ସମଗ୍ର ଭାରତବର୍ଷ ତାଙ୍କର ପଦାନତ ହେଲା । ସେ ଲୋକଗୁରୁ ଜଗଦ୍‌ଗୁରୁ ଭାବରେ ଭାରତର ସର୍ବତ୍ର ଶାନ୍ତିର ଅମୀୟଧାରା ବର୍ଷଣ କଲେ । ଜଗତର ଯାବତୀୟ ଧର୍ମମତର ପ୍ରତିଷ୍ଠାତାଗଣ ଭଗବାନଙ୍କର କୌଣସି ଗୋଟିଏ ବିଶେଷ ଲକ୍ଷଣ ନିରୂପଣ କରି ତାହା ଲାଭ କରିବାର ଉପାୟ ପ୍ରଚାର କରିଛନ୍ତି । ଏଥିପାଇଁ ଯାବତୀୟ ଧର୍ମସଂପ୍ରଦାୟ ମଧ୍ୟରେ ବିଦ୍ୱେଷ ଓ ଦ୍ୱନ୍ଦ୍ୱ କୋଳାହଳ ଲାଗିରହିଛି । କିନ୍ତୁ ଭଗବାନ ଶଙ୍କରାଚାର୍ଯ୍ୟ ବ୍ରହ୍ମଙ୍କର ସ୍ୱରୂପ ଲକ୍ଷଣ ନିରୂପଣ କରିବାକୁ ଯାଇ ବିଶ୍ୱବ୍ୟାପୀ ଯେଉଁ ଉଦାରମତ ପ୍ରଚାର କଲେ, ସେଥିରେ ସର୍ବାଧିକାରୀ ଜନଗଣ ସ୍ଥାନ ଲାଭ କରି କୃତାର୍ଥ ହେଲେ । ଏପରି ସର୍ବମତ ସମନ୍ୱୟୀ ଏବଂ ସର୍ବଧର୍ମ ସାମଞ୍ଜସ୍ୟକାରୀ ଉଦାରମତ ବା ଧର୍ମ ଆଉ କେବେ କାହାଦ୍ୱାରା ପ୍ରଚାରିତ ହୋଇ ନାହିଁ । ଶଙ୍କରାଚାର୍ଯ୍ୟଙ୍କପରି, ଧର୍ମବୀର, କର୍ମବୀର, ଜ୍ଞାନବୀର ଓ ପ୍ରେମିକ ପ୍ରଚାରକ ପୃଥିବୀରେ ଜନ୍ମଗ୍ରହଣ କରିନାହାନ୍ତି । କିନ୍ତୁ ଦୁଃଖର କଥା, ଆମ ଦେଶର କେତେ ଶିକ୍ଷିତ ବ୍ୟକ୍ତି ଶଙ୍କରାଚାର୍ଯ୍ୟଙ୍କୁ ପ୍ରଚ୍ଛନ୍ନ ବୁଦ୍ଧ ଆଖ୍ୟା ଦେଇ ତାଙ୍କୁ ଘୃଣା ଚକ୍ଷୁରେ ଦର୍ଶନ କରି ମନ୍ତବ୍ୟ ପ୍ରକାଶ କରନ୍ତି ଯେ, ଯେତେବେଳେ ଭଗବାନ ଦେଖିଲେ, ଭାରତର ସମସ୍ତ ବ୍ୟକ୍ତି ଧର୍ମ ବଳରେ ଉଦ୍ଧାର ହୋଇଯାଉଛନ୍ତି, ସେତେବେଳେ ମାନବ ସମାଜକୁ ବିପଥରେ ପରିଚାଳିତ କରିବାନିମିତ୍ତ ସେ ଶିବଙ୍କୁ ଶଙ୍କରାଚାର୍ଯ୍ୟରୂପରେ ଅବତୀର୍ଣ୍ଣ ହେବାନିମିତ୍ତ ଆଦେଶ ଦେଲେ । ଏଥିପାଇଁ ଶଙ୍କରାଚାର୍ଯ୍ୟଙ୍କ ଆବିର୍ଭାବ । ଏପରି ମନଗଢ଼ା ପ୍ରଚାର କରି ଭଗବାନଙ୍କ ଦୟାମୟ ନାମରେ ଯେ କଳଙ୍କ ଆରୋପ କରାଗଲା, ତାହା ସାଂପ୍ରଦାୟିକ ଭାବାପନ୍ନ ଅନ୍ଧ ମାନବଗଣ କେବେ ହୃଦୟଙ୍ଗମ କଲେ ନାହିଁ । ଶଙ୍କରାଚାର୍ଯ୍ୟଙ୍କ ପୂର୍ବରୁ ଭାରତର ଅବସ୍ଥା ଯେ କିପରି ଥିଲା ତାହା ମଧ୍ୟ କେହି ବିଚାରକୁ ନେଲେ ନାହିଁ । ସେମାନେ ଯଦି ଦେଶର ତଦାନୀନ୍ତନ ଅବସ୍ଥା ଜାଣିଥାନ୍ତେ, ତେବେ ଏପରି ନିର୍ବୋଧ କାହାଣୀର ପ୍ରଚାର କେବେ ସମ୍ଭବପର ହୋଇ ନ ଥାନ୍ତା ।

ସେତେବେଳେ ଭାରତବର୍ଷ ବୌଦ୍ଧ ପ୍ରଭାବରେ ପ୍ରଭାବିତ ହୋଇ ବେଦ ଓ ବେଦପ୍ରତିପାଦିତ ଭଗବାନଙ୍କ କଥା ଏକାବେଳକେ ଭୁଲିଯାଇଥିଲା । ନାସ୍ତିକତା

ଓ ଜଡ଼ବାଦର ଦାନବୀ ନିଃଶ୍ୱାସରେ ଭାରତ ଯେତେବେଳେ ଅଧଃପତନର ଚରମସୀମା ସ୍ପର୍ଶ କରିଥିଲା, ଠିକ୍ ସେତିକିବେଳେ ଭଗବାନ ଶଙ୍କରାଚାର୍ଯ୍ୟଙ୍କର ଆବିର୍ଭାବ । ତାଙ୍କ ପ୍ରଚାରରେ ନାସ୍ତିକତା ଓ ଜଡ଼ବାଦର ନିରାକରଣ ହୋଇ ଭାରତର ପୂର୍ବ ଗୌରବ ଫେରି ଆସିଲା । ଆମ ଦେଶରେ ବେଦାନ୍ତର ପ୍ରକୃତ ଆଲୋଚନା ପ୍ରାୟ ହୁଏ ନାହିଁ । ତେଣୁ ବେଦାନ୍ତ ପ୍ରଚାରକ ଶଙ୍କରାଚାର୍ଯ୍ୟଙ୍କ ମହତ୍ତ୍ୱ କେହି ହୃଦୟଙ୍ଗମ କରିପାରୁନାହାନ୍ତି । ଯାହାଙ୍କ ଚିତ୍ତର ସଂସ୍କାର ଯେପରି ସେ ସେହିପରି ଭାବରେ ବେଦାନ୍ତ ପ୍ରଚାର କରୁଛନ୍ତି । ସତ୍ୟ ପ୍ରତ୍ୟକ୍ଷକାରୀ ସିଦ୍ଧସାଧକଙ୍କ ବ୍ୟତୀତ ବେଦାନ୍ତର ପ୍ରକୃତ ଅର୍ଥ ନିର୍ଣ୍ଣୟ କରିବାର ଶକ୍ତି ଅନ୍ୟ କାହାରି ନାହିଁ । କିନ୍ତୁ ଆମ ଦେଶର ଲୋକେ ବେଦାନ୍ତର ପ୍ରଭାବ ଉପଲବ୍‌ଧି କରୁ ନ ଥିଲେ ମଧ୍ୟ ସୁଦୂର ପାଶ୍ଚାତ୍ୟ ଦେଶର ଗୁଣଗ୍ରାହୀ ପଣ୍ଡିତମାନେ ଏହି ବେଦାନ୍ତବାଣୀକୁ ଶାନ୍ତିର ବାଣୀ ବୋଲି ଗ୍ରହଣ କରିଛନ୍ତି । ଦେଶଗୌରବ ଶ୍ରୀମତ୍ ସ୍ୱାମୀ ବିବେକାନନ୍ଦ କେବଳ ବେଦାନ୍ତ ଶାସ୍ତ୍ର ଯୋଗୁ ହିଁ ଚିକାଗୋ ଧର୍ମ ମହାସଭାରେ ଭାରତର ଗୌରବ ପ୍ରତିପନ୍ନ କରିପାରିଛନ୍ତି । ବେଦାନ୍ତଶାସ୍ତ୍ର ପାଶ୍ଚାତ୍ୟ ଧର୍ମଜଗତରେ ଯୁଗାନ୍ତର ଆନୟନ କରିଅଛି । ପୂର୍ବରୁ ନିୟମ ଥିଲା; ଚତୁର୍ଥାଶ୍ରମରେ କେବଳ ବ୍ରାହ୍ମଣମାନେ ସନ୍ନ୍ୟାସ ଗ୍ରହଣ କରିପାରିବେ । କିନ୍ତୁ ଶଙ୍କରାଚାର୍ଯ୍ୟ ବ୍ୟବସ୍ଥା କଲେ ଯେ, ବୈରାଗ୍ୟ ଉଦୟ ହେଲାମାତ୍ରେ ଯେ କୌଣସି ଆଶ୍ରମୀ ସନ୍ନ୍ୟାସ ଗ୍ରହଣ କରିପାରିବେ । ତେଣୁ ତାଙ୍କ ଉଦାର ମତରେ ସମସ୍ତେ ଆଶ୍ରୟ ଗ୍ରହଣ କରି ଧନ୍ୟ ହୋଇଛନ୍ତି । ସନ୍ନ୍ୟାସୀମାନେ ଦୁଇଭାଗରେ ବିଭକ୍ତ । ପ୍ରଥମରେ ଦଣ୍ଡୀ, ଦ୍ୱିତୀୟରେ ପରମହଂସ । ପ୍ରଥମ ଅବସ୍ଥାରେ ବ୍ରହ୍ମଜ୍ଞାନ ଆଲୋଚନା କରିବାକୁ ହୁଏ; ପରେ ସାଧନାରେ ସ୍ୱରୂପ ଉପଲବ୍‌ଧି ହେଲେ ପରମହଂସ ହୋଇ ଲୋକଶିକ୍ଷା, ଶାସ୍ତ୍ରବ୍ୟାଖ୍ୟା ଓ ଜଗଦ୍ଧିତକର କର୍ମରେ ନିଯୁକ୍ତ ହେବାକୁ ପଡ଼େ ।

ଶଙ୍କରଙ୍କ ମତ ହେଉଛି ଜୀବ ବ୍ରହ୍ମ, ଜଗତ୍ ବ୍ରହ୍ମ, ସମସ୍ତ ବ୍ରହ୍ମମୟ । ଜୀବ ସେହି ପରମାତ୍ମା; କିନ୍ତୁ ଅଜ୍ଞାନବଶରୁ ଜୀବଭାବ ପ୍ରାପ୍ତ ହୋଇଛି । ଜୀବ ନିତ୍ୟମୁକ୍ତ । କେବଳ ଅଭ୍ୟାସ ବଳରେ ସେ ତାହାର ସ୍ୱରୂପ ଉପଲବ୍‌ଧି କରିପାରିବ । ଭଗବାନ ଶ୍ରୀକୃଷ୍ଣ ମଧ୍ୟ ଗୀତାରେ କହିଛନ୍ତି "ନହି ଜ୍ଞାନେନ ସଦୃଶଃ ପବିତ୍ରମିହ ବିଦ୍ୟତେ ।" ଶଙ୍କରାଚାର୍ଯ୍ୟ ସେହି ଜ୍ଞାନଲାଭର ଉପାୟ ପ୍ରଦର୍ଶନ କରି କହିଲେ—"ତୁମ ମନ ଅସୀମ ଶକ୍ତିଶାଳୀ । ପ୍ରକୃତି ବା ମାୟାଦ୍ୱାରା

ତାହା ଆବଦ୍ଧ ଥିବାରୁ ତୁମେ ତୁମ ମନର ଶକ୍ତିକୁ ଉପଲବ୍ଧି କରିପାରୁ ନାହଁ । ନାମଜପ, ନୀତିପାଳନ ଓ ଭଗବତ୍ ଅନୁରାଗ ବା ବୈରାଗ୍ୟ ଅଭ୍ୟାସଦ୍ୱାରା ତୁମେ ସେହି ଶକ୍ତି ଲାଭ କରିପାରିବ । ଶଙ୍କରାଚାର୍ଯ୍ୟଙ୍କ ମତାନୁସାରେ ଏହା ହିଁ ଜୀବର ପରମ ମୋକ୍ଷପଦ । ନିରବଚ୍ଛିନ୍ନ ଆନନ୍ଦ ସ୍ୱରୂପ ପ୍ରାପ୍ତିକୁ ନିର୍ବାଣମୁକ୍ତି କୁହାଯାଏ । ଏହା ହିଁ ମାନବର ସୁଖ ତୃଷ୍ଣାର ଚରମଭୂମି । ଦୁଃଖର ଉଚ୍ଛେଦ ସାଧନପୂର୍ବକ ନିତ୍ୟାନନ୍ଦ ସମ୍ପାଦନ ହିଁ ବେଦାନ୍ତ ଦର୍ଶନର ଚରମ ଲକ୍ଷ୍ୟ ।

ଆତ୍ମଲାଭ ବା ଆନନ୍ଦ ଲାଭ ଏକାର୍ଥବାଚକ । ଆତ୍ମାନୁଭବ ପୂର୍ଣ୍ଣଜ୍ଞାନର ନିତ୍ୟ ସହଚର । ଆତ୍ମା ହିଁ ଆନନ୍ଦସ୍ୱରୂପ । ତେଣୁ ଆତ୍ମଜ୍ଞାନ ଲାଭ ଠାରୁ ଶ୍ରେଷ୍ଠ ଲାଭ ଆଉ କିଛି ନାହିଁ । ଏହା ହିଁ ବ୍ରହ୍ମଲାଭ । ବ୍ରହ୍ମ ମଧ୍ୟ ରସ ସ୍ୱରୂପ । ସେହି ରସ ପ୍ରାପ୍ତ ହେଲେ ଜୀବ ଆନନ୍ଦମୟ ହୋଇଯାଏ । ତେଣୁ ଆତ୍ମସାକ୍ଷାତ୍କାର ଲାଭ ହିଁ ଜୀବର ପରମ ପୁରୁଷାର୍ଥ । ଏହାକୁ ନିର୍ବାଣମୁକ୍ତି ବା ସ୍ୱରୂପରେ ଲୟ କୁହାଯାଏ । ଆତ୍ୟନ୍ତିକ ଦୁଃଖ ନିବୃତ୍ତି ଓ ସ୍ୱରୂପ ପ୍ରତିଷ୍ଠାର ନାମ ନିର୍ବାଣମୁକ୍ତି । ଏହା ହିଁ ଭଗବାନ ଶଙ୍କରଙ୍କର ମତ ।

ବର୍ତ୍ତମାନ ମନରେ ପ୍ରଶ୍ନ ଜାଗେ ଯେ ଏହି ଦୁଃଖ ନିବୃତ୍ତି ଓ ସ୍ୱରୂପ ପ୍ରତିଷ୍ଠାର ପଥ ପ୍ରଦର୍ଶକ କିଏ ? ଶ୍ରୀମଦ୍ ଶଙ୍କରାଚାର୍ଯ୍ୟଙ୍କ ମତରେ ବେଦାନ୍ତସୂର୍ଯ୍ୟ ଶ୍ରୀଗୁରୁଦେବଙ୍କର ପ୍ରୟୋଜନୀୟତା ଓ ଗୁରୁତ୍ୱ ଏହି କ୍ଷେତ୍ରରେ ଉପଲବ୍ଧ ହୋଇଥାଏ । ଶ୍ରୀଗୁରୁଦେବ ହିଁ ଏହି କ୍ଷେତ୍ରରେ ପ୍ରତ୍ୟକ୍ଷ ବେଦାନ୍ତ ଓ ସାକ୍ଷାତ୍ ପରଂବ୍ରହ୍ମସ୍ୱରୂପ । ତେଣୁ ଆଚାର୍ଯ୍ୟ ଶଙ୍କର ଶ୍ରୀଗୁରୁଦେବଙ୍କ ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ଯାଇ ଶ୍ରୀଗୁରୁଦେବଙ୍କୁ ସାକ୍ଷାତ୍-ବ୍ରହ୍ମ ସ୍ୱରୂପରେ ଉପଲବ୍ଧି କରି ତଦୀୟ 'ସାରତତ୍ତ୍ୱ ଉପଦେଶ'ରେ ଓ 'ଗୁର୍ବଷ୍ଟକ' ତଥା 'ଦକ୍ଷିଣାମୂର୍ତ୍ତି ସ୍ତବ'ରେ ଯାହା ବର୍ଣ୍ଣନା କରିଛନ୍ତି, ତାହା ମଧ୍ୟ ପାଠକମାନଙ୍କ ଅବଗତିନିମିତ୍ତ ଏଥିରେ ପ୍ରଦତ୍ତ ହୋଇଅଛି ।

ଗୁରୁର୍ବ୍ରହ୍ମ ସ୍ୱୟଂ ସାକ୍ଷାତ୍ ସେବ୍ୟୋ ବନ୍ଦ୍ୟୋ ମୁମୁକ୍ଷୁଭିଃ
ନୋଦ୍‌ବେଜନୀୟଂ ଏବାୟଂ କୃତଜ୍ଞେନ ବିବେକିନା ।୧।
ଯାବଦାୟୁଷ୍ଟୁୟୋ ବନ୍ଦ୍ୟୋ ବେଦାନ୍ତ୍ୟେ ଗୁରୁରୀଶ୍ୱରଃ
ମନସା କର୍ମଣା ବାଚା ଶ୍ରୁତେରେବୈଷ ନିଶ୍ଚୟଃ ।୨।
ଭାବାଦ୍ୱୈତଂ ସଦା କୁର୍ଯ୍ୟାତ୍ କ୍ରିୟାଦ୍ୱୈତଂ ନ କର୍ହିଚିତ୍
ଅଦ୍ୱୈତଂ ତ୍ରିଷୁ ଲୋକେଷୁ ନାଦ୍ୱୈତଂ ଗୁରୁଣାସହ ।୩।

ସାରତତ୍ତ୍ୱୋପଦେଶ

ଅର୍ଥାତ୍ ଶ୍ରୀଗୁରୁ ସ୍ୱୟଂ ସାକ୍ଷାତ୍-ପରଂବ୍ରହ୍ମ । ମୋକ୍ଷଲାଭେଚ୍ଛୁ ସାଧକଙ୍କ ପକ୍ଷରେ ଶ୍ରୀଗୁରୁଦେବଙ୍କ ସେବା ଓ ବନ୍ଦନା କରିବା ଏକାନ୍ତ କର୍ତ୍ତବ୍ୟ । ବିବେକ ଜ୍ଞାନସମ୍ପନ୍ନ କୃତଜ୍ଞ ଶିଷ୍ୟ କେବେହେଲେ ଶ୍ରୀଗୁରୁଦେବଙ୍କର ଉଦ୍‌ବେଗଜନକ କାର୍ଯ୍ୟ କରିବେ ନାହିଁ । କାୟମନୋବାକ୍ୟରେ ଜୀବନବ୍ୟାପୀ ବେଦାନ୍ତ, ଗୁରୁ ଓ ଈଶ୍ୱରଙ୍କ ବନ୍ଦନା କରିବେ । ଏହା ହିଁ ଶ୍ରୁତିର ଅମୋଘ ଉପଦେଶ । ମନେମନେ ସର୍ବଦା ଅଦ୍ୱୈତଭାବ ପୋଷଣ କରି ଚଳିବେ; କିନ୍ତୁ କାର୍ଯ୍ୟରେ ତାହା ଦେଖାଇବେ ନାହିଁ । ସବୁଠାରେ ଅଦ୍ୱୈତଭାବ ପୋଷଣ କଲେ ମଧ୍ୟ କେବେହେଲେ ଶ୍ରୀଗୁରୁଦେବଙ୍କ ସହିତ ଅଦ୍ୱୈତଭାବ ରଖିବେ ନାହିଁ । ଗୁରୁ ଓ ଶିଷ୍ୟ ଏକ ହୋଇଗଲେ ଜ୍ଞାନଲାଭ କଦାପି ସମ୍ଭବ ହେବ ନାହିଁ । କାରଣ, ଗୁରୁଦେବ ହିଁ ଜୀବନରେ ପଥପ୍ରଦର୍ଶକରୂପରେ 'ଏକମେବାଦ୍ୱିତୀୟମ୍' ।

ସ ପୂର୍ବେଷାମପି ଗୁରୁଃ କାଲେ ନାନବଚ୍ଛେଦାତ୍ । (ପାତଞ୍ଜଳ-୧।୨୬)

ଜ୍ଞାନର ଘନ ବିଗ୍ରହ, ଅଦ୍ୱୈତ ତତ୍ତ୍ୱର ଚରମ ଉପାସକ ଶିବାବତାର ଆଚାର୍ଯ୍ୟ ଶଙ୍କର ସ୍ୱରଚିତ ବହୁ ଛନ୍ଦରେ ଶ୍ରୀଗୁରୁଦେବଙ୍କ ଗୁରୁତ୍ୱ ଓ ବୈଶିଷ୍ଟ୍ୟ କୀର୍ତ୍ତନ କରିଛନ୍ତି । ଶ୍ରୀଗୁରୁଦେବଙ୍କୁ ଅନେକ ବ୍ରହ୍ମଙ୍କର ପ୍ରତୀକ ବୋଲି ଗ୍ରହଣ କରନ୍ତି; କିନ୍ତୁ ତାହା ଭ୍ରମାତ୍ମକ । ପଞ୍ଚଦଶୀରେ 'ଏକମେବା ଦ୍ୱିତୀୟମ୍, ସତ୍‌ନାମ ରୂପ ବିବର୍ଜିତଂ' କୁହାଯିବାରେ ତାଙ୍କର ପ୍ରତିନିଧିତ୍ୱ ପ୍ରମାଣିତ ହେଲା କେଉଁଠି ? 'ବ୍ରହ୍ମବିଦ୍ ବ୍ରହ୍ମୈବ ଭବତି' ତେଣୁ ଭଗବାନ ଶଙ୍କରାଚାର୍ଯ୍ୟ 'ସ୍ୱୟଂ' ଏହି ଶବ୍ଦଦ୍ୱାରା ପ୍ରତିପାଦନ କଲେ ଯେ, 'ଗୁରୁ ନିଜେ ହିଁ ବ୍ରହ୍ମ—ସେ ବ୍ରହ୍ମଙ୍କର ପ୍ରତିନିଧି ନୁହନ୍ତି ।' ସେ କିପରି ନା' 'ସାକ୍ଷାତ୍' ଅର୍ଥାତ୍ ସେ ଚାକ୍ଷୁଷ ବର୍ତ୍ତମାନ । ତେଣୁ ବ୍ରହ୍ମଙ୍କୁ ଆଉ ଖୋଜି ବାହାର କରିବାକୁ ହେବ ନାହିଁ । ଗୁରୁଦେବଙ୍କୁ 'ସ୍ୱୟଂସାକ୍ଷାତ୍ ବ୍ରହ୍ମରୂପୀ' ଜ୍ଞାନ କରି ତାଙ୍କରି ସେବା ଓ ବନ୍ଦନା କଲେ ମୁମୁକ୍ଷୁ ସାଧକ ମୁକ୍ତି ଲାଭ କରି କୃତାର୍ଥ ହେବେ । ଗୁରୁସେବା ଓ ଗୁରୁବନ୍ଦନା କରି ତାଙ୍କର ସନ୍ତୋଷ ବିଧାନ କରିବା ପ୍ରତି ଶିଷ୍ୟ-ଭକ୍ତଙ୍କର ପରମ କର୍ତ୍ତବ୍ୟ । ବିବେକ-ବନ୍ତ ଶିଷ୍ୟ ଶ୍ରୀଗୁରୁଦେବଙ୍କ ଆଦେଶ-ନିର୍ଦ୍ଦେଶରେ ନିଜକୁ ପରିଚାଳିତ କଲେ ସହଜରେ ଇହଜୀବନରେ ପରାଶାନ୍ତି ଓ ପରକାଳରେ ପରମାଗତି ଲାଭ କରି ଧନ୍ୟ ହେବେ । ଏହି ପଥରେ ସ୍ୱକପୋଳକଳ୍ପନାଜନିତ ଅବିବେକିତାର ନଗ୍ନରୂପ କେବେହେଲେ ବାଞ୍ଛନୀୟ ନୁହେଁ ।

ଅନେକଙ୍କର ଧାରଣା, ଅଳ୍ପ କେତେକାଳ ଗୁରୁସେବା ବା ଧର୍ମାଲୋଚନା କଲେ ଭୁକ୍ତି-ମୁକ୍ତି ଲାଭ ହୋଇଯିବ । ତେଣୁ ଅସହିଷ୍ଣୁ ସାଧକମାନେ ସମୟର ଦୀର୍ଘତା ସହ୍ୟ କରି ନ ପାରି ସେବାପଥ ପରିତ୍ୟାଗପୂର୍ବକ ସ୍ୱାଧୀନ ଚେଷ୍ଟାର ଅନୁବର୍ତ୍ତୀ ହୁଅନ୍ତି । ସେମାନଙ୍କର ଏତାଦୃଶ ଧାରଣା ଯେ ଭ୍ରମାତ୍ମକ ଓ ଅନିଷ୍ଟକର ଏକଥା ବୁଝାଇବାକୁ ଯାଇ ଆଚାର୍ଯ୍ୟ ଶଙ୍କର ଦ୍ୱିତୀୟ ଶ୍ଳୋକରେ କହିଲେ— "ଆଜୀବନ ବେଦାନ୍ତ, ଗୁରୁ ଓ ଈଶ୍ୱରଙ୍କ ବନ୍ଦନା କରିବା କର୍ତ୍ତବ୍ୟ ।" ସମଗ୍ର ଜୀବନବ୍ୟାପୀ ଏହି ତ୍ରୟୀର ଅନୁସରଣ ଏକାନ୍ତ ପ୍ରୟୋଜନ ।

ବେଦାନ୍ତ ହେଉଛି ମୋକ୍ଷ ପ୍ରତିପାଦକ ଶାସ୍ତ୍ର । ଶାସ୍ତ୍ରର ଅର୍ଥକୁ ଆତ୍ମାଜୀବନରେ ପ୍ରତିଫଳିତ କରିବା ହିଁ ପ୍ରକୃତ ଜ୍ଞାନଲାଭ । ସାଧନ ପଥରେ ଗତି କଲାବେଳେ କେତେ ଶତ୍ରୁ ଆସି ସାଧକଙ୍କୁ ସାଧନପଥରୁ ଅର୍ଥାତ୍ ଗୁରୁସେବାରୂପୀ ମୋକ୍ଷପଦରୁ ବିଚ୍ୟୁତ କରିବାନିମିତ୍ତ ଚେଷ୍ଟା କରିବା ସ୍ୱଭାବିକ । ସୁତରାଂ ତତ୍ତ୍ୱବିଚାରଦ୍ୱାର ଶାସ୍ତ୍ରବିଧିର ଅନୁସରଣ କରି ଅର୍ଥାତ୍ ଶ୍ରୀଗୁରୁଦେବଙ୍କ ଆଜ୍ଞା ଅନୁସାରେ ଚଳି ସେହି ଶତ୍ରୁମାନଙ୍କୁ ପରାସ୍ତ କରି ସର୍ବାବସ୍ଥାରେ ନିଜର ଲକ୍ଷ୍ୟ ସ୍ଥିର ରଖିବା ହିଁ ବେଦାନ୍ତର ଅନୁସରଣ । ଏହା ଦିନେ ଦୁଇଦିନର କାର୍ଯ୍ୟ ନୁହେଁ; ଜୀବନବ୍ୟାପୀ ଅହରହ ସାଧନା ।

ଗୁରୁ ଅର୍ଥ ଗୁରୁବାକ୍ୟ । ଶାସ୍ତ୍ରବାକ୍ୟ ଯେପରି ଅନୁସରଣୀୟ, ଗୁରୁବାକ୍ୟ ମଧ୍ୟ ସେହିପରି ଅନୁବର୍ତ୍ତନୀୟ । ଶାସ୍ତ୍ରବାକ୍ୟ ଓ ଗୁରୁବାକ୍ୟରେ କୌଣସି ପାର୍ଥକ୍ୟ ନାହିଁ । ସବୁଶ୍ରେଣୀର ଅଧିକାରୀଙ୍କ ନିମିତ୍ତ ସବୁପ୍ରକାର ବିଧିନିଷେଧ ଅଛି । ଗୁରୁଦେବ ଅନ୍ତର୍ଯ୍ୟାମୀ । ସେ ଶିଷ୍ୟମାନଙ୍କୁ ନିଜ ନିଜ ଅଧିକାରାନୁଯାୟୀ ଆଦେଶ-ଉପଦେଶର ବ୍ୟବସ୍ଥା କରିଥାନ୍ତି । ଗୁରୁବାକ୍ୟ ପ୍ରତିପାଳନଦ୍ୱାରା ସାଧକମାନେ ନିମ୍ନସ୍ତରରୁ ଉନ୍ନୀତ ହୋଇ ଉଚ୍ଚସ୍ତରୀୟ ଅନୁଭୂତି ଲାଭର ଅଧିକାରୀ ହୁଅନ୍ତି । ଆତ୍ମବୁଦ୍ଧିଦ୍ୱାରା ନିର୍ବାଚିତ ସାସ୍ତ୍ରୋକ୍ତ ପନ୍ଥାର ଅନୁସରଣ ଏବଂ ଚାକ୍ଷୁଷ ଗୁରୁଙ୍କ ବାକ୍ୟାନୁବର୍ତ୍ତନ—ଏହି ଉଭୟ ମଧ୍ୟରେ ଏତିକି ପାର୍ଥକ୍ୟ ।

କେବଳ ବେଦ ବେଦାନ୍ତ ପାଠ କଲେ ଜ୍ଞାନ ଲାଭ ହୁଏ ନାହିଁ । ବ୍ରହ୍ମବିଦ୍ୟା ଗୁରୁ ଶିଷ୍ୟ ପରମ୍ପରାକ୍ରମେ ଚଳି ଆସୁଛି । ଏକମାତ୍ର ଗୁରୁନିଷ୍ଠା ପ୍ରଭାବରେ ଏହି ଜ୍ଞାନ ଅଧିଗତ ହୋଇଥାଏ । ବେଦ ବେଦାନ୍ତର ବାଣୀ ଉଦ୍ଦୀପନାମୟୀ ସତ୍ୟ; କିନ୍ତୁ ସେହି ବାଣୀ ଯେ ଯଥାର୍ଥ, ତାହା ଯଦି ସଦ୍‌ଗୁରୁଙ୍କ ଅନୁଭୂତିଦ୍ୱାରା ପ୍ରମାଣିତ

ନ ହୁଏ; ତେବେ ସେଥିରେ ଶିଷ୍ୟମାନଙ୍କ ମନରୁ ସଂଶୟର ନିରସନ ହେବ ନାହିଁ । ତେଣୁ କାୟମନୋବାକ୍ୟରେ ଆଜୀବନ ଗୁରୁବାକ୍ୟର ଅନୁସରଣ କରିବାକୁ ହେବ । ଦେହ-ମନ-ପ୍ରାଣକୁ ଶ୍ରୀଗୁରୁଦେବଙ୍କର ଚରଣତଳେ ସମର୍ପଣ କରିଦେଇ ତାଙ୍କ ଅଭୟ ବରଦ ହସ୍ତର ଯନ୍ତ୍ରସ୍ୱରୂପ ହୋଇ ସ୍ୱୀୟ ଜୀବନକୁ ପରିଚାଳନା କରିବାକୁ ପଡ଼ିବ । ଆଜୀବନ ବେଦାନ୍ତ ତଥା ପ୍ରତ୍ୟକ୍ଷ ବେଦାନ୍ତସ୍ୱରୂପ ଶ୍ରୀଗୁରୁଦେବଙ୍କ ବାକ୍ୟ ଅନୁସରଣ କରି ଚଳିବା ହେଉଛି ଆଚାର୍ଯ୍ୟ ଶଙ୍କରଙ୍କ ନିର୍ଦ୍ଦେଶ ।

ଅନେକ ଖ୍ୟାତନାମା ସାହିତ୍ୟିଙ୍କ ମତ ଯେ, ବେଦାନ୍ତବାଦ ପ୍ରଭାବରେ ଯେଉଁ ଜାତି ଜଗତକୁ ମାୟା ବୋଲି ଉଡ଼ାଇ ଦେଇ କେବଳ ଭାବପ୍ରବଣ ହୋଇ କଳ୍ପନାରେ ବିହାର କରନ୍ତି, ସେପରି ଅଦ୍ୱୈତବେଦାନ୍ତବାଦ ପ୍ରତିଷ୍ଠାଦ୍ୱାରା ଦେଶର ଉନ୍ନତି ହେବ ନାହିଁ । ଅଦ୍ୱୈତବାଦର ନିଗୂଢ଼ ଅର୍ଥ ଅନେକେ ଧାରଣା କରିପରନ୍ତି ନାହିଁ । ଦିନେ ଆଚାର୍ଯ୍ୟ ଶଙ୍କର ଏହି ଅଦ୍ୱୈତବାଦର ଦୁନ୍ଦୁଭି ନାଦରେ ଭାରତକୁ ସ୍ତମ୍ଭୀଭୂତ କରି ଦେଇଥିଲେ । ଜଗତକୁ ମାୟା ବୋଲି କହି ସେ ଯଦି ଜଗତ ପ୍ରତି ବିତୃଷ୍ଣା ପ୍ରଦର୍ଶନ କରିଥାଆନ୍ତେ, ତେବେ ସିନା ଜଣାପଡ଼ନ୍ତା ମାୟାବାଦ ଅର୍ଥ ଅବଜ୍ଞାବାଦ । କିନ୍ତୁ ସେ ତ କହିଛନ୍ତି—'ଜୀବ ବ୍ରହ୍ମୈବ ନା ପରଃ ।' ବ୍ରହ୍ମଙ୍କୁ ସେ ପ୍ରତି ଜୀବ ଭିତରେ ପ୍ରତ୍ୟକ୍ଷ କରି ଅତି ଦୁର୍ବଳକୁ ମଧ୍ୟ ଅଦ୍ୱୈତାନୁଭବ ଶକ୍ତିରେ ଶକ୍ତିମାନ୍ କରି ଦେଇଛନ୍ତି ।

ବୌଦ୍ଧଯୁଗର ସାୟାହ୍ନରେ ଜାତି ପ୍ରାଣରେ ସ୍ପନ୍ଦନ ନ ଥିଲା । ସମସ୍ତେ ଭାବୁଥିଲେ 'ଆମଦ୍ୱାରା କିଛି ହେବ ନାହିଁ । ଆମେ ପାପୀ, ନରାଧମ, ଦୀନ ହୀନ' । କିନ୍ତୁ ଶଙ୍କରାଚାର୍ଯ୍ୟ କହିଲେ—''ନା, ନା; ତୁମେ କେହି ଅଧମ ନୁହଁ, ପାପୀ ନୁହଁ, ଦୀନ ହୀନ ନୁହଁ କିମ୍ବା ଜୀବ ନୁହଁ । ତୁମେ ସମସ୍ତେ ଶିବସ୍ୱରୂପ । ତୁମର ଶକ୍ତି ଅସୀମ । ତୁମେ ବ୍ରହ୍ମମୟ । ବ୍ରହ୍ମଙ୍କୁ ନିଜ ଭିତରେ ପ୍ରତ୍ୟକ୍ଷରୂପରେ ଜାଗ୍ରତ କର ।'' ତେଣୁ ସେ ଶିକ୍ଷା ଦେଇଛନ୍ତି—

ବିଷ୍ଣୁତୋ ନିଷ୍ପ୍ରପଞ୍ଚୋଽସି ନିତ୍ୟମୁକ୍ତ ସ୍ୱଭାବତଃ
ନ ତେ ବନ୍ଧ ବିମୋକ୍ଷୌସ୍ତଃ କଳ୍ପିତୌ ତୌ ଯତସ୍ତ୍ୱୟି ।

—ଶଙ୍କର ବିଜୟ-୯।୫୮

ଅର୍ଥାତ୍ ପ୍ରକୃତରେ ତୁମେ ମାୟା ପ୍ରପଞ୍ଚର ଅତୀତ ଓ ନିତ୍ୟମୁକ୍ତ । ତୁମଠାରେ ବନ୍ଧନ କିମ୍ବା ମୋକ୍ଷଭାବ ନାହିଁ । ସେସବୁ ତୁମଠାରେ କଳ୍ପିତ ମାତ୍ର । ସେହି ଆତ୍ମଶକ୍ତି ପ୍ରଭାବରେ ପୁଞ୍ଜୀଭୂତ ଦୁର୍ବଳତାକୁ ବିନାଶ କଲେ ସୁପ୍ତପ୍ରାଣରେ ଚେତନାର ସଞ୍ଚାର ହୁଏ । ବେଦାନ୍ତବାଦ ଦୁର୍ବଳତାବାଦ ନୁହେଁ । ଏହା ଜାତିକୁ ସଜୀବ ଓ ସଚେଷ୍ଟ କରି ଗଠନ କରେ । ସେତେବେଳେ ନିଜପାଇଁ କିଛି ଚିନ୍ତା ରହେ ନାହିଁ । ବୃହତ୍ତର ଅନୁଭୂତିରେ ଭୂମାଙ୍କର ଅନୁଭବଦ୍ୱାରା ଚିତ୍ତର ସକଳ ଦୁର୍ବଳତା ଲୋପ ପାଇଯାଏ । ମନୁଷ୍ୟ ଭିତରେ ଦୈବୀଶକ୍ତିର ପ୍ରେରଣା ଜାଗିଉଠେ । ତେଣୁ ନିଃସଂଶୟଭାବରେ ବେଦାନ୍ତବାଦକୁ ନିର୍ଭୀକବାଦ କୁହାଯାଏ । କାରଣ, ନିଜକୁ ଯେପରି ଭାବିବ, ମନୁଷ୍ୟ ନିଜର ସେହି ଚିନ୍ତାଶକ୍ତି ପ୍ରଭାବରେ ତଦ୍ରୂପ ହୋଇଯିବ । ଏହା ହିଁ ବେଦାନ୍ତର ପ୍ରାମାଣିକ ନିର୍ଦ୍ଦେଶ ।

ଭାବବୃତ୍ତ୍ୟାହି ଭାବତ୍ୱଂ ଶୂନ୍ୟବୃତ୍ତ୍ୟାହି ଶୂନ୍ୟତା
ବ୍ରହ୍ମବୃତ୍ତ୍ୟାହି ପୂର୍ଣ୍ଣତ୍ୱଂ ତଥା ପୂର୍ଣ୍ଣତ୍ୱ ମଭ୍ୟସେତ୍ ।

—ବେଦାନ୍ତ ରତ୍ନାବଳୀ- ୨।୧୨୯

ବୃତ୍ତି ଅର୍ଥାତ୍ ମାନସିକ ଅନୁରାଗ ହିଁ ଜୀବର ବନ୍ଧନ ଓ ମୋକ୍ଷର କାରଣ । ଯାହାଙ୍କର ବିଷୟାଦିରେ ମନରେ ଅନୁରାଗ ଜାତ ହୁଏ, ସେହି ବ୍ୟକ୍ତି ଚିରକାଳ ବିଷୟରେ ଆବଦ୍ଧ ରହନ୍ତି ଏବଂ ଯାହାଙ୍କ ମନ ବିଷୟ ପରିତ୍ୟାଗ କରି ବ୍ରହ୍ମଚିନ୍ତନରେ ନିଯୁକ୍ତ ହୁଏ, ସେ ହିଁ ମୋକ୍ଷଲାଭ କରନ୍ତି । ଯାହାଙ୍କର ବୃତ୍ତି ଶୂନ୍ୟକୁ ଅବଲମ୍ବନ କରେ, ତାଙ୍କର ଚିତ୍ତ ଶୂନ୍ୟ ହୋଇଯାଏ ଏବଂ ଚିତ୍ତବୃତ୍ତି ବ୍ରହ୍ମସ୍ୱରୂପରେ ଅନୁଗତ ହେଲେ ପୂର୍ଣ୍ଣତ୍ୱ ବା ବ୍ରହ୍ମତ୍ୱ ଲାଭ ହୋଇଥାଏ । ଅତଏବ ଯେଉଁଥିରେ ପୂର୍ଣ୍ଣବ୍ରହ୍ମତ୍ୱ ପ୍ରାପ୍ତି ହୋଇପାରେ ଜ୍ଞାନୀ ବ୍ୟକ୍ତିମାନେ ସେହିପରି ଭାବର ପୁନଃ ପୁନଃ ଅଭ୍ୟାସ କରିବା ଆବଶ୍ୟକ ।

ଦେଶରକ୍ଷା କରିବାକୁ ହେଲେ ଦେଶନିମିତ୍ତ ନିଜ ସ୍ୱାର୍ଥ ଭୁଲି ଆପଦ-ବିପଦବେଳେ ପ୍ରାଣ ବିସର୍ଜନ ଦେବାକୁ ପଡ଼ିବ । ଯେଉଁମାନଙ୍କର ବଜ୍ରଦୃଢ଼ ଅନୁଭୂତି ଲାଭ ହୋଇଛି, ଯେଉଁମାନେ 'ନାୟଂହନ୍ତି ହନ୍ୟମାନେ ଶରୀରେ' (ଗୀତା) ଅର୍ଥାତ୍ ଦେହନାଶରେ ଆତ୍ମାର ବିନାଶ ହୁଏ ନାହିଁ ବୋଲି ଜାଣନ୍ତି; ଯେଉଁମାନେ ନିଜେ ବ୍ରହ୍ମାନୁଭୂତି ଲାଭ କରିଛନ୍ତି, ସେହିମାନେ ହିଁ ଅକାତର ଭାବରେ ଦେଶ ଓ ଜାତିର ହିତନିମିତ୍ତ ପ୍ରାଣ ବିସର୍ଜନ ଦେଇ ପାରନ୍ତି । ତେଣୁ ରାଷ୍ଟ୍ରର ପ୍ରୟୋଜନୀୟତା

ଦୃଷ୍ଟିରୁ ମଧ୍ୟ ବେଦାନ୍ତବାଦର ପ୍ରାୟୋଜନୀୟତା ଯଥେଷ୍ଟ ଅଧିକ । ଅଜ୍ଞ ସୈନିକଙ୍କ ଭଳି ନୀତି ଭୟରେ ବେଦାନ୍ତବାଦୀମାନେ ନିଜ ପ୍ରାଣକୁ ବଳି ଦିଅନ୍ତି ନାହିଁ, ଏମାନେ ସଜ୍ଞାନରେ ହସ ହସ ବଦନରେ ମରଣକୁ ବରଣ କରି ନିଅନ୍ତି । ସବୁ ଅନୁଭୂତିଠାରୁ ଆତ୍ମାନୁଭୂତି ଶ୍ରେଷ୍ଠ ।

ମାତୃଗର୍ଭଂ ବିନା କାନ୍ତେ ! ଉତ୍ପତ୍ତିର୍ନଯଥା ଭବେତ୍

ତତ୍ତ୍ୱଜ୍ଞାନଂ ବିନା ଦେବି ! ତଥା ମୁକ୍ତିର୍ନଜାୟତେ । (ତନ୍ତ୍ରବଚନ)

ଯେପରି ମାତୃଗର୍ଭର ଆଶ୍ରୟ ଗ୍ରହଣ ନ କଲେ ଜୀବର ଉତ୍ପତ୍ତି ସମ୍ଭବ ନୁହେଁ, ସେହିପରି ହେ ଦେବି ! ତତ୍ତ୍ୱଜ୍ଞାନ ବା ଆତ୍ମଜ୍ଞାନ ଲାଭ ନ ହେଲେ ମୁକ୍ତିର ମଧୁର ଆସ୍ୱାଦନ କେବେହେଲେ ସମ୍ଭବ ହୁଏ ନାହିଁ । ଏହା ସ୍ୱୟଂ ଦେବାଧିଦେବ ମହାଦେବଙ୍କର ଉକ୍ତି ।

ବାସ୍ତବିକ୍ ଜାତିର ସୁଦିନ ଫେରାଇ ଆଣିବାକୁ ହେଲେ ବେଦାନ୍ତବାଦ ଓ ଗୁରୁସେବା ଏକାନ୍ତ ପ୍ରୟୋଜନ । ଏହାଦ୍ୱାରା ଦେଶର କୌଣସି କ୍ଷତି ନ ହୋଇ ବରଂ ବ୍ୟଷ୍ଟି-ସମଷ୍ଟି ନିର୍ବିଶେଷରେ ସମସ୍ତଙ୍କର ଆଶାତୀତ ଉନ୍ନତି ସାଧିତ ହେବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ତେଣୁ ଶ୍ରମ ଓ ପ୍ରେମ କିମ୍ବା ପ୍ରେମଯୁକ୍ତ ଶ୍ରମହିଁ ବେଦାନ୍ତର ନିର୍ଦ୍ଦେଶ । ଯେତେବେଳେ ''ମନ୍ତ୍ରମୂଳଂ ଗୁରୋର୍ବାକ୍ୟଂ'', ସେତେବେଳେ ବୁଝିବାକୁ ହେବ ବେଦାନ୍ତର ନିର୍ଦ୍ଦେଶ ଯାହା ଶ୍ରୀଗୁରୁଦେବଙ୍କ ନିର୍ଦ୍ଦେଶ ତହିଁରୁ ଭିନ୍ନ ନୁହେଁ । ତେଣୁ ଏ ପଥରେ ଚାଲିଲାବେଳେ ବାଧାବିଘ୍ନ ଉପସ୍ଥିତ ହେଲେ ଯଦି ପଥିକଙ୍କର ସ୍ମରଣ ଥାଏ ଯେ, ତାଙ୍କର ସର୍ବସନ୍ତାପହାରୀ କେହି ଜଣେ ଅଛନ୍ତି, ସେ ପଥର ସମସ୍ତ ବିଘ୍ନ ଅପସାରଣ କରିଦେବେ, ତେବେ ତାଙ୍କର ସର୍ବତୋମୁଖୀ ଶକ୍ତି ବୃଦ୍ଧି ସୁନିଶ୍ଚିତ । ସୁତରାଂ ସାଧକମାନେ ଶ୍ରୀଗୁରୁଦେବଙ୍କ ଆସନକୁ ସମସ୍ତଙ୍କ ଉପରେ ରଖି ଦ୍ୱୈତାଦ୍ୱୈତର ପରପାରରେ ତାଙ୍କ ଆସନ ରଚନା କରି ନିଃସଙ୍ଗ ଅବସ୍ଥାରେ ଗତି କରୁଥିବାବେଳେ ଅବସାଦ ଜଡ଼ତାରୂପୀ ବିଘ୍ନ ଯଦି ଚିତ୍ତକୁ ଆଚ୍ଛନ୍ନ କରିପକାଇବ, ସେତେବେଳେ ଚିତ୍ତକୁ ଗୁରୁମୁଖୀ କରିପାରିଲେ ଦେଖିବେ ଶ୍ରୀଗୁରୁଦେବଙ୍କ ଅଜସ୍ରଶକ୍ତିର କରୁଣାଧାରା ଆସି ସାଧକଙ୍କ ମନ ପ୍ରାଣକୁ ସଂଜୀବିତ କରିଦେବ । ତେଣୁ ଆଚାର୍ଯ୍ୟ ଶଙ୍କର ଶ୍ରୀଗୁରୁଦେବଙ୍କ ସହିତ ଅଦ୍ୱିତ ବୁଦ୍ଧି ପୋଷଣ କରିବାକୁ କଠୋରଭାବରେ ନିଷେଧ କରିଛନ୍ତି । ଶ୍ରୀଗୁରୁଦେବଙ୍କ ଆସନକୁ ସର୍ବୋଚ୍ଚସ୍ଥାନ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଭଗବତ୍

ଜ୍ଞାନରେ ଗୁରୁସେବାକୁ ସକଳ ପ୍ରାପ୍ତିର ଉତ୍ସ ବୋଲି ବିବୃତକରି ଗୁରୁସେବାର ଅଚିନ୍ତନୀୟ ମହିମା ବିଘୋଷିତ କରିଛନ୍ତି । ଶ୍ରୀମଦ୍ ଭାଗବତରେ ଶ୍ରୀଭଗବାନ ମଧ୍ୟ ଉଦ୍ଧବଙ୍କୁ ''ଆଚାର୍ଯ୍ୟଂ ମାଂ ବିଜାନୀୟାତ୍'' ବୋଲି କହି ଶ୍ରୀଗୁରୁଦେବଙ୍କ ଶ୍ରେଷ୍ଠତ୍ୱ ପ୍ରତିପାଦିତ କରିଛନ୍ତି ।

ପରିଶେଷରେ, ଗୁର୍ବଷ୍ଟକ ରଚନା ଶେଷର ଗୁରୁଗୁଣଗାନର ମହିମା କୀର୍ତ୍ତନ କରିବାକୁ ଯାଇ ଆଚାର୍ଯ୍ୟ ଶଙ୍କର ଲେଖିଛନ୍ତି—

ଗୁରୋରଷ୍ଟକଂ ଯଃ ପଠେତ୍ ପୁଣ୍ୟଦେହୀ
ଯତିର୍ଭୂପତି ବ୍ରହ୍ମଚାରୀ ଚ ଗେହୀ
ଲଭେଦ୍ ବାଞ୍ଛିତାର୍ଥଂ ପଦଂ ବ୍ରହ୍ମସଂଜ୍ଞଂ
ଗୁରୋରୁକ୍ତ ବାକ୍ୟେ ମନୋ ଯସ୍ୟ ଲଗ୍ନମ୍ ।

ସୁତରାଂ, ଶ୍ରୀଗୁରୁଦେବଙ୍କ ଅସ୍ତିତ୍ୱରେ ଯେଉଁମାନେ ସନ୍ଦିହାନ, ସେମାନଙ୍କୁ କେବେହେଲେ ଗୁରୁ-ବିଶ୍ୱାସୀ ସେବକ ଆଖ୍ୟା ଦିଆଯାଇ ପାରିବ ନାହିଁ । ସେମାନେ କେବେହେଲେ ବ୍ରହ୍ମଜ୍ଞାନର ଅଧିକାରୀ ହୋଇ ପାରିବେ ନାହିଁ । ଏହା ଆଚାର୍ଯ୍ୟ ଶଙ୍କରଙ୍କର ବଜ୍ରଦୃଢ଼ ଘୋଷଣା । ତେଣୁ ଏହି ଶ୍ଳୋକରେ ସେ କହିଲେ ଯେ, ଗୁରୁଦେବଙ୍କ ଶ୍ରୀମୁଖବାଣୀରେ ଯାହାଙ୍କର ମନ ସଂଲଗ୍ନ ଅର୍ଥାତ୍ ଯେ ଅନୁରାଗୀ, ଏତାଦୃଶ ବ୍ୟକ୍ତି ଗୃହୀ ହୁଅନ୍ତୁ, ବ୍ରହ୍ମଚାରୀ ହୁଅନ୍ତୁ, ଯତି ବା ଭୂପତି ହୁଅନ୍ତୁ; ସେହି ପୁଣ୍ୟାତ୍ମା ଆଦରର ସହିତ ଗୁର୍ବଷ୍ଟକ ପାଠ କଲେ ବାସନାର ଚରମ ଚରିତାର୍ଥରୂପ ବ୍ରହ୍ମଜ୍ଞାନ ଲାଭ କରି କୃତାର୍ଥ ହେବେ ।

ଉପରୋକ୍ତଭାବରେ ଶଙ୍କରାଚାର୍ଯ୍ୟଙ୍କ ସମ୍ବନ୍ଧରେ ବହୁ ବିଷୟ ଗୁରୁଦେବଙ୍କ ଶ୍ରୀମୁଖରୁ ଏବଂ ତଦୀୟ ଲିଖିତ 'ପ୍ରେମିକଗୁରୁ' ପୁସ୍ତକ ପାଠ କରି ଅଚାର୍ଯ୍ୟ ଦେବଙ୍କ ମହିମା ସମ୍ବନ୍ଧରେ ଆମ ମନରେ କିଞ୍ଚିତ୍ ରେଖାପାତ ହୋଇଥିଲା । ତେଣୁ ଶ୍ରୀଗୁରୁଦେବଙ୍କ ମତ-ପଥର ଅବତାରଣା କରିବାକୁ ଯାଇ 'ଭଗବାନ ଶଙ୍କରାଚାର୍ଯ୍ୟ' ପୁସ୍ତକ ଆଜକୁ ୧୭ ବର୍ଷ ତଳେ ପ୍ରକାଶ କରାଯାଇଥିଲା ଏବଂ ଓଡ଼ିଶା ସାହିତ୍ୟ ଏକାଡେମିର ତତ୍କାଳୀନ ସମ୍ପାଦକ ଏହାକୁ ପୁରସ୍କୃତ କରି ଆମମାନଙ୍କୁ ବିଶେଷଭାବରେ ଉତ୍ସାହିତ କରିଥିଲେ ।

ଶଙ୍କରାଚାର୍ଯ୍ୟଙ୍କ ପରେ ଜ୍ଞାନାଲୋଚନା ଦେଶରୁ କ୍ରମେ ଲୋପ ପାଇଗଲା । ଫଳରେ ବିବିଧ ସାମ୍ପ୍ରଦାୟିକ ମତବାଦର ଅଭ୍ୟୁତ୍‌ଥାନରେ ଦେଶରେ ନାନାବିଧ

ଅଜ୍ଞତ ଦେଖାଯାଇ କିଭଳି ଘୋର କ୍ଷତି ଘଟିଲା, ସେ ବିଷୟରେ ପ୍ରସିଦ୍ଧ 'ସୋଽହଂ' ସ୍ୱାମୀ ତାଙ୍କ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି—

ଶଙ୍କର-ସୂର୍ଯ୍ୟାସ୍ତ ଫଳରେ ଭାରତ ମହାମୋହେ ଅନ୍ଧକାର,
ନ ହେଲା ଉଦିତ ଭାରତ-ଗଗନେ ପୁଣି ଜ୍ଞାନ ପ୍ରଭାକର ।
ଭାରତ-ଆକାଶ ଅବିଦ୍ୟା-ଜଳଦେ ହେଲା ଚିର ଆବରିତ,
ଯବନ ବିପ୍ଳବ ପ୍ରଭଞ୍ଜନ ପ୍ରାୟ ହେଲା ବେଗେ ପ୍ରବାହିତ ।
ହୋଇଲା ବିଧ୍ୱସ୍ତ ଦୁର୍ବଳ ସମାଜ, ଧର୍ମମୂଳ ଉନ୍ମୂଳିତ,
ନବ ଉପଧର୍ମ ପ୍ରବର୍ତ୍ତକଗଣେ ହେଲେ କ୍ରମେ ଅଭ୍ୟୁଦିତ ।
ହୋଇଲା ଗଠିତ ଶତ ସଂପ୍ରଦାୟ ସହସ୍ର ସହସ୍ର ଦଳ,
ଦଳେ ଦଳେ ଦ୍ୱନ୍ଦ୍ୱ ହିଂସା ବିଦ୍ୱେଷାଦି ହୋଇଲା ତାହାର ଫଳ ।
ବେଦାନ୍ତ ମହିମା କରନ୍ତି କୀର୍ତ୍ତନ ବିଦେଶୀ ମନୀଷୀଗଣ
ସେ ଅଧ୍ୟାତ୍ମ ତତ୍ତ୍ୱ ଭାରତ ସନ୍ତାନେ ଅବଗତ କେତେଜଣ ?''

ଅବଶେଷରେ ଆମମାନଙ୍କର ପରମ ପୂଜ୍ୟପାଦ ଶ୍ରୀ ଶ୍ରୀ ଠାକୁର ମହାରାଜ ଉପରୋକ୍ତ ବେଦାନ୍ତଜ୍ଞାନର ପୁନଃପ୍ରଚାରନିମିତ୍ତ ବହୁବିଧ ଉପଦେଶବାଣୀ ତତ୍‌ପ୍ରଣୀତ ଗ୍ରନ୍ଥାବଳୀରେ ପ୍ରକାଶ କରି ଏହି ଭାବଧାରା ଅସାମ୍ପ୍ରଦାୟିକ ଭାବରେ ପ୍ରଚାର କରିବା ଉଦ୍ଦେଶ୍ୟରେ 'ସାରସ୍ୱତ ମଠ' ଓ ସଂଘ ସ୍ଥାପନପୂର୍ବକ ଶଙ୍କରଙ୍କ ମତର ପୁନଃ ପ୍ରତିଷ୍ଠା କରିଛନ୍ତି । ଯେଉଁମାନେ ତାଙ୍କ ପୂତ ଜୀବନୀ ଓ ଭାବଧାରା ଅବଗତ ଅଛନ୍ତି; ସେମାନେ ଜାଣନ୍ତି ଯେ, ଶ୍ରୀ ଶ୍ରୀ ଠାକୁର ବେଦାନ୍ତ ଧର୍ମର ମୂର୍ତ୍ତ ବିଗ୍ରହଭାବରେ ବିରାଜିତ ରହି ସାଧାରଣଙ୍କୁ ବର୍ତ୍ତମାନ ସୁଦ୍ଧା ଜ୍ଞାନ ବିତରଣ କରୁଛନ୍ତି ।

ଭାରତର ଚାରିଜଣ ମହାପୁରୁଷଙ୍କ ସୁମହାନ୍ ଆଦର୍ଶର ଶୁଭ ସମ୍ମେଳନରେ ଶ୍ରୀଶ୍ରୀ ଠାକୁରଙ୍କ ଆଦର୍ଶ ରୂପାୟିତ ହୋଇଅଛି । ଉତ୍ତର-ଭାରତର ଗୌତମ ବୁଦ୍ଧ, ଦକ୍ଷିଣ-ଭାରତର ଶଙ୍କରାଚାର୍ଯ୍ୟ, ପଶ୍ଚିମ-ଭାରତର ଗୁରୁ ନାନକ ଏବଂ ପୂର୍ବ-ଭାରତର ଶ୍ରୀ ଗୌରାଙ୍ଗଦେବ—ଏହି ଚାରିଜଣ ମହାପୁରୁଷଙ୍କ ଧର୍ମମତ ଶ୍ରୀ ଶ୍ରୀ ଠାକୁରଙ୍କଠାରେ ଏକୀଭୂତ ।

ବୁଦ୍ଧଦେବଙ୍କ ପ୍ରଚାରିତ ଉପଦେଶର ସାର—ସତ୍‌ଦୃଷ୍ଟି, ସତ୍‌ସଂକଳ୍ପ, ସତ୍‌ବାକ୍ୟ, ସତ୍‌ବ୍ୟବହାର, ସଦୁପାୟରେ ଜୀବନଯାପନ, ସତ୍‌ଚେଷ୍ଟା, ସତ୍‌ସ୍ମୃତି

ଏବଂ ସମ୍ୟକ୍ ସମାଧି । ଏହି ଅଷ୍ଟବିଧ ଉପାୟରେ ମାନବ ସାଧନ ମାର୍ଗରେ ଅଗ୍ରସର ହୋଇପାରିବେ । ବୁଦ୍ଧଦେବଙ୍କ ସଂଘଶକ୍ତି ପ୍ରତିଷ୍ଠା ଓ ତ୍ରିଶରଣ ବାକ୍ୟକୁ ମଧ୍ୟ ଏହି ଅଷ୍ଟବିଧ ଉପାୟ ସାଧନ ସମନ୍ୱିତ କରି ଶ୍ରୀ ଶ୍ରୀ ଠାକୁର ସଂଘରେ ପ୍ରବର୍ତ୍ତନ କରିଛନ୍ତି—'ସଂଘ ଶରଣଂ ଗଚ୍ଛାମି, ଧର୍ମଂ ଶରଣଂ ଗଚ୍ଛାମି; ସଦ୍‌ଗୁରୁଂ ଶରଣଂ ଗଚ୍ଛାମି ।' ପୁନଶ୍ଚ, ଶଙ୍କରଙ୍କ ମତ ଅର୍ଥାତ୍ 'ଜଗତ୍ ମାୟାମୟ, ବ୍ରହ୍ମ ହିଁ ସତ୍ୟ; ସତ୍ୟ ହିଁ ଶ୍ରେଷ୍ଠ ଏବଂ ଜାଗତିକ ବସ୍ତୁ ତାହା ତୁଳନାରେ ଅନିତ୍ୟ—ଏହି ମତ ସେ ଗ୍ରହଣ କରିଛନ୍ତି । ତାଙ୍କର ଗୁରୁଥିଲେ ଅଦ୍ୱୈତବାଦୀ ଶଙ୍କରପନ୍ଥୀ ସନ୍ନ୍ୟାସୀ ପରମହଂସ ଶ୍ରୀମଦ୍ ସଚ୍ଚିଦାନନ୍ଦ ସରସ୍ୱତୀ ।

ବିଶୁଦ୍ଧ ଗୁରୁବାଦୀ ନାନକଦେବଙ୍କ ମନ୍ତ୍ର ଥିଲା—

''ଗୁରୁମୁଖ ନାଦଂ ଗୁରୁମୁଖ ବେଦଂ ଗୁରୁମୁଖ ରହେୟା ସମାଇ
ଗୁରୁ ଈଶ୍ୱର, ଗୁରୁ ଗୋରଖ, ବରମାଗୁରୁ ପାର୍ବତୀ ମାଈ ।''

ଶ୍ରୀ ଶ୍ରୀ ଠାକୁର କହିଛନ୍ତି ''ସଦ୍‌ଗୁରୁ ହିଁ ସବୁ । ଏକମାତ୍ର ତାଙ୍କରି ପ୍ରୀତି ଉତ୍ପାଦନ କରିପାରିଲେ ସମସ୍ତ ଅଭୀଷ୍ଟ ସିଦ୍ଧ ହେବ ।''ତେଣୁ ଶ୍ରୀ ଶ୍ରୀ ଠାକୁରଙ୍କ ଦ୍ୱିତୀୟ ଗୁରୁ ଥିଲେ ନାନକପନ୍ଥୀ 'ଉଦାସୀନାଚାର୍ଯ୍ୟ ଯୋଗୀବର ସୁମେରୁ ଦାସଜୀ ମହାରାଜ ।' ପ୍ରେମିକଗୁରୁ ଗୌରୀ ମା ଥିଲେ ଶ୍ରୀମନ୍ ମହାପ୍ରଭୁ ଗୌରାଙ୍ଗଦେବଙ୍କ ପ୍ରବର୍ତ୍ତିତ ଭାବ ସାଧନାରେ ସିଦ୍ଧା ଭୈରବୀ । ପ୍ରେମ-ଭକ୍ତି ପଥରେ ଜ୍ଞାନ ଲାଭର ସାଧନା ତାଙ୍କରି କୃପାରୁ ପ୍ରାପ୍ତ ହୋଇ ଶ୍ରୀ ଶ୍ରୀ ଠାକୁର ଶଙ୍କରଙ୍କ ମତ ସହିତ ଗୌରାଙ୍ଗଦେବଙ୍କ ପଥରେ ଚାଲିବାକୁ ନିର୍ଦ୍ଦେଶ ଦେଇଛନ୍ତି । ସୁତରାଂ ଶ୍ରୀ ଶ୍ରୀ ଠାକୁରଙ୍କ ଆଦର୍ଶ ହିଁ ସର୍ବଭାରତୀୟ ସନାତନ ଆଦର୍ଶ ।

ବର୍ତ୍ତମାନ ସେହି ଯୁଗଗୁରୁଙ୍କ ଶ୍ରୀପାଦପଦ୍ମରେ ଶତ ଶତ ପ୍ରଣିପାତପୂର୍ବକ 'ଭଗବାନ୍ ଶଙ୍କରାଚାର୍ଯ୍ୟ' ପୁସ୍ତକର ଦ୍ୱିତୀୟ ସଂସ୍କରଣ ସାଧାରଣରେ ପ୍ରକାଶିତ ହେଲା । ପାଠକମାନେ ଦୋଷାଂଶ ପରିହାରପୂର୍ବକ ସାର ସଂଗ୍ରହ କରି ସ୍ୱକାର୍ଯ୍ୟ ସାଧନରେ ବ୍ରତୀ ହେଲେ ଶ୍ରମ ସାର୍ଥକ ଜ୍ଞାନ କରିବୁ । ଇତି ।

ବୀରତୁଙ୍ଗ
ମାଘପୂର୍ଣ୍ଣିମା
ତା ୧୭-୦୨-୧୯୭୩

ସମ୍ପାଦକ
ଶ୍ରୀ ଦୁର୍ଗାଚରଣ ମହାନ୍ତି

●

### ଜୟଗୁରୁ

## ଉପକ୍ରମ

ଆମେ ଦୈନନ୍ଦିନ ଜୀବନରେ ସାମାନ୍ୟ ସୁଖ-ଦୁଃଖର ଅଭିଘାତରେ ବିଚଳିତ ଓ ବିକ୍ଷୁବ୍‌ଧ ହୋଇପଡୁ । ସାମାନ୍ୟ କଥାରେ ଆମ ଚିତ୍ତର ଅନାବିଳ ଆନନ୍ଦ-ସ୍ରୋତ ମଳିନ ହୋଇଯାଏ । କିନ୍ତୁ ମହାପୁରୁଷମାନଙ୍କର ଭାବ ଠିକ୍ ଏହାର ବିପରୀତ । ସେମାନେ ସୁଖ-ଦୁଃଖ ବା ଯେ କୌଣସି ଅବସ୍ଥାରେ ବିକ୍ଷୁବ୍‌ଧ ଓ ବିଚଳିତ ହୋଇପଡ଼ନ୍ତି ନାହିଁ । ଯେଉଁ ଅବସ୍ଥାରେ ଉପନୀତ ହେଲେ ମଧ୍ୟ ଅତିଶୟ ଦୁଃସହ ଦୁଃଖକୁ ସେମାନେ ଦୁଃଖ ବୋଲି ମନେକରନ୍ତି ନାହିଁ, ଏହା ହିଁ ମହାପୁରୁଷମାନଙ୍କର ମହାପୁରୁଷତ୍ୱ । ଏହି ଶକ୍ତିଥିବା ହେତୁରୁ ମନୁଷ୍ୟ ଇତର ପ୍ରାଣୀଠାରୁ ଶ୍ରେଷ୍ଠ ।

ସାଧୁମାନଙ୍କ ସମ୍ବନ୍ଧରେ ଆମର ଅଦ୍ଭୁତ ଓ ଅଲୌକିକ ଧାରଣା ଥିବା ଯୋଗୁ ଆମେ ପ୍ରକୃତ ସାଧୁ-ମହାପୁରୁଷମାନଙ୍କୁ ଚିହ୍ନିପାରୁ ନାହିଁ । କାରଣ ଆମ ନିକଟରେ ପ୍ରକୃତ ସାଧୁଚରିତ ଅଜ୍ଞାତ । ମହାପୁରୁଷମାନେ ଅଶେଷ ଦୁଃଖଯନ୍ତ୍ରଣା ଭୋଗ କରି ଜଗତକୁ ଅମୂଲ୍ୟ ରତ୍ନ ବିତରଣ କରି ଯାଆନ୍ତି । ସେଥିପାଇଁ ସେମାନଙ୍କର ନାମ ଶତ ଶତ ବର୍ଷ ଧରି ସାଧାରଣଙ୍କ ସ୍ମୃତିପଟରେ ଜାଗରୂକ ରହେ । ଯେତେ ମହାପୁରୁଷ ଏ ଜଗତକୁ ଆସିଛନ୍ତି, ସେ ସମସ୍ତେ ଦୁଃଖକଷ୍ଟକୁ ହସିହସି ବରଣ କରି ନେଇ କେବଳ ଜନସାଧାରଣଙ୍କର ହିତନିମିତ୍ତ ପ୍ରାଣପଣ ଚେଷ୍ଟା କରିଯାଇଛନ୍ତି । ଅନ୍ୟର ହିତ ସାଧନନିମିତ୍ତ ସ୍ୱେଚ୍ଛାରେ ଦୁଃଖକଷ୍ଟକୁ ବରଣ କରିନେବା ଯେପରିକି ସେମାନଙ୍କର ବ୍ରତ । ଆମେ ସାମାନ୍ୟ ଟିକିଏ ଦୁଃଖ ସହ୍ୟ କରିବାକୁ ଅକ୍ଷମ । ଯଦି ବା କେତେବେଳେ ବାଧ୍ୟ ହୋଇ ଦୁଃଖ ସହ୍ୟ କରିବାକୁ ଚେଷ୍ଟାକରୁ; ତଥାପି ସେ ସମୟରେ ଚିତ୍ତକୁ ଅବିକ୍ଷୁବ୍‌ଧ ରଖି ପାରୁନାହିଁ । ତେଣୁ ସାମାନ୍ୟ ବ୍ୟତିକ୍ରମରେ ଆମେ ଲକ୍ଷ୍ୟଭ୍ରଷ୍ଟ ଓ କର୍ତ୍ତବ୍ୟଭ୍ରଷ୍ଟ ହୋଇଯାଉ । ସାଧନାରେ ଆମର ନିଷ୍ଠା ରହେ ନାହିଁ । ଭଗବାନଙ୍କର ସ୍ମୃତି ପର୍ଯ୍ୟନ୍ତ ଲୋପ ପାଇଯାଏ । ଏଥିପାଇଁ ଦୁଃଖ ସାଧାରଣଙ୍କ ପକ୍ଷରେ ସାଧନପଥର ବାଧା ବା କଣ୍ଟକରୂପରେ ଦେଖାଦିଏ ।

କିନ୍ତୁ, ଏ ଦୁଃଖକୁ ଯେ ନୀରବରେ ସହ୍ୟ କରିପାରନ୍ତି, ସେହି କେବଳ ଦୁଃଖ ମଧ୍ୟରେ ରହି ଭଗବାନଙ୍କର ମଙ୍ଗଳ ଆଶୀର୍ବାଦ ଅନୁଭବ କରି ବିନ୍ଦୁମାତ୍ର

ବିଚଳିତ ହୁଅନ୍ତି ନାହିଁ କିମ୍ବା କର୍ତ୍ତବ୍ୟଭ୍ରଷ୍ଟ ହୁଅନ୍ତି ନାହିଁ । ଏହି ନିର୍ବିକାର ଦ୍ୱନ୍ଦ୍ୱାତୀତ ଅବସ୍ଥା ହିଁ ସାଧାରଣଙ୍କର ଆଦର୍ଶ ହେବା ଉଚିତ । ଗୁରୁତର ଦୁଃଖକଷ୍ଟରେ ଯାହାଙ୍କର ଚିତ୍ତଚାଞ୍ଚଲ୍ୟ ଉପସ୍ଥିତ ହୁଏ ନାହିଁ, ଦୁଃଖକଷ୍ଟରେ ପଡ଼ି ଭଗବାନଙ୍କ ପ୍ରତି ଦୋଷାରୋପ କରିବାର ପ୍ରବୃତ୍ତି ଯାହାଙ୍କର ଜାତ ହୁଏ ନାହିଁ, ସେହି ଅବସ୍ଥାପ୍ରାପ୍ତ ସାଧୁଙ୍କୁ ହିଁ ପ୍ରକୃତ ମହାପୁରୁଷ କୁହାଯାଏ । ସାଧୁ-ମହାପୁରୁଷଙ୍କର ପ୍ରଧାନ ଲକ୍ଷଣ ହେଲା ଯେ, ସେମାନଙ୍କ ଭିତରେ ଅସାଧାରଣ ସହନଶକ୍ତି ସର୍ବଦା ବିରାଜିତ । ଦୁଃଖକଷ୍ଟ ମଧ୍ୟରେ ଅବିଚଳିତ ରହିପାରିବା ଭଳି ଅବସ୍ଥାରେ ଉପନୀତ ହେବା ହିଁ ସମସ୍ତଙ୍କର ବରଣୀୟ ଆଦର୍ଶ । ଯେତେବେଳେ ଆମେ ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହେବା, ସେତେବେଳେ ଯାଇ ଆମଦ୍ୱାରା ମହତ୍ କାର୍ଯ୍ୟ ସୁସମ୍ପନ୍ନ ହେବା ସମ୍ଭବ ହେବ । ପାରିପାର୍ଶ୍ୱିକ ସୁଖଦୁଃଖରେ ଆମେ ବିଚଳିତ ହୋଇ ପଡୁଥିବାରୁ ସେହି ବିକ୍ଷୁବ୍ଧ ଚିତ୍ତକୁ ନେଇ ଆମେ ଅପରର ହିତସାଧନ କରିପାରୁ ନାହିଁ । ଜଗତରେ ଯେଉଁମାନେ ପ୍ରକୃତ ସାଧୁ, ସେମାନେ ଧୀର, ସ୍ଥିର ଓ ଶାନ୍ତପ୍ରକୃତିବିଶିଷ୍ଟ ମନୁଷ୍ୟ । ନିଜ ଭିତରେ ସର୍ବଦା ବୈଦାନ୍ତିକ ଭାବ ବା ପ୍ରଶାନ୍ତିକୁ ଅବ୍ୟାହତ ରଖିପାରନ୍ତି ବୋଲି ସାଧୁ-ମହାପୁରୁଷମାନେ ନୀରବରେ ଜଗତରେ ଲୋକହିତକର କାର୍ଯ୍ୟ ସାଧନ କରିପାରନ୍ତି ।

ଅନେକଙ୍କର ଧାରଣା, ବେଦାନ୍ତଦ୍ୱାରା ଦେଶର କୌଣସି ଉନ୍ନତି ସାଧିତ ହେବ ନାହିଁ । ବେଦାନ୍ତ ପ୍ରତିପାଦିତ ଅଦ୍ୱୈତବାଦର ନିଗୂଢ଼ ଅର୍ଥ ବୁଝି ନ ପାରି ସେମାନେ ଏପରି ମନ୍ତବ୍ୟ ପ୍ରକାଶ କରିଥାଆନ୍ତି । ଅଦ୍ୱୈତବାଦର ପ୍ରଚାରକର୍ତ୍ତା ଶିବାବତାର ଶଙ୍କରାଚାର୍ଯ୍ୟ ଯଦି ଜଗତକୁ 'ମାୟା' ବୋଲି କହି ଜଗତ୍‌ବାସୀଙ୍କ ପ୍ରତି ଉଦାସୀନ ରହିଥାଆନ୍ତେ, ତେବେ ଜଣାଇଥାଆନ୍ତା ଯେ, ଶଙ୍କରାଚାର୍ଯ୍ୟଙ୍କ ମାୟାବଦର ଅର୍ଥ ଅବଜ୍ଞାବାଦ । କିନ୍ତୁ ତାଙ୍କ ଜୀବନଚରିତ ପାଠ କଲେ ଜଣାଯାଏ ଯେ, ସେ ଜଗଦ୍‌ବିମୁଖ ଉଦାସୀ ନୁହଁନ୍ତି । ପ୍ରତି ଜୀବ ମଧ୍ୟରେ ସେ ବ୍ରହ୍ମଙ୍କୁ ପ୍ରତ୍ୟକ୍ଷ କରି ଦୁର୍ବଳକୁ ମଧ୍ୟ ଅଦ୍ୱୈତାନୁଭବ ଶକ୍ତିରେ ଶକ୍ତିମାନ୍ କରିଦେଇଥିଲେ । ଯେତେବେଳେ ଜାତିର ପ୍ରାଣ ମୃତପ୍ରାୟ ହୋଇଯାଇଥିଲା; ସମସ୍ତେ ଯେତେବେଳେ ମନେ କରୁଥିଲେ ଯେ ଆମ ଜୀବନଦ୍ୱାରା କୌଣସି କାର୍ଯ୍ୟ ହେବ ନାହିଁ; ଆମେ ନରାଧମ, ପାତକୀ, ଦୀନହୀନ; ସେତିକିବେଳେ ଆଚାର୍ଯ୍ୟ ଶଙ୍କର କହିଲେ—''କିଏ କହେ ତୁମେ ଦୀନ, ତୁମେ ହୀନ ? ତୁମେ ଦୀନ ନୁହ, ତୁମେ ହୀନ ନୁହ, ତୁମେ ବ୍ରହ୍ମ । ତମ ଭିତରେ ବିରାଟ ଶକ୍ତି ବିରାଜିତ । ତୁମେ ଅସୀମ

ଶକ୍ତିସମ୍ପନ୍ନ ।'' ପୁଞ୍ଜୀଭୂତ ଦୁର୍ବଳତାର ସଂସ୍କାରକୁ ଆଚାର୍ଯ୍ୟ ଶଙ୍କର ନିଜ ପ୍ରତିଭାବଳରେ ଦୂର କରିଦେଲେ । ସୁପ୍ତପ୍ରାଣରେ ଚେତନାର ସଞ୍ଚାର ହେଲା ।

ଏହି 'ବେଦାନ୍ତବାଦ' ଦ୍ୱାରା ଜାତିର ପ୍ରାଣ ସଜୀବ ଓ ସଚେଷ୍ଟ ହୋଇ ଉଠେ । ଆତ୍ମାନୁଭବ ନ ଥିଲେ ଦୁର୍ବଳ ଅଧିକାରୀଙ୍କୁ ନେଇ କେବେହେଲେ କୌଣସି ମହତ୍ କାର୍ଯ୍ୟ ସୁସିଦ୍ଧ ହୋଇପାରେ ନାହିଁ । ବୈଦାନ୍ତିକମାନଙ୍କ ପ୍ରାର୍ଥନାରେ ମଧ୍ୟ ବୀରତ୍ୱବ୍ୟଞ୍ଜକଭାବ ପରିପୂର୍ଣ୍ଣ ହୋଇ ରହିଛି । ଅଦ୍ୱୈତବାଦର ପ୍ରଚାରକର୍ତ୍ତା ଆଚାର୍ଯ୍ୟ ଶଙ୍କରଙ୍କ ମଧ୍ୟରେ ନିର୍ଭୀକଭାବ କିପରି ପୂରି ରହିଥିଲା, ତାଙ୍କ ଜୀବନଚରିତ ପାଠକଲେ ଓ ଭାଷ୍ୟାଦିର ଆଲୋଚନା କଲେ ତାହା ସହଜରେ ବୁଝାଯାଏ । ସେ ଉପନିଷଦ ଭାଷ୍ୟରେ ଗୋଟିଏ ସ୍ଥାନରେ କହିଛନ୍ତି, ''ହେ ଭଗବାନ ! ମୁଁ ତୁମ କଲ୍ୟାଣମୟ ସୁନ୍ଦର ରୂପର ଦର୍ଶନାଭିଳାଷୀ । ଏହା ବୋଲି ତୁମେ ମୋତେ ଭୃତ୍ୟ ପରି ଜ୍ଞାନ କର ନାହିଁ । ତୁମେ ମୋ ମଧ୍ୟରେ କୌଣସି ଭେଦ ନ ଥିବା ଯୋଗୁ ମୁଁ ନିର୍ଭୀକଭାବରେ ତୁମ ନିକଟରେ ନିବେଦନ କରୁଛି । ତୁମେ ମୋର ଆତ୍ମସ୍ୱରୂପ ହୋଇଥିବା ହେତୁ ତୁମ ନିକଟରେ ଏହି ନିବେଦନ ଜଣାଇବାର ଅଧିକାର ମୋର ଅଛି ।''

ଜାତିର ସୁଦିନ ଫେରାଇ ଆଣିବାକୁ ହେଲେ ଯୋଗ, ଜ୍ଞାନ, ତନ୍ତ୍ର ଓ ପ୍ରେମସାଧନାର ପୁନରାଲୋଚନା ହେବା ସର୍ବଥା ପ୍ରୟୋଜନ ଏବଂ ସେଥିସହିତ ବେଦାନ୍ତବାଦର ଆଲୋଚନା ହେବା ମଧ୍ୟ ଆବଶ୍ୟକ । ମନୁଷ୍ୟ ଯେ ସ୍ୱାଧୀନ, ଏହା ବେଦାନ୍ତ ପ୍ରଚାର କରେ । ମନୁଷ୍ୟ ଯେ ଅସୀମ ଶକ୍ତିଶାଳୀ, ଏହା ଯୋଗ ଓ ତନ୍ତ୍ର ପ୍ରଚାର କରନ୍ତି । ଏବଂବିଧ ସ୍ୱାଧୀନ ଓ ଶକ୍ତଶାଳୀ ସାଧକ ଯେତେବେଳେ ସମଗ୍ର ମାନବଜାତିର କଲ୍ୟାଣନିମିତ୍ତ ଆତ୍ମନିୟୋଗ କରନ୍ତି, ସେତେବେଳେ ସେ ହୁଅନ୍ତି ପ୍ରେମିକ ଶିରୋମଣି । ଏହିପରି ଯେଉଁ ସାଧୁ-ମହାପୁରୁଷମାନେ ବେଦାନ୍ତର ବାଣୀ ଶୁଣାଇ ମାନବସମାଜକୁ ସତ୍‌ପଥରେ ପରିଚାଳିତ କରିଛନ୍ତି, ସେହି ସବୁ ସାଧୁ-ମହାପୁରୁଷଙ୍କ ମଧ୍ୟରେ ଶ୍ରୀମତ୍ ଶଙ୍କରାଚାର୍ଯ୍ୟ ଅନ୍ୟତମ । ବୈଦାନ୍ତିକ ହୋଇ ମଧ୍ୟ ମାନବଜାତିର କଲ୍ୟାଣନିମିତ୍ତ ଆତ୍ମନିୟୋଗ କରିଥିବାରୁ ସେ ଜଣେ ଶ୍ରେଷ୍ଠ ପ୍ରେମିକ ।

ପ୍ରତି ମାନବର ଜୀବନସହିତ ତା ନିଜ ମତର ଘନିଷ୍ଠ ସମ୍ବନ୍ଧ ବିଦ୍ୟମାନ । ଯେ ଯେଉଁ ମତର ପ୍ରଚାରକ, ସେହି ମତସହିତ ତାଙ୍କ ଜୀବନଚରିତର ସମ୍ବନ୍ଧ ଅତି ଘନିଷ୍ଠ । ଏଣୁ ମହାପୁରୁଷମାନଙ୍କର ମତ ବୁଝିବା ପକ୍ଷରେ ସେମାନଙ୍କ

ଉପଦେଶାବଳି ଆଲୋଚନା ଅପେକ୍ଷା ସେମାନଙ୍କ ଜୀବନଚରିତ ଆଲୋଚନା କରିବାର ମୂଲ୍ୟ ଅଧିକ ଅନୁକୂଳ । ସାଧୁମାନଙ୍କ ଜୀବନଚରିତ ପ୍ରଚାର କରିବାଫଳରେ କେବଳ ତାଙ୍କ ମତ ବୁଝିବା ବ୍ୟତୀତ ଆହୁରି ଅନେକ ବିଷୟରେ ଅତି ସୁସ୍ପଷ୍ଟ ଧାରଣା ଜନ୍ମିଥାଏ । କୌଣସି ସାଧୁ ଯଦି ଉପଦେଶ ଛଳରେ କହନ୍ତି, ଜଗତ 'ଅନିତ୍ୟ ଓ ମିଥ୍ୟା, ଆତ୍ମା ନର୍ବିକାର' ଅଥଚ ସେ ନିଜର ସାମାନ୍ୟ କ୍ଷତରେ ମର୍ମାହତ ହୋଇପଡ଼ନ୍ତି, ସାମାନ୍ୟ ରୋଗଯନ୍ତ୍ରଣାରେ ବିଚଳିତ ହୋଇଯାନ୍ତି, ତେବେ ସେହି ସାଧୁଙ୍କର ମତ ସାଧାରଣରେ ପ୍ରଚାରିତ ହୋଇପାରେ ନାହିଁ ।

ସାଧୁମାନେ ମତ ପ୍ରଚାର କରିବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କ ଉପକାର କରିବାନିମିତ୍ତ ସର୍ବଦା ଜୀବନ ଉତ୍ସର୍ଗ କରିବାକୁ ପ୍ରସ୍ତୁତ ହେଉଥିବାରୁ ଏବଂ ରୋଗ, ଶୋକ, ବିପଦ, ଆପଦରେ ଅବିଚଳିତ ରହି ନିଷ୍ଠାପରଭାବରେ ନିଜର ଅଭିଜ୍ଞତା-ଉପଲବ୍‌ଧ ସାଧନ-ସତ୍ୟ ସାଧାରଣରେ ପ୍ରଚାର କରିପାରୁଥିବାରୁ, ଲୋକେ ସେମାନଙ୍କ ଆଚାର ବ୍ୟବହାରର ନିଷ୍ଠା ଦେଖି ସେମାନଙ୍କ ପନ୍ଥା ଅନୁସରଣ କରନ୍ତି । ଏଥିପାଇଁ ସର୍ବସାଧାରଣଙ୍କ ଅପେକ୍ଷା ସମାଜ-ସଂସ୍କାରକ ସାଧୁ-ମହାପୁରୁଷମାନଙ୍କର ମତ ଓ କାର୍ଯ୍ୟ ମଧ୍ୟରେ ଅଧିକ ସାମଞ୍ଜସ୍ୟ ଥାଏ । କେବଳ ମତ ପ୍ରଚାରଦ୍ୱାରା କାର୍ଯ୍ୟସିଦ୍ଧି ହେବାର ସମ୍ଭାବନା ନ ଥିବାରୁ ସେମାନେ ନିଜେ ତାହା ଆଚରଣ କରି ଅପରକୁ ନିଜ ଉପଲବ୍‌ଧ ସତ୍ୟ ପ୍ରତ୍ୟକ୍ଷ କରାଇ ଆଦର୍ଶର ପ୍ରତିଷ୍ଠା କରନ୍ତି ।

ଆମେ କ୍ଷୁଦ୍ର ଜୀବ, ସାମାନ୍ୟ ଆଘାତରେ ଅତିଶୟ ଅସ୍ଥିର ହୋଇପଡୁ । ସାମାନ୍ୟ ଟିକିଏ ଦୁଃଖକଷ୍ଟ ଭୋଗ କରିବାକୁ ହେଲେ ଆମେ ବିଚଳିତ ହୋଇ ଜୀବନଧାରଣ କରିବାକୁ ବିଡ଼ମ୍ବନା ବୋଧକରୁ । କିନ୍ତୁ ଆବାଲ୍ୟ ରାଜଭୋଗରେ ପ୍ରତିପାଳିତ ହୋଇ ଯୁଧିଷ୍ଠିର ପ୍ରଭୃତି ପାଣ୍ଡବଗଣ ଯେପରି ଦୁଃଖକଷ୍ଟରେ ଲାଞ୍ଛିତ ହୋଇଛନ୍ତି, ଦୁଃଖର କଠୋର ପୀଡ଼ନରେ ନିଷ୍ପେଷିତ ହୋଇ ମଧ୍ୟ ଯେପରି ହସ ହସ ବଦନରେ ସେ ସମସ୍ତ ସହ୍ୟ କରି ସ୍ୱଧର୍ମରେ ପ୍ରତିଷ୍ଠିତ ରହିପାରିଛନ୍ତି, ତାହା ଅନୁଧ୍ୟାନର ବିଷୟ । ସେମାନଙ୍କ ଦୁଃଖକଷ୍ଟ ତୁଳନାରେ ଆମର ଦୁଃଖକଷ୍ଟ ଅତି କ୍ଷୁଦ୍ର ଓ ନଗଣ୍ୟ ।

ଅନେକେ ମନେକରନ୍ତି, ସାଧୁ ମହାପୁରୁଷମାନଙ୍କର ଆଶ୍ରୟ ଲାଭ କଲେ ଜୀବନରେ ଦୁଃଖକଷ୍ଟ ଆଦୌ ଭୋଗ କରିବାକୁ ପଡ଼ିବ ନାହିଁ, ସର୍ବଦା ସୁଖସ୍ୱାଚ୍ଛନ୍ଦ୍ୟରେ

ରହି ସଂସାରସୁଖ ଉପଭୋଗ କରିହେବ । କିନ୍ତୁ ସେମାନଙ୍କର ଏ ଧାରଣା ସଂପୂର୍ଣ୍ଣ ଭ୍ରମାତ୍ମକ । ସ୍ୱୟଂ ଶ୍ରୀକୃଷ୍ଣଙ୍କୁ ସଖାରୂପରେ ପାଇଁ ମଧ୍ୟ ପାଣ୍ଡବମାନଙ୍କର ସଂସାରିକ ଦୁଃଖଦୁର୍ଗତି ଦୂର ହୋଇପାରି ନ ଥିଲା । କିନ୍ତୁ ଶ୍ରୀକୃଷ୍ଣଙ୍କ ପ୍ରତି ନିଷ୍ଠା ଥିବାଯୋଗୁ ଏବଂ ଶ୍ରୀକୃଷ୍ଣ ସେମାନଙ୍କର ସହାୟକ ରୂପେ ବିଦ୍ୟମାନ ଥିବାହେତୁ, ସମସ୍ତ ଦୁଃଖକଷ୍ଟକୁ ବରଣ କରିନେଇ ସେମାନେ ସତ୍ୟ କର୍ମରେ ପ୍ରତିଷ୍ଠିତ ରହିପାରିଥିଲେ । ସତ୍ୟ ପ୍ରତି ଅବିଚଳିତ ନିଷ୍ଠା ହିଁ ପରିଶେଷରେ ସେମାନଙ୍କ ମସ୍ତକରେ ବିଜୟମୁକୁଟ ପିନ୍ଧାଇ ଦେଲା । ଏହିପରି ସାଧୁ-ମହାପୁରୁଷମାନଙ୍କର ଆଶ୍ରୟ ଲାଭ କଲେ ସାଂସାରିକ ଦୁଃଖଯନ୍ତ୍ରଣାର ଭାର ଲାଘବ ନ ହେଲେ ମଧ୍ୟ ତାହାସବୁ ସହ୍ୟ କରିବାର ଶକ୍ତି ସଞ୍ଚିତ ହେବ । ସୁଖ-ଦୁଃଖ, ଭଲ-ମନ୍ଦ ସବୁ ତାଙ୍କରି ଦାନ ବୋଲି ଅବନତ ମସ୍ତକରେ ଗ୍ରହଣ କରିବା ଭଳି ଶକ୍ତି ଲାଭ ହେବ । ପରିଶେଷରେ ସେହି ସ୍ୱଧର୍ମନିଷ୍ଠା ହିଁ ମୁକ୍ତିର ଦ୍ୱାର ଉଦ୍‌ଘାଟନ କରିଦେବ । ସାଧୁ ମହାପୁରୁଷମାନଙ୍କର ଜୀବନଚରିତ ପାଠ କଲେ ଆମେ ଏହି ଶିକ୍ଷା ଲାଭ କରିଥାଉ ।

ମହାପୁରୁଷମାନଙ୍କର ପ୍ରଚାରିତ ମତ ଓ ପଥକୁ ସାଧାରଣ ଲୋକେ ବୁଝିପାରନ୍ତି ନାହିଁ; ତେଣୁ ବେଦ-ବେଦାନ୍ତାଦି ଶାସ୍ତ୍ର ଆଲୋଚନାରେ ସ୍ତ୍ରୀ ଓ ଶୂଦ୍ରମାନଙ୍କର ଅଧିକାର ନାହିଁ ବୋଲି ଆଚାର୍ଯ୍ୟ ଶଙ୍କର ବ୍ୟକ୍ତ କରିଛନ୍ତି । କାରଣ ଅଧିକାରୀ ନହେଲେ କେବଳ ଶାସ୍ତ୍ରପାଠ କରିବା ନିଷ୍ଫଳ । ଅନଧିକାରୀ ଶାସ୍ତ୍ର ପାଠ କଲେ ତାଙ୍କ ନିକଟରେ ଶାସ୍ତ୍ରର ଅର୍ଥ ବିକୃତଭାବରେ ପ୍ରକାଶ ପାଏ । ସ୍ତ୍ରୀ ଓ ଶୂଦ୍ର କହିଲେ, ସାଧାରଣତଃ ସ୍ତ୍ରୀ ଓ ଶୂଦ୍ରଜାତିକୁ ବୁଝାଏ । କିନ୍ତୁ ଏହାର ଆଉ ଗୋଟିଏ ଗୂଢ଼ ଅର୍ଥ ନିହିତ ଅଛି । ଶାସ୍ତ୍ରରେ ଅଛି, ବେଦପାଠରେ ସ୍ତ୍ରୀ ଶୂଦ୍ରଙ୍କର ଅଧିକାର ନାହିଁ । ସେ ସ୍ତ୍ରୀ ଓ ଶୂଦ୍ର କିଏ ? ଯେଉଁମାନେ ସ୍ତ୍ରୀ-ଭାବାପନ୍ନ, ସେମାନେ ସ୍ତ୍ରୀ ଏବଂ ଯେଉଁମାନେ ଶୋକରେ ଦ୍ରବୀଭୂତ ବା ଆଚ୍ଛନ୍ନ (ଶୁଚାଦ୍ରୟତେ) ସେମାନେ ଶୂଦ୍ର । ନିଜର ପୁରୁଷତ୍ୱ ହରାଇ, ଆତ୍ମସ୍ୱରୂପ ବିସ୍ମୃତ ହୋଇ, ନିଜର ସ୍ୱାତନ୍ତ୍ର୍ୟ ବିସର୍ଜନ କରି ପ୍ରକୃତିର କବଳିତ ହେବା ହିଁ ସ୍ତ୍ରୀତ୍ୱ ଏବଂ ଶୋକରେ, ମୋହରେ ବିଚଳିତ ହୋଇ ତହିଁରେ ଅଭିଭୂତ ହେବା ହିଁ ଶୂଦ୍ରତ୍ୱ । ଯେଉଁମାନେ ପ୍ରକୃତି କବଳରେ କବଳିତ, ସୁଖ-ଦୁଃଖ, ହର୍ଷ-ବିଷାଦର ଚକ୍ରାବର୍ତ୍ତରେ ଆବର୍ତ୍ତିତ, ଶୋକ-ମୋହରେ ଦ୍ରବୀଭୂତ, ସେମାନେ କେବେହେଲେ ସୂକ୍ଷ୍ମାତିସୂକ୍ଷ୍ମ ତତ୍ତ୍ୱମାର୍ଗରେ ଚାଳିତ ହୋଇପାରିବେ ନାହିଁ । କିନ୍ତୁ ସେମାନେ ଇଚ୍ଛାକଲେ ସାଧୁ-ମହାପୁରୁଷମାନଙ୍କର

ଜୀବନଚରିତ ପାଠ କରି ତଦନୁଯାୟୀ ନିଜ ଜୀବନକୁ ନିୟନ୍ତ୍ରିତ କରିପାରିବେ । ଏଥିପାଇଁ ସାଧୁ-ମହାପୁରୁଷମାନଙ୍କର ମତ ଓ ପଥର ଆଲୋଚନା କରିବା ଅପେକ୍ଷା ସେମାନଙ୍କ ଜୀବନଚରିତ ପାଠ କଲେ ସର୍ବସାଧାରଣ ଉପକୃତ ହୋଇପାରିବେ ।

ସାଧୁ-ମହାପୁରୁଷମାନଙ୍କ ମଧ୍ୟରେ ଶ୍ରଦ୍ଧା, ନିଷ୍ଠା ଓ ସଂଯମ ପରିପୂର୍ଣ୍ଣଭାବରେ ବିଦ୍ୟମାନ ଥାଏ । ସେମାନେ ସମସ୍ତେ ଗୁରୁଦେବଙ୍କ ପଦମୂଳରେ ବସି ଗୁରୁଦେବଙ୍କ ଆଦେଶ ଓ ନିର୍ଦ୍ଦେଶକୁ ପ୍ରାଣ ଦେଇ କାର୍ଯ୍ୟକାରୀ କରିଥାଆନ୍ତି । ସେମାନେ କେହି ସ୍ୱେଚ୍ଛାଚାରୀଭାବରେ ଜ୍ଞାନ ଅର୍ଜନ କରିନାହାନ୍ତି । ସମସ୍ତେ ବିଧି-ନିଷେଧ ମଧ୍ୟ ଦେଇ ମନୁଷ୍ୟତ୍ୱ ଲାଭ କରିଛନ୍ତି । ସଂଯମ, ନିଷ୍ଠା ଓ ଚରିତ୍ରବଳ ଲାଭ କରିପାରିଲେ ମନୁଷ୍ୟର ଚିତ୍ତ ଶୁଦ୍ଧ ହେବ ଏବଂ ସେ ଜ୍ଞାନଲାଭର ଅଧିକାରୀ ହୋଇପାରିବେ । ପ୍ରତ୍ୟେକ ମହତ୍ ବ୍ୟକ୍ତି ପଛରେ ଜଣେ ଜଣେ ମହାପୁରୁଷ ରହି ସେମାନଙ୍କୁ ପରିଚାଳିତ କରିଛନ୍ତି । ଅର୍ଜୁନଙ୍କ ପଛରେ ଶ୍ରୀକୃଷ୍ଣ ଏବଂ ରାମଚନ୍ଦ୍ରଙ୍କ ପଛରେ ମହର୍ଷି ବଶିଷ୍ଠ ରହି ସେମାନଙ୍କର ଜୀବନକୁ ନିୟନ୍ତ୍ରିତ କରିଛନ୍ତି । ଏହି ବ୍ରହ୍ମଜ୍ଞାନ ଗୁରୁଦେବଙ୍କ ଉପଦେଶ ବାଣୀରେ ଉଦ୍‌ବୁଦ୍ଧ ହୋଇ ସେମାନେ ଆଦର୍ଶସ୍ଥାନୀୟ ହୋଇପାରିଛନ୍ତି । ଶ୍ରୀଗୁରୁଙ୍କ ପ୍ରତି ଅବିଚଳିତ ଶ୍ରଦ୍ଧା ଓ ନିଷ୍ଠା ଥିବା ଫଳରେ କିପରି ସିଦ୍ଧି ଲାଭ ହୁଏ, ତାହାର ଜ୍ୱଳନ୍ତ ପ୍ରମାଣ ସାଧୁ-ମହାପୁରୁଷଙ୍କ ଜୀବନଚରିତରୁ ମିଳେ । ଆମେ କେବଳ ଅନୁକରଣପ୍ରିୟ ନହୋଇ ଶ୍ରଦ୍ଧା ଓ ନିଷ୍ଠାର ସହିତ ସାଧୁମାନଙ୍କ ଚରିତକୁ ଆଦର୍ଶଭାବରେ ଗ୍ରହଣ କରିବା ବିଧେୟ । ସାଧୁମାନଙ୍କ ଚରିତ ଆଲୋଚନା କରି ଆମେ ଯେତେବେଳେ ପୂର୍ଣ୍ଣଭାବରେ ତ୍ୟାଗ, ସଂଯମ, ଶ୍ରଦ୍ଧା ଓ ନିଷ୍ଠାରେ ପ୍ରତିଷ୍ଠିତ ହୋଇପାରିବା, ସେତେବେଳେ ଯାଇ ଆମର ପ୍ରକୃତ ଉନ୍ନତି ଓ ପ୍ରକୃତ ଶ୍ରେୟଃ ଲାଭ ହେବ ।

ଅନ୍ୟ ସାଧୁ-ମହାପୁରୁଷଙ୍କର ଚରିତ ଆରମ୍ଭ କରିବା ପୂର୍ବରୁ ପ୍ରଥମେ ଜଗଦ୍‌ଗୁରୁ ଶଙ୍କରଚାର୍ଯ୍ୟଙ୍କର ଜୀବନଚରିତ ଆଲୋଚନାରେ ପ୍ରବୃତ୍ତ ହେବା । କାରଣ, ବେଦାନ୍ତ ଶାସ୍ତ୍ର ଅବଲମ୍ବନ କରି ମାନବଜୀବନର ଚରମଲକ୍ଷ୍ୟ ସମ୍ବନ୍ଧରେ ପୂର୍ବରୁ ସେ ପ୍ରଚଳିତ ନାନା ମତବାଦର ଯେପରିଭାବରେ ମୀମାଂସା କରିଛନ୍ତି, ତାହା ଅତୁଳନୀୟ । ବେଦାନ୍ତ ମତ ପ୍ରଚାରକରି ପ୍ରଥମେ ଶ୍ରୀମତ୍ ଶଙ୍କରାଚାର୍ଯ୍ୟ ଯେପରି ଖ୍ୟାତଲାଭ କରିଛନ୍ତି, ଅନ୍ୟ କେହି ସେପରି ଖ୍ୟାତିଲାଭ କରି ନାହାନ୍ତି । ତାଙ୍କର ଯେପରି ପାଣ୍ଡିତ୍ୟ ଓ ସାଧନା ଥିଲା ହୃଦୟର ବଳ ମଧ୍ୟ ସେହପରି ଅସାଧାରଣ ଥିଲା । ଲୋକେ ତାଙ୍କୁ ଶିବଙ୍କର ଅବତାର ବୋଲି ସମ୍ମାନ କରୁଥିଲେ ।

ଶଙ୍କରଙ୍କ ପରେ ରାମାନୁଜ ବେଦାନ୍ତ ପ୍ରଚାର କରି ବିଶେଷ ଖ୍ୟାତିଲାଭ କରିଛନ୍ତି । ଏମାନେ ଯେଉଁ ମତ ପ୍ରଚାର କରି ଯାଇଛନ୍ତି, ତାହା ଅତି ସୁନ୍ଦର ଓ ସୁଯୁକ୍ତିପୂର୍ଣ୍ଣ ।

ଶଙ୍କର, ରାମାନୁଜ, ନିମ୍ବାର୍କ ଓ ଶ୍ରୀଚୈତନ୍ୟଦେବ ପ୍ରଭୃତି ମହାପୁରୁଷମାନେ ସତ୍ୟଦର୍ଶନ କରି ସତ୍ୟ ପ୍ରଚାର କରିଛନ୍ତି । ଆରମ୍ଭରୁ ଅର୍ଥାତ୍ ସର୍ବପ୍ରଥମରୁ କୌଣସି ଧର୍ମଭାବ ସତ୍ୟହୀନ ହୋଇ ନ ଥାଏ । ସତ୍ୟହୀନ ଧର୍ମ କେତେ ଜଣ ବ୍ୟକ୍ତିବିଶେଷଙ୍କୁ ମାତ୍ର ନିଜ ଦଳ ପ୍ରତି ଆକର୍ଷଣ କରିପାରେ ଓ ଅଳ୍ପ କେତେ ଦିନପାଇଁ କୌଣସି ବିଶେଷ ଉଦ୍ଦେଶ୍ୟ ସାଧନ ନିମିତ୍ତ କେତେ ଜଣଙ୍କୁ ଏକତ୍ର କରିପାରେ ଅଥବା କେତେ ଦିନ ପାଇଁ ଆଡ଼ମ୍ବର କରିବାକୁ ସମର୍ଥ ହୋଇପାରେ। କିନ୍ତୁ, ତାହା କ୍ଷଣସ୍ଥାୟୀ ଜଳବୁଦ୍‌ବୁଦ ସଦୃଶ ଶୀଘ୍ର ବିଲୀନ ହୋଇଯାଏ । ଯେଉଁ ସାଧୁ-ମହାପୁରୁଷମାନଙ୍କ ବାକ୍ୟରେ ଓ କାର୍ଯ୍ୟର ସତ୍ୟ ପ୍ରତିଷ୍ଠିତ ହୋଇଥାଏ, ତାହା ନାନା ଦେଶର ବହୁ ମହାତ୍ମାଙ୍କୁ ଅତି ସରଳ ଓ ବାସ୍ତବ ସତ୍ୟଭାବରେ ଆକର୍ଷଣ କରେ ଏବଂ ଏହା ଜଗତରେ ଚିରଦିନ ସମଭାବରେ ବିରାଜିତ ରହେ । ସେମାନଙ୍କ ପରବର୍ତ୍ତୀ ଯୁଗରେ ସେମାନଙ୍କର ଶିଷ୍ୟ ଓ ସମର୍ଥନକାରୀମାନେ କୌଣସି ସଂକୀର୍ଣ୍ଣ ସ୍ୱାର୍ଥସିଦ୍ଧିନିମିତ୍ତ ବା ଦଳପୁଷ୍ଟିନିମିତ୍ତ ଏହି ପନ୍ଥାକୁ ବିକୃତ କରି ପକାଇଲେ ତାହା କ୍ରମେ ଲୟପ୍ରାପ୍ତ ହୁଏ । ମହାପୁରୁଷମାନଙ୍କର ଭାବଧାରା କାଳକ୍ରମେ ବିକୃତ ହେବାର ଆଉ ଗୋଟିଏ କାରଣ ହେଉଛି ଯେ, କେତେ ଅସତ୍ ପ୍ରକୃତିର ତଥାକଥିତ ଶକ୍ତିଶାଳୀ ଭକ୍ତ ଏହି ସବୁ ସାଧୁ-ମହାପୁରୁଷଙ୍କର ପ୍ରତିଷ୍ଠିତ ସତ୍ୟ ପ୍ରଚାର କରିବାର ନେତୃତ୍ୱ ଗ୍ରହଣକରି ତାହାର ମହତ୍ତ୍ୱକୁ ଖର୍ବ ଓ ବିନଷ୍ଟ କରିପକାନ୍ତି । ସେଥିପାଇଁ ଯେଉଁ ଧର୍ମ ଓ ଆଚାରପଦ୍ଧତି ଦିନେ ପ୍ରକୃତ ସତ୍ୟର ଥାଏ, କାଳକ୍ରମେ ତାହା ସତ୍ୟଭ୍ରଷ୍ଟ ହେବାଫଳରେ ବିକୃତ ହୋଇଗଲେ, ଅନ୍ୟ ସାଧୁ-ମହାପୁରୁଷମାନେ ଆବିର୍ଭୂତ ହୋଇ ସେ କଳଙ୍କ ଅପନୋଦନ କରନ୍ତି । କିନ୍ତୁ ମୂଳରେ ସେହି ସାଧୁ-ମହାପୁରୁଷମାନଙ୍କର ଜୀବନଚରିତର କୌଣସି ବିକୃତି ଘଟେ ନାହିଁ । ବୈଷୟିକ ନିଷ୍ଠାଭାବ ଓ ବ୍ୟକ୍ତିବିଶେଷଙ୍କ ସ୍ୱାର୍ଥପର ଭାବସମୂହ ଧର୍ମଭାବ ମଧ୍ୟରେ ପ୍ରବିଷ୍ଟ ହୋଇ ଧର୍ମର ସାରବତ୍ତା ନଷ୍ଟ କରିଦିଏ । ତେଣୁ ସାଧୁ-ମହାପୁରୁଷମାନଙ୍କର ମତ ଓ ପଥ ଯୁଗ ଅନୁଯାୟୀ ଅନ୍ୟ ସାଧୁ-ମହାପୁରୁଷଙ୍କଦ୍ୱାରା ପରିବର୍ତ୍ତିତ ହୁଏ । କିନ୍ତୁ ଏମାଙ୍କର ଜୀବନ ଚରିତ ପାଠ କରିବାଦ୍ୱାରା ସାଧକମାନେ ବହୁଭାବରେ ଉପକୃତ ହୁଅନ୍ତି ।

ଆଦିଗୁରୁ ଶଙ୍କରାଚାର୍ଯ୍ୟଙ୍କ ଜୀବନଚରିତ ଆଲୋଚନା କଲେ ଆମେ ଦେଖିବା ଯେ, ତାଙ୍କର ଜୀବନ ଉଦାରତା, ଭଗବତ୍‌ନିର୍ଭରତା, ଉଦ୍ୟମ, ଉତ୍ସାହ ଓ ବୈରାଗ୍ୟଭାବରେ ଏକାବେଳକେ ପରିପୂର୍ଣ୍ଣ ହୋଇଥିଲା । ତାଙ୍କଠାରେ କର୍ତ୍ତବ୍ୟନିଷ୍ଠା, କ୍ଷମା, ଗୁଣଗ୍ରାହୀତା, ଗୁରୁଭକ୍ତି, ତ୍ୟାଗଶୀଳତା, ଦେବଭକ୍ତି, ଧ୍ୟାନପରାୟଣତା, ନିରଭିମାନତା, ପରୋପକାର ପ୍ରବୃତ୍ତି, ପ୍ରତିଜ୍ଞାପାଳନ, ଭଦ୍ରତା, ଲୋକପ୍ରିୟତା, ବିନୟଭାବ, ଶତ୍ରୁର ମଙ୍ଗଳସାଧନ ଓ ଶିଷ୍ୟର ଚରିତ୍ରଗଠନ ପ୍ରତି ତୀକ୍ଷଣଦୃଷ୍ଟି ପ୍ରଭୃତି ଦୈବୀଗୁଣଗୁଡ଼ିକ ପୂରି ରହିଥିଲା । ତାଙ୍କ ମନର ବଳ, ସାହସ, ଧୈର୍ଯ୍ୟ ଓ ସ୍ଥୈର୍ଯ୍ୟ ଅତୁଳନୀୟ । ଆଚାର୍ଯ୍ୟ ଶଙ୍କରଙ୍କର ଏହି ସବୁ ଦୈବୀଗୁଣଗୁଡ଼ିକ ପ୍ରତି ସାଧକଙ୍କର ଅନୁଧ୍ୟାନର ବିଷୟ ।

ଶ୍ରୀମତ୍ ଶଙ୍କରାଚାର୍ଯ୍ୟ ବେଦ ଓ ବେଦାନ୍ତ ଶାସ୍ତ୍ର ଅବଲମ୍ବନପୂର୍ବକ ମାନବଜୀବନର ଚରମ ଲକ୍ଷ୍ୟ ସମ୍ବନ୍ଧରେ ପୂର୍ବପ୍ରଚଳିତ ନାନା ମତବାଦର ଯେଉଁ ମୀମାଂସା କରିଯାଇଛନ୍ତି, ତାହା ଅତୁଳନୀୟ । ତାଙ୍କର ପାଣ୍ଡିତ୍ୟ, ହୃଦୟର ବଳ, ସୂକ୍ଷ୍ମଦୃଷ୍ଟି ଅତି ଅସାଧାରଣ ଥିଲା । ସେ ଭଗବତ୍ ଭକ୍ତ ଥାଇ ମଧ୍ୟ ଲୋକପ୍ରିୟ ଓ ସଜ୍ଜନ ଥିଲେ । ଏଥିପାଇଁ ସେ ସାଧକ ଓ ପଣ୍ଡିତମାନଙ୍କଦ୍ୱାରା ଆଦର୍ଶଭାବରେ ଗୃହୀତ ହୋଇଥିଲେ । ସେ ଯେଉଁଭାବରେ ଉପଦେଶ ପ୍ରଦାନ କରୁଥିଲେ, ନିଜ ଜୀବନକୁ ମଧ୍ୟ ସେହିଭାବରେ ଗଠନ କରିଥିଲେ । ତାଙ୍କ ପ୍ରଚାରିତ ମତ ସୁନ୍ଦର, ସୁଯୁକ୍ତିପୂର୍ଣ୍ଣ, ହୃଦୟଗ୍ରାହୀ ଓ ଶାନ୍ତିପ୍ରଦ । ତାଙ୍କ ପରଠାରୁ ଆଜିପର୍ଯ୍ୟନ୍ତ ପ୍ରାୟ ହଜାରେ ବର୍ଷ ଅତୀତ ହୋଇଥିଲେ ମଧ୍ୟ ଏପର୍ଯ୍ୟନ୍ତ କେହି ତାଙ୍କ ମତରେ ସଂକୀର୍ଣ୍ଣତା କିମ୍ବା କୌଣସି ପ୍ରକାର ଦୋଷ ଦେଖାଇପାରି ନାହାନ୍ତି । ତେଣୁ ଆଜି ମଧ୍ୟ ସେ ବେଦାନ୍ତାନୁରାଗୀ ସାଧୁମାନଙ୍କ ଦ୍ୱାରା ଗୁରୁଭାବରେ ପୂଜିତ ହେଉଛନ୍ତି । ଆଜି ମଧ୍ୟ ବହୁ ସାଧୁ ମହାତ୍ମା ଶଙ୍କରଙ୍କ ମତକୁ ନିଜର ଲକ୍ଷ୍ୟ ବୋଲି ଗ୍ରହଣ କରି ସେମାନଙ୍କର ଶିଷ୍ୟ ଭକ୍ତମାନଙ୍କୁ ସେହିଭାବରେ ପରିଚାଳିତ କରିବାକୁ ଚେଷ୍ଟା କରୁଛନ୍ତି । ପରମାରାଧ୍ୟତମ ମହାୟ ଗୁରୁଦେବ ଠାକୁର ଶ୍ରୀ ଶ୍ରୀ ନିଗମାନନ୍ଦ ସରସ୍ୱତୀ ଦେବ ଶଙ୍କରଙ୍କ ମତକୁ ସତ୍ୟରୂପରେ ଗ୍ରହଣ କରି ଭକ୍ତିପଥରେ ଗତି କରିବାକୁ ନିର୍ଦ୍ଦେଶ ଦେଇଛନ୍ତି । ଶଙ୍କରଙ୍କ ମତାନୁଯାୟୀ ନିଜ ଲକ୍ଷ୍ୟ ସ୍ଥିର କରିବାକୁ ସେ ବହୁବିଧ ଉପଦେଶ ପ୍ରଦାନ କରିଛନ୍ତି ।

ଲକ୍ଷ୍ୟସ୍ଥିର ନ ହେଲେ କେହି କୌଣସି କାର୍ଯ୍ୟରେ ଅଗ୍ରସର ହୋଇ ପାରନ୍ତି ନାହିଁ । ମାନବ ଯାହା ଲାଭ କରିବାପାଇଁ ବା ଯେଉଁ ସ୍ୱରୂପରେ ପ୍ରତିଷ୍ଠିତ

ହେବାନିମିତ୍ତ ନିଜର ଧନ-ଜନ-ଜୀବନକୁ ତୁଚ୍ଛ କରି ପତଙ୍ଗ ଅଗ୍ନି ଆଡ଼କୁ ପ୍ରଧାବିତ ହେଲା ପରି ଧାବମାନ ହୁଏ, ଯେଉଁ ସ୍ୱରୂପପ୍ରାପ୍ତି ନିମିତ୍ତ ମୁମୁକ୍ଷୁ ବ୍ୟକ୍ତି ପ୍ରାଣପ୍ରିୟ ଶତଶତ ବିଷୟ-ବିଭବ ତ୍ୟାଗ କରିପାରନ୍ତି, ତାହା ଯଦି ସ୍ଥିର ନ ହୁଏ ବା ସେ ଲକ୍ଷ୍ୟପଥରେ ଯଦି ମତଭେଦ ଥାଏ, ତେବେ ସାଧକଙ୍କର ବହୁ ଅନିଷ୍ଟ ସାଧିତ ହୁଏ । ମାନବ ଯାହା ଲାଭ କରିବାକୁ ଜନ୍ମଜନ୍ମ ଧରି ସାଧନା କରୁଅଛି, ତାହାର ସ୍ୱରୂପ ଯଦି ନିର୍ଦ୍ଧାରିତ ନ ହୁଏ, ତେବେ ସାଧକଙ୍କ ପକ୍ଷରେ ଏହାଠାରୁ ବଳି ଅଧିକ ଗୁରୁତର ଆକ୍ଷେପର ବିଷୟ ଆଉ କ'ଣ ହୋଇପାରେ ? ଏହି ଲକ୍ଷ୍ୟ ସ୍ଥିର କରିବା ସମ୍ପର୍କରେ ସାଧୁ ମହାପୁରୁଷମାନଙ୍କ ଜୀବନଚରିତ ପାଠ ଯେ କିପରି ସହାୟକ ତାହା ପ୍ରତ୍ୟେକ ସନ୍ମାର୍ଗଗାମୀ ବ୍ୟକ୍ତି ଉପଲବ୍ଧି କରିପାରିବେ ।

ସାଧୁ-ମହାପୁରୁଷଙ୍କ ଜୀବନୀ ପାଠ କରିବାଦ୍ୱାରା ତାଙ୍କ ପ୍ରଚାରିତ ମତ ସମ୍ବନ୍ଧରେ ସ୍ଥିର ଓ ଦୃଢ଼ ନିଷ୍ଠା ଜାତ ହୁଏ । କାରଣ, ଯେ ଯେଉଁ ମତର ପ୍ରବର୍ତ୍ତକ, ସେ ମତବାଦସହିତ ଉକ୍ତ ମହାପୁରୁଷଙ୍କ ଜୀବନଚରିତର ବିଶେଷ ସାମଞ୍ଜସ୍ୟ ଦେଖିବାକୁ ମିଳେ । ଏଥିପାଇଁ ସାଧକମାନେ ସେହି ମହାପୁରୁଷଙ୍କ ପ୍ରଚାରିତ ମତସହିତ ତାଙ୍କ ଜୀବନର ଘନିଷ୍ଠ ସମ୍ପର୍କ ଦେଖି ତାଙ୍କ ମତ ପ୍ରତି ଆକୃଷ୍ଟ ହୁଅନ୍ତି । ଯଦି ପ୍ରଚାର କଲାବେଳର ଭାବ ତାଙ୍କ ନିଜ ଜୀବନରେ ପ୍ରତିଫଳିତ ନ ହୁଏ, ତାହାହେଲେ ଏହା ସାଧାରଣରେ ଗୃହୀତ ହୁଏ ନାହିଁ । କିନ୍ତୁ, ବେଦାନ୍ତପ୍ରଚାରକ ଶ୍ରୀମତ୍ ଶଙ୍କରାଚାର୍ଯ୍ୟ ଅଦ୍ୱୈତବାଦର ପ୍ରଚାର କରିବା ସଙ୍ଗେ ସଙ୍ଗେ ଅନ୍ୟର ଉପକାରନିମିତ୍ତ ପ୍ରାଣପର୍ଯ୍ୟନ୍ତ ବିସର୍ଜନ କରିବାକୁ ପ୍ରସ୍ତୁତ ଥିଲେ । ରୋଗରେ, ଶୋକରେ, ବିପଦ-ଆପଦରେ ସେ ଯେପରି ଅଚଳ, ଅଟଳ, ଧୀର, ଶାନ୍ତ, ସମାହିତ ରହି ପ୍ରସନ୍ନ ଚିତ୍ତରେ ତାହା ସହ୍ୟ କରି ଅବିଚଳିତ ଭାବ ପ୍ରଦର୍ଶନ କରୁଥିଲେ, ସେଥିରୁ ତାଙ୍କ ମତବାଦସହିତ ତାଙ୍କ ନିଜ ଜୀବନର ସୁସାଦୃଶ୍ୟ ଥିବାର ପରିଲକ୍ଷିତ ହେଉଥିଲା । ଏଥିପାଇଁ ତାଙ୍କ ପ୍ରଚାରିତ ମତବାଦ ସାଧାରଣଙ୍କଦ୍ୱାରା ଅଭ୍ରାନ୍ତ ସତ୍ୟ ବୋଲି ଗୃହୀତ ହେବାକୁ ବିଳମ୍ବ ହେଲା ନାହିଁ । କାରଣ ଯେ ଯେଉଁ ମତର ପ୍ରତିଷ୍ଠାତା, ସେ ନିଜ ଜୀବନରେ ତାହା ଅନୁଷ୍ଠାନ କରି ନିଜ ଉପଲବ୍ଧ ସତ୍ୟକୁ ସାଧାରଣରେ ପ୍ରକାଶ ନ କଲେ, କେବଳ ଉପଦେଶ ଦେବାଦ୍ୱାରା କୌଣସି କାର୍ଯ୍ୟ ସାଧିତ ହୋଇପାରେ ନାହିଁ । ସାଧୁମାନେ ପ୍ରଥମେ ସତ୍ୟକୁ ସାଧନାଦ୍ୱାରା ଉପଲବ୍ଧି କରିନ୍ତି ଓ ପରେ ତାହା ନିଜ ଜୀବନରେ ଅନୁଷ୍ଠାନ କରି ସାଧାରଣଙ୍କୁ ମଧ୍ୟ ତାହା ଉପଲବ୍ଧି କରାଇ ଦିଅନ୍ତି । ଏଥିପାଇଁ

ସେହି ମତ ଅତି ସହଜରେ ସମାଜ କର୍ତ୍ତୃକ ଗୃହୀତ ହୁଏ । ଭଗବାନ ରାମ, କୃଷ୍ଣ, ବୁଦ୍ଧ, ମହାବୀର, ଶଙ୍କର, ଶ୍ରୀଗୌରାଙ୍ଗ, ଶ୍ରୀରାମକୃଷ୍ଣ ଦେବ ପ୍ରଭୃତି ମହାପୁରୁଷମାନେ ନିଜ ପ୍ରଚାରିତ ମତବାଦକୁ ଜୀବନର ଆଦର୍ଶଭାବରେ ଗ୍ରହଣ କରି ମତସହିତ କର୍ମର ସମ୍ବନ୍ଧ ସ୍ଥାପନ କରିଛନ୍ତି । ତେଣୁ ଶଙ୍କରଙ୍କ ଜୀବନଚରିତ ଆଲୋଚନା କରିବାଦ୍ୱାରା ସାଧକମାନେ ସେମାନଙ୍କ ଲକ୍ଷ୍ୟ ସମ୍ପର୍କରେ ସୁସ୍ପଷ୍ଟ ଧାରଣା ଲାଭ କରିପାରିବେ । ଏହି ଆଶାରେ ପ୍ରଥମେ ଶଙ୍କରାଚାର୍ଯ୍ୟଙ୍କ ଚରିତ ଆଲୋଚନାରେ ପ୍ରବୃତ୍ତ ହେଲୁ ।

ମହାପୁରୁଷମାନଙ୍କ ଉପଦେଶ ଅପେକ୍ଷା ସେମାନଙ୍କ ଚରିତର ମୂଲ୍ୟ ଅତି ଅଧିକ । ମହାପୁରୁଷମାନଙ୍କର ଉପଦେଶର ପ୍ରକୃତ ମର୍ମ ତାଙ୍କ ଉପଦେଶ ବାଣୀରୁ ଯେତେ ସହଜରେ ବୁଝା ନ ଯାଏ, ତାହା ତାଙ୍କ ଚରିତ ପାଠରୁ ଅଧିକ ପରିମାଣରେ ଉପଲବ୍ଧି କରିହୁଏ । ତେଣୁ ସାଧୁମାନଙ୍କର ଜୀବନଚରିତ ଆଲୋଚନା କରି ତାଙ୍କ ଉପଦେଶର ପ୍ରକୃତ ମର୍ମ ଗ୍ରହଣ କରିବା କର୍ତ୍ତବ୍ୟ ।

ଆଚାର୍ଯ୍ୟ ସଭ୍ୟତାର ପ୍ରାକ୍‌କାଳରୁ ବୁଦ୍ଧଦେବଙ୍କ ଆବିର୍ଭାବର ପୂର୍ବ ପର୍ଯ୍ୟନ୍ତ ଭାରତବର୍ଷରେ ବେଦାନ୍ତ ଧର୍ମ ପ୍ରଚଳିତ ଥିଲା । ଗୃହସ୍ଥମାନେ ବେଦପାଠ, ଯାଗ-ଯଜ୍ଞ, ଶୁଦ୍ଧି-ଶ୍ରାଦ୍ଧ ଓ ଅତିଥିସେବା ପ୍ରଭୃତିର ଅନୁଷ୍ଠାନକୁ ଧର୍ମ ବୋଲି ଜ୍ଞାନ କରୁଥିଲେ । ଇହଜୀବନର ଶେଷରେ ପରକାଳରେ ଦେବଲୋକକୁ ଗମନ କରି ସେଠାରେ ସୁଖ-ଶାନ୍ତି ଲାଭ କରିବାହିଁ ସେମାନଙ୍କ ଜୀବନର କାମ୍ୟ ଥିଲା । ତେଣୁ ସେମାନେ ପ୍ରତି କାର୍ଯ୍ୟରେ ବେଦବିଧି ଅନୁଯାୟୀ କର୍ମକାଣ୍ଡର ଅନୁଷ୍ଠାନ କରିବାରେ ତତ୍ପର ରହୁଥିଲେ । ଯେଉଁମାନେ ଆମରଣ ଅକୃତଦାର ରହି ତପୋବନରେ ଅବସ୍ଥାନପୂର୍ବକ ଧ୍ୟାନ ଧାରଣା ଓ ବ୍ରହ୍ମଚିନ୍ତାରେ ମଗ୍ନ ରହି ସାଧକଜୀବନ ଯାପନ କରୁଥିଲେ, ସେମାନଙ୍କୁ ଆରଣ୍ୟକ କୁହାଯାଉଥିଲା । ସେମାନେ ଜ୍ଞାନୀ ଥିଲେ ଓ ଜ୍ଞାନାଲୋଚନା ହିଁ ସେମାନଙ୍କର ଏକମାତ୍ର ଲକ୍ଷ୍ୟ ଥିଲା । ସେହିମାନେ ହିଁ ଉପନିଷଦ ପ୍ରଭୃତି ଗ୍ରନ୍ଥ ପ୍ରଣୟନ କରିଯାଇଛନ୍ତି । ବୁଦ୍ଧଦେବଙ୍କ ଆବିର୍ଭାବ ପରେ ଧର୍ମଜଗତରେ ଗୋଟିଏ ବିପ୍ଳବ ସୃଷ୍ଟି ହେଲା । ଯଜ୍ଞରେ କରାଯାଉଥିବା ପଶୁବଧ ବା ପ୍ରାଣୀହିଂସାକୁ ସେ ନିଷେଧ କଲେ ଏବଂ ପ୍ରତି ମାନବକୁ ଜଗତର ହିତନିମିତ୍ତ ଜୀବନ ଉତ୍ସର୍ଗ କରିବାପାଇଁ ଉପଦେଶ ଦେଲେ । ବୁଦ୍ଧଦେବ ଧର୍ମସଙ୍ଘ ବା ପ୍ରଚାରସମିତି ସାହାଯ୍ୟରେ ତାଙ୍କର ସତ୍ୟ ପ୍ରଚାର କରିବାହେତୁ ବୌଦ୍ଧଧର୍ମର ବହୁଳ ପ୍ରଚାର ଓ ଉନ୍ନତି

ସାଧନ କରି ପାରିଥିଲେ । ତାଙ୍କ ମୃତ୍ୟୁ ପରେ ମହାରାଜା ଅଶୋକଙ୍କ ରାଜତ୍ୱକାଳରେ ବୌଦ୍ଧଧର୍ମ ରାଜଧର୍ମରେ ପରିଣତ ହେଲା । ଅଶୋକଙ୍କ ପ୍ରେରିତ ପ୍ରଚାରକମାନଙ୍କର ଅସାଧାରଣ ଅଧ୍ୟବସାୟଫଳରେ ଭାରତବର୍ଷରେ ଓ ଭାରତ ବାହାରେ ଅନ୍ୟାନ୍ୟ ବହୁ ଦେଶ ମଧ୍ୟ ବୌଦ୍ଧଧର୍ମ ଗ୍ରହଣ କଲେ । ଅଧିକାଂଶ ପ୍ରଭାବଶାଳୀ ବ୍ରାହ୍ମଣ ଏ ଧର୍ମ ଗ୍ରହଣ କରିବାଫଳରେ ବୌଦ୍ଧ ସଂପ୍ରଦାୟ ବିଶେଷ ପ୍ରଭାବଶାଳୀ ହୋଇପଡ଼ିଲା । ଆର୍ଯ୍ୟାବର୍ତ୍ତର ବହୁ ପୁଣ୍ୟକ୍ଷେତ୍ର ବୌଦ୍ଧବିହାରରେ ପରିଣତ ହେଲା ।

ଆଚାର୍ଯ୍ୟ ଶଙ୍କର ଆବିର୍ଭୂତ ହେବା ପୂର୍ବରୁ ଏହି ବୌଦ୍ଧଧର୍ମର ଅବସ୍ଥା କ୍ରମେ କ୍ଷୀଣ ହୋଇ ଆସୁଥିଲା । ଦାକ୍ଷିଣାତ୍ୟରେ ଶୈବ, ଶାକ୍ତ, ଗାଣପତ୍ୟ ଓ ତାନ୍ତ୍ରିକମାନେ ପ୍ରବଳ ଥିଲେ । ଏମାନଙ୍କ ପ୍ରଭାବରେ ବୈଦିକ ଆଚାର ସଂପୂର୍ଣ୍ଣଭାବରେ ବିନଷ୍ଟ ହୋଇ ନାନା କୁତ୍ସିତ ଆଚାରର ସୃଷ୍ଟି ହୋଇଥିଲା । ବିଭିନ୍ନ ପ୍ରକାର ଧର୍ମ ସଂପ୍ରଦାୟର ମତ ଖଣ୍ଡନ ପୂର୍ବକ ସମଗ୍ର ଭାରତବର୍ଷକୁ ଅଦ୍ୱୈତବାଦର ସୁଶୀତଳ ଛାୟାରେ ସମବେତ କରିବା ହେଲା ଶଙ୍କରଙ୍କର ଉଦ୍ଦେଶ୍ୟ ।

ବିଭିନ୍ନ ଗ୍ରନ୍ଥ ଆଲୋଚନାରୁ ଜଣାଯାଏ ଯେ, ଶଙ୍କର ଜୀବିତ ଥିବା ସମୟରେ କେହି ତାଙ୍କର ଜୀବନଚରିତ ଲିପିବଦ୍ଧ କରି ନାହାନ୍ତି । ତାଙ୍କ ପ୍ରତିଷ୍ଠିତ ମଠସମୂହରେ ଯେଉଁସବୁ ପ୍ରଧାନ ପ୍ରଧାନ ଘଟଣାବଳୀ ଲିପିବଦ୍ଧ ହୋଇ ରହିଥିଲା ଏବଂ ଲୋକମୁଖରୁ ତାଙ୍କର ଯେଉଁସବୁ ଜୀବନବୃତ୍ତାନ୍ତ ଶୁଣିବାକୁ ମିଳିଥିଲା, ସେହି ସମସ୍ତ ଅବଲମ୍ବନ କରି ତାଙ୍କର ଶିଷ୍ୟମାନେ ସଂସ୍କୃତ ଭାଷାରେ ତାଙ୍କ ଜୀବନବିଷୟକ କେତେଗୁଡ଼ିଏ ଗ୍ରନ୍ଥ ରଚନା କରିଥିଲେ । ସେହି ସବୁ ଗ୍ରନ୍ଥ ଅବଲମ୍ବନ କରି ଏବଂ ବିଭିନ୍ନ ଲେଖକଙ୍କଦ୍ୱାରା ପ୍ରକାଶିତ ଶଙ୍କରଙ୍କର ଅନ୍ୟାନ୍ୟ ଜୀବନଚରିତ ଆଲୋଚନା କରି ଶ୍ରୀଯୁକ୍ତ ରାଜେନ୍ଦ୍ରନାଥ ଘୋଷ ମହାଶୟ ''ଆଚାର୍ଯ୍ୟ ଶଙ୍କର ଓ ରାମାନୁଜ'' ନାମକ ଗ୍ରନ୍ଥ ପ୍ରକାଶ କରିଛନ୍ତି । ଏହି ଗ୍ରନ୍ଥରୁ ମୂଳ ବିଷୟବସ୍ତୁ ସଂଗ୍ରହ କରି ଆମେମାନେ ଓଡ଼ିଆ ଭାଷାରେ ''ଭଗବାନ ଶଙ୍କରାଚାର୍ଯ୍ୟ'' ପ୍ରଣୟନ କରିବାକୁ ପ୍ରୟାସ କରିଅଛୁ । ଉପରୋକ୍ତ 'ଆଚାର୍ଯ୍ୟ ଶଙ୍କର ଓ ରାମାନୁଜ' ଗ୍ରନ୍ଥର ସ୍ୱତ୍ୱାଧିକାରୀ ଶ୍ରୀ ରାମକୃଷ୍ଣ ମିଶନର ସମ୍ପାଦକ ମହୋଦୟ ତାଙ୍କର ଏହି ଗ୍ରନ୍ଥ ଅବଲମ୍ବନ କରି ଓଡ଼ିଆ ଭାଷାରେ ଭଗବାନ ଶଙ୍କରାଚାର୍ଯ୍ୟଙ୍କ ଜୀବନୀ ପ୍ରଣୟନ କରିବାକୁ ଅନୁମତି ଦେଇଥିବାରୁ ସମ୍ପାଦକ ତାଙ୍କ ନିକଟରେ କୃତଜ୍ଞ । ଏହା ବ୍ୟତୀତ ଏହି ପୁସ୍ତକ

ପ୍ରଣୟନରେ ଶ୍ରୀ ଶ୍ରୀ ଠାକୁର ପରମହଂସ ନିଗମାନନ୍ଦ ସରସ୍ୱତୀଦେବଙ୍କ 'ପ୍ରେମିକଗୁରୁ', 'ଜୀବନୀବାଣୀ' ପ୍ରଭୃତି ଗ୍ରନ୍ଥ ଓ ତତ୍‌ପ୍ରତିଷ୍ଠିତ ସନାତନ ଧର୍ମର ମୁଖପତ୍ର 'ଆର୍ଯ୍ୟ-ଦର୍ପଣ' ଓ ଶ୍ରୀ ଶରଚ୍ଚନ୍ଦ୍ର ଶାସ୍ତ୍ରୀ ମହୋଦୟଙ୍କ ପ୍ରଣୀତ ''ଶଙ୍କରଚାର୍ଯ୍ୟ ଚରିତ'' ପ୍ରଭୃତି ବହୁ ଗ୍ରନ୍ଥରୁ ସାହାଯ୍ୟ ଗ୍ରହଣ କରାଯାଇଅଛି । ସେଥିପାଇଁ ସମ୍ପାଦକ ସେମାନଙ୍କ ନିକଟରେ ମଧ୍ୟ ଚିରକୃତଜ୍ଞ ।

ପରିଶେଷରେ ନିବେଦନ, ମଦୀୟ ଗୁରୁଦେବ ଠାକୁର ପରମହଂସ ଶ୍ରୀମତ୍ ସ୍ୱାମୀ ନିଗମାନନ୍ଦ ସରସ୍ୱତୀ ଦେବ ତଦୀୟ ମତ ଓ ପଥ ସମ୍ପର୍କରେ ଯେଉଁ ଉପଦେଶ ପ୍ରଦାନ କରିଛନ୍ତି, ସେଥିରେ ସେ ଭଗବାନ ଶଙ୍କରଚାର୍ଯ୍ୟଙ୍କ ମତକୁ ଲକ୍ଷ୍ୟ ରଖି ଶ୍ରୀଗୌରାଙ୍ଗଦେବଙ୍କ ପଥରେ ପରିଚାଳିତ ହେବାପାଇଁ ତାଙ୍କ ଶିଷ୍ୟ-ଭକ୍ତମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ଏବଂ ତାଙ୍କର କୃତୀ ଶିଷ୍ୟ ଶ୍ରୀମତ୍ ସ୍ୱାମୀ ସତ୍ୟାନନ୍ଦ ସରସ୍ୱତୀ ମହାରାଜ 'ନିଗମଦର୍ଶନ' ନାମକ ଗ୍ରନ୍ଥରେ ଗୁରୁଦେବଙ୍କର ମତ ଓ ପଥକୁ ସ୍ପଷ୍ଟଭାବରେ ବ୍ୟକ୍ତ କରିଛନ୍ତି । ତେଣୁ ଶ୍ରୀ ଶ୍ରୀ ଠାକୁରଙ୍କର ଶିଷ୍ୟ-ଭକ୍ତମାନଙ୍କ ମନରେ ଗୁରୁଦେବଙ୍କ ମତ ସମ୍ପର୍କରେ ସୁସ୍ପଷ୍ଟ ଧାରଣା ଜାତ କରାଇବା ଉଦ୍ଦେଶ୍ୟରେ ତାଙ୍କର ଉପଦେଶ ବାଣୀକୁ ହିଁ ଅବଲମ୍ବନ କରି ଏହି ଗ୍ରନ୍ଥ ପ୍ରଣୟନର ପ୍ରଚେଷ୍ଟା । ସୁଧୀ ପାଠକଗଣ ଭଗବାନ ଶଙ୍କରାଚାର୍ଯ୍ୟଙ୍କର ପୂତଚରିତ ଆଲୋଚନା କରି କଥଞ୍ଚିତ ତୃପ୍ତିଲାଭ କଲେ ଶ୍ରମ ସଫଳ ଜ୍ଞାନ କରିବୁଁ ।

ନିଗମ ସ୍ମୃତି କୁଟୀର
ଯୋବ୍ରା, କଟକ
ମାର୍ଗଶୀର, ଶୁକ୍ଳ ଚତୁର୍ଥୀ
ସନ ୧୩୬୩ ସାଲ

ଶ୍ରୀ ଶ୍ରୀ ଠାକୁର ଚରଣାଶ୍ରିତ
**ଦୁର୍ଗାଚରଣ ମହାନ୍ତି**
ସମ୍ପାଦକ



## ଭଗବାନ ଶଙ୍କରାଚାର୍ଯ୍ୟ

# ଆଚାର୍ଯ୍ୟଙ୍କ ପୂର୍ବରୁ ଦେଶର ଅବସ୍ଥା

ଭଗବାନ ବୁଦ୍ଧଦେବଙ୍କ ତିରୋଧାନ ପରେ ପଥଭ୍ରଷ୍ଟ ବୌଦ୍ଧମାନଙ୍କର ଶୂନ୍ୟବାଦ ଓ ନାସ୍ତିକତାର କଠୋର କର୍କଶଧ୍ୱନିରେ ଭାରତର ଗଗନ-ପବନ ପ୍ରକମ୍ପିତ ହେବାକୁ ଲାଗିଲା । ଜପ, ତପ, ପୁଣ୍ୟ, ଧର୍ମ, ଯାଗ, ଯଜ୍ଞ, ଦାନ ଓ ଶାସ୍ତ୍ରଚର୍ଚ୍ଚାଦି ଭାରତରୁ କ୍ରମେ ଲୋପ ପାଇବାକୁ ବସିଲା । ବିଷୟାସକ୍ତି ପୁଣ୍ୟଭୂମି ଭାରତବାସୀଙ୍କୁ ଗ୍ରାସ କଲା । ଏହା ଦେଖି ଯୋଗୀଋଷିମାନେ ଲୋକସମାଜର ଅତ୍ୟାଚାରରେ ନିପୀଡ଼ିତ ହୋଇ ଲୋକାଳୟରୁ ଯାଇ ନିଭୃତ ଗିରିଗୁହାରେ ଆଶ୍ରୟ ଗ୍ରହଣ କଲେ । ସାଧାରଣ ଲୋକେ ବିଷୟର ଦାସ ହୋଇ ସ୍ୱର୍ଗଭୋଗ କାମନା କରି ବ୍ରହ୍ମଜ୍ଞାନ ଓ ଆତ୍ମସମାଧି ପ୍ରଭୃତି ଭୁଲିଯାଇ କର୍ମକାଣ୍ଡର ଆଦର କରିବାକୁ ଲାଗିଲେ । ଭାରତ-ସନ୍ତାନଗଣ ଜଗତପିତାଙ୍କ ସେବା ପରିତ୍ୟାଗ କରି ଜଗତସେବାରେ ମନୋନିବେଶକଲେ ଏବଂ ଭୋଗାସକ୍ତ ଓ ଇନ୍ଦ୍ରିୟପରାୟଣହୋଇ ନାରାୟଣଙ୍କୁ ସଂସାରରୁ ବିଦାୟ ଦେଇ ସଂସାରସେବାକୁ ହିଁ ଶ୍ରେଷ୍ଠ ମନେ କରି ସ୍ୱାର୍ଥସେବାରେ ବ୍ରତୀ ହେଲେ । ଭାରତର ବୈଦିକ ପ୍ରତିଭା ଅସ୍ତମିତ ହୋଇଗଲା । ବ୍ରାହ୍ମଣ୍ୟ ଧର୍ମର ଉଜ୍ଜ୍ୱଳ ହେମପ୍ରଭା କାଳର କାଳିମାରେ ନଷ୍ଟପ୍ରଭ ହେବାକୁ ଲାଗିଲା । ଭାରତର ସର୍ବତ୍ର ଅଜ୍ଞାନ ଅନ୍ଧକାରରେ ଆବୃତ ହୋଇଗଲା ।

ଭାରତର ଏପରି ଅବସ୍ଥା ଦେଖି ଦେବତାମାନେ ଦୀର୍ଘ ନିଶ୍ୱାସ ତ୍ୟାଗ କଲେ । ଏହି ସମୟରେ ପୃଥିବୀର ଉତ୍ପାତ ଓ ବୈଦିକ ଧର୍ମର ବିଲୋପ ଦର୍ଶନ କରି ଜଗତ୍‌ପ୍ରସିଦ୍ଧ ନାରଦ ମୁନି ଏଥିରେ ପ୍ରତିକାର ମାନସରେ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ନିକଟରେ ଉପନୀତ ହୋଇ ଭାରତର ଅବସ୍ଥା ବିସ୍ତାରିତଭାବରେ ନିବେଦନ କଲେ । ବିଶ୍ୱସ୍ରଷ୍ଟା ବ୍ରହ୍ମା ନିଜେ କିଛି ପ୍ରତିକାର କରି ନ ପାରି ନାରଦଙ୍କ ସହିତ ଦେବାଧିଦେବ ମହାଦେବଙ୍କ ନିକଟରେ ଉପସ୍ଥିତ ହେଲେ । ଅନ୍ୟ ଦେବ-ଦେବୀମାନେ ମଧ୍ୟ ସେ ସମୟରେ ମହାଦେବଙ୍କ ନିକଟରେ ଉପସ୍ଥିତ ଥିଲେ । ନାରଦଙ୍କଠାରୁ ସମୁଦାୟ ବୃତ୍ତାନ୍ତ ଶ୍ରବଣ କରି ସମବେତ ଦେବମଣ୍ଡଳୀ ସିଦ୍ଧାନ୍ତ କଲେ ଯେ, କେବଳ ମହାଦେବହିଁ ଦେବଭୂମି ଭାରତର ଏ ଦୁର୍ଦ୍ଦଶା ମୋଚନ କରିବାକୁ ଏକମାତ୍ର ସମର୍ଥ । ସେ ଭାରତବର୍ଷରେ ଅବତୀର୍ଣ୍ଣ ହୋଇ ପୁନର୍ବାର

ବୈଦିକ ଧର୍ମର ଉଜ୍ଜଳପ୍ରଭାରେ ଜଗତ୍‌ବାସୀଙ୍କୁ ଉଭାସିତ କରି ଶାନ୍ତିଦାନ କରନ୍ତୁ ।

ମହାଦେବ ଏଥିରେ ସ୍ୱୀକୃତି ପ୍ରଦାନ କରି କାର୍ତ୍ତିକେୟଙ୍କୁ ଲକ୍ଷ୍ୟ କରି କହିଲେ, ''ବେଦୋକ୍ତ ଧର୍ମପ୍ରଚାର ଅଭିପ୍ରାୟରେ ମୁଁ ଭାରତବର୍ଷକୁ ଯାଉଛି । ମୋ କାର୍ଯ୍ୟର ସହାୟତା କରିବା ନିମିତ୍ତ ତୁମେ ଭଟ୍ଟପାଦ କୁମାରିଲ ରୂପରେ ଜନ୍ମଗ୍ରହଣ କରି ବୈଦିକ କର୍ମକାଣ୍ଡର ଉଦ୍ଧାର କର ।'' ଜୈମିନିଙ୍କର ଯେଉଁ ପୂର୍ବମିମାଂସା ଅଛି, ତାହାର ଟୀକା କର ।'' ଇନ୍ଦ୍ରଦେବଙ୍କୁ କହିଲେ, ''ତୁମେ ସୁଧନ୍ୱା ନାମକ ରାଜା ହୋଇ ସବୁଭାବରେ ମୋର ସହାୟତା କର ।'' ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କୁ କହିଲେ, ''ତୁମେ ମଣ୍ଡନ ମିଶ୍ର ରୂପରେ ଜନ୍ମଗ୍ରହଣ କରି ଭଟ୍ଟପାଦଙ୍କର ଓ ମୋର ସାହାଯ୍ୟକାରୀ ହୁଅ ।'' ସରସ୍ୱତୀ ଦେବୀଙ୍କୁ କହିଲେ, ''ତୁମେ ମଣ୍ଡନ ମିଶ୍ରଙ୍କ ପତ୍ନୀ ହୋଇ ଜନ୍ମଗ୍ରହଣ କର ଓ ମୋର ପ୍ରଚାରକାର୍ଯ୍ୟରେ ମଣ୍ଡନଙ୍କୁ ସାହାଯ୍ୟ କର ।'' ଏହା କହି ଶିବ ଯଥାସମୟରେ ଚିଦମ୍ବରମ୍ ନାମକ ଦେଶରେ ଆକାଶଲିଙ୍ଗ ନାମକ ଶିବ ମୂର୍ତ୍ତିରେ ଅଧିଷ୍ଠିତ ହେଲେ ।



# ଶଙ୍କରଙ୍କ ଜନ୍ମ

ଭାରତବର୍ଷ ଦୁଇ ଭାଗରେ ବିଭକ୍ତ । ବିନ୍ଧ୍ୟପର୍ବତର ଉତ୍ତରାଂଶ ଆର୍ଯ୍ୟାବର୍ତ୍ତ ନାମରେ ଖ୍ୟାତ ଓ ଦକ୍ଷିଣାଂଶର ନାମ ଦକ୍ଷିଣାବର୍ତ୍ତ ବା ଦକ୍ଷିଣାପଥ । ଯେତେବେଳେ ଆର୍ଯ୍ୟାବର୍ତ୍ତରେ ଜ୍ଞାନବିଜ୍ଞାନର ମହିମା ପ୍ରଚାରିତ ହେଉଥିଲା, ସେତେବେଳେ ଦାକ୍ଷିଣାତ୍ୟ ଭିଲ, ଦ୍ରାବିଡ଼ ଓ ଶବର ଜାତିର ଲୋକଙ୍କଦ୍ୱାରା ପରିପୂର୍ଣ୍ଣ ହୋଇ ଅଜ୍ଞାନ-ଅନ୍ଧକାରରେ ଆଚ୍ଛନ୍ନ ଥିଲା । କିନ୍ତୁ ଅବଶେଷରେ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ପରେ ଯେଉଁସବୁ ପ୍ରତିଭାଶାଳୀ ମନୀଷୀ ଭାରତରେ ଜନ୍ମଗ୍ରହଣ କରିଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହି ଦକ୍ଷିଣାପଥର ଅଧିବାସୀ । ବର୍ତ୍ତମାନ ମଧ୍ୟ ଯେଉଁସବୁ ଧର୍ମମତ ଭାରତବର୍ଷର ପ୍ରତି ଗୃହରେ ପ୍ରତିଷ୍ଠିତ, ସେହି ସବୁ ଧର୍ମମତ ମଧ୍ୟରୁ ଅଧିକାଂଶ ଏହି ଦକ୍ଷିଣାପଥରୁ ଉତ୍ପତ୍ତି ଲାଭ କରି ସମଗ୍ର ଭାରତବର୍ଷରେ ବିସ୍ତାର ଲାଭ କରିଅଛି । ଦାକ୍ଷିଣାତ୍ୟର କେରଳ ଜନପଦ ଅତି ପୂରାକାଳରୁ ପ୍ରସିଦ୍ଧ । ରାମାୟଣ, ମହାଭାରତ ଓ ଅନ୍ୟାନ୍ୟ ପୁରାଣାଦିରେ ଏହି ଜନପଦର ବହୁ ଉଲ୍ଲେଖ ଅଛି । ଦାକ୍ଷିଣାତ୍ୟରେ ଆର୍ଯ୍ୟବସତି ବିସ୍ତାରଲାଭ କରିବା ସମୟରେ କେରଳ ନାମକ ଗୋଟିଏ କ୍ଷତ୍ରିୟ ସମ୍ପ୍ରଦାୟ ପଶ୍ଚିମ-ସମୁଦ୍ର ଉପକୂଳରେ ପ୍ରଥମେ ବାସ କଲେ । ସେମାନଙ୍କ ନାମାନୁସାରେ ଏହି ଦେଶର ନାମ କେରଳ ହେଲା । ବର୍ତ୍ତମାନ ଗୋକର୍ଣ୍ଣଠାରୁ କୁମାରିକା ଅନ୍ତରୀ ପପର୍ଯ୍ୟନ୍ତ ଏହି ଦେଶ ବିସ୍ତୃତ । କେରଳ କହିଲେ ବର୍ତ୍ତମାନ ସାଧାରଣତଃ ମାଲବାର ଉପକୂଳକୁ ହିଁ ବୁଝାଉଅଛି । ଏହି ପ୍ରଦେଶରେ ବୃଷାଚଳ ବା ବୃଷ ପର୍ବତ ଅତି ବିଖ୍ୟାତ । ଏହାର ଅନତିଦୂରରେ 'କାଲଟି' ବା 'କାଲାଡ଼ି' ନାମକ ଗୋଟିଏ ପବିତ୍ର ଅଗ୍ରହାର ବା ବ୍ରାହ୍ମଣପ୍ରଧାନ ଗ୍ରାମ ବିଦ୍ୟମାନ । ସ୍ୱଚ୍ଛତୋୟା ପୂର୍ଣ୍ଣାନଦୀ ଯାହା ବର୍ତ୍ତମାନ 'ଆଲୋୟାରି' ନାମରେ ଅଭିହିତ, ତାହା ଅର୍ଦ୍ଧଚନ୍ଦ୍ରାକାରରେ ଏହି ଗ୍ରାମକୁ ବେଷ୍ଟନ କରି କୁଳକୁଳୁ ଧ୍ୱନିରେ ପ୍ରବାହିତ ହେଉଅଛି । ଏହା କାଲାଡ଼ି ଗ୍ରାମ ହିଁ ଶଙ୍କରଙ୍କ ଜନ୍ମଭୂମି ।

କେରଳ ଦେଶର ବ୍ରାହ୍ମଣମାନେ ଦୁଇ ଭାଗରେ ବିଭକ୍ତ—ନିମ୍ବୁତିରି ଓ ପରଦେଶୀ । ନିମ୍ବୁତିରିମାନେ ଏହି ଦେଶର ଆଦିମ ନିବାସୀ । ଭାରତର ନାନା ସ୍ଥାନରୁ ନାନା ଶ୍ରେଣୀର ବ୍ରାହ୍ମଣ କାର୍ଯ୍ୟ ଉପଲକ୍ଷ୍ୟରେ ଏ ସ୍ଥାନରେ ଯାଇ ବାସ କରି 'ପରଦେଶୀ' ନାମରେ ଆଖ୍ୟାତ ହୋଇଛନ୍ତି । ଭାରତର ନାନା ସ୍ଥାନରେ

ବହୁ ଶ୍ରେଣୀର ବ୍ରାହ୍ମଣ ବିଦ୍ୟମାନ । ସମସ୍ତଙ୍କର ଆଚାର ବ୍ୟବହାରରେ ସୌ ସାଦୃଶ୍ୟ ଥିଲେ ମଧ୍ୟ ଏହି ନିମ୍ବୁତ୍ତିର ବ୍ରାହ୍ମଣମାନଙ୍କର ଆଚାର ସହିତ ଅନ୍ୟ କୌଣସି ବ୍ରାହ୍ମଣଙ୍କ ଆଚାରର ସାଦୃଶ୍ୟ ନାହିଁ । ନମ୍ବୁତ୍ତିର ବ୍ରାହ୍ମଣମାନେ କହନ୍ତି ଯେ, ପରଶୁରାମଙ୍କ କର୍ତ୍ତୃକ ଆହତ ହୋଇ ଏମାନେ ଆର୍ଯ୍ୟାବର୍ତ୍ତ ପରିତ୍ୟାଗପୂର୍ବକ କେରଳ ଦେଶରେ ବସତି ସ୍ଥାପନ କରିଛନ୍ତି । କିନ୍ତୁ ଏମାନଙ୍କ ବ୍ୟବହାରରେ ଆର୍ଯ୍ୟବର୍ତ୍ତର ଅଧିକାଂଶ ଚିହ୍ନ ବିଦ୍ୟମାନ ନାହିଁ । ନମ୍ବୁତ୍ତିରିମାନେ ଚଉଷଠି ପ୍ରକାରର ବିଶେଷ ନିୟମ ପ୍ରତିପାଳନ କରନ୍ତି । ଦୈହିକ ପବିତ୍ରତା ରକ୍ଷା ପକ୍ଷରେ ଏହି ନିୟମଗୁଡ଼ିକ ଅତିଶୟ ଅନୁକୂଳ ହେଲେ ମଧ୍ୟ ଏହାଦ୍ୱାରା ଅନ୍ୟ ବର୍ଣ୍ଣମାନଙ୍କ ପ୍ରତି ବିଶେଷ ଅବଜ୍ଞା ପ୍ରଦର୍ଶିତ ହୋଇଥାଏ । ଆଶ୍ଚର୍ଯ୍ୟର କଥା, ଏକାନ୍ତ ରକ୍ଷଣଶୀଳ ଏହି ବ୍ରାହ୍ମଣ ସମ୍ପ୍ରଦାୟଙ୍କ ମଧ୍ୟରେ ଶଙ୍କରଙ୍କ ପରି ବିଶ୍ୱପ୍ରେମିକ ମହାପୁରୁଷଙ୍କର ଆବିର୍ଭାବ ସମ୍ଭବ ହୋଇଥିଲା । ଏହି ନିମ୍ବୁତ୍ତିରି ବ୍ରାହ୍ମଣମାନେ ଅନ୍ୟ କାହା ସହିତ ନ ମିଶି ପୃଥକ୍ ଭାବରେ ଅବସ୍ଥାନ କରନ୍ତି । ଏମାନେ ନିଷ୍ଠାବାନ୍, ସଦାଚାରସମ୍ପନ୍ନ ଏବଂ ବୈଦିକ ଶିକ୍ଷା ପ୍ରତି ବିଶେଷ ଅନୁରାଗୀ । ଭାରତବର୍ଷରେ କେବଳ ଏହିମାନେ ହିଁ ସମ୍ପୂର୍ଣ୍ଣଭାବରେ ବୈଦିକ ରୀତି ଅନୁସରଣ କରି ଚଳି ଆସୁଛନ୍ତି । ଏମାନେ ସମସ୍ତେ ରାଜଦତ୍ତବୃତ୍ତିଭୋଗୀ । ସଂସ୍କୃତ ଓ ମାତୃଭାଷା ବ୍ୟତୀତ ଅନ୍ୟ ଭାଷା ଏମାନେ ବ୍ୟବହାର କରନ୍ତି ନାହିଁ । ବ୍ରାହ୍ମମୁହୂର୍ତ୍ତରୁ ଉଠି ଏମାନେ ତୈଳାଭ୍ୟାଙ୍ଗ ନକରି ସ୍ନାନକରନ୍ତି । ତତ୍ପରେ ଦେବାଳୟପ୍ରାଙ୍ଗଣରେ ଗନ୍ଧଚନ୍ଦନାଦି ଗ୍ରହଣ କରି ମଧ୍ୟାହ୍ନପର୍ଯ୍ୟନ୍ତ ବେଦପାଠ କରନ୍ତି । ସାତ୍ତ୍ୱିକ ଆହାର ଶେଷରେ ବିଶ୍ରାମ ଓ ବୈଷୟିକ କର୍ମ କରନ୍ତି । ନିମ୍ବୁତ୍ତିରି ବ୍ରାହ୍ମଣ ପତ୍ନୀମାନଙ୍କୁ ଅନ୍ତର୍ଜନା କହନ୍ତି । ଏମାନେ ସତୀ, ସ୍ୱାଧ୍ୱୀ ଓ ପତିବ୍ରତା । ଏମାନେ ଅତି ଯତ୍ନର ସହିତ ପତିସେବା କରନ୍ତି ଓ କେବେହେଲେ ପରପୁରୁଷର ମୁଖାବଲୋକନ ସୁଦ୍ଧା କରନ୍ତି ନାହିଁ । ଏମାନେ ଗୃହରୁ ବହିର୍ଗତ ହେଲେ ତାଳପତ୍ର ଛତା ବ୍ୟବହାର କରନ୍ତି ଏବଂ ଜଣେ ଜଣେ ଦାସୀ ଏମାନଙ୍କ ସଙ୍ଗରେ ଯାଆନ୍ତି । ଅନ୍ୟ ପୁରୁଷ ଦର୍ଶନ କଲେ ଏମାନେ ଛତ୍ରଟିକୁ ଆବରଣ କରନ୍ତି । କୌଣସି କାରଣରୁ ଏମାନେ ଭ୍ରଷ୍ଟା ହେଲେ ସତୀତ୍ୱର ଚିହ୍ନ ତାଳପତ୍ର ଛତାଟି ଏମାନଙ୍କଠାରୁ କାଢ଼ି ନିଆଯାଏ ଏବଂ ଗୃହରୁ ବହିଷ୍କାରକରି ଦିଆଯାଏ । ସ୍ତ୍ରୀ ବା ପୁରୁଷ ଭ୍ରଷ୍ଟହେଲେ ସମାଜଚ୍ୟୁତ ହୁଅନ୍ତି ଏବଂ ଅସ୍ପୃଶ୍ୟ ବୋଲି ପରିଗଣିତ ହୁଅନ୍ତି । କେହି ଏମାନଙ୍କର ମୁଖାବଲୋକନ କରିନ୍ତିନାହିଁ ।

ଆତ୍ମୀୟମାନେ ସେମାନଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ ଓ ବ୍ରାହ୍ମଣଭୋଜନ କରାଇ ଶୁଦ୍ଧି ହୁଅନ୍ତି । ପଞ୍ଚମ ବର୍ଷରୁ ଅଷ୍ଟମ ବର୍ଷ ମଧ୍ୟରେ ବାଳକକୁ ଉପନୟନ ଦାନ ଓ ଗୁରୁଗୃହକୁ ପ୍ରେରଣ କରାଯାଏ । ସେଠାରେ ସେ ସମଗ୍ର ବେଦାଭ୍ୟାସରେ ଯତ୍ନଶୀଳ ହୁଅନ୍ତି । ବ୍ରାହ୍ମଚର୍ଯ୍ୟପାଳନ ପରେ ଯଥାଶକ୍ତି ଗୁରୁଦକ୍ଷିଣା ଦିଆଯାଏ । ଏମାନେ ଗୋଟିଏ ଉଦ୍ଦେଶ୍ୟରେ ଜଳ ଆଣି ଅନ୍ୟ ଉଦ୍ଦେଶ୍ୟରେ ତାହା ବ୍ୟବହାର କରନ୍ତି ନାହିଁ । ଏମାନେ ମାଦକଦ୍ରବ୍ୟ ସେବନକରନ୍ତି ନାହିଁ । ଜଣେ ବ୍ୟକ୍ତି ବିଷ୍ଣୁ ଓ ଶିବ ବା ଅନ୍ୟ କୌଣସି ଦୁଇ ଦେବତାଙ୍କର ଉପାସନା କରନ୍ତି ନାହିଁ । ଏହିପରି ବହୁବିଧ ନିୟମ ନିମ୍ବୁତିରି ବ୍ରାହ୍ମଣମାନେ ପ୍ରତିପାଳନ କରନ୍ତି ।

ପୂର୍ବକଥିତ ଏହି କାଲାଡ଼ି ଗ୍ରାମରେ ନିମ୍ବୁତିରି ବ୍ରାହ୍ମଣବଂଶରେ ବିଦ୍ୟାଧିରାଜ ନାମକ ଜଣେ ବିଖ୍ୟାତ ବ୍ରାହ୍ମଣ ବାସ କରୁଥିଲେ । ସେ ଗ୍ରାମ୍ୟ ନଦୀତୀରବର୍ତ୍ତୀ ପ୍ରାଚୀନ ମନ୍ଦିରରେ ପ୍ରତ୍ୟହ ମହାଦେବଙ୍କର ଉପାସନା କରନ୍ତି । ତାଙ୍କର ଜନ୍ମାନ୍ତରୀଣ ପୁଣ୍ୟ ପ୍ରଭାବରୁ ଗୋଟିଏ ପୁତ୍ର ଜାତ ହେଲା । ସେହି ଶିଶୁକୁ ଦେଖି ମନେହେଲା, ଯେପରି ତା'ର ଅଭ୍ୟନ୍ତରରେ ବ୍ରହ୍ମଜ୍ୟୋତିଃ ଦେଦୀପ୍ୟମାନ ରହିଅଛି । ଶିଶୁର ଯଥାବିଧି ସଂସ୍କାର ସମ୍ପନ୍ନ କରି ବିଦ୍ୟାଧିରାଜ ତାହାର ନାମ ଶିବଗୁରୁ ଦେଲେ । ଉପନୟନ ବା ବେଦାରମ୍ଭ ପରେ ଶିବଗୁରୁ ବ୍ରହ୍ମଚର୍ଯ୍ୟ ପ୍ରତିପାଳନ କରିବା ନିମିତ୍ତ ଗୁରୁଗୃହରେ ବାସ କରିବା ପାଇଁ ପ୍ରେରିତ ହେଲେ । ସେ ଗୁରୁଶୁଶ୍ରୂଷାରେ ରତ ରହି ଭିକ୍ଷାଲବ୍ଧ ଅନ୍ନରେ ଜୀବନରକ୍ଷା କରିବାକୁ ଲାଗିଲେ । ପୂର୍ବାହ୍ନ ଓ ଅପରାହ୍ନରେ ଯଥାବିଧି ହୋମକ୍ରିୟାଦିର ସମାପନ କରି ସେ ବେଦାଧ୍ୟୟନରେ ଅଭିନିବିଷ୍ଟ ରହୁଥିଲେ ଏବଂ ବେଦର ସୂକ୍ଷ୍ମ ଅର୍ଥ ବିଚାର କରୁଥିଲେ । କାରଣ ବେଦ ଏକାନ୍ତ ଦୁର୍ବୋଧ; ବିନା ବିଚାରରେ ତାହାର ଅର୍ଥବୋଧ ହୁଏ ନାହିଁ ।

ବେଦାଧ୍ୟୟନ ସମାପନ ହେବାପରେ ଶିଷ୍ୟବତ୍ସଳ ଅଧ୍ୟାପକ ଶିବଗୁରୁଙ୍କୁ କହିଲେ, "ବତ୍ସ ! ତୁମେ ମୋ ନିକଟରୁ ଷଡ଼ାଙ୍ଗବେଦ ଅଧ୍ୟୟନ କରିଅଛ ଏବଂ ଏହାର ଅର୍ଥବିଚାରରେ ମଧ୍ୟ ବହୁ କାଳ ଅତିବାହିତ କରିଅଛ । ତୁମେ ମୋ ପ୍ରତି ଏକାନ୍ତ ଅନୁରକ୍ତ । ତଥାପି ମୁଁ ଆଦେଶ କରୁଛି, ବର୍ତ୍ତମାନ ତୁମେ ଗୃହକୁ ପ୍ରତ୍ୟାବର୍ତ୍ତନ କର । ତୁମ ପିତା ଓ ବନ୍ଧୁବାନ୍ଧବମାନେ ତୁମ ଦର୍ଶନନିମିତ୍ତ ଉତ୍କଣ୍ଠିତ ହୋଇ ରହିଛନ୍ତି । ଗୃହକୁ ଗମନ କରି ତୁମେ ସେମାନଙ୍କର ଆନନ୍ଦବର୍ଦ୍ଧନ କର । ବତ୍ସ ! ଯଥାସମୟରେ ଭୂମିରେ ବୀଜବପନ କଲେ ସେଥିରୁ ଯେପରି ଫଳ ଉତ୍ପନ୍ନ

ହୁଏ, ବିପରୀତ ସମୟରେ ଉକ୍ତ ବୀଜ କଦାପି ସେପରି ଫଳ ପ୍ରଦାନ କରେ ନାହିଁ । ତରୁଣ ବୟସ ହିଁ ବିବାହର ଉପଯୁକ୍ତ ସମୟ । ଏହି ସମୟରେ ପରିଣୟ କଲେ ଉପଯୁକ୍ତ ସନ୍ତାନାଦି ଲାଭ ହୁଏ ଏବଂ ତଦ୍ୱାରା ପୈତୃକ ଋଣରୁ ମୁକ୍ତିଲାଭ ହୋଇଥାଏ । ସନ୍ତାନର ଜନ୍ମପରଠାରୁ ପିତା-ମାତା କେବଳ ବର୍ଷ ଗଣନା କରୁଥାନ୍ତି । ସେମାନଙ୍କର ସ୍ୱଭାବ ଏପରି ଯେ, ପୁତ୍ରକୁ ବିବାହବନ୍ଧନରେ ଆବଦ୍ଧ କରିବାକୁ ସର୍ବଦା ବ୍ୟାକୁଳ ହୁଅନ୍ତି । କାରଣ ପୁତ୍ରର ସନ୍ତାନ ଉତ୍ପାଦନ ନ ହେଲେ ପିତୃପୁରୁଷଙ୍କର ପିଣ୍ଡଲୋପର ସମ୍ଭାବନା ଥାଏ । ବୈଦିକ ଯଜ୍ଞ ବିଧିର ବିଚାରଦ୍ୱାରା ମଧ୍ୟ ଏହି ଅର୍ଥ ପରିଜ୍ଞାତ ହୁଏ ଯେ, ପତ୍ନୀ ସହିତ ମିଳିତ ହୋଇ ଧର୍ମକାର୍ଯ୍ୟର ଅନୁଷ୍ଠାନ କରିବା ବିଧେୟ ।'' ଶିବଗୁରୁ ଗୁରୁଦେବଙ୍କ ମୁଖରୁ ଏହା ଶ୍ରବଣକରି କହିଲେ, ''ଗୁରୋ ! ଆପଣ ଯାହା କହିଲେ, ତାହା ସତ୍ୟ; କିନ୍ତୁ ଗୁରୁଗୃହରେ ବେଦାଧ୍ୟୟନ ପରିସମାପ୍ତ ହେବା ପରେ ଯେ ଗୃହୀ ହେବାକୁ ପଡ଼ିବ, ଅନ୍ୟ ଆଶ୍ରମୀ ହେବାକୁ ହେବ ନାହିଁ, ଏପରି କୌଣସି ନିୟମ ନାହିଁ । ବ୍ରହ୍ମଚାରୀ ଯଦି ସଂସାରପ୍ରତି ବୈରାଗ୍ୟଯୁକ୍ତ ହୁଅନ୍ତି, ତେବେ ସେ ସନ୍ନ୍ୟାସ ଆଶ୍ରୟ ଗ୍ରହଣ କରିପାରନ୍ତି । କିନ୍ତୁ ଯଦି ତାଙ୍କର ବିଷୟବାସନା ଥାଏ, ତେବେ ସେ ଗୃହସ୍ଥ ହେବା ବିଧେୟ । ଏହି ପନ୍ଥା ଚିରସତ୍ୟ—ରାଜପଥ ପରି ସର୍ବଦା ବିଦ୍ୟମାନ । ଗୁରୁଦେବ ! ମୁଁ ନୈଷ୍ଠିକ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରିବି । ଯାବଜ୍ଜୀବନ ଆପଣଙ୍କ ନିକଟରେ ଅବସ୍ଥାନ କରି ଅଧୀତ ବେଦର ବାରମ୍ବାର ଅନୁଶୀଳନ କରିବି, ଯହିଁରେ ମୋ ସ୍ମୃତିପଟରୁ ତାହା କେବେହେଲେ ଅନ୍ତର୍ହିତ ନ ହେବ । ଯେ ପର୍ଯ୍ୟନ୍ତ ଦାରପରିଗ୍ରହର ସୁଖ ହୃଦୟରେ ଅନୁଭୂତ ହେଉଥାଏ, ସେପର୍ଯ୍ୟନ୍ତ ଏହା ସୁଖପ୍ରଦ ବୋଧହୁଏ; କିନ୍ତୁ ପରେ ତାହା କ୍ରମେ ବିରସ ହୋଇପଡ଼େ । ଯଦି କହନ୍ତି ଯେ, ଗୃହସ୍ଥାଶ୍ରମରେ ରହି ଯଥାବିଧି ଯଜ୍ଞ କଲେ ସ୍ୱର୍ଗଫଳ ଲାଭ ହୁଏ, ତଥାପି ତାହା ମଧ୍ୟ ସମ୍ଭବ ନୁହେଁ । କାରଣ ସଂସାରରେ ରହି ସମୁଦାୟ ବିଧି ପାଳନ କରିବା ଏକପ୍ରକାର ଅସମ୍ଭବ । ଗୃହସ୍ଥ ଯଦି ଧନହୀନ ହୁଅନ୍ତି, ତାହାହେଲେ ସେ ଯଥାବିଧି ଦାନାଦି କରିବାକୁ ଅଥବା ବିଷୟଭୋଗ କରିବାକୁ ସମର୍ଥ ହୁଅନ୍ତି ନାହିଁ । ଫଳରେ ତାଙ୍କୁ ନରକଯନ୍ତ୍ରଣା ଭୋଗ କରିବାକୁ ପଡ଼େ । ଆଉ ଯାହାଙ୍କର ସଂସାର ଧନ୍ୟଧାନ୍ୟରେ ପରିପୂର୍ଣ୍ଣ ହୋଇଥାଏ, ସେ ମୋହପ୍ରଯୁକ୍ତ ହୋଇ ଏହି ଅବସ୍ଥାକୁ ପୂର୍ଣ୍ଣ ମନେକରନ୍ତି ନାହିଁ । ସେ ମଧ୍ୟ ବିଷୟର ଅଭାବ ବୋଧକରନ୍ତି ।

ତେଣୁ ଗୃହସ୍ଥମାନେ ଏହିସବୁ କାରଣରୁ ଦାରୁଣ ଯନ୍ତ୍ରଣା ଅନୁଭବ କରନ୍ତି ।''

ଗୁରୁ-ଶିଷ୍ୟଙ୍କର ଏହିପରି କଥୋପକଥନ ସମୟରେ ଶିବଗୁରୁଙ୍କର ପିତା ପୁତ୍ରକୁ ସ୍ୱଗୃହକୁ ଘେନିଯିବାପାଇଁ ଉପସ୍ଥିତ ହେଲେ । ସେ ବହୁ ଅନୁନୟପୂର୍ବକ ପୁତ୍ରଦ୍ୱାରା ତଦୀୟ ଗୁରୁଦେବଙ୍କୁ ପ୍ରଚୁର ଦକ୍ଷିଣା ପ୍ରଦାନ କରାଇଲେ ଏବଂ ଗୁରୁଦେବଙ୍କ ଆଦେଶକ୍ରମେ ପୁତ୍ରକୁ ଘେନି ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । କୃତବିଦ୍ୟ ଶିବଗୁରୁ ଗୃହରେ ପ୍ରବେଶ କରି ପ୍ରଥମେ ଜନନୀଙ୍କର ଚରଣ ବନ୍ଦନା କଲେ । ମାତା ମଧ୍ୟ ସ୍ନେହରସହିତ ପୁତ୍ରକୁ ଆଲିଙ୍ଗନ କରି ପୁତ୍ରବିରହଜନିତ ଖେଦ ଦୂର କଲେ । ଶିବଗୁରୁ ବହୁକାଳ ପରେ ଗୃହକୁ ପ୍ରତ୍ୟାବର୍ତ୍ତନ କରିଛନ୍ତି ଶୁଣି ବନ୍ଧୁମାନେ ତାଙ୍କୁ ଦେଖିବାପାଇଁ ଉପସ୍ଥିତ ହେଲେ । ଶିବଗୁରୁ ବିନୀତ ବାକ୍ୟଦ୍ୱାରା ସେମାନଙ୍କୁ ଯଥାବିଧି ସମ୍ମାନ ପ୍ରଦର୍ଶନ କଲେ । ବିଦ୍ୟାଧିରାଜ ପୁତ୍ରର ଶାସ୍ତ୍ରରେ କିପରି ସଂସ୍କାର ଜାତ ହୋଇଅଛି, ତାହା ଜାଣିବାକୁ ଇଚ୍ଛା କରି ବେଦ, କଣାଦ (ବୈଶେଷିକ ଦର୍ଶନର ସୂତ୍ରକାର), ଗୌତମ (ନ୍ୟାୟଦର୍ଶନର ସୂତ୍ରକାର), କପିଳ (ସାଂଖ୍ୟଦର୍ଶନର ପ୍ରବର୍ତ୍ତକ) ପ୍ରଭୃତି ଦର୍ଶନ, ଭଟ୍ଟପାଦ କୁମାରିଲ ଭଟ୍ଟ (ମୀମାଂସାଦର୍ଶନର ବାର୍ତ୍ତିକ ରଚୟିତା)ଙ୍କ ସିଦ୍ଧାନ୍ତ ଏବଂ ପ୍ରଭାକରଙ୍କର ମତ ସଂକ୍ରାନ୍ତୀୟ ପ୍ରଶ୍ନ କଲେ । ଶିବଗୁରୁ ଆନନ୍ଦିତ ହୋଇ ବିନୟ ମଧୁର ବାକ୍ୟରେ ଏହି ସମସ୍ତର ଉତ୍ତର ପ୍ରଦାନ କରିବାକୁ ଲାଗିଲେ । ଶାସ୍ତ୍ରରେ ପୁତ୍ରର ଅସାଧାରଣ ନୈପୁଣ୍ୟ ଦେଖି ପିତା ଅତିଶୟ ସନ୍ତୁଷ୍ଟ ହେଲେ । ଶିବଗୁରୁଙ୍କ ଗୁଣରେ ଆକୃଷ୍ଟ ହୋଇ ଅନେକ ବ୍ରାହ୍ମଣ ତାଙ୍କୁ କନ୍ୟା ସଂପ୍ରଦାନ କରିବା ନିମିତ୍ତ ବିଦ୍ୟାଧିରାଜଙ୍କ ଗୃହକୁ ଯାତାୟାତ କରିବାକୁ ଲାଗିଲେ । ଅନେକେ ବହୁ ଅର୍ଥ ଦାନ କରିବାକୁ ମଧ୍ୟ ପ୍ରସ୍ତୁତ ଥିଲେ । କିନ୍ତୁ ବିଦ୍ୟାଧିରାଜ ବିଶେଷ ପରୀକ୍ଷା କରି ମଗ ପଣ୍ଡିତ (କେହି କେହି ମଘ କହନ୍ତି) ନାମକ ଜନୈକ ପବିତ୍ରକୁଳୋତ୍ପନ୍ନ ବ୍ରାହ୍ମଣଙ୍କ ଠାରୁ କନ୍ୟା ଗ୍ରହଣ କରିବାକୁ ସମ୍ମତ ହେଲେ । ମଗ ପଣ୍ଡିତଙ୍କ ସ୍ତ୍ରୀଙ୍କର ନାମ କାମାକ୍ଷୀ । ସ୍ୱାମୀ ସ୍ତ୍ରୀ ଉଭୟେ ଚିଦମ୍ବରେଶ୍ୱର ଶିବଙ୍କର ଆରାଧନା କରି ପରମ ଗୁଣବତୀ 'ବିଶିଷ୍ଟା' ନାମ୍ନୀ କନ୍ୟାରତ୍ନ ଲାଭ କରିଥିଲେ । ସେହି ମଗ ପଣ୍ଡିତଙ୍କର କନ୍ୟା ବିଶିଷ୍ଟା ଦେବୀଙ୍କ ସହିତ ଶିବଗୁରୁଙ୍କର ପରିଣୟ ସମ୍ପନ୍ନ ହେଲା । ପରମଜ୍ଞାନୀ ବିଦୂଷୀ ବିଶିଷ୍ଟା ଦେବୀ ନିଜର ସ୍ୱାମୀ ଏବଂ ଆକାଶ ଲିଙ୍ଗେଶ୍ୱର ଶିବ ଉଭୟଙ୍କୁ ଅଭେଦ ଜ୍ଞାନରେ ଭାବି ଗୃହସଂସାର କରିବାକୁ ଲାଗିଲେ । ବିବାହ ପରେ ଶିବଗୁରୁ ବିବିଧ ଯାଗଯଜ୍ଞ,

ଶ୍ରାଦ୍ଧତର୍ପଣ, ଅତିଥି ସେବା, ସତ୍‌ପାତ୍ରରେ ଦାନ ପ୍ରଭୃତି ନାନା ପୁଣ୍ୟକାର୍ଯ୍ୟଦ୍ୱାରା ସମୟ ଅତିବାହିତ କଲେ । ବେଦପାଠ, ବେଦାଧ୍ୟୟନ ଏବଂ ପରୋପକାର ତାଙ୍କ ଜୀବନର ବ୍ରତ ହେଲା । ରୂପ ଗୁଣ ଥାଇ ମଧ୍ୟ ସେ କ୍ଷମାଶୀଳ ଥିଲେ । ଗର୍ବ କାହାକୁ କହନ୍ତି, ସେ ତାହା ଜାଣୁ ନ ଥିଲେ । ବିନୟ-ନମ୍ର ବ୍ୟବହାରରେ ସେ ସର୍ବଦା ଜନସାଧାରଣଙ୍କୁ ପରିତୁଷ୍ଟ କରୁଥିଲେ । ଯଥାସମୟରେ ଶିବଗୁରୁଙ୍କର ପିତୃବିୟୋଗ ହେଲା ।

ବୈଧକର୍ମର ଅନୁଷ୍ଠାନରେ ଶିବଗୁରୁଙ୍କର ସମୟ ଅତିବାହିତ ହେବାକୁ ଲାଗିଲା । କ୍ରମେ ସେ ବାର୍ଦ୍ଧକ୍ୟରେ ଉପନୀତ ହେଉଥିଲେ ମଧ୍ୟ ପୁତ୍ରମୁଖ ଦର୍ଶନ କରିପାରିଲେ ନାହିଁ । ସୁତରାଂ ଶିବଗୁରୁ ଯେଉଁ ଉଦ୍ଦେଶ୍ୟରେ ବିବାହ କରିଥିଲେ, ତାହା ସିଦ୍ଧ ହେଲା ନାହିଁ । ଏଥିପାଇଁ ନିଜେ ଶିବଗୁରୁ ବ୍ୟଥିତ ହୋଇ ବିଶିଷ୍ଟା ଦେବୀଙ୍କୁ କହିଲେ, ''ପ୍ରିୟେ ! ଆମର ଶାରୀରିକ ସାମର୍ଥ୍ୟ ଓ ବୟସର ଅର୍ଦ୍ଧାଧିକ କାଳ ଅତୀତ ହୋଇଗଲା । ଅଥଚ ଇହଲୋକର ସୁଖକର ପୁତ୍ରମୁଖ ଏପର୍ଯ୍ୟନ୍ତ ଆମେ ଅବଲୋକନ କରିପାରିଲେ ନାହିଁ । ନିରନ୍ତର ଚିନ୍ତା କରି ମଧ୍ୟ ପୁତ୍ରଲାଭର କୌଣସି ଉପାୟ ମୁଁ ନିର୍ଦ୍ଧାରଣ କରିପାରୁ ନାହିଁ ।'' ପତିଙ୍କର ବାକ୍ୟ ଶ୍ରବଣକରି ବିଶିଷ୍ଟା ଦେବୀ କହିଲେ, ''ଚାଲ, ଆମେ ଦେବ ଦେବ ମହାଦେବଙ୍କର ଶରଣାପନ୍ନ ହେବା । ତାଙ୍କର ସେବା କଲେ ସେ ନିଶ୍ଚୟ ଆମର ଅଭୀଷ୍ଟ ପୂରଣ କରିବେ । କାରଣ, ଭକ୍ତର ଅଭୀଷ୍ଟ ସିଦ୍ଧି କରିବାପାଇଁ ମହାଦେବ କଳ୍ପବୃକ୍ଷ ସଦୃଶ ।'' ଏହିପରି ଆଲୋଚନା ପରେ ସେମାନେ କେରଳାଧିପତି ରାଜଶେଖରଙ୍କ ପ୍ରତିଷ୍ଠିତ ମହାଜାଗ୍ରତ ଚନ୍ଦ୍ରମୌଳିଶ୍ୱର ଶିବଙ୍କ ଆରାଧନା କଲେ । ଭଗବାନ ଆଶୁତୋଷ ସନ୍ତୁଷ୍ଟ ହେଲେ । ବ୍ରତଧାରଣର ଏକ ବର୍ଷ ପୂର୍ଣ୍ଣ ନ ହେଉଣୁ ଶିବଗୁରୁ ସ୍ୱପ୍ନ ଦେଖିଲେ ଯେ, ଚନ୍ଦ୍ରମୌଳୀଶ୍ୱର ଶିବ ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ କହୁଛନ୍ତି, ବତ୍ସ ଶିବଗୁରୁ ! ମୁଁ ତୋର ଅଭୀଷ୍ଟ ପୂରଣ କରିବାନିମିତ୍ତ ଉପସ୍ଥିତ ହୋଇଅଛି, ବର ପ୍ରାର୍ଥନା କର ।'' ଶିବଗୁରୁ କହିଲେ, ''ମୁଁ ପୁତ୍ରକାମନାରେ ଆପଣଙ୍କ ଆରାଧନା କରିଅଛି । ଆପଣ ଯେବେ ପ୍ରସନ୍ନ ହୋଇଛନ୍ତି, ତେବେ ଆପଣଙ୍କସଦୃଶ ଗୋଟିଏ ଦୀର୍ଘାୟୁ ସର୍ବଜ୍ଞ ପୁତ୍ର ମୋତେ ପ୍ରଦାନ କରନ୍ତୁ ।'' ଭଗବାନ ଶିବ କହିଲେ—''ବତ୍ସ ! ପୁତ୍ର ସର୍ବଜ୍ଞ ହେଲେ ଦୀର୍ଘାୟୁ ହେବ ନାହିଁ, ଦୀର୍ଘାୟୁ

ହେଲେ ସର୍ବଜ୍ଞ ହେବ ନାହିଁ । ବର୍ତ୍ତମାନ ତୁମେ ସର୍ବଜ୍ଞ ପୁତ୍ର ଚାହିଁ କି ଦୀର୍ଘାୟୁ ପୁତ୍ର ଚାହିଁ ?'' ବୁଦ୍ଧିମାନ୍ ଶିବଗୁରୁ ସର୍ବଜ୍ଞ ପୁତ୍ର ବାଞ୍ଛନୀୟ ଭାବି କହିଲେ, ''ଭଗବାନ୍ ! ମୋତେ ସର୍ବଜ୍ଞ ପୁତ୍ର ପ୍ରଦାନ କରନ୍ତୁ ।'' ଭଗବାନ୍ ଭବାନୀପତି ''ତଥାସ୍ତୁ'' କହି ଶିବଗୁରୁଙ୍କୁ ଆଶୀର୍ବାଦ କଲେ ଏବଂ କହିଲେ, ''ବତ୍ସ ଶିବଗୁରୁ ! ଯାଅ, ମୁଁ ତୁମରି ପୁତ୍ରରୂପରେ ଅବତୀର୍ଣ୍ଣ ହେବି ।'' ଶିବଗୁରୁ ଆନନ୍ଦରେ ଅଧୀର ହୋଇ ଭଗବତ୍‌ଚରଣରେ ପୁନରାୟ ପ୍ରଣାମ କଲେ । ପ୍ରଣାମ କରିସାରିବା ସଙ୍ଗେ ସଙ୍ଗେ ଶିବଗୁରୁଙ୍କର ନିଦ୍ରାଭଙ୍ଗ ହେଲା । ଅନ୍ତର୍ଯ୍ୟାମୀ ଭଗବାନ୍ ଅନ୍ତରାତ୍ମାରେ ମିଶିଗଲେ । ପତ୍ନୀଙ୍କୁ ଜାଗ୍ରତ କରାଇ ଶିବଗୁରୁ ସ୍ୱପ୍ନବୃତ୍ତାନ୍ତ ବର୍ଣ୍ଣନା କଲେ । ଉଭୟେ ଭଗବତ୍‌ଚରଣରେ ପ୍ରଣାମ କରି ପୂର୍ବପରି ଶିବଧ୍ୟାନରେ ତନ୍ମୟ ହୋଇ ରହିଲେ । ଜଗତ ସେମାନଙ୍କୁ ଯେପରି ଶିବମୟ ବୋଧହେଲା । ଏକ ବର୍ଷ ଅତୀତ ନ ହେଉଣୁ ବିଶିଷ୍ଟା ଦେବୀଙ୍କର ଗୋଟିଏ ଅନୁରୂପ ରୂପଲାବଣ୍ୟବିଶିଷ୍ଟ ପୁତ୍ରରତ୍ନ ଲାଭ ହେଲା । ଶିବଗୁରୁ ପୁତ୍ରମୁଖ ନିରୀକ୍ଷଣ କରି ସୁଖ-ସାଗରରେ ନିମଗ୍ନ ହେଲେ । ସେ ଜାତକର୍ମ ପ୍ରଭୃତି ବୈଧ ଆଚାର ସମ୍ପନ୍ନପୂର୍ବକ ପୁତ୍ରର ମଙ୍ଗଳକାମନା କରି ବହୁ ଧେନୁ ଓ ସୁବର୍ଣ୍ଣାଦି ବ୍ରାହ୍ମଣମାନଙ୍କୁ ବିତରଣ କଲେ । ଜ୍ୟୋତିର୍ବିଦ ପଣ୍ଡିତଗଣ ପୁତ୍ରର ଜନ୍ମକୁଣ୍ଡଳୀ ଆଲୋଚନା କରି ଶିବଗୁରୁଙ୍କୁ କହିଲେ— ଆପଣଙ୍କର ଏହି ପୁତ୍ର ସର୍ବଜ୍ଞ ହେବ ଓ ଅଭିନବ ଶାସ୍ତ୍ର ପ୍ରଣୟନ କରିବ । ଯେପର୍ଯ୍ୟନ୍ତ ପୃଥିବୀ ବିଦ୍ୟମାନ ଥିବ, ଏହାର କୀର୍ତ୍ତି ଧରାପୃଷ୍ଠରେ ଦେଦୀପ୍ୟମାନ ହୋଇ ରହିବ । ଏହା ଶୁଣି ଶିବଗୁରୁ ଆନନ୍ଦରେ ଏପରି ଅଧୀର ହୋଇଗଲେ ଯେ, ପୁତ୍ରର ଆୟୁ ସମ୍ବନ୍ଧରେ ସେ ପ୍ରଶ୍ନ କରିବାକୁ ଭୁଲିଗଲେ । ଶକାବ୍ଦ ୬୦୮ ଅର୍ଥାତ୍ ୬୮୬ ଖ୍ରୀଷ୍ଟାବ୍ଦ ବୈଶାଖ ଶୁକ୍ଳ ତୃତୀୟା (ଅକ୍ଷୟ ତୃତୀୟା) ଦିନ ଦିବା ୧୨ ଘଟିକା ସମୟରେ ଶଙ୍କର ପୃଥିବୀରେ ଅବତୀର୍ଣ୍ଣ ହେଲେ । ଜନ୍ମପତ୍ରିକା ଅନୁସାରେ ଦେଖାଗଲା, ବାଳକର କର୍କଟ ଲଗ୍ନରେ ଜନ୍ମ । ଚନ୍ଦ୍ର, ରବି, ଗୁରୁ ଓ ଶନିଗ୍ରହ ଉଚ୍ଚସ୍ଥ । ଶୁକ୍ର ଓ ବୁଧ ମେଷରେ ଅବସ୍ଥିତ । ମଙ୍ଗଳ ଓ କେତୁ ସିଂହରେ ଏବଂ ରାହୁ କୁମ୍ଭରେ ଅବସ୍ଥାନ କରୁଛନ୍ତି । ଶୁଭାଶୁଭ ବିଚାର କରି ଶିବଗୁରୁ ପୁତ୍ରର ଅବତାର ଯୋଗ ଦେଖି ତାଙ୍କର ସ୍ୱପ୍ନ ଯେ ସଫଳ ହୋଇଛି, ଭଗବାନ ଶିବ ସ୍ୱୟଂ ଯେ ତାଙ୍କ ପୁତ୍ରରୂପରେ ଅବତୀର୍ଣ୍ଣ ହୋଇଛନ୍ତି, ତାହା ଅନୁଭବ କରି ପୁତ୍ରର ନାମ ରଖିଲେ 'ଶଙ୍କର' ।

ବାଳକ ଶଙ୍କର ଶୈଶବକାଳରୁ ଶାନ୍ତ ପ୍ରକୃତିବିଶିଷ୍ଟ, ଅତିଶୟ ତୀକ୍ଷ୍ଣବୁଦ୍ଧିସମ୍ପନ୍ନ ଓ ଶ୍ରୁତିଧର ଥିଲେ । ପିତା-ମାତାଙ୍କ ନିକଟରୁ ଯେତେବେଳେ ସେ ଯାହା ଶୁଣୁଥିଲେ, ସଙ୍ଗେ ସଙ୍ଗେ ତାହା ତାଙ୍କର କଣ୍ଠସ୍ଥ ହୋଇଯାଉଥିଲା । ଶଙ୍କର ପ୍ରଥମ ବର୍ଷ ପରେ ମାତୃଭାଷା ଓ ଦ୍ୱିତୀୟ ବର୍ଷ ପରେ ବର୍ଣ୍ଣମାଳା ଶିକ୍ଷା କରିଥିଲେ । କ୍ରମେ ବ୍ୟାକରଣ, କାବ୍ୟ, ପୁରାଣ ଆଦି ଶୁଣିବାକୁ ତାଙ୍କର ସ୍ପୃହା ଜନ୍ମିଲା । ସେ ଥରେ ଶୁଣନ୍ତି, ତାହା ଆଉ ବିସ୍ମୃତ ହୁଅନ୍ତି ନାହିଁ । ଅବିକଳ ପାଠ କରିପାରନ୍ତି । ତୃତୀୟ ବର୍ଷରେ ସେ ନିଜ ମାତୃଭାଷା ମାଲୟାଲମରେ ଗ୍ରନ୍ଥ ଅଧ୍ୟୟନ କରିବାକୁ ସମର୍ଥ ହୋଇଥିଲେ । ଏହି ବର୍ଷ ତାଙ୍କର ଚୂଡ଼ାକରଣକ୍ରିୟା ସମ୍ପନ୍ନ ହେଲା । କିନ୍ତୁ ଉପନୟନ ହେବା ପୂର୍ବରୁ ତାଙ୍କର ପିତା ଶିବଗୁରୁ କାଳଗ୍ରାସରେ ପତିତ ହେଲେ । ଶୋକାତୁରା ଜନନୀ ବିଶିଷ୍ଟା ଦେବୀ ପୁତ୍ରକୁ ସଙ୍ଗରେ ଧରି ପିତ୍ରାଳୟକୁ ଗମନ କଲେ । ଅନନ୍ତର ପୁତ୍ରର ପଞ୍ଚମ ବର୍ଷ ବୟଃକ୍ରମକାଳରେ ଶଙ୍କରଜନନୀ ପିତୃଗୃହରୁ ପ୍ରତ୍ୟାଗମନ କରି ଜ୍ଞାତିବନ୍ଧୁଙ୍କ ସହିତ ଶୁଭ ମୁହୂର୍ତ୍ତରେ ଉପନୟନ କାର୍ଯ୍ୟ ସମ୍ପନ୍ନ କଲେ । ଉପନୟନ ପରଠାରୁ ଶଙ୍କର ବେଦାଭ୍ୟାସ ଅର୍ଥାତ୍ ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ ଓ ଜ୍ୟୋତିର୍ବିଦ୍ୟା—ଏହି ଷଡ଼ାଙ୍ଗ ସହିତ ଚତୁର୍ବେଦ ଅଧ୍ୟୟନ କରିବା ନିମିତ୍ତ ଗୁରୁଗୃହକୁ ପ୍ରେରିତ ହେଲେ । ସହାଧ୍ୟାୟୀମାନଙ୍କ ମଧ୍ୟରେ ଶଙ୍କର ବୟସରେ ଛୋଟ ହେଲେ ମଧ୍ୟ ବିଦ୍ୟାଧ୍ୟୟନରେ କେହି ତାଙ୍କର ସମକକ୍ଷ ହେଲେ ନାହିଁ । ତାଙ୍କର ତୀକ୍ଷ୍ଣ ବୁଦ୍ଧି, ମେଧା ଓ ସତ୍‌ସ୍ୱଭାବର ପରିଚୟ ପାଇବାକୁ ଗୁରୁଦେବଙ୍କର ଆଉ ବିଳମ୍ବ ହେଲା ନାହିଁ । କ୍ରମେ ଶଙ୍କର ଗୁରୁଦେବଙ୍କର ସବୁଠାରୁ ବଳି ପ୍ରିୟ ଶିଷ୍ୟ ହୋଇଗଲେ । ପଞ୍ଚମବର୍ଷୀୟ ବାଳକର ଅସାମାନ୍ୟ ବିଦ୍ୟାନୁରାଗ, ତୀକ୍ଷ୍ଣ ବୁଦ୍ଧି ଓ ଅଲୌକିକ ପ୍ରତିଭା ସନ୍ଦର୍ଶନ କରି ଗୁରୁଦେବ ଶଙ୍କରଙ୍କୁ ଗୁରୁଗୃହରେ କୌଣସି କଠିନ କର୍ମ କରିବାକୁ ଆଦେଶ ପ୍ରଦାନ କରନ୍ତି ନାହିଁ । ସମିଧ ଆହରଣ, ଗୃହ ସମାର୍ଜନ, ଜଳ ଆନୟନ ପ୍ରଭୃତି ବିବିଧ କର୍ମ ବିଦ୍ୟାର୍ଥୀମାନଙ୍କୁ କରିବାକୁ ହୁଏ; କିନ୍ତୁ ଶଙ୍କରଙ୍କୁ ଏସବୁ ପ୍ରାୟ କିଛି କରିବାକୁ ପଡ଼େ ନାହିଁ । ଗୁରୁଦେବ ତାଙ୍କୁ ଏସବୁ କର୍ମରୁ ଅଯାଚିତ ଭାବରେ ଅବ୍ୟାହତି ଦେଲେ । ସେ ସ୍ୱେଚ୍ଛାରେ ଯାହା କରନ୍ତି ଅଥବା ସହାଧ୍ୟାୟୀମାନଙ୍କୁ ସାହାଯ୍ୟ କରିବା ନିମିତ୍ତ ଯାହା ଇଚ୍ଛା କରନ୍ତି, ତାହା କରନ୍ତି ।

ଏହି ସମୟରେ ଦିନେ ଶଙ୍କର ଗୋଟିଏ ଦରିଦ୍ର ବ୍ରାହ୍ମଣଗୃହରେ ଭିକ୍ଷା ନିମିତ୍ତ ଉପନୀତ ହେଲେ । ବ୍ରାହ୍ମଣଙ୍କ ଗୃହରେ ସେଦିନ ମୁଠିଏ ହେଲେ ଚାଉଳ ନ ଥିଲା । ବ୍ରାହ୍ମଣୀ ବ୍ରହ୍ମଚାରୀଙ୍କୁ ଦେଖି ଆଦର ଅଭ୍ୟର୍ଥନା କରି କହିଲେ, "ଆପଣଙ୍କ ପରି ମହାତ୍ମାଙ୍କର ଯେଉଁମାନେ ପୂଜା କରନ୍ତି, ସେମାନେ ଧନ୍ୟ । ବିଧାତା ଆମକୁ ଧନାଦିରୁ ବଞ୍ଚିତ କରିଛନ୍ତି । ଦାରିଦ୍ର୍ୟ ହେତୁ ଆମେ ଯେତେବେଳେ ବ୍ରହ୍ମଚାରୀଙ୍କୁ ଭିକ୍ଷାଦାନରେ ଅସମର୍ଥ ହେଲୁ, ସେତେବେଳେ ଆମର ଏହି ନିରର୍ଥକ ଜୀବନକୁ ଧିକ୍ ।" ବ୍ରାହ୍ମଣୀ ଶଙ୍କରଙ୍କ ହସ୍ତରେ କେତେଗୋଟି ଆମଳକୀ ଫଳ ପ୍ରଦାନ କରି ନିଜର ଦାରୁଣ ଦୁରବସ୍ଥା କଥା କହି ଅତିଶୟ ଦୁଃଖ ପ୍ରକାଶ କରିବାକୁ ଲାଗିଲେ । ବ୍ରାହ୍ମଣୀଙ୍କ କରୁଣ କାହାଣୀ ଶୁଣି ଶଙ୍କର ବିଚଳିତ ହୋଇପଡ଼ିଲେ । ତାଙ୍କର ଦୁଃଖ ମୋଚନ କରିବା ନିମିତ୍ତ ଶଙ୍କରଙ୍କ ପ୍ରାଣରେ ବଳବତୀ ସ୍ପୃହା ଜାତ ହେଲା । ସେ ଏକେ ତ ବାଳକ, ପୁଣି ଗୁରୁଗୃହରେ ବ୍ରହ୍ମଚାରୀ । ଏପରି ଅବସ୍ଥାରେ କରିବେ ବା କ'ଣ ? ସେ ହତାଶ ହୋଇ ଶେଷରେ ନିରୂପାୟର ଉପାୟ ସେହି ଭଗବାନଙ୍କ ନିକଟରେ ପ୍ରାର୍ଥନା କଲେ । ବ୍ରାହ୍ମଣୀଙ୍କ ନିମିତ୍ତ କାତର ଭାବରେ ଦରିଦ୍ର-ଦୁଃଖଭଞ୍ଜନ ଲକ୍ଷ୍ମୀଦେବୀଙ୍କର ଶରଣାପନ୍ନ ହେଲେ । ସେ ଅଧୋବଦନରେ ସ୍ଥିର ଭାବରେ ଦଣ୍ଡାୟମାନ ହୋଇ ଲକ୍ଷ୍ମୀଦେବୀଙ୍କ ଉଦ୍ଦେଶ୍ୟରେ ସ୍ତବ ସ୍ତୁତି କରି ବ୍ରାହ୍ମଣୀଙ୍କ ନିମିତ୍ତ ଧନ ପ୍ରାର୍ଥନା କରିବାକୁ ଲାଗିଲେ । ଏହି ଭାବରେ ସେ କିଛି କାଳ ଅବସ୍ଥାନ କରି ବ୍ରାହ୍ମଣୀଙ୍କୁ ଶୀଘ୍ର ଧନପ୍ରାପ୍ତିର ଆଶ୍ୱାସନା ଦେଇ ଗୁରୁଗୃହକୁ ପ୍ରତ୍ୟାଗମନ କଲେ । ଆଶ୍ଚର୍ଯ୍ୟର ବିଷୟ, ପରଦିନ ପ୍ରଭାତରୁ ଉଠି ବ୍ରାହ୍ମଣୀ ଦେଖିଲେ ଯେ, ତାଙ୍କ ଗୃହରେ ସର୍ବତ୍ର ସୁବର୍ଣ୍ଣମୟ ଆମଳକୀ ଯେପରି ବୃଷ୍ଟି ହୋଇଯାଇଛି । ବ୍ରାହ୍ମଣୀଙ୍କର ଦାରିଦ୍ର୍ୟ ମୋଚନ ହୋଇ ସେ ଅତୁଳ ସମ୍ପତ୍ତିର ଅଧିକାରିଣୀ ହୋଇଛନ୍ତି । ପୂର୍ବଦିନର ସେହି ବାଳକ ବ୍ରହ୍ମଚାରୀର ଆଶୀର୍ବାଦ ଫଳରୁ ଯେ ଏହା ସମ୍ଭବ ହୋଇଛି, ବ୍ରାହ୍ମଣୀ ତାହା ବୁଝିପାରିଲେ ଓ ଲୋକସମାଜରେ ବ୍ୟକ୍ତ କଲେ ।

ଗୁରୁଗୃହରେ ଶଙ୍କରଙ୍କୁ ଅଧିକ ଦିନ ରହିବାକୁ ପଡ଼ି ନଥିଲା । ସେ ଅସାଧାରଣ ତୀକ୍ଷ୍ଣବୁଦ୍ଧିସମ୍ପନ୍ନ ଓ ଶ୍ରୁତିଧର ଥିବାରୁ ଯାହା ଥରେ ଶୁଣୁଥିଲେ, ତାହା ଚିରଦିନ ସ୍ମରଣ ରଖିପାରୁଥିଲେ । କେବଳ ସେତିକି ନୁହେଁ, ଗୁରୁ ଅନ୍ୟ ଶିଷ୍ୟମାନଙ୍କୁ ଯାହା ପଢ଼ାନ୍ତି, ଶଙ୍କର ଗୁରୁସେବା ଉଦ୍ଦେଶ୍ୟରେ ଗୁରୁଦେବଙ୍କ ପାଖରେ ଥାଇ ତାହା ମଧ୍ୟ

ଆୟତ୍ତ କରିନିଅନ୍ତି । ଏ ବିଷୟରେ ଦିନେ ପରିଚୟ ପାଇ ଗୁରୁଦେବ ବିସ୍ମିତ ହୋଇଗଲେ ଏବଂ ସେହିଦିନଠାରୁ ଶଙ୍କରଙ୍କୁ ସକଳ ଶାସ୍ତ୍ରପାଠ ଶୁଣିବାକୁ ଆଦେଶ କଲେ । ଏହା ଫଳରେ ଗୁରୁଗୃହରେ ଶିକ୍ଷଣୀୟ ଯାବତୀୟ ଶାସ୍ତ୍ରଶିକ୍ଷା ଦୁଇ ବର୍ଷ ମଧ୍ୟରେ ଶଙ୍କର ସମାପ୍ତ କଲେ । ସପ୍ତମ ବର୍ଷ ଅତୀତ ନ ହେଉଣୁ ଶଙ୍କର ଗୁରୁଦେବଙ୍କର ଆଦେଶକ୍ରମେ ସ୍ୱଗୃହକୁ ପ୍ରତ୍ୟାଗମନ କଲେ । ଯେଉଁ ବିଦ୍ୟା ଅର୍ଜ୍ଜନ କରିବାକୁ ଅନ୍ୟମାନଙ୍କୁ ଅନ୍ୟୂନ ଷୋହଳ ବର୍ଷ ଲାଗେ, ତାହା ଅପେକ୍ଷା ଅହୁରି ଅଧିକ ଶାସ୍ତ୍ର ଏହି ଦୁଇ ବର୍ଷ ମଧ୍ୟରେ ଶଙ୍କର ଅଧ୍ୟୟନ କରିପାରିଥିଲେ । ଶାସ୍ତ୍ରୀୟ ଆଚାର ଅନୁସାରେ ଗୁରୁଗୃହରୁ ପାଠ ଶେଷ କରି ସ୍ୱଗୃହକୁ ପ୍ରତ୍ୟାଗମନ କଲେ ବିବାହ କରି ଗୃହସ୍ଥାଶ୍ରମରେ ପ୍ରବେଶ କରିବାକୁ ହୋଇଥାଏ । କିନ୍ତୁ ଶଙ୍କର ଗୃହରେ ରହି ବ୍ରହ୍ମଚର୍ଯ୍ୟ ଧର୍ମ ପ୍ରତିପାଳନ କରିବା ନିମିତ୍ତ ଦୃଢ଼ପ୍ରତିଜ୍ଞ ହୋଇ ଜନନୀଙ୍କୁ କହିଲେ । ଏଣେ କିନ୍ତୁ ଜନନୀ ପୁତ୍ରକୁ ଗୁରୁଗୃହରୁ ବ୍ରହ୍ମଚର୍ଯ୍ୟାଶ୍ରମ ଶେଷ କରି ଫେରିଆସିବା ପରେ ସନ୍ନ୍ୟାଶ୍ରମୀ କରି ନ ରଖାଇ ପ୍ରତିବେଶିନୀର ଗୋଟିଏ ସୁନ୍ଦରୀ ବାଳିକା ସହିତ ଶଙ୍କରଙ୍କର ବିବାହ ଦେବେ ବୋଲି ଉପନୟନକାଳରୁ ସ୍ଥିର କରି ରଖିଥିଲେ । ବାଳକ ଶଙ୍କରଙ୍କର ଅନୁରୋଧକ୍ରମେ ଜନନୀଙ୍କର ଏ କାର୍ଯ୍ୟ ସ୍ଥଗିତ ରହିଲା । ଶଙ୍କର ଗୃହରେ ରହି ବ୍ରହ୍ମଚର୍ଯ୍ୟ ଧର୍ମ ପାଳନ କରିବେ ବୋଲି ମନସ୍ଥ କରି ଜନନୀଙ୍କୁ ବିବାହବ୍ୟାପାରରୁ ନିବୃତ୍ତ ହେବାକୁ ଅନୁରୋଧ କଲେ । ଶଙ୍କରଙ୍କର ଦୃଢ଼ତା ଦେଖି ଜନନୀ ଏ ଅନୁରୋଧ ରକ୍ଷା କରିବାକୁ ବାଧ୍ୟ ହେଲେ । ଶଙ୍କର ଗୃହରେ ରହି ମଧ୍ୟ ବ୍ରହ୍ମଚାରୀ ପରି ଜୀବନଯାପନ କରିବାକୁ ଲାଗିଲେ ।

ବ୍ରହ୍ମଚାରୀ ଶଙ୍କର ଗୃହରେ ରହି ପ୍ରଥମେ ଶାସ୍ତ୍ରାଧ୍ୟୟନରେ ମନୋନିବେଶ କଲେ । ତାଙ୍କର ପାଣ୍ଡିତ୍ୟର ବ୍ୟାଖ୍ୟା ଶୁଣି ସମସ୍ତେ ମୁଗ୍‌ଧ ହୋଇ ଯାଉଥିଲେ, ପୁଣି ସମୟ ସମୟରେ କେହି କେହି ତାଙ୍କ ଉପରେ ବିରକ୍ତ ହେଉଥିଲେ । କାରଣ ଶଙ୍କର ବୃଥା ବିଦ୍ୟାଭିମାନ ଓ ଭଣ୍ଡାମି ପ୍ରଭୃତିର ଭୀଷଣ ନିନ୍ଦା କରୁଥିଲେ । ତାଙ୍କର ଶ୍ଳେଷପୂର୍ଣ୍ଣ ବାକ୍ୟରେ କପଟାଚାରୀମାନଙ୍କର ଗାତ୍ରଦାହ ହେଉଥିଲା । ସାମାଜିକ ଅନ୍ଧ ଆଚାର ବ୍ୟବହାରରେ ସେ ଘୋର ପ୍ରତିବାଦ କରୁଥିଲେ । ଏହା ଫଳରେ ନିଜ ଜ୍ଞାତିବନ୍ଧୁଙ୍କ ମଧ୍ୟରୁ କେତେକ ଶଙ୍କରଙ୍କ ପ୍ରତି ଶତ୍ରୁତା ଆଚରଣ କରୁଥିବା ଲକ୍ଷ୍ୟ କରି ଶଙ୍କର ସେମାନଙ୍କୁ ବୁଝାଇବାକୁ ଚେଷ୍ଟା କରୁଥିଲେ ।

ଅଧ୍ୟୟନ, ଅଧ୍ୟାପନାଦି ଶେଷ କରି ସେ ଯେଉଁ ସମୟ ପାଉଥିଲେ, ସେହି ସମୟତକ ସେ ମାତୃସେବାରେ ମନୋନିବେଶ କରୁଥିଲେ । ଜନନୀ କିପରି ସୁଖସ୍ୱାଚ୍ଛନ୍ଦ୍ୟରେ ରହିପାରିବେ, ଭୃତ୍ୟ ପରି ଶଙ୍କର ତାହାର ଅନୁଷ୍ଠାନ କରୁଥିଲେ । ଶାସ୍ତ୍ରବାକ୍ୟ ଶୁଣାଇ ଜନନୀଙ୍କର ଆନନ୍ଦବର୍ଦ୍ଧନ କରୁଥିଲେ । ପତିବିୟୋଗ-ବିଧୁରା ବିଶିଷ୍ଟା ଦେବୀ ପୁତ୍ରମୁଖ ଦର୍ଶନ କରି ପତିବିୟୋଗ ଦୁଃଖ ଭୁଲିଯାଇଥିଲେ । ତାଙ୍କ ନିକଟରେ ଶଙ୍କର ଯେପରି ଏକାଧାରରେ ପୁତ୍ର, କନ୍ୟା, ଗୁରୁ ଓ ପରିଚାରିକା ରୂପେ ପ୍ରତୀୟମାନ ହେଉଥିଲେ ।

ଶଙ୍କର ଜଣେ ଅତି ଉତ୍ତମ ବକ୍ତା ଥିଲେ ଓ ଅତି ସଂଯତ ଭାବରେ ଜୀବନଯାପନ କରୁଥିଲେ । କୌଣସି କାରଣରୁ ହେଲେ ତାଙ୍କର ଚିତ୍ତରେ ବିକାର ଉପସ୍ଥିତ ହେଉ ନଥିଲା । ତାଙ୍କର ବିଚାର ଓ ଯୁକ୍ତି ବଳରେ ବୌଦ୍ଧ ସଂପ୍ରଦାୟର ଦାର୍ଶନିକ ମତବାଦରୁ ସୌତାନ୍ତ୍ରିକ, ଯୋଗାଚାର, ମାଧ୍ୟମିକ ଜୈନ, ବୃହସ୍ପତି ପ୍ରବର୍ତ୍ତିତ ଚାର୍ବାକ, ମୀମାଂସା, ପାତଞ୍ଜଳ, ନ୍ୟାୟ, ବୈଶେଷିକ ପ୍ରଭୃତି ଭିନ୍ନ ଭିନ୍ନ ଦାର୍ଶନିକମାନଙ୍କର ମତବାଦ ବିଲୁପ୍ତ ହୋଇଯାଉଥିଲା । ବିଚାର ଓ ଯୁକ୍ତି ସମୟରେ ସେ କ୍ରୋଧର ବଶୀଭୂତ ହେଉ ନ ଥିଲେ କିମ୍ବା କାହାରି ପ୍ରତି କଠୋର ବାକ୍ୟ ପ୍ରୟୋଗ କରୁ ନ ଥିଲେ । ଲୋଭ, ଅସୂୟା ଓ ଅଭିମାନ ସଂପୂର୍ଣ୍ଣ ଭାବରେ ତାଙ୍କ ହୃଦୟରୁ ଦୂର ହୋଇଯାଇଥିଲା । ତାଙ୍କୁ ଦେଖିବା ମାତ୍ରେ ଯୁବକମାନେ ହିଂସାଦ୍ୱେଷ ପରିତ୍ୟାଗପୂର୍ବକ ସମ୍ମାନ ପ୍ରଦର୍ଶନ କରୁଥିଲେ ଏବଂ ବୃଦ୍ଧମାନେ ମଧ୍ୟ ଶଙ୍କରଙ୍କୁ ଦେଖି ଆସନ ଦାନ କରୁଥିଲେ ।



# ଶଙ୍କରଙ୍କ ତ୍ୟାଗଶୀଳତା

ଶଙ୍କରଙ୍କର ବିଦ୍ୟାନୁରାଗ ଓ ପାଣ୍ଡିତ୍ୟ ବିଷୟ ଶୁଣି ତଦାନୀନ୍ତନ କେରଳ ଦେଶରେ ଅଧିପତି ରାଜା ରାଜଶେଖର ତାଙ୍କୁ ଦର୍ଶନ କରିବା ନିମିତ୍ତ ରାଜପ୍ରସାଦକୁ ଘେନିଯିବା ପାଇଁ ମନ୍ତ୍ରୀଙ୍କୁ ଶଙ୍କରଙ୍କ ନିକଟକୁ ଉପହାର ସହିତ ପଠାଇଥିଲେ । ମନ୍ତ୍ରୀ ଶଙ୍କରଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ, ''ମହାଶୟ ! ସୁପ୍ରସିଦ୍ଧ ସମରବିଜୟୀ ରାଜା ରାଜଶେଖର ଆପଣଙ୍କ ପଦଧୂଳି ଲାଭକରିବା ପାଇଁ ଏକାନ୍ତ ଅଭିଳାଷୀ । ତେଣୁ ପ୍ରଭୁ କୃପା କରନ୍ତୁ । ଆପଣଙ୍କ ପବିତ୍ର ପଦରଜସ୍ପର୍ଶରେ ରାଜଭବନ ଅଧିକତର ପବିତ୍ର ହେଉ ।'' ଶଙ୍କର ଉତ୍ତର କଲେ, ''ଅମାତ୍ୟବର ! ମୁଁ ରାଜାଙ୍କର ବଦାନ୍ୟତା ବିଷୟ ଅବଗତ ହୋଇ ଅତିଶୟ ସନ୍ତୁଷ୍ଟ ହେଲି; କିନ୍ତୁ ଆପଣ ତାଙ୍କୁ କହିବେ, ଭୋଜ୍ୟ ମୋର ଭିକ୍ଷାଲବ୍ଧ ଅନ୍ନ, ପରିଧେୟ ମୃଗଚର୍ମ, କର୍ମ ଶ୍ରୁତି-ସ୍ମୃତିବିହିତ; ସୁତରାଂ କ୍ଲେଶସାଧ । ଦୃଷ୍ଟ ଓ ଅଦୃଷ୍ଟ ଫଳଦାତା ବେଦାଦି ଶାସ୍ତ୍ର ହିଁ ମୋର ଏକମାତ୍ର ଶାସକ । ମୁଁ ବ୍ରହ୍ମଚାରୀ; ସୁତରାଂ ମୋର ଅନୁଷ୍ଠେୟ କର୍ମ ପରିତ୍ୟାଗପୂର୍ବକ ଯାନବାହାନ ଆରୋହଣ କରିବା କିମ୍ବା ଭୋଗ୍ୟବସ୍ତୁ ବ୍ୟବହାର କରିବା ଏକାନ୍ତ ନିଷିଦ୍ଧ । ସୁତରାଂ ମୁଁ ରାଜଭବନକୁ ଯିବା ପାଇଁ ସର୍ବଥା ଅସମର୍ଥ ।'' ମନ୍ତ୍ରୀ ସେଠାରୁ ପ୍ରତ୍ୟାବର୍ତ୍ତନ କରି କେରଳାଧୀଶଙ୍କ ନିକଟରେ ଶଙ୍କରଙ୍କ ଉତ୍ତର ନିବେଦନ କଲାରୁ ବିଦ୍ୟାନୁରାଗୀ ରାଜା ଟିକିଏ ହେଲେ ବିରକ୍ତ ନ ହୋଇ ନିଜେ ଯାଇ ଶଙ୍କରଙ୍କ ନିକଟରେ ଉପସ୍ଥିତ ହୋଇ ଭକ୍ତି ସହକାରେ ପ୍ରଣିପାତପୂର୍ବକ ଉପବେଶନ କଲେ । ବ୍ରାହ୍ମଣଙ୍କ ନିକଟରୁ ରାଜାଙ୍କର ଯେପରି ସମ୍ମାନ ପାଇବାର କଥା, ଶଙ୍କର ରାଜାଙ୍କୁ ସେହିପରି ସମ୍ମାନ ପ୍ରଦର୍ଶନ କରିବାରେ ତ୍ରୁଟି କଲେ ନାହିଁ । ବାଳକ ହେଲେ ମଧ୍ୟ ଶଙ୍କର ପ୍ରବୀଣଙ୍କ ପରି ବ୍ୟବହାର ପ୍ରଦର୍ଶନ କଲେ । ଏଥିରେ ରାଜା ଆହୁରି ଶ୍ରଦ୍ଧାନ୍ୱିତ ହୋଇ ଶଙ୍କରଙ୍କ ସହିତ ନାନା ଶାସ୍ତ୍ରାଲୋଚନାରେ ପ୍ରବୃତ୍ତ ହେଲେ । ସବୁ ବିଷୟରେ ଶଙ୍କରଙ୍କ ଅଗାଧ ପାଣ୍ଡିତ୍ୟ, ସୂକ୍ଷ୍ମ ଦୃଷ୍ଟି ଓ ବିଚାରପଟୁତା ସନ୍ଦର୍ଶନ କରି ରାଜା ଅତିଶୟ ବିସ୍ମିତ ହେଲେ ଏବଂ ବିଦାୟ ସମୟରେ ଶଙ୍କରଙ୍କ ଚରଣରେ ସହସ୍ର ସ୍ୱର୍ଣ୍ଣମୁଦ୍ରା ପ୍ରଦାନପୂର୍ବକ ତାହା ଗ୍ରହଣ କରିବାକୁ ଅନୁରୋଧ କଲେ । ଶଙ୍କର ଈଷତ୍ ହାସ୍ୟ କରି କହିଲେ, ''ମହାରାଜ ! ମୁଁ ବ୍ରହ୍ମଚାରୀ ବ୍ରାହ୍ମଣ । ମୋର ଅର୍ଥର ପ୍ରୟୋଜନ ନାହିଁ । ଆପଣଙ୍କର ପୂର୍ବପୁରୁଷମାନେ ମୋର ପିତା-ମାତାମହଙ୍କୁ ଯାହା ଦାନ କରିଯାଇଛନ୍ତି,

ସେଥିରେ ହିଁ ମୋ ଜନନୀଙ୍କର ସଂସାର ଉତ୍ତମରୂପେ ଚଳିଯାଉଅଛି । ମୋର ତ କୌଣସି ଅଭାବ ନାହିଁ ।'' ରାଜା ଏହା ଶୁଣି ଟିକିଏ ଅପ୍ରତିଭ ହୋଇ କହିଲେ, ''ମହାରାଜ ! ଏପରି କଥା କେବଳ ଆପଣଙ୍କ ମୁଖରେ ହିଁ ଶୋଭାପାଏ । ସେ ଯାହାହେଉ, ମୋର ଏକାନ୍ତ ପ୍ରାର୍ଥନା, ଆପଣ ଏହା ନିଜ ପାଇଁ ଗ୍ରହଣ ନ କଲେ ମଧ୍ୟ ଆପଣଙ୍କ ଇଚ୍ଛା ଅନୁସାରେ ସତ୍‌ପାତ୍ରରେ ବିତରଣ କରିଦିଅନ୍ତୁ । ବ୍ରହ୍ମଚାରୀ, ବ୍ରାହ୍ମଣଙ୍କ ଉଦ୍ଦେଶ୍ୟରେ ଆନୀତ ଦ୍ରବ୍ୟ ପୁନର୍ବାର ଗ୍ରହଣ କରିବା ରାଜା ପକ୍ଷରେ ଅନ୍ୟାୟ ।'' ଏହା ଶୁଣି ଶଙ୍କର କହିଲେ, ''ମହାଶୟ ! ଆପଣ ଦେଶର ରାଜା । ପାତ୍ରାପାତ୍ର ଜ୍ଞାନ ସାଦୃଶ ଶାସ୍ତ୍ରସେବୀ ବ୍ରହ୍ମଚାରୀ ବ୍ରାହ୍ମଣକୁମାର ଅପେକ୍ଷା ଆପଣଙ୍କର ଅଧିକ ରହିବାର କଥା । ଆପଣ ଏହାକୁ ସତ୍‌ପାତ୍ରରେ ବିତରଣ କରିଦିଅନ୍ତୁ, ଯେହେତୁ ବିଦ୍ୟାଦାନ ବ୍ରାହ୍ମଣର କର୍ମ ଓ ଧନଦାନ ରାଜାଙ୍କର ଧର୍ମ । ସୁତରାଂ ଏହା ଆପଣଙ୍କ ପକ୍ଷରେ ହିଁ କରଣୀୟ ।'' ରାଜା ତତ୍ପରେ ଶଙ୍କରଙ୍କ ଚରଣରେ ପ୍ରଣିପାତପୂର୍ବକ ମନ୍ତ୍ରୀଙ୍କୁ ତଦନୁସାରେ କାର୍ଯ୍ୟ କରିବାକୁ ଅନୁରୋଧ କଲେ । ଯେଉଁ ଗ୍ରାମବାସୀ ବ୍ରାହ୍ମଣମାନେ ଶଙ୍କରଙ୍କର ରାଜସାକ୍ଷାତ ଦର୍ଶନ କରିବାକୁ ଆସିଥିଲେ, ସେମାନେ ଉକ୍ତ ମୁଦ୍ରା ଗ୍ରହଣ କରି ଆନନ୍ଦରେ ଗୃହକୁ ପ୍ରତ୍ୟାଗମନ କଲେ । ଏଥିରେ ଶଙ୍କରଙ୍କର ପ୍ରତି ରାଜାଙ୍କର ଶ୍ରଦ୍ଧା ଓ ଭକ୍ତି ଆହୁରି ଅଧିକ ବୃଦ୍ଧି ପାଇଲା । କ୍ରମେ ରାଜା ଶଙ୍କରଙ୍କ ପାଣ୍ଡିତ୍ୟରେ ଏପରି ଭାବରେ ମୁଗ୍ଧ ହୋଇଗଲେ ଯେ, ସ୍ୱରଚିତ ତିନି ଖଣ୍ଡି ନାଟକର ଦୋଷଗୁଣ ବିଚାର କରିବାର ଭାର ଶଙ୍କରଙ୍କୁ ପ୍ରଦାନ କଲେ । ଶଙ୍କର ଏହାର ବହୁଳ ଉନ୍ନତିସାଧନ କଲେ । ରାଜାଙ୍କ ପ୍ରଣୀତ ବାଳଭାରତ ଓ ବାଳରାମାୟଣ ପ୍ରଭୃତି ନାଟକଗୁଡ଼ିକ ଶଙ୍କରଙ୍କ କରସ୍ପର୍ଶରେ ଅମରତ୍ୱ ଲାଭ କଲା । ରାଜାଙ୍କ କର୍ତ୍ତୃକ ଏପରି ଭାବରେ ସମ୍ମାନିତ ହେବା ପରେ ଶଙ୍କରଙ୍କ କଥା ଦେଶସାରା ପ୍ରଚାରିତ ହେବାକୁ ଲାଗିଲା । ପଣ୍ଡିତମାନେ ଶଙ୍କରଙ୍କୁ ଦର୍ଶନ କରିବା ନିମିତ୍ତ ବହୁ ଦୂର ଦେଶରୁ ଆଗମନ କଲେ । ଏସବୁ ଦେଖି ବିଶେଷତଃ ଶଙ୍କରଙ୍କ ପ୍ରତି ରାଜସମ୍ମାନ ପ୍ରଦର୍ଶନ କରି କପଟାଚାରୀ ଭଣ୍ଡ ବ୍ରାହ୍ମଣମାନଙ୍କର ଅତ୍ୟଧିକ ଗାତ୍ରଦାହ ଉପସ୍ଥିତ ହେଲା । ଶଙ୍କରଙ୍କ ସହିତ ଶତ୍ରୁତା ଆଚରଣ କରିବା ପାଇଁ ସୁଯୋଗ ଖୋଜୁଥିଲେ ମଧ୍ୟ ସେମାନେ ସେଥିରେ ବିଫଳମନୋରଥ ହେଲେ ।



# ଶଙ୍କରଙ୍କ ମାତୃଭକ୍ତି

ଏହି ସମୟରେ ଶଙ୍କରଙ୍କ ଗୃହ ନିକଟରୁ କିଛି ଦୂରରେ ଆଲୋୟାରି ନଦୀ ପ୍ରବାହିତ ହେଉଥିଲା । ଶଙ୍କରଜନନୀ ବୃଦ୍ଧା ହୋଇଥିଲେ ମଧ୍ୟ ପ୍ରତ୍ୟହ ସେଠାକୁ ସ୍ନାନ କରିବାକୁ ଯାଉଥିଲେ ଏବଂ ଫେରିବା ସମୟରେ ବାଟରେ ନିଜର କୁଳଦେବତା କେଶବ ଭଗବାନଙ୍କର ପୂଜାଦି କାର୍ଯ୍ୟ ସମ୍ପନ୍ନ କରି ଗୃହକୁ ପ୍ରତ୍ୟାଗମନ କରୁଥିଲେ । ଦିନେ ବିଶିଷ୍ଟା ଦେବୀଙ୍କର ସ୍ନାନ ଶେଷରେ ଗୃହକୁ ଫେରିବାକୁ ବଡ଼ ବିଳମ୍ବ ହେଲା । କାରଣ, ସେ ମଧ୍ୟାହ୍ନର ପ୍ରଚଣ୍ଡ ସୂର୍ଯ୍ୟତାପରେ ଅବସନ୍ନ ହୋଇ ପଥମଧ୍ୟରେ ବସିପଡ଼ିଲେ ଏବଂ ମୂର୍ଚ୍ଛିତା ହୋଇଗଲେ । ଏଣେ ଶଙ୍କର ମାତାଙ୍କର ଫେରିବାର ବିଳମ୍ବ ଦେଖି ଅନୁସନ୍ଧାନ କରିବା ପାଇଁ ଯିବା ସମୟରେ ବାଟରେ ଜନନୀଙ୍କୁ ମୂର୍ଚ୍ଛିତା ହୋଇ ପଡ଼ିଥିବାର ଦେଖିଲେ । ନଦୀରୁ ଜଳ ଆଣି ସିଞ୍ଚି ଓ ବୃକ୍ଷରୁ ପତ୍ର ଆଣି ସେଥିରେ ବିଞ୍ଚି ଜନନୀଙ୍କର ମୂର୍ଚ୍ଛା ଭଙ୍ଗ କରି ଅତି ସତର୍କତା ଓ ଯତ୍ନର ସହିତ ଜନନୀଙ୍କୁ ଗୃହକୁ ଘେନିଆସିଲେ । ଶଙ୍କର ଏଥିରେ ବଡ଼ ମର୍ମାହତ ହେଲେ ଏବଂ ଭଗବାନଙ୍କ ନିକଟରେ ପ୍ରାର୍ଥନା କରି କହିଲେ, "ପ୍ରଭୋ ! ଆପଣ କୃପା କଲେ କ'ଣ ନଦୀଟିକୁ ଆମ ଗୃହ ନିକଟକୁ ଆଣିପାରନ୍ତେ ନାହିଁ ? ଆହା ! ଜନନୀଙ୍କର ଏ କଷ୍ଟ ଯେ ଆଉ ସହି ହେଉ ନାହଁ । ଦେଶୀୟ ରୀତି ଅନୁସାରେ ଜନନୀ ତ ବଞ୍ଚି ଥାଉଥାଉ ପ୍ରତ୍ୟହ ନଦୀରେ ସ୍ନାନ କରି କୁଳଦେବତାଙ୍କର ପୂଜା ନ କଲେ ଜଳ ପର୍ଯ୍ୟନ୍ତ ଗ୍ରହଣ କରିବେ ନାହିଁ । ଭଗବାନ୍ ! ଆପଣ ସର୍ବଶକ୍ତିମାନ୍, ସମସ୍ତ ଆପଣଙ୍କଦ୍ୱାରା ସମ୍ଭବ । ଆପଣ ଇଚ୍ଛାକଲେ ସବୁ ହୋଇପାରେ ।" ଏହିପରି ଭାବରେ କାତର ହୋଇ ଶଙ୍କର କାନ୍ଦି କାନ୍ଦି ଭଗବାନଙ୍କ ନିକଟରେ ନଦୀର ଗତି ପରିବର୍ତ୍ତନ ପାଇଁ ପ୍ରାର୍ଥନା କରିବାକୁ ଲାଗିଲେ । ଥରେହେଲେ ଭାବିଲେ ନାହିଁ ଯେ, ଏହିପରି ଅସମ୍ଭବ ପ୍ରାର୍ଥନା ପୂର୍ଣ୍ଣ ହେବ କି ନାହିଁ । ଅଜ୍ଞ ଲୋକେ ସମ୍ଭବ ଅସମ୍ଭବ ବିବେଚନା ନ କରି ପ୍ରାର୍ଥନା କରନ୍ତି । କିନ୍ତୁ ଯେ ବିଜ୍ଞକୁଳଚୂଡ଼ାମଣି, ସର୍ବଶାସ୍ତ୍ରର ପରପାରକୁ ଯେ ଯାଇଛନ୍ତି, ସେ ଏପରି ଅସମ୍ଭବ ପ୍ରାର୍ଥନା କରିପାରନ୍ତି, ଏହା ବଡ଼ ଆଶ୍ଚର୍ଯ୍ୟର ବିଷୟ । ଶଙ୍କରଙ୍କୁ ବାଳକ ପରି କାନ୍ଦି କାନ୍ଦି ଏପରି ଭାବରେ ପ୍ରାର୍ଥନା କରୁଥିବାର ଦେଖି ଜନନୀ ବିସ୍ମିତା ହେଲେ ଓ ତାଙ୍କୁ ପ୍ରବୋଧ ବାକ୍ୟରେ ଆଶ୍ୱସ୍ତ କରିବାକୁ ଲାଗିଲେ । ଏଣେ କିନ୍ତୁ

ଶଙ୍କରଙ୍କର ଏ ପ୍ରାର୍ଥନାରେ ଭଗବାନଙ୍କର ଆସନ ଟଳିଲା । ଉତ୍ତର କୂଳ ଖାଇ ନଦୀପ୍ରବାହ କ୍ରମେ କ୍ରମେ ଅଳ୍ପ ଦିନ ମଧ୍ୟରେ ଶଙ୍କରଙ୍କ ଗୃହ ନିକଟ ଦେଇ ପ୍ରବାହିତ ହେବାକୁ ଲାଗିଲା ।

ଏହି ଭାବରେ କିଛି ଦିନ ଅତିବାହିତ ହେବା ପରେ ଦିନେ ଦଧୀଚି, ତ୍ରିତଳ, ଉପମନ୍ୟୁ ଓ ଅଗସ୍ତି ନାମଧେୟ କତିପୟ ମନୀଷୀ ଶଙ୍କରଙ୍କ ଗୃହରେ ଉପସ୍ଥିତ ହେଲେ । ମାତା ଓ ପୁତ୍ର ସେମାନଙ୍କର ଯଥୋଚିତ ଅଭ୍ୟର୍ଥନା ଓ ସତ୍କାର କରି ପରମପ୍ରୀତି ସମ୍ପାଦନ କଲେ । ସେମାନେ ମଧ୍ୟ ଶଙ୍କରଙ୍କ ସହିତ ନାନାବିଧ ଶାସ୍ତ୍ର ଆଲୋଚନା କରି ଆପ୍ୟାୟିତ ହେଲେ । ଶଙ୍କର ପ୍ରଥମେ ସେମାନଙ୍କୁ ସ୍ୱାଗତ ସମ୍ଭାଷଣ କରି ମଧୁପର୍କ ଓ ପୂଜା ଉପକରଣ ଗ୍ରହଣ କରିବା ନିମିତ୍ତ ପ୍ରାର୍ଥନା କଲେ । ତତ୍ପରେ ଶଙ୍କର-ଜନନୀ ସେମାନଙ୍କୁ ବିନୀତ ଭାବରେ କହିଲେ, ‘‘ମୁଁ ଆଜି ଆପଣମାନଙ୍କ ପରି ମନୀଷୀ ମହାତ୍ମାମାନଙ୍କ ଦର୍ଶନ କରି ଧନ୍ୟ ଓ କୃତାର୍ଥ ହେଲି । ଏକେତ ଆପଣମାନଙ୍କ ପରି ମହାତ୍ମାମାନଙ୍କର ଆଗମନ ଦୁର୍ଲ୍ଲଭ, ସେଥିରେ ପୁଣି ଆପଣମାନେ କୃପା କରି ଅଯାଚିତ ଭାବରେ ମୋ ଗୃହରେ ଉପସ୍ଥିତ ହୋଇଛନ୍ତି । ଆହୁରି ମଧ୍ୟ ସୌଭାଗ୍ୟର କଥା ଯେ, ଆପଣମାନେ ମୋର ଏହି ପୁତ୍ରକୁ ସସ୍ନେହଦୃଷ୍ଟିରେ ଦର୍ଶନ କରୁଛନ୍ତି ।’’ ଏହିପରି ନାନାବିଧ ଶିଷ୍ଟାଚାରପ୍ରଦର୍ଶନପୂର୍ବକ ଶଙ୍କରଜନନୀ ପୁତ୍ର ବିଷୟରେ ସେମାନଙ୍କୁ ବହୁ ପ୍ରଶ୍ନ କରିବାକୁ ଲାଗିଲେ । ମନୀଷୀଗଣ ସର୍ବାର୍ଥଦର୍ଶୀ । ଶିବଗୁରୁ ଶଙ୍କରଙ୍କୁ ଆରାଧନା କରି ଯେପରି ଭାବରେ ପୁତ୍ରଲାଭ କରିଛନ୍ତି, ତାହା ସେମାନଙ୍କୁ ଅବିଦିତ ନ ଥିଲା । ମହାଦେବଙ୍କ ବରରେ ଶଙ୍କର ଯେ ପରିମିତ ଆୟୁ ଘେନି ଜନ୍ମଗ୍ରହଣ କରିଛନ୍ତି, ତାହା ସେମାନେ ଉତ୍ତମରୂପେ ଅବଗତ ଥିଲେ । ସୁତରାଂ ଶଙ୍କରଙ୍କର ଜନ୍ମପତ୍ରିକା ଦେଖି ସେମାନେ କହିଲେ, ‘‘ମା ! ତୁମର ଏ ପୁତ୍ର ସର୍ବଜ୍ଞ; କିନ୍ତୁ ଏହାର ଆୟୁ ଅତି ଅଳ୍ପ । ଅଷ୍ଟମ, ଷୋଡ଼ଶ ଓ ଦ୍ୱାତ୍ରିଂଶ ବର୍ଷ ବୟସରେ ଏହାର ଜୀବନ ସଂଶୟ ହେବ । ଏ ଅତି ଅଳ୍ପ କାଳ ମାତ୍ର ପୃଥିବୀରେ ଅବସ୍ଥାନ କରିବ । ପୁତ୍ରବତ୍ସଳା ଜନନୀ ସେହି ଜ୍ଞାନୀମାନଙ୍କର ବାକ୍ୟ ଶ୍ରବଣ କରି ଅତିଶୟ ଭୀତା ଓ ଶୋକାତୁରା ହୋଇ କମ୍ପିତ କଳେବରରେ ଭୂପତିତା ଓ ମୂର୍ଚ୍ଛିତା ହୋଇପଡ଼ିଲେ । ଶଙ୍କର ବହୁ କଷ୍ଟରେ ତାଙ୍କର ଚୈତନ୍ୟ ସମ୍ପାଦନ କଲେ । କିନ୍ତୁ ଜନନୀ ଦୁଃଖରେ ବିଳାପ କରିବାକୁ ଲାଗିଲେ । ବ୍ରହ୍ମଚାରୀ ଶଙ୍କର ଜନନୀଙ୍କର

ଏପରି ଅବସ୍ଥା ଦେଖି ସାନ୍ତ୍ୱନା ଦେବା ଉଦ୍ଦେଶ୍ୟରେ କହିଲେ, ''ମା ! ଏ ସଂସାର କ୍ଷଣଭଙ୍ଗୁର ଜାଣି ମଧ୍ୟ ତୁମେ ଏପରି ଶୋକ କରୁଛ କାହିଁକି ? ଏହି ଦେହ ନିତାନ୍ତ ବିନଶ୍ୱର । ମୂର୍ଖ ବ୍ୟକ୍ତିମାନେ ଏହି କ୍ଷଣସ୍ଥାୟୀ ଦେହ ପ୍ରତି ଦୃଷ୍ଟି ଦିଅନ୍ତି ସିନା; କିନ୍ତୁ ତୁମେ ପଣ୍ଡିତ ହୋଇ ମଧ୍ୟ ସାମାନ୍ୟ ଏହି ଦେହନାଶ ଭୟରେ ଏପରି ଭୀତା ହୋଇପଡୁଛ ? ଆମେ ଏହି ସଂସାରକୁ କେତେ ଥର ଆସିଅଛୁ, କେତେ ଥର ଜନ୍ମ ହୋଇଅଛୁ, ପ୍ରତି ଜନ୍ମରେ ଆମର କେତେ ପୁତ୍ରକନ୍ୟା ଜନ୍ମଗ୍ରହଣ କରିଛନ୍ତି । ମା ! ତୁମେ ଭାବି ଦେଖ, ଏହି ସଂସାରରେ ତୁମେ କେତେ ପୁତ୍ରକନ୍ୟାଙ୍କୁ କେତେ ଥର ଜନ୍ମ କରିଅଛ, କେତେ ପୁତ୍ରକନ୍ୟାଙ୍କୁ ଲାଳନପାଳନ କରିଅଛ ! ମୁଁ ମଧ୍ୟ କେତେ ରମଣୀଙ୍କର ପାଣିଗ୍ରହଣ କରିଅଛି; କିନ୍ତୁ ବର୍ତ୍ତମାନ ସେହିସବୁ ପୁତ୍ର କନ୍ୟା ଓ ସେହି ରମଣୀମାନେ କାହାନ୍ତି ? ସଂସାରରେ ସ୍ତ୍ରୀ-ପୁତ୍ରାଦିଙ୍କର ସମାଗମ ପାନ୍ଥ-ସମାଗମ ତୁଲ୍ୟ । ପଥିକଗଣ ଯେପରି ନାନା ଦିଗଦେଶରୁ ସମାଗତ ହୋଇ ପାନ୍ଥଶାଳାରେ ମିଳିତ ହୁଅନ୍ତି, ସେଠାରେ ରାତ୍ରି ଯାପନ କରି ପରଦିନ ଯେ ଯାହାର ଗନ୍ତବ୍ୟପଥରେ ଗମନ କରନ୍ତି, ସଂସାରରେ ସ୍ତ୍ରୀପୁତ୍ରାଦିଙ୍କର ସମାଗମ ଠିକ୍ ସେହିପରି । ଅଜ୍ଞତାବଶତଃ ଯେଉଁମାନେ ସର୍ବଦା ସଂସାରପଥରେ ପରିଭ୍ରମଣ କରୁଛନ୍ତି, ସେମାନଙ୍କର ଅଣୁମାତ୍ର ସୁଖ ନାହିଁ, କେବଳ ଜନନୀ ଜଠର ଯନ୍ତ୍ରଣା ସାର ହେଉଅଛି । ଯେଉଁ ସଂସାରରେ ଏପରି ଦୁର୍ଦ୍ଦଶା, ସେ ସଂସାର ପ୍ରତି ଆସକ୍ତ ହେବା ଆମର ଅନୁଚିତ । ଭବବନ୍ଧନ-ମୋଚନ ନିମିତ୍ତ ମୋର ଚତୁର୍ଥାଶ୍ରମ ଅବଲମ୍ବନ କରିବା ବିଧେୟ ।''

ଏହା ପରେ ଶଙ୍କରଙ୍କର ଭାବାନ୍ତର ଉପସ୍ଥିତ ହେଲା । ଶଙ୍କର ଭାବିଲେ, ''ମୁଁ ଏତେ ଅଳ୍ପ ସମୟ ମଧ୍ୟରେ ସାଧନାରେ ସିଦ୍ଧି ଲାଭ କରିବି କିପରି ଓ ଦେଶର ଏହି ଦାରୁଣ ଦୁରବସ୍ଥା ବା ଦୂର କରିବି କିପରି ? ବର୍ତ୍ତମାନ ଦେଶରେ ଧର୍ମ ନାମରେ ଅଧର୍ମର ଅନୁଷ୍ଠାନ ହେଉଅଛି । ସମସ୍ତେ ଆତ୍ମହିତ ଭୁଲିଗଲେଣି । ଏମାନଙ୍କୁ ପଥପ୍ରଦର୍ଶନ କରିବା ମୋର ଏକାନ୍ତ କର୍ତ୍ତବ୍ୟ । କିନ୍ତୁ ସନ୍ନ୍ୟାସ ବ୍ୟତୀତ ଯେ ସିଦ୍ଧିଲାଭ ଅସମ୍ଭବ ! ସନ୍ନ୍ୟାସୀ ନ ହେଲେ ଜ୍ଞାନ ଲାଭ ହୁଏ ନାହିଁ । ଜ୍ଞାନଲାଭ ବ୍ୟତୀତ ମୁକ୍ତି ସୁଦୂରପରାହତ । ପୁଣି ସଦ୍‌ଗୁରୁଙ୍କ ବ୍ୟତୀତ ଜ୍ଞାନଲାଭ ମଧ୍ୟ ଅସମ୍ଭବ । ମୁଁ କିପରି ସଦ୍‌ଗୁରୁ ଲାଭ କରିବି ?'' ଏହି ଚିନ୍ତାରେ ଶଙ୍କର ଅତିଶୟ ବ୍ୟଥିତ ହୋଇପଡ଼ିଲେ । କିନ୍ତୁ ଜନନୀଙ୍କ ବିମର୍ଷଭାବ ଦର୍ଶନ କରି

ଶଙ୍କର ନିଜ ଭାବ ଗୋପନପୂର୍ବକ ଜନନୀଙ୍କୁ ନାନା ପ୍ରକାର ଜ୍ଞାନର କଥା କହିବାକୁ ଲାଗିଲେ । ଦିନକୁଦିନ ଶଙ୍କରଙ୍କ ମନରେ ଗୃହତ୍ୟାଗ କରିବା ବାସନା ବଳବତୀ ହୋଇଉଠିଲା । ଦିନେ ସେ ଜନନୀଙ୍କ ନିକଟରେ ଏହା ପ୍ରକାଶ କରିବା ଉଦ୍ଦେଶ୍ୟରେ କହିଲେ, ‘‘ମା ! ମୁଁ ଭବବନ୍ଧନ ମୋଚନ ନିମିତ୍ତ ଚତୁର୍ଥାଶ୍ରମ ଅବଲମ୍ବନ କରିବି ।’’ ଶଙ୍କରଙ୍କର ସନ୍ନ୍ୟାସଗ୍ରହଣ ଅଭିଳାଷ ବିଦିତ ହୋଇ ଜନନୀ ଆହୁରି କାତର ହୋଇ କହିଲେ, ‘‘ବତ୍ସ ! ତୁ ଚତୁର୍ଥାଶ୍ରମ ଅବଲମ୍ବନ କରିବା ପାଇଁ ଦୃଢ଼ପ୍ରତିଜ୍ଞ, ଏ କଥା ଶୁଣି ମୁଁ ଅତିଶୟ ବ୍ୟଥିତ । ଶୀଘ୍ର ତୁ ଏ ବୁଦ୍ଧି ତ୍ୟାଗ କର । ପ୍ରଥମେ ଗୃହସ୍ଥ ହୋଇ ପୁତ୍ରଲାଭ କର, ଯାଗ-ଯଜ୍ଞାଦିଦ୍ୱାରା ଦେବତାମାନଙ୍କର ପ୍ରୀତି ଉତ୍ପାଦନ କର, ତା ପରେ ସନ୍ନ୍ୟାସ ଧର୍ମ ଅବଲମ୍ବନ କରିବୁ । ଏହି ଚିରାଚରିତ ପନ୍ଥାର ଅନ୍ୟଥା ଆଚରଣ କର ନାହିଁ । ମୋର ପ୍ରାଣ ଥାଉ ଥାଉ ମୁଁ ତୋତେ ସନ୍ନ୍ୟାସୀ ହେବାକୁ ଅନୁମତି ଦେବି ନାହିଁ । ଆଉ ଯାହା କହିବୁ କରିବି ପଛକେ, କିନ୍ତୁ ଏଥିରେ ମୁଁ କଦାପି ସମ୍ମତି ଦେବି ନାହିଁ । ମୁଁ ସ୍ୱାମୀହୀନ । ତୁ ମୋର ଏକମାତ୍ର ଅବଲମ୍ବନ । ତୁ ଗୃହ ତ୍ୟାଗ କଲେ ମୁଁ ଜୀବନଧାରଣ କରିବି କିପରି ? ତୁ ଅଶେଷ ଶାସ୍ତ୍ରଜ୍ଞ, ପୁତ୍ରପ୍ରାଣା ଜନନୀକୁ ପରିତ୍ୟାଗ କରିବାକୁ କିପରି ଇଚ୍ଛା କରୁଅଛୁ ? ମୋତେ ଛାଡ଼ି ଚାଲିଯିବା କଥାରେ ତୋର ହୃଦୟ କ’ଣ ତରଳୁ ନାହିଁ ?’’ ଶଙ୍କର ଶୋକାର୍ତ୍ତ ଜନନୀଙ୍କର ଏପରି କାତର ବିଳାପ ଶ୍ରବଣ କରି ନାନାବିଧ ଉପଦେଶଦ୍ୱାରା ତାଙ୍କୁ ବହୁ ସାନ୍ତ୍ୱନା ଦେଲେ । କିନ୍ତୁ ମନେ ମନେ ଭାବିଲେ, ‘‘ମୋର ମନ ସଂସାର-କାମନା କରୁ ନାହିଁ; ଅଥଚ ଜନନୀ ମୋତେ ଛାଡ଼ିବାକୁ ଅନିଚ୍ଛୁକ । ସେ ଗୁରୁ, ତାଙ୍କୁ ପୁଣି ମୁଁ ବୁଝାଇବି କିପରି ? କିନ୍ତୁ ଜନନୀଙ୍କର ଅନୁଜ୍ଞା ବ୍ୟତୀତ ସନ୍ନ୍ୟାସ ଗ୍ରହଣ କରିବି କିପରି ?’’ ତାହା ପରେ ସେ ଜନନୀଙ୍କର ଆଦେଶ ପାଇଁ ପ୍ରତୀକ୍ଷା କରିବାକୁ ଲାଗିଲେ ।

ମାତାଙ୍କର ଶଙ୍କରଙ୍କୁ ସନ୍ନ୍ୟାସ ହେବା ପାଇଁ ନ ଛାଡ଼ିବାକୁ ଏପରି ଦୃଢ଼ତା ଦେଖି ମଧ ଶଙ୍କର ଦିନକୁଦିନ ସନ୍ନ୍ୟାସୀ ହେବା ପାଇଁ ବ୍ୟାକୁଳ ହୋଇପଡ଼ିଲେ । ତାଙ୍କର ଭାବାନ୍ତର ଉପସ୍ଥିତ ହେଲା । ସେ ଭାବିଲେ, ‘‘ମୋର ଯଦି ଆୟୁ ଥାଆନ୍ତା, ତାହାହେଲେ ତ ଜନନୀଙ୍କର ସ୍ୱର୍ଗାରୋହଣ ପରେ ମୁଁ ସନ୍ନ୍ୟାସ ଗ୍ରହଣ କଲେ ଚଳନ୍ତା । ଯଦି ଭଗବାନଙ୍କର ଇଚ୍ଛା ଥିବ, ତେବେ ମୋର ସେ ସୌଭାଗ୍ୟ

ଘଟିବ । ମୋର ମନ ସଂସାରରେ ଆଦୌ ରହୁ ନାହିଁ; ଅଥଚ ଜନନୀ ମୋତେ ନିକଟରୁ ଅନ୍ତର କରିବାକୁ ଅନିଚ୍ଛୁକ ।''

ଦିନେ ଶଙ୍କର ଜନନୀଙ୍କ ସହିତ ନଦୀରେ ସ୍ନାନ କରୁଥିଲେ । ପ୍ରଥମେ ଜନନୀ ସ୍ନାନ ସାରି ତୀରକୁ ଉଠିଆସିଲେ । ଏହି ସମୟରେ ଗୋଟିଏ କୁମ୍ଭୀର ଶଙ୍କରଙ୍କୁ ଆକ୍ରମଣ କଲା । ଶଙ୍କର ଚିତ୍କାର କରି ଜନନୀଙ୍କୁ କହିଲେ, ''ମୁଁ ବର୍ତ୍ତମାନ କୁମ୍ଭୀରଦ୍ୱାରା ଆକ୍ରାନ୍ତ । ମୋତେ ରକ୍ଷା କର ।'' ଯେଉଁମାନେ ନିକଟରେ ସ୍ନାନ କରୁଥିଲେ, ସେମାନଙ୍କ ମଧ୍ୟରୁ ଅନେକେ ଶଙ୍କରଙ୍କୁ ସାହାଯ୍ୟ କରିବା ପାଇଁ ବ୍ୟସ୍ତ ହୋଇପଡ଼ିଲେ ଏବଂ କେହି କେହି ତାଙ୍କ ହାତ ଧରି ଉପରକୁ ଟାଣିଲେ ଓ ଅନ୍ୟମାନେ ପ୍ରାଣଭୟରେ ପଳାୟନ କଲେ । ଶଙ୍କରଜନନୀ ପୁତ୍ରକୁ ରକ୍ଷା କରିବା ନିମିତ୍ତ ସମସ୍ତଙ୍କର ସାହାଯ୍ୟ ଭିକ୍ଷା କଲେ । ଶଙ୍କରଙ୍କୁ ଉଦ୍ଧାର କରିବା ପାଇଁ ଧରିଥିବା ଲୋକେ ଉପରକୁ ଟାଣିଲେ ଓ କୁମ୍ଭୀର ଭିତରକୁ ଟାଣିଲା; କିନ୍ତୁ ଏ ସମସ୍ତ ଉପାୟ ବ୍ୟର୍ଥ ହେବାର ଦେଖି ଶଙ୍କର ଅବସନ୍ନ ହୋଇପଡ଼ି ଭାବିଲେ, ଏଥର ଆଉ କୁମ୍ଭୀର ଆକ୍ରମଣରୁ ରକ୍ଷା ପାଇବାର ଅନ୍ୟ ଉପାୟ ନାହିଁ । ସେ କାତର ହୋଇ ଜନନୀଙ୍କୁ କହିଲେ, ''ମା ! ମୁଁ ଚାଲିଲି । କୁମ୍ଭୀରମୁଖରେ ମୋର ପ୍ରାଣ ଗଲା । ସନ୍ନ୍ୟାସ ଅବଲମ୍ବନ ବ୍ୟତୀତ ମୁକ୍ତିର ଅନ୍ୟ ବାଟ ନାହିଁ । ବର୍ତ୍ତମାନ ମଧ୍ୟ ଯଦି ତୁମେ ମୋତେ ସନ୍ନ୍ୟାସ ଅବଲମ୍ବନ କରିବା ପାଇଁ ଅନୁମତି ଦିଅନ୍ତ, ତେବେ ମୋର ଏଇ ଶେଷ ସମୟରେ ମଧ୍ୟ ମନେ ମନେ ସନ୍ନ୍ୟାସ ଗ୍ରହଣ କରି ଯଦି ମୁଁ ପ୍ରାଣ ତ୍ୟାଗ କରିପାରନ୍ତି, ତେବେ ପରଲୋକରେ ମୋର ମୁକ୍ତି ହୁଅନ୍ତା ।'' ଏ କଥା ଶୁଣି ସମସ୍ତେ ଅବାକ୍ ହୋଇଗଲେ । ବିଶିଷ୍ଟା ଦେବୀ ବୁଝିଲେ ଯେ ତାଙ୍କର ପ୍ରାଣପ୍ରିୟ ଶଙ୍କର ଆଉ ରକ୍ଷା ପାଇବ ନାହିଁ । ସେ କାନ୍ଦି କାନ୍ଦି କହିଲେ, ''ବାପା ! ତାହାହେଲେ ତୁ ଏଥର ସନ୍ନ୍ୟାସୀ ହୁଅ । ହାୟ ! ମୋ ଭାଗ୍ୟରେ ଶେଷରେ ପୁଣି ଏଇଆ ଥିଲା !'' ଏହା କହି ସେ ମୂର୍ଚ୍ଛିତା ହୋଇଗଲେ । ଲୋକେ ତାଙ୍କୁ ଧରାଧରି କରି ତୀରକୁ ଘେନିଗଲେ । ଏଣେ ଶଙ୍କର ପ୍ରାଣରକ୍ଷା କରିବା ପାଇଁ ସମସ୍ତ ପ୍ରକାର ଚେଷ୍ଟା ପରିତ୍ୟାଗ କରି ଭଗବାନଙ୍କ ନିକଟରେ ଆତ୍ମସମର୍ପଣ କଲେ ଏବଂ ମନେ ମନେ ସନ୍ନ୍ୟାସ ଗ୍ରହଣ କଲେ । ତାଙ୍କର ଅବସନ୍ନ ଦେହ ଯେପରି କି ନିର୍ଜୀବ ହୋଇପଡ଼ିଲା । ଯେଉଁମାନେ ତାଙ୍କୁ ଉପରକୁ ଟାଣୁଥିଲେ, ସେମାନେ ତାଙ୍କୁ ଉଦ୍ଧାର କରିବା ପାଇଁ କୃତସଂକଳ୍ପ ହୋଇ ଚେଷ୍ଟା

କରିବାକୁ ଲାଗିଲେ । ଅଦୂରରେ କେତେ ଜଣ ଗ୍ରାମବାସୀ ମତ୍ସ୍ୟ ଧରୁଥିଲେ । ସେମାନେ ଏହା ଦେଖି ଗୋଟିଏ ଜାଲ ନେଇ କୁମ୍ଭୀରକୁ ଚତୁର୍ଦ୍ଦିଗରୁ ବେଷ୍ଟନ କରି ପକାଇଲେ । କୁମ୍ଭୀରଟି ସେତେବେଳେ ପ୍ରାଣଭୟରେ ଶିକାରକୁ ଛାଡ଼ିଦେଲା । କିନ୍ତୁ ନିଜେ ଜାଲ ମଧ୍ୟରେ ଆବଦ୍ଧ ହୋଇ ମଲା । ଶଙ୍କରଙ୍କୁ ଲୋକେ ଧରାଧରି କରି କୂଳକୁ ଆଣି ସେବାଶୁଶ୍ରୂଷା କଲେ । ଶଙ୍କରଜନନୀ ସେପର୍ଯ୍ୟନ୍ତ ମୂର୍ଚ୍ଛିତା ଥିଲେ । ଏହି ଅବସ୍ଥାରେ ମଧ ଶଙ୍କର ଜନନୀଙ୍କ ପାଇଁ ବ୍ୟାକୁଳ ହୋଇପଡ଼ିଲେ । ଲୋକେ ବହୁ କଷ୍ଟରେ ତାଙ୍କ ମୂର୍ଚ୍ଛାଭଙ୍ଗ କରି ତାଙ୍କ ସେବାରେ ଲାଗିଲେ । ଶଙ୍କରଙ୍କ କ୍ଷତସ୍ଥାନରେ ଔଷଧ ଦେଲେ । ବୃଦ୍ଧା ଜନନୀଙ୍କ ସହିତ ଲୋକେ ଶଙ୍କରଙ୍କୁ ତାଙ୍କ ଗୃହକୁ ଘେନିଗଲେ । ଶଙ୍କର ଟିକିଏ ସୁସ୍ଥହେବାପରେ ସନ୍ନ୍ୟାସ ଗ୍ରହଣ ପାଇଁ ଜନନୀଙ୍କଠାରୁ ଅନୁମତି ପାଇଥିବାରୁ ଭଗବାନଙ୍କୁ ଅଶେଷ ଧନ୍ୟବାଦ ଦେବାକୁ ଲାଗିଲେ । ତାଙ୍କର ଆଶା ପୂର୍ଣ୍ଣ ହେଲା । ସେ ସନ୍ନ୍ୟାସୀ ହୋଇପାରିଲେ । ଶୀଘ୍ର ଶଙ୍କରଙ୍କର କ୍ଷତ ଶୁଷ୍କ ହୋଇଗଲା ଏବଂ ସେ ସୁସ୍ଥ ହୋଇଉଠିଲେ ।



# ଶଙ୍କରଙ୍କ ଗୃହତ୍ୟାଗ

ସନ୍ନ୍ୟାସୀର ଗୃହବାସ ନିଷିଦ୍ଧ । ବୃକ୍ଷମୂଳ, ଦେବମନ୍ଦିର ପ୍ରଭୃତି ସ୍ଥାନ ହିଁ ସନ୍ନ୍ୟାସୀର ବାସସ୍ଥାନ । ଆହୁରି ମଧ୍ୟ ଗୋଟିଏ ସ୍ଥାନରେ ତିନି ଦିନରୁ ଅଧିକ ରହିବା ଉଚିତ ନୁହେଁ । ସନ୍ଧ୍ୟା ପୂର୍ବରୁ ଶଙ୍କର ଜନନୀଙ୍କୁ କହିଲେ ''ମା ! ଉଦ୍ୟାନ ମଧ୍ୟରେ ଥିବା ବୃକ୍ଷମୂଳରେ ମୋର ରାତ୍ରିଯାପନର ବ୍ୟବସ୍ଥା କର । ଗୃହ ମଧ୍ୟରେ ମୁଁ ରହିପାରିବି ନାହିଁ । କାରଣ ମୁଁ ସନ୍ନ୍ୟାସୀ ।'' ଏହା ଶୁଣି ବିଶିଷ୍ଟା ଦେବୀଙ୍କର ମୁଣ୍ଡରେ ବଜ୍ରପାତ ହେଲା । ସେ ପୁଣି ଆପତ୍ତି କରି କହିଲେ, ''ବାପା ! ତୋର ପ୍ରାଣନାଶର ଆଶଙ୍କା ଦେଖି ସିନା ତୋତେ ସନ୍ନ୍ୟାସୀ ହେବାକୁ ଅନୁମତି ଦେଇଥିଲି ! ବର୍ତ୍ତମାନ ତୋତେ ଛାଡ଼ିଦେଲେ ମୁଁ ବଞ୍ଚିପାରିବି ନାହିଁ । ତୁ ବର୍ତ୍ତମାନ ସଂସାରଧର୍ମ କର । ମୁଁ ବୃଦ୍ଧା ହୋଇ ମରିଗଲେ ତୁ ସନ୍ନ୍ୟାସୀ ହେବୁ ।'' ଶଙ୍କର ଅତି ଦୃଢ଼ତାର ସହିତ ଉତ୍ତର ଦେ଼ଲେ, ''ମା ! ମୁଁ ସଂକଳ୍ପ କରି ସନ୍ନ୍ୟାସ ଗ୍ରହଣ କରିଅଛି । ମୁଁ ଆଉ ଘରେ ରହି ସଂକଳ୍ପଚ୍ୟୁତ ହୋଇପାରିବି ନାହିଁ । ସଂକଳ୍ପ ରକ୍ଷା କରିବାରେ ମୋତେ ତୁମେ ସାହାଯ୍ୟ କର । ମୁଁ ଘରେ ରହି ତୁମର ଯେଉଁ ସୁଖସୁବିଧା କରିଥାଆନ୍ତି, ସନ୍ନ୍ୟାସୀ ହେଲେ ତାହାର କୋଟି ଗୁଣ କରିପାରିବି । ମୋତେ ଆଉ ବାଧା ଦିଅ ନାହିଁ । ତୁମ ଭଳି ବିଦୁଷୀ ଧର୍ମପରାୟଣା ଜନନୀଗର୍ଭରୁ ଜାତ ହୋଇ ମୋତେ ମିଥ୍ୟାଚାରୀ ହେବାକୁ ଦିଅ ନାହିଁ । କୁମ୍ଭୀର ମୁଖରେ ତ ମୋର ପ୍ରାଣ ଯାଇଥାଆନ୍ତା, ମୋତେ କିଏ ସେଥିରୁ ଉଦ୍ଧାର କଲା ? ତୁମେ ଭଗବାନଙ୍କଠାରୁ ବିଶ୍ୱାସ ହରାଉଛ କାହିଁକି ? ତୁମ ମୁଖରେ ଏ କଥା ଶୋଭା ପାଉ ନାହିଁ ।'' ପୁତ୍ରର ଏପରି ଦୃଢ଼ତା ଦର୍ଶନ କରି ଜନନୀ କହିଲେ, ''ବାବା ! ତୁ ସନ୍ନ୍ୟାସୀ ହୋଇ ଗୃହ ତ୍ୟାଗ କରି ଚାଲିଗଲେ ମୋର ଗ୍ରାସାଚ୍ଛାଦନର ବ୍ୟବସ୍ଥା ବା କିଏ କରିବ ? ବିଷୟସମ୍ପତ୍ତିର ରକ୍ଷଣାବେକ୍ଷଣ କିଏ କରିବ ? ତୁ ଥାଉଥାଉ ମୋର ଅନ୍ତିମକାଳର ସତ୍କାର ଅନ୍ୟ ଲୋକ କରିବେ, ତାହା ମୁଁ ସହ୍ୟ କରିପାରିବି ନାହିଁ । ତୋର କ'ଣ ଏହି ଅସହାୟା ଜନନୀ ପ୍ରତି ତିଳେମାତ୍ର ଦୟା ହେଉ ନାହିଁ ? ତୋର ହୃଦୟ ଏତେ କଠୋର ?'' ଏହା କହୁ କହୁ ଜନନୀଙ୍କର କଣ୍ଠରୋଧ ହେଲା ଓ ଅଶ୍ରୁଜଳରେ ବକ୍ଷ ସିକ୍ତ ହେବାକୁ ଲାଗିଲା ।

ଶଙ୍କରଙ୍କର ଆଜି କଠିନ ପରୀକ୍ଷାର ସମୟ । ସେ କ୍ଷଣକାଳ ନିମିତ୍ତ ସ୍ତମ୍ଭୀଭୂତ ଓ ନିସ୍ତବ୍ଧ ହୋଇ ରହି କହିଲେ, ''ମା ! ମୁଁ ଏହାର ସମସ୍ତ ବ୍ୟବସ୍ଥା

କରିଦେଉଛି । ତୁମେ ପ୍ରସନ୍ନ ହୋଇ ମୋତେ ଗୃହ ତ୍ୟାଗ କରିବାକୁ ଅନୁମତି ଦିଅ । ଜ୍ଞାତିମାନଙ୍କ ନିକଟରେ ଆମର ସମସ୍ତ ବିଷୟସମ୍ପତ୍ତି ଅର୍ପଣ କରିଯାଉଛି । ସେମାନେ, ତୁମେ ଜୀବିତ ଥିବା ପର୍ଯ୍ୟନ୍ତ ତୁମର ଗ୍ରାସାଚ୍ଛାଦନର ବ୍ୟବସ୍ଥା କରିବେ । ଆଉ ମୁଁ ଯେଉଁଠାରେ ଥିଲେ ମଧ ତୁମର ଅନ୍ତିମ ସମୟରେ ଆସି ଉପସ୍ଥିତ ହୋଇ ଯଥାରୀତି ସତ୍କାର କରିବି । ସନ୍ନ୍ୟାସୀମାନଙ୍କ ପକ୍ଷରେ ଏହା ନିଷିଦ୍ଧ ହେଲେ ମଧ ମୁଁ ଏହା ତୁମ ପାଇଁ ନିଶ୍ଚୟ କରିବି । ଆହୁରି ମଧ କହୁଛି, ମୁଁ ସିଦ୍ଧିଲାଭ କରି ତୁମକୁ ଇଷ୍ଟଦେବତାଙ୍କର ଚରଣ ଦର୍ଶନ କରାଇଦେବି । ମୋ କଥାରେ ବିଶ୍ୱାସ କର । ମୋ କଥା କଦାପି ଅନ୍ୟଥା ହେବ ନାହିଁ ।''

ବିଶିଷ୍ଟା ଦେବୀ ଶଙ୍କରଙ୍କର ଏ କଥା ଶୁଣି ସ୍ତମ୍ଭୀଭୂତା ଓ ବିସ୍ମିତା ହୋଇଗଲେ । ଭାବିଲେ, ଶଙ୍କର କ'ଣ ପାଗଳ ହୋଇଗଲା ? ପୁଣି ଭାବିଲେ, ଯାହାସବୁ କହୁଛି, ତାହା କ'ଣ କରିପାରିବ ? ଏହା ତାହାର ବାଳକସୁଲଭ ଚପଳବୁଦ୍ଧିର ପରିଣତି ନୁହେଁ ତ ? ଏହିପରି ନାନା ଚିନ୍ତା କରି ବିଶିଷ୍ଟା ଦେବୀ କହିଲେ, ''ବାବା ! ତୁ ସନ୍ନ୍ୟାସୀ ହୋଇ କେତେବେଳେ କେଉଁ ଦେଶରେ ରହିବୁ ତାର ସ୍ଥିରତା ନାହିଁ ! ଏଥିରେ ତୁ ମୋର ମୃତ୍ୟୁକାଳର ସମ୍ବାଦ ପାଇବୁ ବା କିପରି ? ପାଇଲେ ମଧ ଯଥାସମୟରେ ଦୂର ଦେଶରୁ ଆସି ଉପସ୍ଥିତ ହୋଇପାରିବୁ ବା କିପରି ? ତୁ ମତେ ମନ ଭୁଲାଇବା ପାଇଁ ଏପରି କହୁଛୁ ସିନା ! ତୁ ମୋତେ ଛାଡ଼ି କେଉଁଆଡ଼େ ଯାଆ ନାହିଁ ।''

ଶଙ୍କର ଜନନୀଙ୍କ ବ୍ୟାକୁଳତା ଦେଖି ବିଚଳିତ ହୋଇଗଲେ । କିନ୍ତୁ ଆତ୍ମ-ପର-ଭବିଷ୍ୟତ୍ କଥା ଭାବି ଏବଂ ଭାରତର ଭବିଷ୍ୟତ୍ କଥା ଭାବି ଏ ଭାବ ସମ୍ବରଣ କରି ଜନନୀଙ୍କୁ କହିଲେ, ''ମା ! ଶାସ୍ତ୍ରବାକ୍ୟ କେବେ ମିଥ୍ୟା ହୋଇପାରେ ନାହିଁ । ଶାସ୍ତ୍ରରେ ଅଛି, ଜନନୀ ଯେତେବେଳେ ବିଦେଶସ୍ଥ ପୁତ୍ରକୁ ସ୍ମରଣ କରନ୍ତି, ସେତେବେଳେ ପୁତ୍ରଜିହ୍ୱାରେ ମାତୃସ୍ତନର ସ୍ୱାଦ ଅନୁଭୂତ ହୁଏ । ତୁମେ ଅନ୍ତିମକାଳରେ ମୋତେ ସ୍ମରଣ କରିବ । ତାହାହେଲେ ମୁଁ ନିଶ୍ଚୟ ତାହା ଜାଣିପାରିବି । ଆଉ ତୁମେ ତ ଜାଣ, ଯୋଗୀମାନେ ଆକାଶପଥରେ ବିଚରଣ କରିପାରନ୍ତି । ନିମିଷକ ମଧରେ ବହୁଦୂର ପଥ ମଧ ଅତିକ୍ରମ କରିପାରନ୍ତି । ମୁଁ ସେହି ଯୋଗସିଦ୍ଧିବଳରେ ଅବିଳମ୍ବେ ଆସି ତୁମ ନିକଟରେ ଉପସ୍ଥିତ ହେବି । ତୁମେ ଆଶୀର୍ବାଦ କଲେ ମୁଁ ନିଶ୍ଚୟ ସିଦ୍ଧିଲାଭ କରିବି ଏଥିରେ ଆଉ ସନ୍ଦେହ

ନାହିଁ ।'' ବିଶିଷ୍ଟା ଦେବୀ ଆଉ କିଛି କହିପାରିଲେ ନାହିଁ । ଶଙ୍କରଙ୍କର ଜନ୍ମବୃତ୍ତାନ୍ତ କଥା ସ୍ମରଣ କରି ରୁଦ୍ଧକଣ୍ଠରେ ଦୀର୍ଘନିଶ୍ୱାସ ପରିତ୍ୟାଗପୂର୍ବକ କହିଲେ, ''ବତ୍ସ ! ମୁଁ ଆଶୀର୍ବାଦ କରୁଛି, ତୋର ଅଭୀଷ୍ଟ ସିଦ୍ଧ ହେଉ ।''

ତତ୍ପରେ ଶଙ୍କର ଜ୍ଞାତିମାନଙ୍କୁ ଡକାଇ ତାଙ୍କର ଅଭିପ୍ରାୟ ଜ୍ଞାପନ କଲେ ଓ ସମସ୍ତ ବିଷୟସମ୍ପତ୍ତିର ଭାର ଗ୍ରହଣ କରିବାକୁ ଅନୁରୋଧ କଲେ । ଜ୍ଞାତିମାନେ ଅନ୍ତରରେ ମହା ଅହ୍ଲାଦିତ ହେଉଥିଲେ ମଧ୍ୟ ମୁଖର କୃତ୍ରିମ ସ୍ନେହ ପ୍ରଦର୍ଶନ କରି ଗୃହ ତ୍ୟାଗ କରିବାକୁ ଶଙ୍କରଙ୍କୁ ନିଷେଧ କଲେ । କିନ୍ତୁ ଶଙ୍କର ଏମାନଙ୍କୁ ଅନାୟାସରେ ବୁଝାଇବାକୁ ସମର୍ଥ ହେଲେ ଏବଂ ସେମାନେ ଶେଷରେ ବିଶିଷ୍ଟା ଦେବୀଙ୍କୁ ଶୋକ ସମ୍ବରଣ କରିବାକୁ ନାନାବିଧ ସାନ୍ତ୍ୱନା ଦେବାକୁ ଲାଗିଲେ । ଜ୍ଞାତିମାନଙ୍କୁ ଲକ୍ଷ୍ୟ କରି ଶଙ୍କର କହିଲେ, ''ମୋର ଏହି ବୃଦ୍ଧା ଜନନୀର ରକ୍ଷଣାବେକ୍ଷଣର ଭାର ମୁଁ ଆପଣମାନଙ୍କ ଉପରେ ନ୍ୟସ୍ତ କଲି । ମୋର ପ୍ରାର୍ଥନା, ଆପଣମାନେ ଅନୁଗ୍ରହ କରି ତାର ଉଚିତ ତତ୍ତ୍ୱାବଧାନ କରିବେ ।'' ଏହି ଭାବରେ ରାତ୍ରିମଧ୍ୟରେ ଜନନୀଙ୍କର ସମସ୍ତ ବ୍ୟବସ୍ଥା କରି ଶଙ୍କର କହିଲେ, ''ମା ! ମୁଁ କାଲି ପ୍ରଭାତରୁ ଗୃହ ତ୍ୟାଗ କରିବାକୁ ଇଚ୍ଛା କରୁଅଛି । କାରଣ ମୋର କ୍ଷତସ୍ଥାନର ଯନ୍ତ୍ରଣା ବହୁ ପରିମାଣରେ କମିଯାଇଅଛି । ଆଉ ମୋର ଅନ୍ୟ କୌଣସି ପ୍ରକାର କଷ୍ଟ ମଧ୍ୟ ନାହିଁ । ତୁମେ ସନ୍ତୁଷ୍ଟଚିତ୍ତରେ ମୋ ପାଇଁ ଗୈରିକ ବସ୍ତ୍ର ଓ ଦଣ୍ଡ ପ୍ରଭୃତି ସନ୍ନ୍ୟାସ ଉପକରଣ ଆୟୋଜନ କରିଦିଅ । ତୁମ ଆଶୀର୍ବାଦ ହିଁ ମୋର ସମ୍ବଳ । ତୁମେ ଅସନ୍ତୁଷ୍ଟ ହେଲେ ବା ଦୁଃଖକଲେ ମୋର ଅଭୀଷ୍ଟ ସିଦ୍ଧି ହେବ ନାହିଁ ।'' ଶଙ୍କରଜନନୀ ବିଶିଷ୍ଟା ଦେବୀ ମନେ ମନେ ଶଙ୍କରଙ୍କୁ ଭଗବତ୍‌ଚରଣରେ ଅର୍ପଣ କରିଦେଲେ । ତାଙ୍କ ମନରେ ଅଦ୍ଭୁତ ବଳର ସଞ୍ଚାର ହେଲା ଏବଂ ପୂର୍ବର କାତରତା, ବ୍ୟାକୁଳତା ଓ ଚିନ୍ତା ଦୂର ହୋଇଗଲା । ପ୍ରସନ୍ନଚିତ୍ତରେ ଓ ଉତ୍ସାହ ସହକାରେ ସେ ସେହି ରାତ୍ରିମଧ୍ୟରେ ପୁତ୍ରର ସନ୍ନ୍ୟାସପାଇଁ ସମସ୍ତ ଆୟୋଜନ ପ୍ରସ୍ତୁତ କରିବାକୁ ଲାଗିଲେ । ଅନ୍ୟମାନେ ଭାବିଲେ, ବିଶିଷ୍ଟା ଦେବୀ କ'ଣ ପାଗଳ ହୋଇଗଲେ ? ଆଠ ବର୍ଷର ଏକମାତ୍ର ପୁତ୍ରର ସନ୍ନ୍ୟାସ ପାଇଁ ଆୟୋଜନ ନିଜେ କରୁଛନ୍ତି ? ଏ କ'ଣ ଦେବୀ ନା ମାନବୀ ନା ପାଷାଣୀ ?

ପ୍ରଭାତ ହେବାରୁ ଶଙ୍କର ଅଶ୍ରୁସିକ୍ତ ଜନନୀଙ୍କ ନିକଟରୁ ବିଦାୟ ଗ୍ରହଣ କଲେ । ପ୍ରାର୍ଥନା ବଳରେ ଶଙ୍କର ଯେଉଁ ନଦୀପ୍ରବାହ ତାଙ୍କ ଗୃହସନ୍ନିକଟ

ଦେବମନ୍ଦିର ନିକଟକୁ ଆଣିଥିଲେ, ବର୍ଷା ସମୟରେ ସେହି ଜଳ ମନ୍ଦିର ଭିତରକୁ ପ୍ରବେଶ କରୁଥିବାରୁ ଶଙ୍କର ଏହି ଦେବବିଗ୍ରହଙ୍କୁ ଗୋଟିଏ ନିରାପଦ ସ୍ଥାନରେ ସ୍ଥାପନ କରି ଯଥାବିଧି ସନ୍ନ୍ୟାସଗ୍ରହଣପୂର୍ବକ ଗ୍ରାମବାସୀଙ୍କଠାରୁ ବିଦାୟ ଗ୍ରହଣ କଲେ । କଳିକାଳରେ ସନ୍ନ୍ୟାସଗ୍ରହଣ ନିଷିଦ୍ଧ ଥିବାହେତୁ ଦେଶରେ ବୈଦିକ ସନ୍ନ୍ୟାସୀ ପ୍ରାୟ ନ ଥିଲେ । ଏଥିପାଇଁ ସନ୍ନ୍ୟାସୀଙ୍କ ନିକଟରୁ ସନ୍ନ୍ୟାସଗ୍ରହଣ କରିବାର ବ୍ୟବସ୍ଥା ଥିଲେ ମଧ୍ୟ ଶାସ୍ତ୍ରନିପୁଣ ଶଙ୍କର ଯାଥସମ୍ଭବ ବିଧିପୂର୍ବକ ନିଜେ ନିଜେ ସନ୍ନ୍ୟାସ ଗ୍ରହଣ କଲେ । ଆତ୍ମଶ୍ରାଦ୍ଧ ଓ ବିରଜାହୋମ ପ୍ରଭୃତି ସମସ୍ତ ଅନୁଷ୍ଠିତ ହେଲା । ଲୋକେ ଏହା ଦେଖି ଅବାକ୍ ହୋଇଗଲେ । ସମସ୍ତେ ନୀରବରେ ରହି ଏହି ଏ ଦୃଶ୍ୟ ଦେଖିବାକୁ ଲାଗିଲେ । ଆଠ ବର୍ଷର ବାଳକ ସର୍ବସମକ୍ଷରେ ସନ୍ନ୍ୟାସ ଗ୍ରହଣ କରି ଉତ୍ତରାଭିମୁଖରେ ପ୍ରସ୍ଥାନ କଲେ ।

ସନ୍ନ୍ୟାସ ଗ୍ରହଣ ପରେ ଶଙ୍କର ସଂପୂର୍ଣ୍ଣ ଭାବରେ ସଂସାରବିରାଗୀ ହୋଇ ବହିର୍ଗତ ହେଲେ । ରାଗ, ଦ୍ୱେଷ ପରିତ୍ୟାଗ କରି ଦ୍ୱନ୍ଦ୍ୱସହିଷ୍ଣୁ ହେବାଦ୍ୱାରା ତାଙ୍କ ଅନ୍ତଃକରଣରେ ନିର୍ମଳ ଶାନ୍ତି ବିରାଜିତ ହେଲା । ଶ୍ରବଣ, ମନନ ଆଦି ଦ୍ୱାରା ଚିତ୍ତର ସ୍ଥିରତା ଲାଭ ହେଲା । ସେ ଗୁରୁ ଅନ୍ୱେଷଣ କରିବାକୁ ମନସ୍ଥ କଲେ । ବ୍ୟାକରଣ ପାଠ ଶେଷ କରି ଶଙ୍କର ଯେତେବେଳେ ପାତଞ୍ଜଳିଙ୍କର ମହାଭାଷ୍ୟ ଅଧ୍ୟୟନ କରୁଥିଲେ, ସେତେବେଳେ ସେ ତାଙ୍କର ଗୁରୁଙ୍କଠାରୁ ଶୁଣିଥିଲେ ଯେ, ସ୍ୱୟଂ ପାତଞ୍ଜଳି ଦେବ ଗୋବିନ୍ଦଯୋଗୀ ନାମ ଧାରଣପୂର୍ବକ ସହସ୍ରାଧିକ ବର୍ଷ ଧରି ନର୍ମଦା ନଦୀତୀରସ୍ଥ କୌଣସି ଗୁହା ମଧ୍ୟରେ ସମାଧିସ୍ଥ ଅଛନ୍ତି । ଶଙ୍କର ଏହି ଯୋଗୀଗୁରୁଙ୍କୁ ଦର୍ଶନ କରିବାପାଇଁ ସେହିଦିନୁ ମନସ୍ତ କରିଥିଲେ । ସେ ଗୃହ ତ୍ୟାଗ କରି ପ୍ରଥମେ ଉକ୍ତ ଯୋଗୀଗୁରୁଙ୍କ ଅନୁସନ୍ଧାନରେ ବହିର୍ଗତ ହେଲେ । ପୁଣ୍ୟସଲିଳା ନର୍ମଦା କାଲାଡ଼ୀ ଗ୍ରାମଠାରୁ ବହୁ ଦୂରରେ ଅବସ୍ଥିତ । ପଦବ୍ରଜରେ ସେଠାକୁ ଯିବାକୁ ମାସାଧିକ ସମୟ ଲାଗେ । କିନ୍ତୁ ସେହି ଅଷ୍ଟମବର୍ଷୀୟ ବାଳକ ଶଙ୍କର ଅନନ୍ୟମନରେ କେତେ ଅପରିଚିତ ସ୍ଥାନ, କେତେ ଅଭୂତପୂର୍ବ ବାଧାବିଘ୍ନ ଅତିକ୍ରମ କରି ନର୍ମଦାତୀରରେ ସେହି ଗୁରୁପାଦ ଦର୍ଶନ ଉଦ୍ଦେଶ୍ୟରେ ଚାଲିବାକୁ ଲାଗିଲେ । ପଥମଧ୍ୟରେ କେତେ ତୀର୍ଥ, କେତେ ଜନପଦ ସେ ଦେଖିଲେ; କେତେ ପଣ୍ଡିତ, କେତେ ସାଧୁ ମହାତ୍ମାଙ୍କ କଥା ସେ ଶୁଣିଲେ; କିନ୍ତୁ ତାଙ୍କ ମନ ଏସବୁ କୌଣସି ଆଡ଼େ ଆକୃଷ୍ଟ ହେଲା ନାହିଁ । ତାଙ୍କର ଏକ ଲକ୍ଷ୍ୟ ସେ ଗୁରୁ

ଗୋବିନ୍ଦପାଦଙ୍କର ଦର୍ଶନ ଲାଭ, ସେହି ଆଦର୍ଶ ଯୋଗୀ ପାତଞ୍ଜଳି ଦେବଙ୍କର ଆଶୀର୍ବାଦ ଲାଭ । ଶଙ୍କର ଗ୍ରାମ ମଧ୍ୟ ଦେଇ ଯାଉଥିବା ବେଳେ ଗ୍ରାମବାସୀମାନେ ତାଙ୍କୁ ଦେଖି ଅବାକ୍ ହୋଇଯାଉଥିଲେ । ଆଠ ବର୍ଷର ବାଳକ ମୁଣ୍ଡିତମସ୍ତକ ହୋଇ, ଗୈରିକ ବସନ ପରିଧାନ ଓ ଦଣ୍ଡକମଣ୍ଡଳୁ ଧାରଣ କରି ରିକ୍ତପାଦରେ ଊର୍ଦ୍ଧ୍ୱଦୃଷ୍ଟି ହୋଇ ଚାଲୁଅଛି । ଲୋକେ ତାଙ୍କୁ ଦେଖି ବାକ୍‌ସ୍ଫୂର୍ତ୍ତି ରହିତ ହୋଇ ତାଙ୍କର କୌଣସି ପ୍ରକାର ସେବା କରିବା ପାଇଁ ଉତ୍ସୁକ ହୋଇ ପଡ଼ୁଥିଲେ । କିନ୍ତୁ ଏଥିପ୍ରତି ମଧ୍ୟ ଶଙ୍କରଙ୍କର ଦୃଷ୍ଟି ଆକୃଷ୍ଟ ହେଉ ନ ଥିଲା । ସେ ତ୍ରିସନ୍ଧ୍ୟାରେ ସ୍ନାନ, ଆହ୍ନିକ, ମଧ୍ୟାହ୍ନରେ ଭିକ୍ଷାନ୍ନ ଭୋଜନ, ପ୍ରାତଃକାଳରେ ଏବଂ ଅପରାହ୍ନରେ ପଥଭ୍ରମଣ, ସନ୍ଧ୍ୟା ସମାଗମ ହେଲେ ବୃକ୍ଷମୂଳ, ଦେବମନ୍ଦିର ଅଥବା ପାନ୍ଥଶାଳାରେ ବିଶ୍ରାମ କରନ୍ତି । ଏହି ଭାବରେ ସେ କେତେ ଗ୍ରାମ, କେତେ ନଗର, କେତେ ପ୍ରାନ୍ତର, କେତେ ନଦନଦୀ, କେତେ ଅରଣ୍ୟ, କେତେ ଭୂଧର ଅତିକ୍ରମ କରି ନର୍ମଦା ଅଭିମୁଖରେ ଗମନ କରିବାକୁ ଲାଗିଲେ । ଭଗବାନଙ୍କ କୃପାରୁ ତାଙ୍କ ମନରେ କୌଣସି ପ୍ରକାର ଭୟ-ଭ୍ରାନ୍ତି, ଉଦ୍‌ବେଗ-ଅଶାନ୍ତି ବା କଷ୍ଟ ହେଉ ନ ଥିଲା । କିଛି ଦିନ ଏହି ଭାବରେ ପଥ ଚାଲିବା ପରେ ଶଙ୍କର କଦମ୍ବ ବା ବନବାସୀ ନାମକ ରାଜ୍ୟ ମଧ୍ୟରେ ତୁଙ୍ଗାନଦୀତୀରସ୍ଥ ଗୋଟିଏ ନିର୍ଜନ ଅରଣ୍ୟ ମଧ୍ୟରେ ଉପସ୍ଥିତ ହେଲେ । ମଧ୍ୟାହ୍ନକୃତ୍ୟ ସମାପନ କରି ଗୋଟିଏ ବୃକ୍ଷମୂଳରେ ବସି ପଥଶ୍ରାନ୍ତି ଦୂର କରୁଛନ୍ତି, ଏହି ସମୟରେ ସେ ଦେଖିଲେ, କେତେଗୁଡ଼ିଏ ଭେକଶାବକ ଜଳ ମଧ୍ୟରୁ ଉଠିଆସି ତୀରସ୍ଥ ଗୋଟିଏ ପ୍ରଶସ୍ତ ପ୍ରସ୍ତରଖଣ୍ଡ ଉପରେ ଏକତ୍ର ହେଲେ; କିନ୍ତୁ ପ୍ରସ୍ତର ଉପରେ ସୂର୍ଯ୍ୟତାପ ସହ୍ୟ କରି ନ ପାରି ପୁନର୍ବାର ସେମାନେ ଜଳ ମଧ୍ୟରେ ପ୍ରବେଶ କରିବାକୁ ବ୍ୟଗ୍ର ହୋଇପଡ଼ିଲେ । ଏହି ସମୟରେ ଗୋଟିଏ ବିଶାଳ ଫଣାଧାରୀ ସର୍ପ କେଉଁଆଡୁ ଆସି ସେଠାରେ ଉପସ୍ଥିତ ହୋଇ ଉକ୍ତ ଶାବକଗୁଡ଼ିକୁ ଛାୟାଦାନ କରିବାକୁ ଲାଗିଲା; କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ସର୍ପଟି ଗୋଟିଏ ହେଲେ ଭେକଶାବକ ଭକ୍ଷଣ କଲା ନାହିଁ, ବରଂ ଶାବକଗୁଡ଼ିକ ଆସି ଫଣାର ନିମ୍ନସ୍ଥାନରେ ଅବସ୍ଥାନ କରିବାକୁ ଲାଗିଲେ । କିଛି ସମୟ ଏହି ଭାବରେ ରହିବା ପରେ ଭେକଶାବକଗୁଡ଼ିକ ଜଳମଧ୍ୟକୁ ଚାଲିଗଲେ ଓ ସର୍ପଟି ମଧ୍ୟ ଅନ୍ୟତ୍ର ଚାଲିଗଲା ।

ଶଙ୍କର ଏ ଦୃଶ୍ୟ ଦେଖି ଚମତ୍କୃତ ହୋଇଗଲେ । ଭାବିଲେ, ଯେଉଁମାନେ ସ୍ୱଭାବତଃ ବୈରଭାବାପନ୍ନ, ସେମାନଙ୍କର ଏପରି ସ୍ୱଭାବ ବା କିପରି ସମ୍ଭବ ହେଲା ? ଏହା ନିଶ୍ଚୟ ସ୍ଥାନ-ମାହାତ୍ମ୍ୟ । ଏହାର ସତ୍ୟତା ନିର୍ଦ୍ଧାରଣ କରିବାପାଇଁ ଶଙ୍କର ଇତସ୍ତତଃ ବିଚରଣ କରିବାକୁ ଲାଗିଲେ । କିନ୍ତୁ କେଉଁଠାରେ ହେଲେ କାହାରିକୁ ଦେଖିବାକୁ ପାଇଲେ ନାହିଁ । କ୍ରମେ ଅଳ୍ପ ଦୂରରେ ସେ ଗୋଟିଏ ସୁଗୋଲ, ସୁଦୃଶ୍ୟ, ସୁଉଚ୍ଚ ଗିରିଶୃଙ୍ଗ ଦେଖିବାକୁ ପାଇଲେ । ନିକଟକୁ ଯାଇ ଦେଖିଲେ, ଶୃଙ୍ଗ ଉପରକୁ ଯିବାକୁ ଗୋଟିଏ ସୋପାନଶ୍ରେଣୀ ରହିଅଛି । କୌତୂହଳପରବଶ ହୋଇ ଶଙ୍କର ସେହି ଗିରିଶୃଙ୍ଗରେ ଆରୋହଣ କରି ସର୍ବୋଚ୍ଚ ସ୍ଥାନରେ ଗୋଟିଏ ପର୍ଣ୍ଣକୁଟୀର ମଧ୍ୟରେ ଜଣେ ବୃଦ୍ଧ ତପସ୍ୱୀ ଏକାକୀ ବସିଥିବାର ଦେଖିଲେ । ତାଙ୍କ ନିକଟକୁ ଯାଇ ଅଭିବାଦନପୂର୍ବକ ସେ ଦଣ୍ଡାୟମାନ ହେଲେ ଏବଂ ପରସ୍ପର ପରିଚିତ ହେବା ପରେ ଉଭୟେ ଅତିଶୟ ପ୍ରୀତ ହେଲେ । ଉକ୍ତ ତାପସଙ୍କଠାରୁ ଶଙ୍କର ଜାଣିଲେ ଯେ, ସେହି ସ୍ଥାନଟି ଋଷ୍ୟଶୃଙ୍ଗ ମୁନିଙ୍କର ଆଶ୍ରମ । ଗୁରୁପରମ୍ପରାକ୍ରମେ ଏମାନେ ଏହି ସ୍ଥାନରେ ତପସ୍ୟା କରି ଆସୁଛନ୍ତି । ଏହା ଶୁଣି ଶଙ୍କର ମନେ ମନେ ସ୍ଥିର କଲେ ଯେ, ଯଦି କାହାର ତପସ୍ୟା କରି ଜୀବନ କ୍ଷୟ କରିବାକୁ ଇଚ୍ଛା ଥିବ, ତାହାହେଲେ ସେ ଏହି ବୈରଭାବବିହୀନ ସ୍ଥାନରେ ବାସ କରିବା ଉଚିତ । ଏହି ବାସନା ପ୍ରଭାବରୁ ହିଁ ଶଙ୍କର ଉକ୍ତ ସ୍ଥାନରେ ପରେ ଶୃଙ୍ଗେରୀ ମଠ ସ୍ଥାପନ କରିଥିଲେ ।

ଦୁଇ ମାସ ପଥ ଅତିକ୍ରମ କରିବା ପରେ ଶଙ୍କର ପୁଣ୍ୟତୋୟା ନର୍ମଦା ନିକଟରେ ଉପସ୍ଥିତ ହେଲେ । ତାଙ୍କର ଉଦ୍‌ବେଗ କିଞ୍ଚିତ୍ ଉପଶମ ହେଲା । କିନ୍ତୁ କେଉଁ ଆଡ଼କୁ ଗଲେ 'ଗୋବିନ୍ଦପାଦ' ନାମରେ ପରିଚିତ ସେହି ପାତଞ୍ଜଳି ଦେବଙ୍କର ଦର୍ଶନ ହେବ, ଏ କଥା ଚିନ୍ତା କରି ସେ ବ୍ୟାକୁଳ ହୋଇପଡ଼ିଲେ । ଯାହାଙ୍କୁ ପ୍ରଶ୍ନ କଲେ, ସେ ଏହା ଶୁଣି ଅବାକ୍ ହୋଇଗଲେ । ସହସ୍ର ବର୍ଷ ହେବ ସମାଧିସ୍ଥ ଯୋଗୀଙ୍କର ସମ୍ବାଦ ବା କିଏ ରଖୁଛି ? ଦିନେ ଜଣେ ବୃଦ୍ଧଙ୍କଠାରୁ ଶୁଣିଲେ ଯେ, ପୂର୍ବଦିଗକୁ ଗଲେ ଓଁକାରନାଥ ନାମକ ସ୍ଥାନରେ ଜଣେ ବଡ଼ ଯୋଗୀ ଥିବା କଥା ସେ ଶୁଣିଛନ୍ତି । ସେ ଯୋଗୀ କିଏ, ତାହା ସେ କହିପାରିବେ ନାହିଁ । ଶଙ୍କର ପୂର୍ବଦିଗକୁ ଗତି କରି ଓଁକାରନାଥରେ ଉପସ୍ଥିତ ହୋଇ ଦେଖିଲେ, ଗୋଟାଏ ବିଶାଳ ଶୈଳଶୃଙ୍ଗ ନର୍ମଦା ନଦୀଦ୍ୱାରା ପରିବେଷ୍ଟିତ ହୋଇ ଅପୂର୍ବ

ଶୋଭା ଧାରଣ କରିଅଛି । ଏହାର ନାମ ବୈଦୂର୍ଯ୍ୟମଣି ପର୍ବତ । ଏଠାରେ ଓଁକାରନାଥ ଓ ମହାକାଳ ପ୍ରଭୃତି ଜାଗ୍ରତ ଶିବ ଅଛନ୍ତି । ନର୍ମଦା ଅତିକ୍ରମ କରି ଶଙ୍କର ସେହି ଦ୍ୱୀପରେ ଉପସ୍ଥିତ ହେଲେ ଓ ଦେବଦର୍ଶନାଦି କରି ପରମତୃପ୍ତି ଲାଭ କଲେ । ଏଠାରେ ମଧ୍ୟ ସେ ଯାହାକୁ ଦେଖିଲେ, ଗୋବିନ୍ଦଯୋଗୀଙ୍କ କଥା ପ୍ରଶ୍ନ କଲେ; କିନ୍ତୁ କେହି ତାଙ୍କ ପ୍ରଶ୍ନର ଯଥାଯଥ ଉତ୍ତର ଦେଇପାରିଲେ ନାହିଁ । ଅବଶେଷରେ ସେ ଜଣଙ୍କଠାରୁ ଶୁଣିଲେ ଯେ, ଓଁକାରନାଥର ନିମ୍ନରେ ଗୋଟିଏ ଗୁହାମଧ୍ୟରେ କେତେ ଜଣ ସନ୍ନ୍ୟାସୀ ବାସ କରୁଛନ୍ତି । ସେମାନଙ୍କଠାରୁ ହୁଏତ 'ଗୋବିନ୍ଦପାଦ'ଙ୍କର ସନ୍ଧାନ ମିଳିପାରେ ! ଶଙ୍କର ସେଠାକୁ ଯାଇ ଦେଖିଲେ, ତାହା ଏକ ପ୍ରସ୍ତରମୟ ପ୍ରଶସ୍ତ ଗୃହ । କେତେ ଜଣ ସନ୍ନ୍ୟାସୀ ସେଠାରେ ବାସ କରୁଅଛନ୍ତି; କିନ୍ତୁ ସମସ୍ତେ ନିଜ ନିଜ ଭାବରେ ବିଭୋର; କେହି କାହାରି ସହିତ ବାକ୍ୟାଳାପ ପର୍ଯ୍ୟନ୍ତ କରୁ ନାହାନ୍ତି । ଶଙ୍କର ସେମାନଙ୍କୁ ଅଭିବାଦନପୂର୍ବକ କହିଲେ, ''ହେ ମହାତ୍ମାଗଣ ! ସହସ୍ର ବର୍ଷ ଧରି ସମାଧିନିମଗ୍ନ ଗୋବିନ୍ଦପାଦ ବା ଭାଷ୍ୟକାର ପାତଞ୍ଜଳିଦେବ କେଉଁଠାରେ ଅଛନ୍ତି, ଆପଣମାନେ ଅନୁଗ୍ରହ କରି କହିପାରିବେ କି ?'' ଏହା ଶୁଣି ଜଣେ ବୃଦ୍ଧ ସନ୍ନ୍ୟାସୀ ଟିକିଏ ବିସ୍ମିତ ଭାବରେ ଶଙ୍କରଙ୍କର ପ୍ରତି ଦୃଷ୍ଟିପାତପୂର୍ବକ କହିଲେ, ''ଆପଣ କେଉଁଠାରୁ ଆସିଅଛନ୍ତି ?'' ଶଙ୍କର କହିଲେ, ''ମୁଁ କେରଳ ଦେଶରୁ ଆସିଅଛି ।'' ବୃଦ୍ଧ ପ୍ରଶ୍ନ କଲେ, ''କେରଳ ଏଠାରୁ ବହୁ ଦୂର । ତୁମର ତ ଏତେ ଅଳ୍ପ ବୟସ; ତୁମ ସଙ୍ଗରେ ଆଉ କିଏ ଆସିଛନ୍ତି ?'' ଶଙ୍କର କହିଲେ—''ହଁ ମହାଶୟ, କେରଳ ଏଠାରୁ ବହୁ ଦୂର ଓ ମୁଁ ଅଳ୍ପ ବୟସର ବାଳକ । ମୋ ସାଙ୍ଗରେ ଆଉ କିଏ ଆସିବ ? ସେହି ଅନ୍ତର୍ଯ୍ୟାମୀ ଭଗବାନ ହିଁ ମୋର ସଙ୍ଗେ ସଙ୍ଗେ ଅଛନ୍ତି ।'' ବୃଦ୍ଧ ଆହୁରି ବିସ୍ମିତ ହୋଇ ପ୍ରଶ୍ନ କଲେ, ''ଗୋବିନ୍ଦଯୋଗୀଙ୍କ ସହିତ ତୁମର କି ଆବଶ୍ୟକ ? କାହା ନିକଟରୁ ତାଙ୍କ ବିଷୟ ଶୁଣିଲ ?'' ଶଙ୍କର କହିଲେ, ''ହେ ମହାତ୍ମା ! ଭାଷ୍ୟପାଠ କରିବା ସମୟରେ ମୁଁ ଆଚାର୍ଯ୍ୟଙ୍କ ମୁଖରୁ ତାଙ୍କ ନାମ ଶୁଣି ତାଙ୍କ ଶ୍ରୀଚରଣରେ ଆଶ୍ରୟଲାଭ କରିବାନିମିତ୍ତ ସଂକଳ୍ପ କରିଅଛି ।'' ବୃଦ୍ଧ ବିସ୍ମିତ ହୋଇ କହିଲେ, ''ଆପଣ ଏତେ ଅଳ୍ପ ବୟସରେ ଭାଷ୍ୟାଦି ପାଠ କରି ସାରିଛନ୍ତି ? ଦେଖୁଛି, ଆପଣ ଜଣେ ସନ୍ନ୍ୟାସୀ । ଏ ବୟସରେ କେଉଁଠାରୁ କାହା ନିକଟରୁ ସନ୍ନ୍ୟାସ ଗ୍ରହଣ କରିଛନ୍ତି ?'' ଶଙ୍କର ଅତି ବିନୀତ ଭାବରେ ଉତ୍ତର ଦେଲେ, ''ବ୍ରାହ୍ମନ୍ ! ମୁଁ ଗୁରୁଗୃହରେ ପାଠ ସମାପ୍ତ କରିଅଛି । ସଂସାରର ଅନିତ୍ୟତା ଓ ଜୀବର

କ୍ଷଣଭଙ୍ଗୁରତ୍ୱ ଚିନ୍ତା କରି ମୁଁ ସ୍ୱୟଂ ସନ୍ନ୍ୟାସ ଗ୍ରହଣ କରିଅଛି ।'' ବୃଦ୍ଧ ସଶ୍ରଦ୍ଧ ଭାବରେ କହିଲେ, ''ଆପଣ ଏହିଠାରେ ବସନ୍ତୁ । ଗୋବିନ୍ଦଯୋଗୀ ଏହି ସ୍ଥାନରେ ହିଁ ଅଛନ୍ତି । ଗୁହପ୍ରାଚୀର-ସଂଲଗ୍ନ ଏହି ଯେଉଁ ପ୍ରସ୍ତରଫଳକଟି ଦେଖିପାରୁଛ ତାହା ଅପସାରଣ କଲେ ଗୋଟିଏ ଗୁହା ଦେଖିପାରିବ । ସେ ଏହି ଗୁହା ମଧ୍ୟରେ ସମାଧିସ୍ଥ ହୋଇଅଛନ୍ତି । ସମାଧି ଭଙ୍ଗ ହେଲେ ତାଙ୍କ ନିକଟରୁ ଉପଦେଶ ଗ୍ରହଣ କରିବା ଆଶାରେ ବହୁ ଦିନ ହେବ ଆମେ ଏଠାରେ ଅପେକ୍ଷା କରିଅଛୁ; କିନ୍ତୁ ଏପର୍ଯ୍ୟନ୍ତ ତାଙ୍କର ସମାଧି ଭଙ୍ଗ ହୋଇନାହିଁ । ଆପଣଙ୍କ ଉଦ୍ୟମକୁ ଧନ୍ୟ !'' ଶଙ୍କର ବ୍ୟଗ୍ରଭାବରେ ଗୋବିନ୍ଦପାଦଙ୍କୁ ଦର୍ଶନ କରିବାପାଇଁ ବୃଦ୍ଧଙ୍କଠାରୁ ଅନୁମତି ନେଇ ପ୍ରସ୍ତର ଅପସାରଣ କଲେ । ବୃଦ୍ଧଙ୍କ ଇଙ୍ଗିତରେ ଗୋଟିଏ ପ୍ରଦୀପ ପ୍ରଜ୍ୱଳିତ କରି ସେ ଦେଖିଲେ ଏହା ଗୋଟିଏ ସାର୍ଦ୍ଧହସ୍ତପରିମିତ ଛିଦ୍ରବିଶେଷ । ଜଣେ ମାତ୍ର କ୍ଷୀଣକାୟ ବ୍ୟକ୍ତି ବହୁ କଷ୍ଟରେ ଏହା ମଧ୍ୟରେ ପ୍ରବେଶ କରିପାରେ । ପ୍ରଦୀପ ସାହାଯ୍ୟରେ ସେ ପୁଣି ଦେଖିଲେ ଯେ, ଗୁହାର ଗୋଟିଏ ପ୍ରାନ୍ତରେ ଖଣ୍ଡିଏ ପ୍ରସ୍ତର ଉପରେ ଜଣେ ଅତି ଦୀର୍ଘକାୟ କଙ୍କାଳସାର ଦୀର୍ଘଜଟାବୃତ୍ତ ମାନବ ପଦ୍ମାସନରେ ଉପବିଷ୍ଟ । ଜୀବନର କୌଣସି ଲକ୍ଷଣ ନାହିଁ । ଗୋଟିଏ ପ୍ରସ୍ତରମୂର୍ତ୍ତି ଭଳି ଅଟଳ, ଅଚଳ, ନିସ୍ପନ୍ଦ ଓ ନିର୍ନିମେଷ । ଶଙ୍କର କିଛି ସମୟ ନିର୍ନିମେଷନୟନରେ ଯୋଗୀଙ୍କର ମୁଖ ପ୍ରତି ନିରୀକ୍ଷଣ କଲେ । ଦେଖିଲେ, ତାଙ୍କର ଦୀର୍ଘନାସା, ଆକର୍ଣ୍ଣବିସ୍ତୃତ ନୟନଯୁଗଳ, ପ୍ରଶସ୍ତ ଲଲାଟ, ଶୁଷ୍କଚର୍ମ, ଅଥଚ ଯେପରି କି ଭସ୍ମାଚ୍ଛାଦିତ ହୋମାଗ୍ନିସଦୃଶ ! ସେ ପ୍ରଦୀପ ତଳେ ଥୋଇଦେଇ ସନ୍ନ୍ୟାସୀଙ୍କ ସମ୍ମୁଖରେ ନତଜାନୁ ହୋଇ କରଯୋଡ଼ି ସ୍ତବ ପାଠ କରିବାକୁ ଲାଗିଲେ । ଭାବର ପ୍ରବାହରେ ତାଙ୍କର ନୟନରୁ ଅଶ୍ରୁଜଳ ନିର୍ଗତ ହୋଇ ବକ୍ଷସ୍ଥଳ ଅଭିଷିକ୍ତ କରିବାକୁ ଲାଗିଲା । ସ୍ତବଗାନ-ଧ୍ୱନିରେ ଗୁହାଟି ମୁଖରିତ ହୋଇଉଠିଲା । ସେଠାରେ ଥିବା ଅନ୍ୟ ସନ୍ନ୍ୟାସୀମାନେ ଶଙ୍କରଙ୍କ ଏବଂବିଧ ଆଚରଣ ଦେଖି ଏବଂ ସ୍ତବପାଠ ଶୁଣି ଗୁହାଦ୍ୱାରରେ ଆସି ଦଣ୍ଡାୟମାନ ହେଲେ । କାରଣ ଏଥିପୂର୍ବରୁ ଅନ୍ୟମାନେ ଯୋଗୀଙ୍କୁ ଦର୍ଶନ କରିବା ମାନସରେ ଆସନ୍ତି ସତ; କିନ୍ତୁ ଏପରି ଭାବରେ ପୂର୍ବରୁ କେହି କରିନଥିଲେ । ଶଙ୍କରଙ୍କ ପ୍ରାଣତନ୍ତ୍ରୀର ଝଙ୍କାର ଗୋବିନ୍ଦପାଦଙ୍କର ନିଷ୍ପନ୍ଦ ପ୍ରାଣତନ୍ତ୍ରୀକୁ ପ୍ରକମ୍ପିତ କଲା । ସେ ଚକ୍ଷୁ ଉନ୍ମୀଳନ କରି ଚାହିଁଲେ, ଶଙ୍କର ଗୋବିନ୍ଦପାଦଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କଲେ । ସେମାନଙ୍କ ମଧ୍ୟରେ ଜଣେ ବୃଦ୍ଧ ସନ୍ନ୍ୟାସୀଙ୍କ ସମାଧିଭଙ୍ଗ ପରେ କ'ଣ କର୍ତ୍ତବ୍ୟ, ତାହା ଜାଣିଥିଲେ । ସେ

ଗୁହାମଧ୍ୟରେ ପ୍ରବେଶ କରି ଶଙ୍କରଙ୍କ ସହିତ ମିଳିତହୋଇ ଗୋବିନ୍ଦପାଦଙ୍କ ସେବାରେ ରତ ହୋଇଥିଲେ । ଗୋବିନ୍ଦପାଦ ସେମାନଙ୍କର କୌଶଳପୂର୍ଣ୍ଣ ସେବାରେ ପୁନର୍ବାର ସଜୀବ ମନୁଷ୍ୟ ସଦୃଶ ହୋଇ ଗୁହା ମଧ୍ୟରୁ ବହିର୍ଗତ ହେଲେ । ତାଙ୍କର ସହସ୍ର ବର୍ଷର ସମାଧି ଆଜି ଶଙ୍କରଙ୍କ ଆଗମନରେ ଭଙ୍ଗ ହେଲା । ସେ ଶଙ୍କରଙ୍କୁ କହିଲେ, ''ତୁମେ କିଏ ?'' ଉତ୍ତରରେ ଶଙ୍କର ଏପରି ଭାବରେ ଆତ୍ମପରିଚୟ ପ୍ରଦାନ କଲେ ଯେ, ତଦ୍ଦ୍ୱାରା ତାଙ୍କ ହୃଦୟ ଅଦ୍ୱୈତଜ୍ଞାନରେ ପୂର୍ଣ୍ଣ ବୋଲି ପ୍ରକାଶିତ ହେଲା । ଗୋବିନ୍ଦପାଦ କହିଲେ, ''ଶଙ୍କର ! ତୁମେ ଯଥାର୍ଥ ପ୍ରଜ୍ଞାବାନ । ମୁଁ ସମାଧିରେ ଜାଣିପାରିଛି ଯେ ତୁମେ ଅଦ୍ୱୈତ ମତ ପ୍ରଚାର କରିବା ନିମିତ୍ତ ଭୂତଳରେ ଜନ୍ମଗ୍ରହଣ କରିଅଛ ।'' ଏହା କହି ସେ ଶଙ୍କରଙ୍କୁ ତାଙ୍କ ନିକଟକୁ ଆହ୍ୱାନ କଲେ । ଶଙ୍କର ଗୋବିନ୍ଦପାଦଙ୍କର ସମୀପବର୍ତ୍ତୀ ହୋଇ ତାଙ୍କର ଚରଣଯୁଗଳ ପୂଜା କରିବାକୁ ଲାଗିଲେ । ଅଦ୍ୱୈତବାଦୀ ହୋଇଥିଲେ ମଧ୍ୟ ଗୁରୁପୂଜାକୁ ସେ ଶ୍ରେଷ୍ଠସ୍ଥାନ ପ୍ରଦାନ କଲେ ଏବଂ ପରେ ଏହି ଗୁରୁପୂଜାକୁ ଅକ୍ଷୁଣ୍ଣ ରଖିବାନିମିତ୍ତ ମଧ୍ୟ ଯତ୍ନଶୀଳ ହୋଇଥିଲେ । ଭକ୍ତିମାନ୍ ଶଙ୍କରଙ୍କ ସେବାରେ ତୁଷ୍ଟ ହୋଇ ଗୋବିନ୍ଦପାଦ ଚାରିଗୋଟି ବାକ୍ୟଦ୍ୱାରା ତାଙ୍କୁ ବ୍ରହ୍ମଭାବର ଉପଦେଶ ପ୍ରଦାନ କଲେ। ପୁରାକାଳରେ ମହର୍ଷି ବେଦବ୍ୟାସ ଅଦ୍ୱୈତ ମତରେ ଉପଦେଶ ପ୍ରାପ୍ତ ହୋଇଥିଲେ । ପରମ ତତ୍ତ୍ୱଜ୍ଞାନୀ ଶୁକଦେବ ତାଙ୍କର ଶିଷ୍ୟ । ଶୁକଦେବଙ୍କ ଶିଷ୍ୟ ଗୌଡ଼ପାଦ ଏବଂ ଗୌଡ଼ପାଦଙ୍କର ଶିଷ୍ୟ ଗୋବିନ୍ଦପାଦ ଗୁରୁପରମ୍ପରାକ୍ରମେ ଏହି ଅଦ୍ୱୈତ ଜ୍ଞାନ ପ୍ରାପ୍ତ ହୋଇଥିଲେ । ପୂର୍ବରୁ ବେଦ, ବେଦାନ୍ତ ଓ ଦର୍ଶନ ଶାସ୍ତ୍ରାଦି ଆଲୋଚନାଦ୍ୱାରା ଶଙ୍କରଙ୍କ ହୃଦୟରେ ଅଦ୍ୱୈତଜ୍ଞାନର ଉଦୟ ହୋଇଥିଲେ ମଧ୍ୟ ପୁନର୍ବାର ସେହି ମହାବାକ୍ୟ ତତ୍ତ୍ୱଜ୍ଞାନୀ ଗୁରୁମୁଖରୁ ଶ୍ରବଣକରି ତାଙ୍କର ଦିବ୍ୟଜ୍ଞାନ ଉଦୟ ହେଲା । ସେ ଗୋବିନ୍ଦପାଦଙ୍କର ଶିଷ୍ୟତ୍ୱ ସ୍ୱୀକାର କଲେ । ଗୋବିନ୍ଦପାଦଙ୍କର ସମାଧିଭଙ୍ଗ ସମାଚାର ଚତୁର୍ଦ୍ଦିଗରେ କ୍ରମେ ପ୍ରଚାରିତ ହୋଇଗଲା । ନାନା ଦେଶରୁ ଲୋକେ ତାଙ୍କୁ ଦେଖିବା ପାଇଁ ସେଠାରେ ଆସି ଉପସ୍ଥିତ ହେଲେ । ଓଁକାରନାଥ ଗୋଟିଏ ଉତ୍ସବ-କ୍ଷେତ୍ରରେ ପରିଣତ ହେଲା ।

ଶୁଭ ଦିନର ଶୁଭକ୍ଷଣରେ ଶଙ୍କର ଓ ଅନ୍ୟାନ୍ୟ ସନ୍ନ୍ୟାସୀଗଣ ମହାବାକ୍ୟ ଗ୍ରହଣପୂର୍ବକ ଯଥାବିଧି ଗୁରୁ ଗୋବିନ୍ଦପାଦଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ ଏବଂ ସାଧନାରେ ପ୍ରବୃତ୍ତ ହେଲେ । ଗୁରୁଦେବ ବାଳକ ଶଙ୍କରଙ୍କୁ ଅଧିକ ସ୍ନେହ କରିବାକୁ ଲାଗିଲେ । ପ୍ରଥମେ ସେ ଶଙ୍କରଙ୍କୁ ହଠଯୋଗର ଶିକ୍ଷା ପ୍ରଦାନ କଲେ । ଏକ

ବର୍ଷ ମଧ୍ୟରେ ଶଙ୍କରଙ୍କର ତାହା ଆୟତ୍ତ ହୋଇଯିବାରୁ ଦ୍ୱିତୀୟ ବର୍ଷ ଗୋବିନ୍ଦପାଦ ଶଙ୍କରଙ୍କୁ ରାଜଯୋଗରେ ଦୀକ୍ଷିତ କଲେ । ଏଥିରେ ମଧ୍ୟ ଶଙ୍କର ଆଶାତୀତ ନିପୁଣତା ପ୍ରଦର୍ଶନ କଲେ । ତତ୍ପରେ ତୃତୀୟ ବର୍ଷ ଆରମ୍ଭରେ ସେ ଶଙ୍କରଙ୍କୁ ଜ୍ଞାନଯୋଗର ଉପଦେଶ ଦେଲେ ଏବଂ ବ୍ରହ୍ମସୂତ୍ରର ବ୍ୟାସ-ଶୁକ-ସଂପ୍ରଦାୟଲବ୍ଧ ଅର୍ଥ ତାଙ୍କୁ ଶିକ୍ଷା ଦେବାକୁ ଲାଗିଲେ । ତାହା ସଙ୍ଗେ ସଙ୍ଗେ ଶ୍ରବଣ, ମନନ, ନିଦିଧ୍ୟାସନର ପ୍ରକୃତ ରହସ୍ୟ ମଧ୍ୟ ଉପଦେଶ ଦେଲେ । ତୃତୀୟ ବର୍ଷ ପୂର୍ଣ୍ଣ ହେବା ପରେ ଗୋବିନ୍ଦପାଦ ଦେଖିଲେ, ଶଙ୍କରଙ୍କର ସାଧନା ଶେଷ ହୋଇଯାଇଛି । ଶରୀରରେ ଅପୂର୍ବ ଲାବଣ୍ୟ ଫୁଟି ଉଠିଛି । ତାଙ୍କ ମୁଖରେ ଅପୂର୍ବ ଆନନ୍ଦ ଓ ହର୍ଷ ଲାଗିରହିଛି । କେହି ଶଙ୍କରଙ୍କର ଚିତ୍ତ ଆକର୍ଷଣ କରି ରଖି ନ ପାରିଲେ ସେ ସମାଧିସ୍ଥ ହୋଇପଡୁଛନ୍ତି । କ୍ଷୁଧା, ତୃଷାରେ ସେ ଚଞ୍ଚଳ ହୋଇପଡୁ ନାହାନ୍ତି । ସ୍ୱେଚ୍ଛାରେ ଦେହ ତ୍ୟାଗ କରିବା, ଆକାଶ ମାର୍ଗରେ ଗମନାଗମନ କରିବା, ଯୋଗସିଦ୍ଧି ମଧ୍ୟ ତାଙ୍କର ଆୟତ୍ତ ହୋଇଗଲାଣି । ଏସବୁ ଦେଖି ଗୋବିନ୍ଦପାଦ ପୁନରାୟ ସମାଧିମଗ୍ନ ହୋଇଗଲେ ।

କ୍ରମେ ବର୍ଷାକାଳ ଉପସ୍ଥିତ ହେଲା । ନର୍ମଦା ପରିବେଷ୍ଟିତ ସେହି ସ୍ଥାନର ଶୋଭା ଅତୁଳ ଶ୍ରୀସମ୍ପନ୍ନ ହୋଇଉଠିଲା । ଦିନେ ଅତ୍ୟଧିକ ବୃଷ୍ଟିପାତ ହେତୁ ନଦୀର ଜଳ କ୍ରମଶଃ ବୃଦ୍ଧିପ୍ରାପ୍ତ ହେଲା ଏବଂ ପୂର୍ବଦିଗରୁ ଭୀଷଣ ବନ୍ୟାସ୍ରୋତ ବୃକ୍ଷ-ଲତା ପ୍ରଭୃତି ଭସାଇ ଆଣି ତୁମୁଳ ଗର୍ଜନ କରି ପ୍ରବାହିତ ହେବାକୁ ଲାଗିଲେ । ଲୋକେ ଆର୍ତ୍ତନାଦ କରିଉଠିଲେ । ବନ୍ୟାଜଳ କ୍ରମେ ବର୍ଦ୍ଧିତ ହୋଇ ଗୁହା ମଧ୍ୟରେ ପ୍ରବେଶ କରିବାର ଉପକ୍ରମ କଲା । ଏହା ଦେଖି ସମସ୍ତେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଭାବିଲେ, ଗୁହା ମଧ୍ୟରେ ଜଳ ପ୍ରବେଶ କଲେ ଗୁରୁଦେବଙ୍କୁ ଆଉ ରକ୍ଷା କରିବା ସମ୍ଭବ ହେବ ନାହିଁ । ଏହା ଦେଖି ଶଙ୍କର ଇତସ୍ତତଃ ଭ୍ରମଣ କରି ଗୋଟିଏ କୁମ୍ଭ ସଂଗ୍ରହପୂର୍ବକ ତାହା ଗୁହାଦ୍ୱାରରେ ସ୍ଥାପନ କରି ସନ୍ନ୍ୟାସୀ ଭ୍ରାତୃବୃନ୍ଦଙ୍କୁ କହିଲେ, ''ଆପଣମାନେ ବ୍ୟସ୍ତ ହୁଅନ୍ତୁ ନାହିଁ । ଏଠାକୁ ଆସିବା ମତ୍ରେ ଜଳର ସ୍ରୋତ ପ୍ରତିହତ ହେବ; ଗୁହା ମଧ୍ୟରେ ପ୍ରବେଶ କରିପାରିବ ନାହିଁ ।'' ବାସ୍ତବିକ ତାହା ହିଁ ହେଲା । ବନ୍ୟାଜଳ ବୃଦ୍ଧି ପାଇଲା ସତ; କିନ୍ତୁ ଗୁହା ମଧ୍ୟରେ ପ୍ରବେଶ କରିପାରିଲା ନାହିଁ । ସମୁଦାୟ ଜଳ ଯେପରି କି ସେ କୁମ୍ଭ ମଧ୍ୟରେ ପ୍ରବିଷ୍ଟ ହେବାକୁ ଲାଗିଲା । ସନ୍ନ୍ୟାସୀମାନେ ଏହା ଦେଖି ଅବାକ୍ ହୋଇ ଶଙ୍କରଙ୍କୁ ଧନ୍ୟବାଦ ପ୍ରଦାନ କଲେ ।

ବନ୍ୟା କ୍ରମେ କ୍ରମେ ପ୍ରଶମିତ ହେଲା । କିଛିଦିନ ପରେ ଗୋବିନ୍ଦ ପାଦଙ୍କର ମଧ୍ୟ ସମାଧି ଭଙ୍ଗ ହେଲା । ସେ ଶିଷ୍ୟମାନଙ୍କଠାରୁ ବନ୍ୟା କଥା ଏବଂ ଶଙ୍କରଙ୍କର କାର୍ଯ୍ୟ ଶୁଣିବାକୁ ପାଇଲେ । ସେ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ଶଙ୍କରଙ୍କର ମସ୍ତକ ଚୁମ୍ବନ କରି କହିଲେ, ''ବତ୍ସ ! ମୁଁ ଆଶୀର୍ବାଦ କରୁଛି, ତୋର କୀର୍ତ୍ତି ଅକ୍ଷୟ ହେଉ । ସମଗ୍ର ବନ୍ୟା ଜଳ ଯେପରି ତୁ ଗୋଟିଏ କୁମ୍ଭ ମଧ୍ୟରେ ଆବଦ୍ଧ କରିପାରିଲୁ, ମୁଁ ଆଶୀର୍ବାଦ କରୁଛି, ସମଗ୍ର ବେଦର ଅର୍ଥ ତୁ ସେହିପରି ତୋର ଭାଷ୍ୟ ମଧ୍ୟରେ ଲିପିବଦ୍ଧ କରିପାରିବୁ । ସାଧନାରେ ଶିଷ୍ୟର ସିଦ୍ଧି ହେଲେ ଗୁରୁଙ୍କର ଯେପରି ଆନନ୍ଦ ହୁଏ, ଅନ୍ୟ କାହାରି ସେପରି ହୁଏ ନାହିଁ ।

ଏହି ଘଟଣାର କିଛିଦିନ ପରେ ଦିନେ ଗୋବିନ୍ଦପାଦ ଶଙ୍କରଙ୍କୁ ନିକଟକୁ ଡାକି କହିଲେ, ''ବତ୍ସ ! ମୁଁ ଆଜି ତୋତେ ମୋର ଶେଷ ବକ୍ତବ୍ୟ କହୁଛି । ତୋର ଆଉ କିଛି ଶିଖିବାର ଅବଶିଷ୍ଟ ନାହିଁ ବୋଲି ମୁଁ ବୁଝିଛି । କହ ଦେଖି, ତୋର କ'ଣ ଆଉ କିଛି ଅଭାବ ଅଛି ?'' ଶଙ୍କର ଗୁରୁଦେବଙ୍କର ଚରଣସ୍ପର୍ଶପୂର୍ବକ ମସ୍ତକ ଅବନତ କରି ରହିଲେ ଏବଂ ମୌନଦ୍ୱାରା ସମ୍ମତିସୂଚକ ଉତ୍ତର ଦେଲେ; କିନ୍ତୁ ଗୁରୁଙ୍କର ଇଚ୍ଛା ଯେ ଶଙ୍କରଙ୍କ ମୁଖରୁ ସେ ଉତ୍ତର ଶୁଣିବେ । ସୁତରାଂ ଗୋବିନ୍ଦପାଦ ପୁଣି ଶଙ୍କରଙ୍କୁ କହିଲେ, ''ବତ୍ସ ! ତୋର କ'ଣ ଆଉ କିଛି ସନ୍ଦେହ ଅଛି ? ମୋଠାରୁ ଆଉ କିଛି ଜ୍ଞାନ ତୋର ପ୍ରାପ୍ତବ୍ୟ ଅଛି ବୋଲି କ'ଣ ବୋଧକରୁଛୁ ?'' ଶଙ୍କର ଅବନତ ମସ୍ତକରେ ବିନୟ-ନମ୍ର-ସ୍ୱରରେ କହିଲେ, ''ଗୁରୁଦେବ ! ଆପଣଙ୍କ କୃପାରୁ ମୋର ଅନଧିଗତ ଜ୍ଞାତବ୍ୟ ଆଉ କିଛି ନାହିଁ । ଆପଣ ଅନୁମତି ଦେଲେ ମୁଁ ଚିରକାଳପାଇଁ ବ୍ରହ୍ମତତ୍ତ୍ୱରେ ନିର୍ବାଣ ଲାଭ କରିବି ।'' ଗୋବିନ୍ଦପାଦ ଏହା ଶୁଣି ଅତିଶୟ ସନ୍ତୁଷ୍ଟ ହୋଇ କହିଲେ, ''ବତ୍ସ ! ବୈଦିକ ଧର୍ମ ରକ୍ଷାନିମିତ୍ତ ଭଗବାନ୍ ଶଙ୍କରଙ୍କ ଅଂଶରେ ତୁ ଅବତୀର୍ଣ୍ଣ ହୋଇଅଛୁ । ତୋ ଦେହଲାଭର ମୂଳ ସେହି ଭଗବାନ ଶଙ୍କରଙ୍କର ଇଚ୍ଛା । ସୁତରାଂ ତୋ କାର୍ଯ୍ୟ ତାଙ୍କରି କାର୍ଯ୍ୟ । ତୋର ଆଗମନ ବାର୍ତ୍ତା ମୁଁ ମୋର ଗୁରୁ ଗୌଡ଼ପାଦଙ୍କ ନିକଟରୁ ଶୁଣିଥିଲି । ଗୁରୁପରମ୍ପରାକ୍ରମେ ରକ୍ଷିତ ଅଦ୍ୱୈତ ବ୍ରହ୍ମବିଜ୍ଞାନ ତୋତେ ଦେବାପାଇଁ ମୁଁ ଗୁରୁ ଗୌଡ଼ପାଦଙ୍କଦ୍ୱାରା ଆଦିଷ୍ଟ ହୋଇ ପ୍ରାୟ ଏକ ସହସ୍ର ବର୍ଷ କାଳ ସେଥିପାଇଁ ଅପେକ୍ଷା କରି ବସିଥିଲି । ବର୍ତ୍ତମାନ ମୋର କାର୍ଯ୍ୟ ଶେଷ

ହୋଇଅଛି । ମୁଁ ଆଉ ଶରୀର ଧାରଣ କରିବାର ଆବଶ୍ୟକତା ଅନୁଭବ କରୁ ନାହିଁ । ତୁ ବର୍ତ୍ତମାନ କାଶୀଧାମକୁ ଯା, ସେଠାରେ ଭଗବାନ୍ ବିଶ୍ୱେଶ୍ୱରଙ୍କର ଦର୍ଶନ ଲାଭ କଲା ପରେ ସେ ଯାହା ଆଦେଶ ଦେବେ, ତାହା ହିଁ କର । ମୋର ମନେହେଉଛି, ମହାମୁନି ବ୍ୟାସଦେବଙ୍କ ରଚିତ ବ୍ରହ୍ମସୂତ୍ରର ଭାଷ୍ୟ ରଚନା କରି ଅଦ୍ୱୈତ ବ୍ରହ୍ମଜ୍ଞାନ ପ୍ରଚାର କରିବାନିମିତ୍ତ ସେ ତୋତେ ଆଦେଶ ଦେବେ । କାରଣ ବର୍ତ୍ତମାନ ଅବୈଦିକ ନାନା ଧର୍ମମତାବଲମ୍ବୀମାନେ ଅତି ସୂକ୍ଷ୍ମ ଦାର୍ଶନିକ ତତ୍ତ୍ୱ ପ୍ରଚାର କରି ଜନସମାଜକୁ ଏପରି ଭାବରେ ବିମୋହିତ କରି ପକାଇଛନ୍ତି ଯେ, ସେମାନଙ୍କର ତର୍କଜାଲ ଭେଦ କରି ପରମାତ୍ମତତ୍ତ୍ୱ ଅବଧାରଣ କରିବା ଏକ ପ୍ରକାର ଅସମ୍ଭବ ହୋଇପଡ଼ିଛି । କେବଳ ଏତିକି ନୁହେଁ, ଦେବସେବୀ ମୀମାଂସକମାନେ ମଧ୍ୟ କର୍ତ୍ତବ୍ୟାକର୍ତ୍ତବ୍ୟ ଏତେ ପରିମାଣରେ ପ୍ରଚାର କରିଛନ୍ତି ଯେ, ବେଦର କର୍ମକାଣ୍ଡ ମଧ୍ୟ ବିଲୁପ୍ତ ହେବାକୁ ବସିଅଛି । ଭଗବଦାବତାରଙ୍କ ଭିନ୍ନ ବର୍ତ୍ତମାନ ଧର୍ମରକ୍ଷା ଅସମ୍ଭବ । ତୁ ସେହି ଜ୍ଞାନଗୁରୁ ଶଙ୍କରାବତାର । ସେହି କାର୍ଯ୍ୟ କରିବାନିମିତ୍ତ ତୋର ଆଗମନ । ତୋତେ ସେହି ବ୍ରହ୍ମଜ୍ଞାନ ଶିକ୍ଷା ଦେବା ନିମିତ୍ତ ମୁଁ ଏତେ କାଳହେଲା ଗୁରୁ ଗୌଡ଼ପାଦଙ୍କ ଆଦେଶରେ ଅପେକ୍ଷା କରିଥିଲି; ଆଜି ତାହା ପୂର୍ଣ୍ଣ ହୋଇଅଛି । ମୋ ଶରୀରକୁ ଯୋଗୀଜନୋଚିତ ସତ୍କାର କର ।''

ଗୁରୁଦେବଙ୍କର କଥା ଶୁଣି ଶଙ୍କର ବିଶେଷ ଶୋକାକୁଳ ହୋଇପଡ଼ିଲେ । ସଙ୍ଗେ ସଙ୍ଗେ ଜ୍ଞାନବଳରେ ସେ ଏହି ଶୋକସମ୍ବରଣପୂର୍ବକ ବିସ୍ମୟ ଓ ଉତ୍ସାହପୂର୍ଣ୍ଣ ହୃଦୟରେ ବିନୀତ ଭାବରେ କହିଲେ, ''ଆପଣଙ୍କର ରହସ୍ୟପୂର୍ଣ୍ଣ ବାକ୍ୟ ମୁଁ ହୃଦୟଙ୍ଗମ କରିପାରୁ ନାହିଁ । ଭଗବାନ ଭବାନୀପତି ମୋର ଏହି ଶରୀରଦ୍ୱାରା ଏହିସବୁ କାର୍ଯ୍ୟ କରିବେ, ଏକଥା କ'ଣ ପୂର୍ବରୁ ନିର୍ଦ୍ଧାରିତ ଥିଲା ? ଏହା ବଡ଼ ବିସ୍ମୟକର । ଆପଣଙ୍କଠାରୁ ବିଶଦ ଭାବରେ ଶୁଣିବାକୁ ଇଚ୍ଛା ହେଉଅଛି । କୃପା କରି ମୋର ଏହି ରହସ୍ୟ ଉଦ୍‌ଘାଟନ କରନ୍ତୁ ।''

ଗୋବିନ୍ଦପାଦ ଈଷଦ୍ ହାସ୍ୟ କରି କହିଲେ, ''ତେବେ ଶୁଣ । ବହୁକାଳ ପୂର୍ବେ ହିମାଳୟ ପ୍ରଦେଶରେ ଗୋଟିଏ ଯଜ୍ଞ ହେଉଥିଲା । ଅତ୍ରିମୁନି ସେହି ଯଜ୍ଞର ଋତ୍ୱିକ୍ ଥିଲେ । ସେହି ସମୟରେ ଦିନେ ସ୍ୱଶରୀରରେ ଚତୁର୍ଯୁଗ ଅମର ବ୍ୟାସଦେବ ନିଜର ବ୍ରହ୍ମସୂତ୍ରାର୍ଥ ବ୍ୟାଖ୍ୟା କରି ଶ୍ରୋତୃବୃନ୍ଦଙ୍କର ଚରିତାର୍ଥ କରୁଥିଲେ । ମୁଁ ବ୍ୟାସଦେବଙ୍କର ବ୍ୟାଖ୍ୟା ଶୁଣି ବୁଝିଲି, ନାନା ଲୋକ ବ୍ରହ୍ମସୂତ୍ରର ନାନା ଅର୍ଥ

କରିଥାଆନ୍ତି; କିନ୍ତୁ କାହାରି ଅର୍ଥ ବ୍ୟାସଦେବଙ୍କର ସଂପୂର୍ଣ୍ଣ ମନୋମତ ନୁହେଁ । ଅଧିକନ୍ତୁ ଏହା ଫଳରେ ପ୍ରକାରାନ୍ତରେ ଅଧର୍ମ ହିଁ ବୃଦ୍ଧିପାଉଅଛି । ବ୍ୟାଖ୍ୟା ଶେଷ ପରେ ମୁଁ ଲୋକହିତପାଇଁ ବ୍ରହ୍ମସୂତ୍ରର ଭାଷ୍ୟ ରଚନା କରିବାକୁ ବ୍ୟାସଦେବଙ୍କୁ ଅନୁରୋଧ କଲି । କିନ୍ତୁ ତାହାର ଉତ୍ତରରେ ସେ ମୋତେ କୈଳାସର ଗୋଟିଏ ଇତିବୃତ୍ତ ବର୍ଣ୍ଣନା କଲେ । ତାହା କୁହୁଛି ଶୁଣ—

କୌଣସି ସମୟରେ ଦେବତାମାନେ ବୈଦିକ ଧର୍ମର ଏହି ଦୁରବସ୍ଥା ପୂର୍ବରୁ ଅନୁମାନ ନ କରି ଦିନେ କୈଳାସପୁରୀରେ ଶଙ୍କରଙ୍କ ସଭାରେ ଏହାର ପ୍ରତିକାର ପ୍ରାର୍ଥନା କଲେ । ଉତ୍ତରରେ ଶଙ୍କର କହିଲେ, ''ଏ କାର୍ଯ୍ୟ ବଡ଼ କଠିନ । ଯେ ଗୋଟିଏ ମାତ୍ର କୁମ୍ଭରେ ସହସ୍ର ନଦୀଧାରାକୁ ସଂହୃତ କରିବା ସଦୃଶ ସମୁଦାୟ ବିରୁଦ୍ଧ ଧର୍ମମତ ଓ ମୋର (ବ୍ୟାସଦେବଙ୍କର) ବ୍ରହ୍ମସୂତ୍ରର ଅବଲମ୍ବନରେ ଗୋଟିଏ ଉଚ୍ଚତମ ସାର୍ବଭୌମ ମତ ଅନ୍ତର୍ଗତ କରିପାରିବ, ତାହାଦ୍ୱାରା ହିଁ ଏ କାର୍ଯ୍ୟ ସାଧିତ ହେବ ।'' ଏହା ଶୁଣି ଦେବତାମାନେ ନିଜେ ଶଙ୍କରଙ୍କୁ ହିଁ ଏହା କରିବାପାଇଁ ଅନୁରୋଧ କଲେ ଏବଂ ଅବଶେଷରେ ଶଙ୍କର ଏଥିରେ ସ୍ୱୀକୃତ ହେଲେ । ବେଦବ୍ୟାସ ଆହୁରି କହିଲେ, ''ପୂର୍ବରୁ ଋଷିସମିତିରେ ଏହି ପ୍ରସ୍ତାବ ଉତ୍‌ଥାପିତ ହୋଇଥିଲା । ସେଠାରେ ସ୍ଥିର ହେଲା ଯେ ଯେଉଁ ବ୍ୟକ୍ତି ଗୋଟିଏ କୁମ୍ଭ ମଧ୍ୟରେ ସମୁଦାୟ ନଦୀଜଳ ରକ୍ଷା କରିପାରିବ, ସେହି ବ୍ୟକ୍ତି ହିଁ ବ୍ରହ୍ମସୂତ୍ରର ପ୍ରକୃତ ଅର୍ଥ ନିର୍ଣ୍ଣୟ କରିବାକୁ ସମର୍ଥ ହେବ । ବତ୍ସ ! ମୁଁ ତୋର ବନ୍ୟା ସମୟର ଅଦ୍ଭୁତ କାର୍ଯ୍ୟ ଅବଗତ ହୋଇ ବୁଝିଛି ଯେ, ତୁ ସେହି ଅଦ୍ଭୁତ ଶଙ୍କର। ତୁ କେବଳ ବ୍ରହ୍ମସୂତ୍ରର ପ୍ରକୃତ ଅର୍ଥ ନିର୍ଣ୍ଣୟ କରିବାକୁ ସମର୍ଥ ହେବୁ। ବତ୍ସ ! ବର୍ତ୍ତମାନ ତୁ କାଶୀଧାମକୁ ଯା, ହୃଦୟକୁ ପ୍ରଫୁଲ୍ଲ କର । ସିଦ୍ଧିଲାଭ ପରେ ଲୋକହିତନିମିତ୍ତ ଜୀବନ ଉତ୍ସର୍ଗ କରିବା ଅପେକ୍ଷା ଶ୍ରେଷ୍ଠଧର୍ମ ଆଉ ନାହିଁ ।'' ଏହା କହି ଶୁଭ ଦିନରେ ଗୋବିନ୍ଦପାଦ ଶିଷ୍ୟମାନଙ୍କୁ ଆଶୀର୍ବାଦ କରି ମହାସମାଧିମଗ୍ନ ହେଲେ । ଓଁକାରନାଥର ଜ୍ଞାନସୂର୍ଯ୍ୟ ଅସ୍ତମିତ ହେଲା ।



# ଇଷ୍ଟପ୍ରୀତି ଓ କୃପାଲାଭ

ଗୁରୁଦେବଙ୍କର ଆଦେଶ ଶିରୋଧାର୍ଯ୍ୟ କରି ଶଙ୍କର ବହୁ ଦେଶ ଭ୍ରମଣ କରି ଅବଶେଷରେ ବାରାଣାସୀ କ୍ଷେତ୍ରରେ ଉପନୀତ ହେଲେ । ଅସଂଖ୍ୟ ଦେବମନ୍ଦିର ଓ ମଠପରିବ୍ୟାପ୍ତ ବାରଣସୀର ଅପୂର୍ବ ସୌନ୍ଦର୍ଯ୍ୟ ନିରୀକ୍ଷଣ କରି ସେ ମୁଗ୍ଧ ହୋଇପଡ଼ିଲେ ଏବଂ ଈଶ୍ୱରଙ୍କ ଚରଣରେ ପ୍ରଣିପାତପୂର୍ବକ ସେଠାରେ ଅବସ୍ଥାନ କରିବାକୁ ଲାଗିଲେ । ବ୍ରହ୍ମଜ୍ଞାନ ଲାଭ ହେବା ପରେ ଦେହରେ ଅବସ୍ଥାନ କରିବାକୁ ହେଲେ କେବଳ ଗୁରୁଦେବଙ୍କର ଆଦେଶପାଳନିମିତ୍ତ ଏହା ସମ୍ଭବ ହୋଇଥାଏ । କାରଣ ଗୁରୁଦେବଙ୍କର ଆଦେଶପାଳନ ହିଁ ଶିଷ୍ୟଙ୍କର କର୍ତ୍ତବ୍ୟ । ଜ୍ଞାନୀମାନେ ପ୍ରାରବ୍ଧକ୍ଷୟନିମିତ୍ତ ଦେହ ଧାରଣ କରନ୍ତି । ଗୁରୁଦେବଙ୍କର ଆଦେଶ ପ୍ରତିପାଳନକୁ ଶଙ୍କର ପ୍ରାରବ୍ଧ ବୋଲି ମନେକରି ମଣିକର୍ଣ୍ଣିକା ନିକଟରେ ଗୋଟିଏ ସ୍ଥାନ ନିର୍ଦ୍ଦିଷ୍ଟ କରି ସେଠାରେ ଅବସ୍ଥାନ କଲେ । ପ୍ରତ୍ୟହ ଯଥାବିଧି ନିତ୍ୟକର୍ମ, ବିଶ୍ୱେଶ୍ୱର, ଅନ୍ନପୂର୍ଣ୍ଣା ପ୍ରଭୃତି ଦେବ-ଦେବୀଙ୍କ ଦର୍ଶନ କରି ଶାସ୍ତ୍ର ବ୍ୟାଖ୍ୟାରେ କାଳାତିପାତ କରିବାକୁ ଲାଗିଲେ । ତାଙ୍କ କଥା କ୍ରମେ କାଶୀଧାମରେ ସର୍ବତ୍ର ପ୍ରଚାରିତ ହେଲା । ଗୋଟିଏ ଅସାଧାରଣ ପଣ୍ଡିତ ଦ୍ୱାଦଶବର୍ଷୀୟ ବାଳକ-ସନ୍ନ୍ୟାସୀ କାଶୀଧାମରେ ଉପସ୍ଥିତ ହୋଇଛନ୍ତି ଏ କଥା ଜାଣି କ୍ରମେ ବହୁ ଲୋକ ତାଙ୍କର ଉପଦେଶ ଶୁଣିବାପାଇଁ ବ୍ୟଗ୍ର ହୋଇ ପ୍ରତ୍ୟହ ଅପରାହ୍ଣରେ ତାଙ୍କ ନିକଟକୁ ଆଗମନ କଲେ । ଶଙ୍କର ଗୁରୁମୁଖରୁ ବ୍ରହ୍ମସୂତ୍ରର ଅର୍ଥ ଯେଉଁ ଭାବରେ ଶିକ୍ଷାଲାଭ କରିଥିଲେ, ସେହି ତତ୍ତ୍ୱ ସେ ସର୍ବସାଧାରଣଙ୍କୁ ବୁଝାଇବା ନିମିତ୍ତ ପ୍ରବୃତ୍ତ ହେଲେ । ବ୍ରହ୍ମସୂତ୍ରର ଅପୂର୍ବ ବ୍ୟାଖ୍ୟା ଶଙ୍କରଙ୍କ ମୁଖରୁ ଶୁଣି ସମସ୍ତେ ମୁଗ୍ଧ ହୋଇଗଲେ । ଯେଉଁ ବିରୁଦ୍ଧବାଦୀମାନେ ତାଙ୍କ ସହିତ ତର୍କ କରିବାରେ ପ୍ରବୃତ୍ତ ହେଉଥିଲେ କିମ୍ବା ବିଚାରପ୍ରାର୍ଥୀ ହେଉଥିଲେ, ସେମାନେ ଶଙ୍କରଙ୍କର ତତ୍ତ୍ୱବ୍ୟାଖ୍ୟା ଶ୍ରବଣ କରି ମସ୍ତକ ଅବନତପୂର୍ବକ ତାଙ୍କର ଶିଷ୍ୟତ୍ୱ ସ୍ୱୀକାର କରୁଥିଲେ । ଗୁରୁକୃପାବଳରେ ଶଙ୍କରଙ୍କର ସମସ୍ତ ବାସନା କ୍ଷୟ ହୋଇଯାଇଥିଲେ ମଧ୍ୟ ବିରୁଦ୍ଧବାଦୀମାନଙ୍କର ଯୁକ୍ତି ଶ୍ରବଣ କରି ବେଦର ପ୍ରକୃତ ଅର୍ଥ ପ୍ରଚାର କରିବାର ଆବଶ୍ୟକତା ସେ ପୁନରାୟ ଅନୁଭବ

କଲେ । କ୍ରମେ ଶାସ୍ତ୍ରବ୍ୟାଖ୍ୟା ଓ ବେଦାନ୍ତର ଅର୍ଥ ପ୍ରଚାର ଶଙ୍କରଙ୍କର ପ୍ରଧାନ କର୍ତ୍ତବ୍ୟ ରୂପେ ପରିଗଣିତ ହେଲା । ସେ ନିଶ୍ଚିନ୍ତ ଅବସ୍ଥାରେ ଅବସ୍ଥାନ କରିବାପାଇଁ ଇଚ୍ଛା କରୁଥିଲେ ମଧ୍ୟ ଲୋକେ ତାଙ୍କୁ ନିଶ୍ଚିନ୍ତ ହୋଇ ବସାଇ ଦେଲେ ନାହିଁ । ସେ ପ୍ରଚାର କଲେ ଯେ ବ୍ରହ୍ମ ସତ୍ୟ; ଜଗତ୍ ମିଥ୍ୟା । ଜୀବ ବ୍ରହ୍ମ ଭିନ୍ନ ଆଉ କିଛି ନୁହେଁ । ନିର୍ବିଶେଷ ବ୍ରହ୍ମରେ ଶକ୍ତିର ସ୍ଥାନ ନାହିଁ, ଇତ୍ୟାଦି ।

ଦିନେ ଶଙ୍କର ମଣିକର୍ଣ୍ଣିକା ଘାଟକୁ ସ୍ନାନ କରିବାନିମିତ୍ତ ଗମନ କରୁଛନ୍ତି, ପଥମଧ୍ୟରେ ଦେଖିଲେ ଗୋଟିଏ ଯୁବତୀ ନିଜ ମୃତ ପତିଙ୍କ ମସ୍ତକ କୋଳରେ ରଖି କ୍ରନ୍ଦନ କରୁଅଛି । ମୃତ ଶରୀରଟି ମଣିକର୍ଣ୍ଣିକାର ସଂକୀର୍ଣ୍ଣ ପଥ ରୁଦ୍ଧ କରି ପଡ଼ିରହିଛି । ସ୍ତ୍ରୀଲୋକଟି ନିକଟରେ ଯାହାକୁ ଦେଖୁଛି, ତା ନିକଟରେ ପତିଙ୍କ ସତ୍କାରପାଇଁ ସାହାଯ୍ୟ ଭିକ୍ଷା କରି କ୍ରନ୍ଦନ କରୁଅଛି । ମୃତ ଶରୀରଟି ପଥରୋଧ କରିଥିବାରୁ ଶଙ୍କର ତାକୁ ଅତିକ୍ରମ କରି ସ୍ନାନ କରିବାକୁ ଯାଇ ନ ପାରି ବହୁକ୍ଷଣ ଅପେକ୍ଷା କଲା ପରେ ଅବଶେଷରେ ସ୍ତ୍ରୀଲୋକଟିକୁ କହିଲେ, ''ମା ! ଯଦି ଶବଟିକୁ ଗୋଟିଏ ପାଖ କରି ରଖନ୍ତ, ତେବେ ଆମେ ସ୍ନାନ କରିବାକୁ ଯାଇପାରନ୍ତୁ ।'' ସ୍ତ୍ରୀଲୋକଟି ଏପରି ଶୋକାଭିଭୂତା ହୋଇପଡ଼ିଥିଲା ଯେ, ଏକଥା ସେ ଶୁଣିପାରିଲା ନାହିଁ । ଶଙ୍କର ପୁନଃ ପୁନଃ ତାକୁ ଅନୁରୋଧ କରିବାରୁ ଶେଷରେ ସ୍ତ୍ରୀଲୋକଟି କହିଲା, ''ମହାଶୟ ! ଶବକୁ ଘୁଞ୍ଚିଯିବାକୁ ନ କହି ମୋତେ ଅନୁରୋଧ କରୁଛନ୍ତି କାହିଁକି ?'' ଆଚାର୍ଯ୍ୟ ଟିକିଏ ବିସ୍ମିତ ହୋଇ କହିଲେ, ''ମା ! ଶବ କ'ଣ ଘୁଞ୍ଚିପାରେ ? ଏହାର କ'ଣ ଶକ୍ତି ଅଛି ଯେ ଅନ୍ୟ କେହି ଘୁଞ୍ଚାଇ ନ ଦେଲେ ନିଜେ ସେ ଘୁଞ୍ଚିଯିବ ?'' ସ୍ତ୍ରୀଲୋକଟି କହିଲା, ''ମହାଶୟ ! ଆପଣଙ୍କ ମତରେ ତ ଶକ୍ତିଶୂନ୍ୟ ବ୍ରହ୍ମଙ୍କର ହିଁ ଜଗତ୍ କର୍ତ୍ତୃତ୍ୱ । ତେବେ ଶବ କାହିଁକି ଘୁଞ୍ଚିବ ନାହିଁ ?'' ସ୍ତ୍ରୀଲୋକଟିର ଏହି କଥା ଶୁଣି ଶଙ୍କର ସ୍ତମ୍ଭିତ ହୋଇଗଲେ । ସେ ଭାବିଲେ, ଏହା କ'ଣ ଦୈବଲୀଳା ? ଏଣେ ନିମିଷକ ମଧ୍ୟରେ ଶବସହିତ ଯୁବତୀ ଅନ୍ତର୍ଦ୍ଧାନ ହୋଇଗଲେ । ଶଙ୍କର ଭାବିଲେ, ଏହା ଭଗବାନଙ୍କ କୃପା ଭିନ୍ନ ଆଉ କିଛି ନୁହେଁ । ଶକ୍ତିଶୂନ୍ୟ ନିର୍ବିଶେଷ ବ୍ରହ୍ମତତ୍ତ୍ୱର ଉପଦେଶ ସାଧାରଣଙ୍କ ପକ୍ଷରେ ଉଚିତ ନୁହେଁ । ଶକ୍ତିମାନ୍ ସବିଶେଷ ବ୍ରହ୍ମଉପାସନା

ହିଁ ସେମାନଙ୍କର ପଥ । ସେମାନଙ୍କୁ ତାହା ହିଁ ଉପଦେଶ ଦେବା ବିଧେୟ । ଫଳରେ ସେହି ଦିନଠାରୁ ଶଙ୍କର ଅଧିକାର ବିଚାରପୂର୍ବକ ବ୍ରହ୍ମତତ୍ତ୍ୱର ଉପଦେଶ ଦେବାକୁ ଆରମ୍ଭ କଲେ ।

ଏହା ପରେ କାଶୀଧାମରେ ଶଙ୍କରଙ୍କର ବହୁ ଲୋକ ଶିଷ୍ୟତ୍ୱ ଗ୍ରହଣ କରିଥିଲେ ମଧ୍ୟ କେହି ତାଙ୍କର ଅବଲମ୍ବିତ ପଥର ଅନୁସରଣ କରିବାକୁ ଆଗ୍ରହ ପ୍ରକାଶ କରି ନ ଥିଲେ । ଏହି ସମୟରେ ଚୋଳଦେଶର ସନନ୍ଦନ ନାମକ ଜଣେ କୃତବିଦ୍ୟ ବ୍ରାହ୍ମଣକୁମାର ତାଙ୍କର ପ୍ରଥମ ଶିଷ୍ୟତ୍ୱ ସ୍ୱୀକାର କରିଥିଲେ । ତାଙ୍କର ବିବରଣ ଯଥାସ୍ଥାନରେ ପ୍ରଦତ୍ତ ହୋଇଅଛି ।



# ବିଶ୍ୱେଶ୍ୱର ଦର୍ଶନ

କେରଳ ଦେଶରେ ନୀଚ ଜାତି ଚଣ୍ଡାଳ ପ୍ରଭୃତି ଲୋକଙ୍କୁ ଅତିଶୟ ଅସ୍ପୃଶ୍ୟ ଜ୍ଞାନ କରାଯାଇଥାଏ । ବ୍ରାହ୍ମଣମାନେ ଏହି ନୀଚ ଜାତି ଲୋକଙ୍କଠାରୁ ଶତହସ୍ତ ଦୂରରେ ଅବସ୍ଥାନ କରନ୍ତି । ଏମାନେ ମଧ୍ୟ ଉଚ୍ଚ ବର୍ଣ୍ଣଙ୍କୁ ଦେଖିବା ମାତ୍ରେ ଶହେ ହାତ ଦୂରରୁ ପଥ ଛାଡ଼ିଦିଅନ୍ତି । ସେ ଦେଶର ଏହା କଠୋର ଆଚାର । ଆଚାର୍ଯ୍ୟ ପୂର୍ଣ୍ଣଜ୍ଞାନୀ ହେଲେ ମଧ୍ୟ ବ୍ୟବହାରକ୍ଷେତ୍ରରେ ସମଦର୍ଶନ ହୋଇପାରି ନ ଥିଲେ । ସେ ନୀଚ ଜାତି ବିଷୟକ ଆଜନ୍ମ ଅଭ୍ୟାସ ଓ ଜନ୍ମଭୂମିର କଠୋର ଆଚାର ସେପର୍ଯ୍ୟନ୍ତ ପରିତ୍ୟାଗ କରିପାରି ନ ଥିଲେ । ବ୍ୟବହାର ଜ୍ଞାନପୂର୍ବକ ହେବାର କଥା; କିନ୍ତୁ ଅଭ୍ୟାସ ଯେତେବେଳେ ଦୃଢ଼ ହୋଇଯାଏ, ସେତେବେଳେ ତାହା ସଂସ୍କାରରେ ପରିଣତ ହୋଇଯାଏ ଏବଂ ଅଜ୍ଞାତସାରରେ ତାହା ଆଚାର-ବ୍ୟବହାରରେ ଆତ୍ମପ୍ରକାଶ କରିଥାଏ । ଶଙ୍କର ନୀଚ ବର୍ଣ୍ଣର ଚଣ୍ଡାଳାଦି ଲୋକଙ୍କୁ ଦେଖିବା ମାତ୍ରେ ଦୂରରେ ଅବସ୍ଥାନ କରୁଥିଲେ । କିନ୍ତୁ ଜ୍ଞାନଲାଭ ହେଲେ ଯଦି ଅଜ୍ଞାନ ନଷ୍ଟ ହୁଏ ଏବଂ ଅଜ୍ଞାନତା ନଷ୍ଟ ହେଲେ ସେହି ଅଜ୍ଞାନତାଜନିତ ଯେଉଁ ବ୍ୟବହାର ତାହା ଯଦି ନଷ୍ଟ ହୁଏ, ପୁଣି ବ୍ୟକ୍ତିବିଶେଷଙ୍କଠାରେ ଯଦି ଏହାର ଅନ୍ୟଥା ପରିଲକ୍ଷିତ ହୁଏ ଅର୍ଥାତ୍ ଜ୍ଞାନଲାଭ ହୋଇଥିଲେ ମଧ୍ୟ ଯଦି ବ୍ୟବହାର ନଷ୍ଟ ନ ହୁଏ, ଅଥବା ବ୍ୟବହାରର ସଂସ୍କାର ବା ପରିମାର୍ଜନ ନ ହୁଏ, ତେବେ ସେହି ଜ୍ଞାନ ସେପର୍ଯ୍ୟନ୍ତ ତାଙ୍କଠାରେ ସଂପୂର୍ଣ୍ଣ ଫଳପ୍ରଦ ହୋଇ ନ ଥାଏ ବୋଲି କହିବାକୁ ହେବ । ଏଥିରେ ସାମାନ୍ୟ ତ୍ରୁଟି ରହିଛି ବୋଲି ମାନିବାକୁ ହେବ । ଭଗବାନ ବିଶ୍ୱେଶ୍ୱର ଆଚାର୍ଯ୍ୟ ଶଙ୍କରଙ୍କର ଏ ତ୍ରୁଟି ନିବାରଣ କଲେ । ଦିନେ ଶିଷ୍ୟମାନଙ୍କ ସହିତ ମଣିକର୍ଣ୍ଣିକାଘାଟକୁ ସ୍ନାନନିମିତ୍ତ ଗମନ କରୁଥିବା ସମୟରେ ଶଙ୍କର ଦେଖିଲେ ଯେ, ଭଗବାନ ବିଶ୍ୱନାଥ ଗୋଟିଏ ଭୀମଦର୍ଶନ ଚଣ୍ଡାଳର ବେଶ ଧାରଣ କରି ଚାରିଗୋଟି ଶୃଙ୍ଖଳାବଦ୍ଧ ଉଦ୍ଧତ ସାରମେୟ ସଙ୍ଗରେ ନେଇ ମଣିକର୍ଣ୍ଣିକା ପଥମଧ୍ୟରେ ଆଚାର୍ଯ୍ୟଙ୍କ ସମ୍ମୁଖକୁ ଅଗ୍ରସର ହେଉଛନ୍ତି । ଆଚାର୍ଯ୍ୟ ଏହା ଦେଖି ଚଣ୍ଡାଳକୁ ସାରମେୟଗୁଡ଼ିକୁ ସଂଯତ କରି ଟିକିଏ ଦୂରକୁ ଚାଲିଯିବାକୁ ଅନୁରୋଧ କଲେ । କିନ୍ତୁ ଚଣ୍ଡାଳ ସେଥିରେ କର୍ଣ୍ଣପାତ ନ କରି ଅଚାର୍ଯ୍ୟଙ୍କର ଆହୁରି ନିକଟକୁ ଅଗ୍ରସର ହେଲା । ଆଚାର୍ଯ୍ୟ ପୁନରାୟ ଚଣ୍ଡାଳକୁ ଦୂରକୁ ଘୁଞ୍ଚିଯିବା ପାଇଁ ଅନୁରୋଧ

କରିବାକୁ ଚଣ୍ଡାଳ ସଗର୍ବରେ ଆଚାର୍ଯ୍ୟଙ୍କ ସମ୍ମୁଖରେ ଅବସ୍ଥାନ କରି ବିକଟ ହାସ୍ୟ ସହକାରେ ସଂସ୍କୃତ ଶ୍ଳୋକରେ କହିଲେ, ''ଆପଣ କାହାକୁ ଦୂରକୁ ଘୁଞ୍ଚିଯିବାକୁ କହୁଛନ୍ତି ? ଆତ୍ମା ତ ସର୍ବବ୍ୟାପୀ, ନିଷ୍କ୍ରିୟ ଏବଂ ସତତ ଶୁଦ୍ଧସ୍ୱଭାବ । ସେ କିପରି ବା କେଉଁଠାକୁ ଘୁଞ୍ଚିଯିବ ଏବଂ ତାହା ଅପବିତ୍ର ହେବ ବା କିପରି ? ଗଙ୍ଗା ଜଳରେ ପ୍ରତିବିମ୍ବିତ ଚନ୍ଦ୍ର ଓ ସୁରା ମଧ୍ୟରେ ପ୍ରତିବିମ୍ବିତ ଚନ୍ଦ୍ରକୁ ଆପଣ କ'ଣ ପୃଥକ୍ ଜ୍ଞାନ କରନ୍ତି ? ପୁଣି ଯଦି ଦେହକୁ ଦୂରକୁ ଘୁଞ୍ଚିଯିବାକୁ କହୁଥାନ୍ତି, ତେବେ ଦେହ ତ ଜଡ଼—ସେହି ଜଡ଼ବସ୍ତୁ ଦୂରକୁ ଚାଲିଯିବ ବା କିପରି ? ଆପଣ ସନ୍ନ୍ୟାସୀ ହୋଇ ନିଶ୍ଚୟ ଲୋକବଞ୍ଚନା କରୁଛନ୍ତି । ଆପଣ ମୋତେ ଦୂରକୁ ଘୁଞ୍ଚିଯିବାକୁ କହୁଛନ୍ତି, ଏହା ଅତି ଅସଙ୍ଗତ । ବେଦରେ କଥିତ ଅଛି—ଆତ୍ମା ଏକ, ଅଦ୍ୱିତୀୟ, ପାପଶୂନ୍ୟ, ନିରଞ୍ଜନ, ଅସଙ୍ଗ, ସତ୍ୟ, ଜ୍ଞାନ ଓ ଆନନ୍ଦସ୍ୱରୂପ । ଅତଏବ ଆପଣ ଜଣେ ପ୍ରସିଦ୍ଧ ବୈଦାନ୍ତିକ ହୋଇ ସେହି ଆତ୍ମାର ଭେଦ କଳ୍ପନା କରୁଛନ୍ତି ବା କିପରି ? ଯାହାଙ୍କ ହସ୍ତରେ ଦଣ୍ଡ ଓ କମଣ୍ଡଳୁ, ଯେ ପାଟଳବର୍ଣ୍ଣ ବସ୍ତ୍ର ପରିଧାନ କରନ୍ତି ଏବଂ ଯେ ପରମଜ୍ଞାନୀ ବୋଲି ଖ୍ୟାତ, ଦେଖୁଛି ତାଙ୍କର ତ ଲେଶମାତ୍ର ଜ୍ଞାନ ହୋଇ ନହିଁ ଅଥଚ ବାକ୍ୟ-ବିନ୍ୟାସରେ ସେ ଅତିଶୟ ପଟୁ । ସେ ତାହାହେଲେ ନିଶ୍ଚୟ ଗୃହସ୍ଥମାନଙ୍କୁ ବଞ୍ଚନା କରୁଛନ୍ତି । ମହାଶୟ ! ତୁମେ ଦୂରକୁ ଘୁଞ୍ଚିଯାଅ, ଏହାର ଅର୍ଥ ତୁମେ ଶରୀର ତ୍ୟାଗ କର, ନୁହେଁ କି ? ଅଥବା ଆତ୍ମା ପରିତ୍ୟାଗ କର ବୋଲି ବୁଝାଉ ନାହିଁ କି ? ଭାବି ଦେଖନ୍ତୁ, ଏପରି କଥା କହିବା କ'ଣ ଆପଣଙ୍କ ପରି ଜ୍ଞାନୀ ବ୍ୟକ୍ତିଙ୍କପକ୍ଷରେ ଉଚିତ ହେଉଛି ? ଯତିବର ! ଆପଣ ଜାଣନ୍ତି, ଅନ୍ନମୟରୁ ଅନ୍ନମୟ ତ ଭିନ୍ନ ନୁହେଁ ? ଅମ୍ବରମଣି ସୂର୍ଯ୍ୟ ଜାହ୍ନବୀଜଳରେ କିମ୍ବା ମଦିରାରେ ପତିତ ହେଲେ ମଧ୍ୟ ସେ ଏକ ଭିନ୍ନ ଦୁଇ ନୁହନ୍ତି । ସୁତରାଂ ଜଣେ ବ୍ରାହ୍ମଣ, ପୁଣି ଅନ୍ୟ ଜଣେ ଚଣ୍ଡାଳ—ଏପରି ଭେଦ ବିଚାର କରିବା କ'ଣ ଆପଣଙ୍କ ଭଳି ଜ୍ଞାନୀ ବ୍ୟକ୍ତିଙ୍କପକ୍ଷରେ ଶୋଭନୀୟ ହେଉଅଛି ? ମୁକ୍ତିର ପ୍ରଧାନ ସୋପାନରେ ଆରୋହଣପୂର୍ବକ ତତ୍ତ୍ୱଜ୍ଞାନ ଲାଭ କରି ଆପଣଙ୍କସଦୃଶ ବ୍ୟକ୍ତି ଯେତେବେଳେ ତୁଚ୍ଛ ଲୌକିକ କୁସଂସ୍କାର ପରିତ୍ୟାଗ କରିବାକୁ ଅକ୍ଷମ, ସେତେବେଳେ ଅନ୍ୟମାନଙ୍କୁ ଆଉ କ'ଣ କୁହାଯିବ ?''

ତତ୍ପରେ ଶଙ୍କର ବିସ୍ମିତ ହୋଇ କହିଲେ—''ମହାଶୟ ! ଆପଣ ଆତ୍ମତତ୍ତ୍ୱବିତ୍‌ମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଆପଣଙ୍କ ଉପଦେଶ ଅନୁସାରେ ମୁଁ

ଭେଦବୁଦ୍ଧି ପରିତ୍ୟାଗ କଲି । ଅଭେଦବୁଦ୍ଧି ପ୍ରକୃତପକ୍ଷରେ ଅତିଶୟ ଦୁର୍ଲ୍ଲଭ । କେହି ସହଜରେ ଅଭେଦବୁଦ୍ଧି ଲାଭ କରିପାରିବେ ନାହିଁ । ଅନେକ ତତ୍ତ୍ୱଜ୍ଞାନୀ ମଧ୍ୟ ନାନା ପ୍ରତିବନ୍ଧକହେତୁ ଭେଦବୁଦ୍ଧି ପରିତ୍ୟାଗ କରିପାରନ୍ତି ନାହିଁ । ଯାହାଙ୍କର ହୃଦୟରୁ ଭେଦବୁଦ୍ଧି ଲୋପ ହୋଇଯାଇଛି, ସେ ବ୍ରାହ୍ମଣ କିମ୍ବା ଚଣ୍ଡାଳ ଯାହା ହେଲେ ମଧ୍ୟ ମୋର ପୂଜ୍ୟ । ତାଙ୍କ ଚରଣରେ ଶତକୋଟି ପ୍ରଣାମ ।''

ଏହା ପରେ ଭଗବାନ ବିଶ୍ୱେଶ୍ୱର ନିଜ ରୂପ ପ୍ରଦର୍ଶନପୂର୍ବକ କହିଲେ, ''ବତ୍ସ ଶଙ୍କର ! ମୁଁ ପ୍ରସନ୍ନ ହୋଇଅଛି । ମୁଁ ତୋ ଦ୍ୱାରା ପୁନରାୟ ବୈଦିକ ଧର୍ମର ପ୍ରବର୍ତ୍ତନ କରାଇବି । ତେଣୁ ତୋର କୌଣସି ପ୍ରକାର ନ୍ୟୂନତା ଥିବା ଅନୁଚିତ ମନେକରି ମୁଁ ଏହି ଲୀଳାଭିନୟ କରିଥିଲି । ବର୍ତ୍ତମାନ ତୁ ବ୍ୟାସକୃତ ବ୍ରହ୍ମସୂତ୍ରର ଭାଷ୍ୟ ରଚନା କର । ବେଦାନ୍ତର ମୁଖ୍ୟ ତାତ୍ପର୍ଯ୍ୟ ଯେଉଁ ଅଦ୍ୱୈତ ବ୍ରାହ୍ମଣ୍ୟ ଜ୍ଞାନ, ତାହା ପ୍ରଚାର କର । ଜଗତର ହିତନିମିତ୍ତ ତୁ ମୋର ଅଂଶରେ ଅବତୀର୍ଣ୍ଣ ହୋଇଅଛୁ । ମହର୍ଷି ବେଦବ୍ୟାସ ବେଦକୁ ବିଭାଗ କରି ଏବଂ ବ୍ରହ୍ମସୂତ୍ର ରଚନାପୂର୍ବକ କପିଳଙ୍କ ସାଂଖ୍ୟଦର୍ଶନ, କଣାଦଙ୍କର ବୈଶେଷିକଦର୍ଶନ ଓ ପାତଞ୍ଜଳିଙ୍କ ଯୋଗଦର୍ଶନ ପ୍ରଭୃତି ମତକୁ ସମୂଳେ ଉତ୍ପାଟନ କରିଛନ୍ତି । କିନ୍ତୁ, ଏହା ନ ଜାଣି ବର୍ତ୍ତମାନ କେତେ ଜଣ ମୂଢ଼ ବ୍ୟକ୍ତି ବ୍ରହ୍ମସୂତ୍ରର ବିକୃତ ବ୍ୟାଖ୍ୟା ପ୍ରଚାର କରୁଛନ୍ତି । ଅନେକ ମନୀଷୀ ଏହିସବୁ ଭାଷ୍ୟର ବିରୋଧ କରୁଥିଲେ ମଧ୍ୟ ସେମାନେ ବ୍ରହ୍ମସୂତ୍ରର ଯଥାର୍ଥ ବ୍ୟାଖ୍ୟାନିମିତ୍ତ ପ୍ରତୀକ୍ଷା କରିଛନ୍ତି । ତୁ ଉପନିଷଦର ପ୍ରକୃତ ମର୍ମ ଅବଗତ ହୋଇଅଛୁ; ସୁତରାଂ ତୁ ବିରୁଦ୍ଧବାଦୀମାନଙ୍କ ମତ ଖଣ୍ଡନପୂର୍ବକ ପ୍ରକୃତ ଭାଷ୍ୟ ରଚନା କର । ତୋର ଭାଷ୍ୟ ଜଗତର ଅଶେଷ ଉପକାର ସାଧନ କରିବ ଏବଂ ତାହା ନିଖିଳ ମାନବସମାଜରେ ପୂଜିତ ହେବ । ତୁ ଭେଦ ଓ ଅଭେଦ ଏହି ଅଭୟବାଦୀ ଭାସ୍କର, ଶାକ୍ତ ଅଭିନବ ଗୁପ୍ତ, ଭେଦବାଦୀ ଶୈବ ନୀଳକଣ୍ଠ, ଗୁରୁ ପ୍ରଭାକର ଭଟ୍ଟ ମତାବଲମ୍ବୀ ମଣ୍ଡନ ମିଶ୍ର ପ୍ରଭୃତି ପଣ୍ଡିତମାନଙ୍କୁ ପରାଜୟ କରି ଅଦ୍ୱୈତ ତତ୍ତ୍ୱ ପ୍ରଚାର କର । ଏହି ପ୍ରକାରରେ ତୁ ସ୍ୱକାର୍ଯ୍ୟ ସାଧନ କରି ଶେଷରେ ମୋକ୍ଷଲାଭ କରିପାରିବୁ । ଏହା କହି ବିଶ୍ୱପତି ଶଙ୍କର ସନ୍ନ୍ୟାସୀ ଶଙ୍କରଙ୍କ ଶରୀରରେ ପ୍ରବିଷ୍ଟ ହେଲେ ।

ଶଙ୍କର ବାହ୍ୟଜ୍ଞାନଶୂନ୍ୟ ହୋଇ ପଡ଼ିଗଲେ । ଶଙ୍କରଙ୍କ ଶିଷ୍ୟମାନେ ଚଣ୍ଡାଳ ଓ ଆଚାର୍ଯ୍ୟଙ୍କ ବ୍ୟବହାର ଦର୍ଶନ କଲେ । ଆଚାର୍ଯ୍ୟଙ୍କ କର୍ତ୍ତୃକ ଚଣ୍ଡାଳକୁ ପ୍ରଣାମ

ଓ ଚଣ୍ଡାଳ ଉଦ୍ଦେଶ୍ୟରେ ଆଚାର୍ଯ୍ୟଙ୍କର ସ୍ତୁତିପାଠ ଦେଖିଲେ ଓ ଶୁଣିଲେ । ସେମାନେ ସହସା ଚଣ୍ଡାଳ ଅଦୃଶ୍ୟ ହେବା କଥା ଦେଖିଲେ; କିନ୍ତୁ ତାହା ପରେ ଆଚାର୍ଯ୍ୟ ଯାହା ଦେଖିଲେ ଓ ଶୁଣିଲେ ଶିଷ୍ୟମାନେ ତାହା ଜାଣିପାରିଲେ ନାହିଁ । ଶଙ୍କର କିଛିକ୍ଷଣ ପରେ ଚୈତନ୍ୟ ଲାଭ କରି କାହାକୁ କିଛି ନ କହି ମଣିକର୍ଣ୍ଣିକା ଘାଟକୁ ଗଲେ । ସେଠାରେ ସ୍ନାନ ଆହ୍ନିକାଦି ଶେଷ କଲା ପରେ ସେ ଭାଷ୍ୟ ରଚନା କରି ଲିପିବଦ୍ଧ କରିବାନିମିତ୍ତ ମନେ ମନେ ସ୍ଥିର କଲେ । ପରେ ବହୁ ଚିନ୍ତା କରି ଶେଷରେ ବଦରିକାଶ୍ରମକୁ ଗମନ କଲେ । ଏ କାର୍ଯ୍ୟ କରିବାପାଇଁ ସେ ସ୍ଥାନ ଉପଯୁକ୍ତ ବୋଲି ତାଙ୍କର ଧାରଣା ହେଲା । କାରଣ ବ୍ୟାସଦେବ ସେଠାରେ ନ ଥିଲେ ମଧ୍ୟ ସେ ସ୍ଥାନରେ ତାଙ୍କର ଭାବ ନିଶ୍ଚୟ ବର୍ତ୍ତମାନ ଥିବ, ଏହା ଭାବି ସେ ବଦରିକାଶ୍ରମ ଯିବାକୁ ମନସ୍ଥ କଲେ ।



# ବଦରିକାଶ୍ରମ ପଥେ ଶଙ୍କର

ସନନ୍ଦନ ଓ ଅନ୍ୟ କେତେକ ଶିଷ୍ୟଙ୍କସହିତ ଆଚାର୍ଯ୍ୟ ଶଙ୍କର ବଦରିକାଶ୍ରମ ଉଦ୍ଦେଶ୍ୟରେ କାଶୀଧାମ ପରିତ୍ୟାଗ କଲେ । କାଶୀରୁ ବଦ୍ରିନାରାୟଣ ପଥ ଅତି ଦୁର୍ଗମ । ଏ ପଥର କେଉଁ ସ୍ଥାନ ଉଚ୍ଚ, ପୁଣି ବା କେଉଁ ସ୍ଥାନ ନୀଚ, କେଉଁ ସ୍ଥାନ ଉଷ୍ଣ ବା କେଉଁ ସ୍ଥାନ ଶୀତଳ । କେତେବେଳେ ଊର୍ଦ୍ଧ୍ୱକୁ ଆରୋହଣ କରିବାକୁ ପଡ଼େ ବା କେତେବେଳେ ଗଭୀର ନିମ୍ନଦେଶକୁ ଅବତରଣ କରିବାକୁ ହୁଏ । କେଉଁ ସ୍ଥାନ କଣ୍ଟକପରିବୃତ, କେଉଁ ସ୍ଥାନ କଣ୍ଟକ-ବିରହିତ । ଏହି ଭାବରେ ସେ ପ୍ରକୃତିର ବିବିଧ ବୈଚିତ୍ର୍ୟ ପର୍ଯ୍ୟବେକ୍ଷଣ କରି ତୀର୍ଥଯାତ୍ରୀ ପଥିକମାନଙ୍କ ସହିତ ଗମନ କରିବାକୁ ଲାଗିଲେ । ସେ ଆତ୍ମଜ୍ଞାନୀ ହୋଇଥିଲେ ମଧ୍ୟ ଲୌକିକ ରୀତି ଅନୁସାରେ ଫଳମୂଳ ଭୋଜନ, ବାରିପାନ ଓ ଶୟନ, ବିଶ୍ରାମଆଦି ଦ୍ୱାରା ପଥ ଅତିକ୍ରମ କରୁଥିଲେ । ସେ ନାନା ତୀର୍ଥ, ନାନା ପ୍ରାଚୀନ ରାଜଧାନୀ ପ୍ରଭୃତି ଦର୍ଶନ କରି ହରିଦ୍ୱାରରେ ଉପସ୍ଥିତ ହେଲେ । ଦ୍ୱାଦଶ ବର୍ଷୀୟ ସନ୍ନ୍ୟାସୀବାଳକ ଗୁରୁ; ତାଙ୍କ ସଙ୍ଗରେ ଯୁବକ, ବୃଦ୍ଧ ଇତ୍ୟାଦି ନାନା ବୟସର ସନ୍ନ୍ୟାସୀ ଓ ବ୍ରହ୍ମଚାରୀ ଶିଷ୍ୟ । ଏ ଦୃଶ୍ୟ ଦେଖି ସମସ୍ତେ ବିସ୍ମୟାବିଭୂତ ଓ ଶ୍ରଦ୍ଧାସମ୍ପନ୍ନ ହୋଇପଡୁଥିଲେ । ହରିଦ୍ୱାର ତ୍ୟାଗ କରି ଶଙ୍କର ହୃଷୀକେଶରେ ଉପସ୍ଥିତ ହେଲେ । ଏଠାରେ ପୂର୍ବକାଳରେ ଋଷିମାନେ ଯଜ୍ଞ କରୁଥିବା ବେଳେ ଯଜ୍ଞେଶ୍ୱର ବିଷ୍ଣୁବିଗ୍ରହ ପ୍ରତିଷ୍ଠା କରିଥିଲେ । କିଛିଦିନ ପୂର୍ବେ ଦସ୍ୟୁମାନଙ୍କ ଉପଦ୍ରବରେ ପୂଜକମାନେ ଉକ୍ତ ବିଷ୍ଣୁ ବିଗ୍ରହଙ୍କୁ ଗଙ୍ଗାଗର୍ଭରେ ଲୁକ୍‌କାୟିତ କରି ରଖିଥିଲେ । ଦସ୍ୟୁ-ଉପଦ୍ରବ ଶାନ୍ତ ହେବା ପରେ ବହୁ ଅନୁସନ୍ଧାନ କରି ମଧ୍ୟ ଉକ୍ତ ବିଷ୍ଣୁବିଗ୍ରହଙ୍କୁ ଗଙ୍ଗାଜଳରୁ ନ ପାଇଁ ତାହା କେଉଁଆଡ଼େ ଭାସିଯାଇଥିବାର ଅନୁମାନ କରି ମନ୍ଦିରଟି ଶୂନ୍ୟ ରଖାଯାଇଥିଲା । ଆଚାର୍ଯ୍ୟ ଶଙ୍କର ଏ ବୃତ୍ତାନ୍ତ ଶୁଣି ଏବଂ ଶୂନ୍ୟ ମନ୍ଦିର ଦେଖି ଅତିଶୟ ଦୁଃଖିତ ହେଲେ । ପରେ ସମାଧିସ୍ଥ ହୋଇ ବିଗ୍ରହଙ୍କର ଅବସ୍ଥାନ ବିଷୟ ଜ୍ଞାତ ହେଲେ ଏବଂ ଦେବବିଗ୍ରହ ଗଙ୍ଗାଜଳରୁ ଉଦ୍ଧାର କରି ମହାସମାରୋହରେ ଆଣି ମନ୍ଦିରରେ ପ୍ରତିଷ୍ଠା କଲେ । ତତ୍ପରେ ସେ ଉତ୍ତରାଭିମୁଖରେ ଯାତ୍ରା କରି ଲଛମନଝୋଲାରେ ଉପସ୍ଥିତ ହେଲେ । ଏହା ବିଦୁରଙ୍କ ତପସ୍ୟା ସ୍ଥାନ । ଏଠାରେ ଦେବପ୍ରୟାଗ ଅର୍ଥାତ୍ ଯେଉଁଠାରେ ଭଗୀରଥୀ

ସହିତ ଅଳକାନନ୍ଦା ମିଳିତ ହୋଇଅଛି, ସେହି ସ୍ଥାନରେ ଉପସ୍ଥିତ ହେଲେ । ଏହାର ଅଳ୍ପଦୂରରେ ବଦରିକାଶ୍ରମ ଅବସ୍ଥିତ । ଆଚାର୍ଯ୍ୟ ଏଠାରେ ଯଥାବିଧି ତୀର୍ଥକୃତ୍ୟ ସମାପନ କରି ଦେବଦର୍ଶନାଦି କଲେ । ସେଠାରୁ ଯାଇ ଆଚାର୍ଯ୍ୟ ବିଲ୍ୱକେଦାର ନାମକ ସ୍ଥାନରେ ଉପସ୍ଥିତ ହେଲେ । ଏଠାରେ ପୂର୍ବେ ମାର୍କଣ୍ଡେୟ ମୁନି ତପସ୍ୟା କରିଥିଲେ । ତତ୍ପରେ ଶ୍ରୀନଗର ଅତିକ୍ରମ କରି ରୁଦ୍ରପ୍ରୟାଗରେ ଉପସ୍ଥିତ ହେଲେ । ଏଠାରେ ମନ୍ଦାକିନୀସହିତ ଅଳକାନନ୍ଦା ମିଳିତ ହୋଇଅଛି । ଏଠାରେ ରୁଦ୍ରେଶ୍ୱର ମହାଦେବଙ୍କର ଦର୍ଶନ କରି କର୍ଣ୍ଣପ୍ରୟାଗ ଅଭିମୁଖରେ ପ୍ରସ୍ଥାନ କଲେ । କର୍ଣ୍ଣପ୍ରୟାଗରେ କର୍ଣ୍ଣ ତପସ୍ୟା କରିଥିଲେ ଓ ଏହି ସ୍ଥାନରେ କଣ୍ୱମୁନିଙ୍କର ଆଶ୍ରମ ଥିଲା । ଏଠାରେ ପିଣ୍ଡାରକ ନଦୀସହିତ ଅଳକାନନ୍ଦାର ମିଳନ ହୋଇଅଛି । ଏଠାରୁ ଶଙ୍କର ନନ୍ଦପ୍ରୟାଗ ଉଦ୍ଦେଶ୍ୟରେ ଯାତ୍ରାକଲେ । ନନ୍ଦପ୍ରୟାଗଠାରୁ ବଦରୀକ୍ଷେତ୍ର ଆରମ୍ଭ ହୋଇଅଛି । ଏଠାରେ ମନ୍ଦାକିନୀ ନଦୀ ସହିତ ଅଳକାନନ୍ଦାର ସଙ୍ଗମ ହୋଇଅଛି । ମହର୍ଷି ବଶିଷ୍ଠ ଶିବଙ୍କ ଉଦ୍ଦେଶ୍ୟରେ ଏଠାରେ ତପସ୍ୟା କରିଥିଲେ । ଏହା ନିକଟରେ ବିରହୀ ଗଙ୍ଗା । ଏଠାରେ ପୂର୍ବକାଳରେ ସତୀ ବିରହରେ ଶିବ ତପସ୍ୟା କରିଥିଲେ । ତେଣୁ ଏଠାରେ ଶିବଙ୍କ ନାମ 'ବିରହେଶ୍ୱର' । ଏହି ପଥରେ ପ୍ରାଚୀନ ସ୍ମୃତିବିଜଡ଼ିତ ଅସଂଖ୍ୟ ସ୍ଥାନ ବିରାଜିତ । ଆଚାର୍ଯ୍ୟ ସେସବୁ ଯଥାବିଧି ଦର୍ଶନାଦି ଶେଷ କରି ବଦରୀପଥରେ ଅଗ୍ରସର ହେଲେ । ବ୍ରହ୍ମ ସତ୍ୟ, ଜଗତ ମିଥ୍ୟା ପ୍ରଭୃତି ଅଦ୍ୱୈତଜ୍ଞାନ ଦୃଢ଼ ହେଲେ ମଧ୍ୟ ସେ ଜୀବଭାବର କୌଣସି ବ୍ୟତିକ୍ରମ କଲେ ନାହିଁ କିମ୍ବା କର୍ତ୍ତବ୍ୟରେ ତ୍ରୁଟି କଲେ ନାହିଁ । ଜ୍ଞାନୀମାନଙ୍କର ଶାସ୍ତ୍ରୀୟ ଆଚାର ଅନୁସରଣ ହିଁ ସ୍ୱଭାବ । ସେଠାରୁ ଶଙ୍କର ଗରୁଡ଼ଗଙ୍ଗା ଉଦ୍ଦେଶ୍ୟରେ ଯାତ୍ରା କଲେ । ଏଠାରେ ଗରୁଡ଼ ବିଷ୍ଣୁଙ୍କ ଉଦ୍ଦେଶ୍ୟରେ ତପସ୍ୟା କରିଥିଲେ । ଏ ସ୍ଥାନରେ ସ୍ନାନ କଲେ ବିଷ ଆରୋଗ୍ୟ ହୁଏ । ଏହା ପରେ ଗଣେଶ ଗଙ୍ଗା । ଏ ସ୍ଥାନ ମହାପାପନାଶକ । ଏହାର କିଛି ଦୂରରେ ବିଷ୍ଣୁକୁଣ୍ଡ । ଏହାପରେ ଜ୍ୟୋତିଃଧାମ ବିରାଜିତ ।

ଜ୍ୟୋତିଃଧାମକୁ ଆସି ଶଙ୍କର ରାଜ୍ୟଶ୍ରୀ ଦର୍ଶନ କଲେ । ଏହି ସ୍ଥାନରେ ବିଷ୍ଣୁଗଙ୍ଗା ଓ ଅଳକାନନ୍ଦା ମିଳିତ ହୋଇ ବିଷ୍ଣୁପ୍ରୟାଗ ନାମକ ପ୍ରସିଦ୍ଧ ତୀର୍ଥ ସୃଷ୍ଟି ହୋଇଅଛି । ଏହି ସ୍ଥାନ କତ୍ତୁରୀବଂଶୀୟ ରାଜାଙ୍କର ଶାସନାଧୀନ । ରାଜାଙ୍କର ଅତିଥି ଭାବରେ ଆଚାର୍ଯ୍ୟ ସେଠାରେ ଅବସ୍ଥାନ କରି ତୀର୍ଥାଦି ଦର୍ଶନ କଲେ ।

ଜ୍ୟୋତିଃଧାମ ତ୍ୟାଗ କରି ଆଚାର୍ଯ୍ୟ ବିଷ୍ଣୁପ୍ରୟାଗ, ଧବଳଗଙ୍ଗା, ବ୍ରହ୍ମକୁଣ୍ଡ, ଶିବକୁଣ୍ଡ, ବିଷ୍ଣୁକୁଣ୍ଡ ପ୍ରଭୃତି ଅଗଣିତ ତୀର୍ଥ ଦର୍ଶନ କରି ପାଣ୍ଡୁକେଶ୍ୱର ନାମକ ସ୍ଥାନରେ ଉପନୀତ ହେଲେ । ତତ୍ପରେ ବୈଖାନସ ତୀର୍ଥ ଅତିକ୍ରମପୂର୍ବକ ଆଚାର୍ଯ୍ୟ ବଦରିକାଶ୍ରମରେ ପ୍ରବେଶ କଲେ । ଏହା ଭୁବୈକୁଣ୍ଠ ବୋଲି ପ୍ରସିଦ୍ଧ । ଏହା ଦର୍ଶନ କଲେ ଜୀବ ଅନ୍ତିମରେ ବୈକୁଣ୍ଠକୁ ଗମନ କରେ ।

ଶଙ୍କର ବଦରିକାଶ୍ରମର ଶୋଭା ପରିଦର୍ଶନ କରି ମୁଗ୍ଧ ଓ ବିସ୍ମିତ ହୋଇଗଲେ । ସମ୍ମୁଖରେ ଅଭ୍ରଭେଦୀ ତୁଷାରମଣ୍ଡିତ ଅପରିମେୟ ହିମଗିରି । ଯେପରି ଭଗବାନ ବିଷ୍ଣୁ ଅତି ବିଶାଳ ବିରାଟ ମୂର୍ତ୍ତି ପରିଗ୍ରହ କରି ଉପବିଷ୍ଟ । ବାମ ଓ ଦକ୍ଷିଣରେ ଅନତି ଉଚ୍ଚ ନର ଓ ନାରାୟଣ ପର୍ବତଦ୍ୱୟ—ଠିକ୍ ଯେପରି ଭଗବାନ ବାହୁଦ୍ୱୟ ପ୍ରସାରିତ କରି ଭକ୍ତମାନଙ୍କୁ ନିଜ କ୍ରୋଡ଼କୁ ଆହ୍ୱାନ କରୁଛନ୍ତି । ସ୍ଥାନୀୟ ବ୍ରାହ୍ମଣ ପଣ୍ଡିତମାନଙ୍କଠାରୁ ସେ ବଦରିକାଶ୍ରମ ଅନ୍ତର୍ଗତ ଯାବତୀୟ ତୀର୍ଥର ବର୍ଣ୍ଣନା ଶୁଣିବାକୁ ଲାଗିଲେ । ଏଠାରେ ତୀର୍ଥ ଯେପରି ଅନନ୍ତ, ମାହାତ୍ମ୍ୟ ମଧ୍ୟ ସେହିପରି ଅନନ୍ତ । ପୂର୍ବକାଳରେ ମୁନି, ଋଷି, ରାଜା ଓ ଦେବତା ପ୍ରଭୃତିଙ୍କର ସ୍ମୃତି ଏହି ସ୍ଥାନରେ ଜଡ଼ିତ । ଏଠାରେ ଏପରି କୌଣସି ସ୍ଥାନ ନାହିଁ ଯେଉଁଠାରେ କିଛି ନା କିଛି ପୌରାଣିକ ବା ଐତିହାସିକ ଘଟଣା ଘଟି ନାହିଁ । ଏହାସବୁ ଶୁଣି ଆଚାର୍ଯ୍ୟ ମୁଗ୍ଧ ହୋଇଗଲେ, ତାଙ୍କ ହୃଦୟ ଭକ୍ତି-ଶ୍ରଦ୍ଧାରେ ଆପ୍ଲୁତ ହୋଇଗଲା । ଶେଷରେ ଆଚାର୍ଯ୍ୟଦେବ ବଦରୀକ୍ଷେତ୍ରାଧୀଶ୍ୱର ପରମପାବନ ସେହି ନାରାୟଣଙ୍କ ମନ୍ଦିରରେ ଉପସ୍ଥିତ ହେଲେ । ସେଠାରେ ଋଷିପ୍ରତିଷ୍ଠିତ ବିଗ୍ରହ ପରିବର୍ତ୍ତରେ ଶାଳଗ୍ରାମଶିଳା ପୂଜିତ ହେଉଥିଲେ । ଆଚାର୍ଯ୍ୟ ସେଠାରେ ଯଥାବିଧି ପୂଜା-ଅର୍ଚ୍ଚନା କଲେ । ମନ୍ଦିର ମଧ୍ୟରୁ ବାହାରକୁ ଆସି ଆଚାର୍ଯ୍ୟ ଚିନ୍ତାକୁଳ ହୋଇପଡ଼ିଲେ । ତାଙ୍କର ଏ ଭାବ ଦେଖି ଶିଷ୍ୟମାନେ ଓ ସ୍ଥାନୀୟ ଲୋକେ ସେଠାରେ ଉପସ୍ଥିତ ହେଲେ । ସେମାନଙ୍କୁ ଲକ୍ଷ୍ୟ କରି ଆଚାର୍ଯ୍ୟ କହିଲେ, ''ଭଗବାନ ଚାରି ଯୁଗରେ ଏହିଠାରେ ଅବସ୍ଥାନ କରିବାର କଥା; କିନ୍ତୁ ମନ୍ଦିରରେ ଶ୍ରୀବିଗ୍ରହଙ୍କୁ ମୁଁ ଦେଖୁନାହିଁ ?'' ଅର୍ଚ୍ଚକମାନେ କହିଲେ, ''ଚୀନ୍‌ଦେଶୀୟ ଦସ୍ୟୁମାନଙ୍କ ଅଭିଯାନ ଭୟରେ ଆମ ପୂର୍ବପୁରୁଷମାନେ କୌଣସି କୁଣ୍ଡରେ ଶ୍ରୀବିଗ୍ରହଙ୍କୁ ରକ୍ଷା କରିଥିଲେ । କିନ୍ତୁ ପରେ ସେମାନେ ତାହା ଉଦ୍ଧାର କରିପାରି ନ ଥିବାରୁ ଶାଳଗ୍ରାମଶିଳା ହିଁ ଏଠାରେ ପୂଜିତ ହେଉଛନ୍ତି ।'' ଏହା ଶୁଣି ଶଙ୍କର ଧ୍ୟାନବଳରେ ଶ୍ରୀବିଗ୍ରହଙ୍କର

ଅବସ୍ଥାନ ବିଷୟ ଅବଗତ ହୋଇ ନାରଦକୁଣ୍ଡକୁ ଯାଇ କୁଣ୍ଡ ମଧ୍ୟରେ ନିମଜ୍ଜିତ ହୋଇଥିବା ବିଷ୍ଣୁମୂର୍ତ୍ତି ଉଦ୍ଧାର କଲେ । ଏହି କୁଣ୍ଡର ନିମ୍ନଦେଶ ଖରସ୍ରୋତା ଅଲକାନନ୍ଦାସହିତ ସଂଯୁକ୍ତ । ସୁତରାଂ କୁଣ୍ଡ ମଧ୍ୟରେ ନିମଜ୍ଜନ କଲେ ପ୍ରାଣହାନିର ଆଶଙ୍କା । ଏଥିପ୍ରତି ଭ୍ରୂକ୍ଷେପ ନ କରି ଶଙ୍କର ଦୁଃସାହସିକ ଭାବରେ ଏ କାର୍ଯ୍ୟ କରିବାରୁ ମନ୍ଦିରର ଅର୍ଚ୍ଚକ, ସ୍ଥାନୀୟ ବ୍ରାହ୍ମଣ ପଣ୍ଡିତ ଓ ଜନସାଧାରଣ ତାଙ୍କୁ ଧନ୍ୟ ଧନ୍ୟ କହିଲେ । ମନ୍ଦିର ମଧ୍ୟରେ ଶ୍ରୀବିଗ୍ରହ ସ୍ଥାପନ ଓ ଅଭିଷେକ ବିଧି କରି, ସେବକମାନଙ୍କ ଦ୍ୱାରା ସେବାପୂଜାର ବ୍ୟବସ୍ଥା କରାଇ ସ୍ୱକାର୍ଯ୍ୟସାଧନରେ ବ୍ରତୀ ହେଲେ ।



# ବ୍ୟାସ-ତୀର୍ଥରେ ଭାଷ୍ୟ-ରଚନା

ବ୍ୟାସତୀର୍ଥ ମହାମୁନି ବ୍ୟାସଦେବଙ୍କ ଆଶ୍ରମ । ଏଠାରେ ଭଗବାନ ବ୍ୟାସଦେବ ପୂର୍ବକାଳରେ ମହାଭାରତ ରଚନା କରିଥିଲେ । ଏହାର ନିମ୍ନରେ କେଶବପ୍ରୟାଗ ଅବସ୍ଥିତ । ଏଠାରେ ଅଳକାନନ୍ଦାସହିତ କେଶବଗଙ୍ଗାର ସଙ୍ଗମ ହୋଇଅଛି । ଏହି ଆଶ୍ରମ ଗୋଟିଏ ପ୍ରକାଣ୍ଡ ଗୁହାବିଶେଷ । ଗୁହାର ବହିର୍ଦ୍ଦେଶର ଦକ୍ଷିଣଭାଗରେ ସରସ୍ୱତୀ ଦେବୀଙ୍କର ମନ୍ଦିର । ବ୍ୟାସଦେବ ଯେତେବେଳେ ମହାଭାରତ ରଚନା କରୁଥିଲେ, ସେତେବେଳେ ଏହିଠାରେ ଗଣପତିଦେବ ଲେଖକର କାର୍ଯ୍ୟ କରୁଥିଲେ । ଗଣେଶ ଏହି ସର୍ତ୍ତରେ ଲେଖକ ନିଯୁକ୍ତ ହୋଇଥିଲେ ଯେ, ସେ ଅନର୍ଗଳ ଲେଖନୀ ଚାଳନା କରିବେ । ଲେଖନୀ ବନ୍ଦହେଲେ ସେ ଆଉ ଲେଖିବେ ନାହିଁ । ସେ ମଧ ବ୍ୟାସବାକ୍ୟ ବୁଝି ନ ପାରିଲେ ଲେଖିବେ ନାହିଁ ବୋଲି ସର୍ତ୍ତ ଥିଲା । ଏଥିରେ ସରସ୍ୱତୀ ଦେବୀ ସାକ୍ଷୀ ରହିଲେ । ତେଣୁ ଦକ୍ଷିଣଭାଗରେ ସରସ୍ୱତୀ ଦେବୀଙ୍କ ମନ୍ଦିର ଓ ବାମଭାଗରେ ଗଣେଶଙ୍କ ମନ୍ଦିର ବିଦ୍ୟମାନ ।

ଆଚାର୍ଯ୍ୟ ଶିଷ୍ୟମାନଙ୍କ ସହିତ ଏହି ଗୁହା ମଧ୍ୟରେ ଅବସ୍ଥାନ କଲେ । ଶୀତକାଳରେ ଛଅ ମାସ ଗୁହା ମଧ୍ୟରେ ଆବଦ୍ଧ ରହନ୍ତି ଏବଂ ଅନ୍ୟ ଛଅ ମାସ ମନୁଷ୍ୟ ମୁଖ ଦର୍ଶନ କରନ୍ତି । ଜ୍ୟୋତିଃଧାମର ରାଜା ଆଚାର୍ଯ୍ୟଙ୍କ ରହିବାର ସମସ୍ତ ବ୍ୟବସ୍ଥା କରିଦେଇଥିଲେ । ସୁତରାଂ ସେଠାରେ ରହି ନିରୁପଦ୍ରବରେ ଆଚାର୍ଯ୍ୟଦେବ ବେଦାନ୍ତର ଭାଷ୍ୟରଚନାରେ ପ୍ରବୃତ୍ତ ହେଲେ । ଶଙ୍କର ଏହି ପୁଣ୍ୟ ତୀର୍ଥରେ ଅବସ୍ଥାନ କରି ଭାଷ୍ୟ ରଚନା କରିବା ସମୟରେ ନାନା ସଂପ୍ରଦାୟର ସାଧୁମାନଙ୍କସହିତ ତାଙ୍କର ଆଳାପ ପରିଚୟାଦି ହୋଇଥିଲା । କାରଣ ତପସ୍ୟା କରିବାନିମିତ୍ତ ବହୁ ସାଧୁ ସେଠାରେ ପ୍ରାୟ ଅବସ୍ଥାନ କରନ୍ତି । ସେ ସମୟରେ ଶୈବ, ପାଶୁପତ, ସାଂଖ୍ୟ, ପାତଞ୍ଜଳ, ବୈଖାନସ, ପଞ୍ଚରାତ୍ର, ସୌର, ଶାକ୍ତ, ଗାଣପତ୍ୟ, ଜୈନ, ବୌଦ୍ଧ, ପ୍ରଭୃତି ବିଭିନ୍ନ ସଂପ୍ରଦାୟର ବହୁ ପ୍ରକୃତ ସାଧୁ ମହାତ୍ମା ତପସ୍ୟାନିମିତ୍ତ ସେଠାରେ ଅବସ୍ଥାନ କରୁଥିଲେ । ସେମାନେ ପ୍ରାୟ ଆଚାର୍ଯ୍ୟଙ୍କ ସମୀପକୁ ଆସୁଥିଲେ । ଅନେକ ସାଧୁ ନିଜ ମତର ପୁଷ୍ଟିନିମିତ୍ତ ବିଚାରରେ ପ୍ରବୃତ୍ତ ହେଉଥିଲେ । ବିଜିଗୀଷୁ ପରାସ୍ତ ହେଉଥିଲେ, ବାଦୀ ସତ୍ୟ

ଉପଲବ୍ଧି କରିପାରୁଥିଲେ । ଶଙ୍କର ଜିଜ୍ଞାସୁଙ୍କ ସଂଶୟ ଛିନ୍ନ କରି ନିଃସଂଶୟ କରି ଦେଉଥିଲେ ଓ ସାଧକମାନେ କୃତାର୍ଥ ହେଉଥିଲେ । ଏହି ସୁଯୋଗରେ ଆଚାର୍ଯ୍ୟ ବିଭିନ୍ନ ମତବାଦର ରହସ୍ୟ ଉଦ୍‌ଘାଟନ କରିବାରେ ସମର୍ଥ ହୋଇଥିଲେ । ଶଙ୍କର ସେଠାରେ ଚାରି ବର୍ଷ ଅବସ୍ଥାନ କରି ପ୍ରଥମେ ବ୍ରହ୍ମସୂତ୍ରର ଭାଷ୍ୟ ରଚନା କଲେ । ଏହି ଭାଷ୍ୟ ହିଁ 'ଶାରୀରିକ ଭାଷ୍ୟ' ନାମରେ ଅଭିହିତ । ତତ୍ପରେ ଉପନିଷଦ୍ ପ୍ରତି ତାଙ୍କର ମନ ଆକୃଷ୍ଟ ହେଲା । ସେ ଈଶ, କେନ, କଠ, ପ୍ରଶ୍ନ, ମୁଣ୍ଡକ, ମାଣ୍ଡୁକ୍ୟ, ତୈତ୍ତିରୀୟ, ଐତରେୟ, ଛାନ୍ଦୋଗ୍ୟ ଓ ବୃହଦାରଣ୍ୟକ—ଏହି ଦଶ ଖଣ୍ଡି ଉପନିଷଦର ଭାଷ୍ୟ ରଚନା କଲେ । ଉପନିଷଦର ବ୍ୟାଖ୍ୟା ଶେଷ ହେଲାମାତ୍ରକେ ସେ ଭଗବଦ୍‌ଗୀତାର ଭାଷ୍ୟରଚନାରେ ପ୍ରବୃତ୍ତ ହେଲେ । ଗୀତାଭାଷ୍ୟ ରଚନାରେ ତାଙ୍କୁ ବିଶେଷ ଶ୍ରମସ୍ୱୀକାର କରିବାକୁ ପଡ଼ିଥିଲା । ଏହା ସମଗ୍ର ଜ୍ଞାନୀସମାଜରେ ଅତିଶୟ ଆଦୃତ ହେଲା । ତତ୍ପରେ ସେ 'ସନତ୍‌ସୁଜାତୀୟ' ଓ 'ନୃସିଂହ ତାପନୀୟ'ର ବ୍ୟାଖ୍ୟା ଆରମ୍ଭ କଲେ । ଏହି ଦୁଇ ଗ୍ରନ୍ଥ ମଧ୍ୟ ଜ୍ଞାନୀମାନଙ୍କ ମଧ୍ୟରେ ସବିଶେଷ ଖ୍ୟାତି ଲାଭ କଲା । ଏହା ପରେ ସେ 'ଉପଦେଶସହସ୍ରିକା' ପ୍ରଭୃତି ଅସଂଖ୍ୟ ସଦୁପଦେଶପୂର୍ଣ୍ଣ ଉତ୍କୃଷ୍ଟ ଗ୍ରନ୍ଥ ରଚନା କଲେ । ଶଙ୍କରଙ୍କ ବେଦାନ୍ତଭାଷ୍ୟ ପ୍ରକାଶିତ ହେବା ପରେ ଦୁଷ୍ଟବାଦୀମାନଙ୍କର ବ୍ୟାଖ୍ୟା ଲୟପ୍ରାପ୍ତ ହେଲା । ନାନା ଗୁଣସମ୍ପନ୍ନ ବିନୀତ ଶିଷ୍ୟଗଣ ଅତି ଯତ୍ନ ସହକାରେ ଶଙ୍କରଙ୍କର ଚରଣପ୍ରାନ୍ତରେ ଉପବେଶନ କରି ଏହିସବୁ ଅଭିନବ ଭାଷ୍ୟ ଅଧ୍ୟୟନ କରିବାକୁ ଲାଗିଲେ । ଅନ୍ତେବାସୀମାନଙ୍କ ମଧ୍ୟରେ ସନନ୍ଦନଙ୍କର ଅନ୍ତଃକରଣ ରାଗ-ଦ୍ୱେଷ-ବିରହିତ ଥିଲା । ସେ ଶଙ୍କରଙ୍କର ଏକାନ୍ତ ଆଜ୍ଞାନୁବର୍ତ୍ତୀ ଭକ୍ତ ଥିଲେ । ସେ ସମଗ୍ର ବେଦ ଅଧ୍ୟୟନ କରିଥିଲେ ମଧ୍ୟ ଶଙ୍କର ତାଙ୍କୁ ତିନି ଥର ବେଦାନ୍ତଭାଷ୍ୟ ପାଠ କରାଇଥିଲେ ଏବଂ ନିଖିଳ ବେଦାନ୍ତ ରହସ୍ୟ ସମ୍ବନ୍ଧରେ ଉପଦେଶ ପ୍ରଦାନ କରିଥିଲେ । ସନନ୍ଦନଙ୍କ ପ୍ରତି ଗୁରୁଦେବଙ୍କର ସ୍ନେହାଧିକ୍ୟ ଦର୍ଶନ କରି ଅନ୍ୟ ଶିଷ୍ୟମାନେ ଈର୍ଷାନ୍ୱିତ ହେଲେ; କିନ୍ତୁ ଶଙ୍କର ଏଥିରେ ଆଦୌ ବିଚଳିତ ହେଲେ ନାହିଁ ।



# ନିର୍ଲିପ୍ତଭାବ ଓ ବ୍ୟାସଦେବଙ୍କ କୃପାଲାଭ

ଭାଷ୍ୟାଦି ସଂକଳନ ଓ ଅଧ୍ୟୟନ ଶେଷ ହେଲା ପରେ ଏହି ଭାବ ପ୍ରଚାର ନିମିତ୍ତ ଶିଷ୍ୟମାନଙ୍କର ଆଗ୍ରହ ଜାତ ହେଲା । ଶିଷ୍ୟମାନଙ୍କ ଇଚ୍ଛା ଆଚାର୍ଯ୍ୟ ବୁଝି ପାରିଲେ । ସାଧୁମାନେ ପରେଚ୍ଛାଜନିତ ପ୍ରାରବ୍ଧ ଭୋଗକରିବାନିମିତ୍ତ ଜୀବନଧାରଣ କରନ୍ତି । ତେଣୁ ସେ ଶିଷ୍ୟମାନଙ୍କ ପ୍ରସ୍ତାବରେ ଏକମତ ହୋଇ ବଦରୀକ୍ଷେତ୍ର ପରିତ୍ୟାଗ କରି ପୁନରାୟ ଜ୍ୟୋତିଃଧାମରେ ଉପନୀତ ହେଲେ । ଚାରି ବର୍ଷ ବ୍ୟାସତୀର୍ଥରେ ଅବସ୍ଥାନ ଫଳରେ ଅନେକେ ତାଙ୍କ ପ୍ରତି ଶ୍ରଦ୍ଧାନ୍ୱିତ ହୋଇଥିଲେ; ତେଣୁ ଏଠାକୁ ଆସିବାକ୍ଷଣି ମହାରାଜା-ମହାରାଣୀଙ୍କଠାରୁ ଆରମ୍ଭ କରି ଦରିଦ୍ର, ଗୃହସ୍ଥ, ବ୍ରାହ୍ମଣ, ପଣ୍ଡିତ ପ୍ରଭୃତି ସବୁଶ୍ରେଣୀର ଲୋକ ତାଙ୍କର ଶିଷ୍ୟତ୍ୱ ସ୍ୱୀକାର କଲେ । ଆଚାର୍ଯ୍ୟ ଗୃହସ୍ଥମାନଙ୍କୁ ପଞ୍ଚଦେବତା ପୂଜା ଓ ପଞ୍ଚମହାଯଜ୍ଞର ଅନୁଷ୍ଠାନ କରିବାକୁ ଆଦେଶ ଦେଲେ । ଯେଉଁ ଯେଉଁ ସ୍ଥାନର ମନ୍ଦିରମାନଙ୍କରେ ବୌଦ୍ଧପ୍ରାଧାନ୍ୟ ହେତୁ ବିଗ୍ରହାଦି ପୂଜାଶୂନ୍ୟ ହୋଇଥିଲା, ସେଠାରେ ଶଙ୍କର ବିଗ୍ରହପୂଜାର ପୁନଃ ପ୍ରବର୍ତ୍ତନ କଲେ । ତତ୍ପରେ ଉତ୍ତରଖଣ୍ଡର ତୀର୍ଥଦର୍ଶନ ମାନସରେ ଜ୍ୟୋତିଃଧାମ ତ୍ୟାଗ କରି କେଦାରତୀର୍ଥ ଦର୍ଶନ କରିବାନିମିତ୍ତ ଆଚାର୍ଯ୍ୟ ବହିର୍ଗତ ହେଲେ । ମହାରାଜା ମଧ୍ୟ ଆଚାର୍ଯ୍ୟଙ୍କର ସହଗାମୀ ହେଲେ ।

ବଦରୀଠାରୁ କେଦାରତୀର୍ଥ ପଥ ଅତି ଦୁର୍ଗମ । ବହୁ ଉଚ୍ଚ ପର୍ବତ ଅତିକ୍ରମ କରି ସେଠାକୁ ଯିବାକୁ ହୁଏ; ସୁତରାଂ ରାଜକର୍ମଚାରୀମାନେ ଆଗେ ଆଗେ ପଥ ପରିଷ୍କାର କରି ଚାଲୁଥାନ୍ତି, ପରେ ଆଚାର୍ଯ୍ୟ ଓ ଶିଷ୍ୟମାନେ ଗମନ କରୁଥାନ୍ତି । କ୍ରମେ କ୍ରମେ ସମସ୍ତ ତୀର୍ଥ ଦର୍ଶନ କରି ସେମାନେ କେଦାରତୀର୍ଥରେ ଉପସ୍ଥିତ ହେଲେ । ସେଠାରେ ତୀର୍ଥସଂସ୍କାରପୂର୍ବକ ଶଙ୍କର ଗୋମୁଖୀ ଦର୍ଶନମାନସରେ ବହିର୍ଗତ ହେଲେ । ଏହିଠାରୁ ଭାଗୀରଥୀ ଗଙ୍ଗାଙ୍କର ଉତ୍ପତ୍ତି ହୋଇଅଛି । ସେଠାରୁ ପ୍ରତ୍ୟାବର୍ତ୍ତନ କରି ଶଙ୍କର ଭାଗୀରଥୀତୀରବର୍ତ୍ତୀ ଉତ୍ତରକାଶୀରେ ଉପନୀତ ହେଲେ । ଏହି ସ୍ଥାନରେ କାଶୀକ୍ଷେତ୍ରର ସମସ୍ତ ଦେବ-ଦେବୀ ବିଦ୍ୟମାନ ଏବଂ ଗଙ୍ଗା ଏହିଠାରୁ ମଧ୍ୟ ଉତ୍ତରାଭିମୁଖୀ ହୋଇ ପ୍ରବହମାନ । ଏ ସ୍ଥାନ ଅତୀବ ମନୋହର ।

ଏହି ସ୍ଥାନରେ ଆଚାର୍ଯ୍ୟଙ୍କର ଷୋଡ଼ଶ ବର୍ଷ ବୟଃକ୍ରମ ପୂର୍ଣ୍ଣ ହେଲା । ତାଙ୍କର ମନୋଭାବ ଏକାବେଳକେ ପରିବର୍ତ୍ତନ ହୋଇଗଲା । ସେ ଆଉ କେଉଁଆଡ଼କୁ ଯିବାକୁ କିମ୍ବା ପ୍ରଚାର କରିବାକୁ ଇଚ୍ଛା କଲେ ନାହିଁ । ଜ୍ୟୋତିଃଧାମର ମହାରାଜା ଏହିଠାରୁ ବିଦାୟ ନେଇ ଶଙ୍କରଙ୍କ ଅନୁମତିକ୍ରମେ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କଲେ । ଆଚାର୍ଯ୍ୟ ସର୍ବସଂକଳ୍ପ ବର୍ଜ୍ଜିତ ହୋଇ ଉତ୍ତରକାଶୀରେ ନିଶ୍ଚିନ୍ତ ମନରେ କାଳଯାପନ କଲେ । ଶିଷ୍ୟମାନଙ୍କ ଆଗ୍ରହ ଦେଖିଲେ ସେମାନଙ୍କୁ କେବଳ ଅଧ୍ୟୟନ କରାନ୍ତି; କିନ୍ତୁ ଅନ୍ୟ ସମୟରେ କିଛି କହନ୍ତି ନାହିଁ । ଶିଷ୍ୟମାନଙ୍କୁ ଜ୍ଞାତବ୍ୟ ବିଷୟ ବୁଝାଇବାନିମିତ୍ତ ପୂର୍ବେ ତାଙ୍କର ଯେପରି ଆଗ୍ରହ ଦେଖାଯାଉଥିଲା, ତାହା ଆଉ ରହିଲା ନାହିଁ । ପ୍ରଶ୍ନ କଲେ କେବଳ ଉତ୍ତର ପ୍ରଦାନ କରନ୍ତି । ସର୍ବଦା ସମାହିତ ହୋଇ ରହିବା ଇଚ୍ଛା କ୍ରମେ ତାଙ୍କର ଅତି ପ୍ରବଳ ହୋଇଉଠିଲା । ପ୍ରସଙ୍ଗକ୍ରମେ କିଛି କହିବାକୁ ଇଚ୍ଛା କଲେ କେବଳ ଯୋଗ ବଳରେ ଦେହତ୍ୟାଗ କଥା ମାତ୍ର କହିବାକୁ ଲାଗିଲେ ।

ଶଙ୍କରଙ୍କର ଏହି ଭାବ ସନନ୍ଦନ ପ୍ରଭୃତି ଶିଷ୍ୟମାନେ ଲକ୍ଷ୍ୟ କରିଥିଲେ । ଶଙ୍କର ବଦରିକାଶ୍ରମରେ ଅବସ୍ଥାନ କରୁଥିବା ବେଳେ ବିଶେଷ ଘଟଣା ଉପଲକ୍ଷ୍ୟରେ ସନନ୍ଦନଙ୍କୁ 'ପଦ୍ମପାଦ' ନାମ ପ୍ରଦାନ କରିଥିଲେ । ଗୁରୁଗତପ୍ରାଣ ପଦ୍ମପାଦ ଶଙ୍କରଙ୍କଠାରୁ ତାଙ୍କ ବାଲ୍ୟଜୀବନ କଥା ଶ୍ରବଣ କରିଥିଲେ । ସେ ଅନୁମାନ କଲେ ଯେ, ବର୍ତ୍ତମାନ ଷୋଡ଼ଶ ବର୍ଷ ପୂର୍ଣ୍ଣ ହେଉଥିବାରୁ ଆଚାର୍ଯ୍ୟଙ୍କର ନିର୍ବାଣଲାଭ କରିବାପାଇଁ ପ୍ରବୃତ୍ତି ଜାତ ହେଉଅଛି । ଜ୍ଞାନୀମାନେ ପରେଚ୍ଛାଜନିତ ପ୍ରାରବ୍ଧବଶତଃ ଜୀବନଧାରଣ କରନ୍ତି, ଆଚାର୍ଯ୍ୟଦେବଙ୍କର ତାହା ମଧ୍ୟ କ୍ଷୟ ହୋଇଯାଇଛି । କାରଣ ଭାଷ୍ୟରଚନା ଓ ଶିଷ୍ୟମାନଙ୍କୁ ଶିକ୍ଷାଦାନଦ୍ୱାରା ଗୁରୁଦେବଙ୍କ ଆଦେଶ ଓ ବିଶ୍ୱେଶ୍ୱରଙ୍କ ଆଦେଶ ପ୍ରତିପାଦିତ ହୋଇଛି । ସୁତରାଂ ତାଙ୍କର କର୍ତ୍ତବ୍ୟ ଶେଷ ହୋଇଯାଇଛି । ତେଣୁ ସେ ଆଉ ଦେହଧାରଣର ଆବଶ୍ୟକତା ଉପଲବ୍ଧି କରୁ ନାହାନ୍ତି । ଜ୍ଞାନ ଓ ଯୋଗସିଦ୍ଧି ଲାଭ କରିବା ପରେ ତାଙ୍କର ବାସନା କ୍ଷୟ ହୋଇଯାଇଛି । ସିଦ୍ଧ ସାଧୁମାନେ ନିଜ ଇଚ୍ଛା ଓ ପରେଚ୍ଛାଜନିତ ପ୍ରାରବ୍ଧ ଭୋଗକରନ୍ତି । ପ୍ରାରବ୍ଧର ଅନ୍ୟଥା କରିବାର କ୍ଷମତା ଥିଲେ ମଧ୍ୟ ସେମାନଙ୍କ ମନରେ ସେଭଳି ଇଚ୍ଛାର ଉଦୟ ହୁଏ ନାହିଁ । ପଦ୍ମପାଦ ଏହିଭଳି ଚିନ୍ତାକରି କିପରି ଆଚାର୍ଯ୍ୟଙ୍କୁ ସେହି ବାସନାରୁ ନିବୃତ୍ତ କରାଇବେ, ଏ ବିଷୟରେ ଭାବନା

କରିବାକୁ ଲାଗିଲେ । ସେ ସ୍ଥିର କଲେ ଯେ, ଆମେ ତାଙ୍କୁ ଅଧ୍ୟାପନା କାର୍ଯ୍ୟରେ ବ୍ୟାପୃତ ରଖି ନିର୍ବାଣ ଚିନ୍ତାରୁ ନିଶ୍ଚୟ ବିରତ କରିବୁ । ଏହି ସମୟରେ ଦିନେ ପ୍ରାତଃକାଳରେ ଆଚାର୍ଯ୍ୟ ଶିଷ୍ୟମାନଙ୍କସହିତ ଅଧ୍ୟାପନାରେ ରତ ଅଛନ୍ତି, ଜଣେ ବୃଦ୍ଧ ବ୍ରାହ୍ମଣ ଧୀରେ ଧୀରେ ଆସି ସେଠାରେ ଉପସ୍ଥିତ ହେଲେ । ବୃଦ୍ଧ ବ୍ରାହ୍ମଣଙ୍କୁ ଦର୍ଶନ କରି ସମସ୍ତେ ଅଧ୍ୟାପନା ବନ୍ଦ ରଖି ଯଥାବିଧି ସମ୍ମାନ ପ୍ରଦର୍ଶନ କଲେ । ବ୍ରାହ୍ମଣ ଆସନ ଗ୍ରହଣ ନ କରି ଗମ୍ଭୀର ସ୍ୱରରେ କହିଲେ, ‘‘ଶୁଣୁଛି ଏଠାରେ କିଏ ଜଣେ ବ୍ରହ୍ମସୂତ୍ରର ଭାଷ୍ୟ ରଚନା କରି ଅଧ୍ୟାପନା କରୁଛନ୍ତି । ସେ କିଏ ଓ କେଉଁଠି ଅଛନ୍ତି, ଆପଣମାନେ କହିପାରିବେ କି ?’’ ଶିଷ୍ୟମାନେ ଶଙ୍କରଙ୍କୁ ଦେଖାଇ କହିଲେ, ‘‘ମହାଶୟ ! ଏହି ବ୍ୟକ୍ତି ବ୍ରହ୍ମସୂତ୍ରର ଭାଷ୍ୟକାର ଆମର ଗୁରୁଦେବ ଭଗବାନ ଶଙ୍କରାଚାର୍ଯ୍ୟ ।’’ ବ୍ରାହ୍ମଣ ଟିକିଏ ତାଚ୍ଛଲ୍ୟ ଭାବରେ କହିଲେ, ‘‘ଭାଷ୍ୟକାର ଶବ୍ଦ କାହିଁକି ପ୍ରୟୋଗ କଲ ? କଳିଯୁଗରେ ପୁଣି ଭାଷ୍ୟକାର କେଉଁଠୁ ଆସିବେ ?’’

ବୃଦ୍ଧଙ୍କର ଭାବଭଙ୍ଗୀ ଦେଖି ସମସ୍ତେ ସ୍ତମ୍ଭୀଭୂତ ହୋଇଗଲେ । ଆଚାର୍ଯ୍ୟ ଆସନ ତ୍ୟାଗ କରି ବୃଦ୍ଧଙ୍କୁ ଆସନ ପ୍ରଦାନ କଲେ । ବ୍ରାହ୍ମଣ ଆସନ ଗ୍ରହଣ କରି ଆଚାର୍ଯ୍ୟଙ୍କୁ ଉପବେଶନ କରିବାକୁ ଆଦେଶ ଦେଲେ ଏବଂ ତାଙ୍କ କଥା ମନଯୋଗ ଦେଇ ଆଗ୍ରହର ସହିତ ଶ୍ରବଣ କରିବାକୁ ନିର୍ଦ୍ଦେଶ ଦେଲେ । ବୃଦ୍ଧ ଆସନ ଗ୍ରହଣ କରି ଶଙ୍କରଙ୍କୁ କହିଲେ, ‘‘ଆପଣଙ୍କୁ ତ ସମସ୍ତେ ଭାଷ୍ୟକାର ବୋଲି କହୁଛନ୍ତି, ତେବେ କହନ୍ତୁ—ବ୍ରହ୍ମସୂତ୍ରର ତୃତୀୟ ଅଧ୍ୟାୟ ପ୍ରଥମ ପାଦ ପ୍ରଥମ ସୂତ୍ରର ଅର୍ଥ କ’ଣ ?’’ ଆଚାର୍ଯ୍ୟ ସ୍ୱଭାବସୁଲଭ ପ୍ରସନ୍ନ ଗମ୍ଭୀର ଭାବରେ କହିଲେ, ‘‘ଜୀବ ଯେତେବେଳେ ଏହି ଦେହ ତ୍ୟାଗକରି ଦେହାନ୍ତର ଗ୍ରହଣ କରିବାନିମିତ୍ତ ଯାଏ, ସେତେବେଳେ ତାହାର ଦେହ, ବୀଜ ଯେଉଁ ସୂକ୍ଷ୍ମଭୂତରେ ନିର୍ମିତ, ସେହି ସୂକ୍ଷ୍ମଭୂତଦ୍ୱାରା ପରିବେଷ୍ଟିତ ହୋଇଥାଏ; ତେଣୁ ଆତ୍ମା ସୂକ୍ଷ୍ମଭୂତଦ୍ୱାରା ପରିବେଷ୍ଟିତ ହୋଇ ଦେହରୁ ବହିର୍ଗତ ହୁଏ ବୋଲି ମୁକ୍ତିସାଧନ ସମୟରେ ବୈରାଗ୍ୟର ଆବଶ୍ୟକ ହୋଇଥାଏ ।’’ ବୃଦ୍ଧ ସେଥିରେ ଆପତ୍ତି କଲେ । ଆଚାର୍ଯ୍ୟ ତାହାର ଉତ୍ତର ପ୍ରଦାନ କଲେ । ଏହି ଭାବରେ ବୃଦ୍ଧଙ୍କର ଆପତ୍ତି ଓ ଆଚାର୍ଯ୍ୟଙ୍କର ଉତ୍ତର-ପ୍ରତ୍ୟୁତ୍ତରରେ ନାନା ବିଚାର ଉପସ୍ଥିତ ହେଲା । ସମଗ୍ର ବେଦାନ୍ତସୂତ୍ରର ଆଲୋଚନା ହୋଇଗଲା । ଜୀବ, ଜଗତ, ମୁକ୍ତି ଓ ବ୍ରହ୍ମଙ୍କ ସ୍ୱରୂପ, କର୍ମକାଣ୍ଡ,

ଜ୍ଞାନକାଣ୍ଡ ପ୍ରଭୃତି ତତ୍ତ୍ୱ ଆଲୋଚିତ ହେଲା । ଉଭୟଙ୍କର ବିଚାର ସମସ୍ତଙ୍କର ଉପଭୋଗ୍ୟବସ୍ତୁ ହୋଇଉଠିଲା ।

ଶିଷ୍ୟମାନେ ପୂର୍ବରୁ କେବେ ଏପରି ବିଚାର ଶୁଣି ନ ଥିଲେ । ଆଚାର୍ଯ୍ୟଙ୍କର ଏପରି ପ୍ରତିଭା ମଧ୍ୟ ଦର୍ଶନ କରି ନ ଥିଲେ । ଏହି ବୃଦ୍ଧ ବ୍ରାହ୍ମଣଙ୍କ ପରି ଅନ୍ୟ କାହାର ଏଭଳି ପାଣ୍ଡିତ୍ୟ ସେମାନେ ପୂର୍ବରୁ ଦେଖି ନ ଥିଲେ । ବୃଦ୍ଧ ଆଲୋଚନା ଶେଷ କରି ସେଠାରୁ ଚାଲିଯାଆନ୍ତି ଏବଂ ପୁନରାୟ ପରଦିନ ଯଥାସମୟରେ ଆସି ଉପସ୍ଥିତ ହୋଇ ବିଚାରରେ ପ୍ରବୃତ୍ତ ହୁଅନ୍ତି । ବୃଦ୍ଧଙ୍କର ଦୃଢ଼ତାପୂର୍ଣ୍ଣ ଯୁକ୍ତି, ଆଗ୍ରହାତିଶଯ୍ୟ ଓ ଆଚାର୍ଯ୍ୟଙ୍କର ପ୍ରଫୁଲ୍ଲ-ଉଦାସୀନ ଭାବ ଦେଖି ଶିଷ୍ୟମାନେ ବିସ୍ମିତ ହୋଇଗଲେ । ଏହି ଭାବରେ ଏକ ସପ୍ତାହ ଅତୀତ ହେଲା । ସାତଦିନ ପରେ ଦିନେ ପଦ୍ମପାଦ ଆଚାର୍ଯ୍ୟଙ୍କୁ କହିଲେ, ''ଭଗବାନ ! ଏ ବୃଦ୍ଧ ବ୍ରାହ୍ମଣ କିଏ ? ଏପରି ବିଦ୍‌ବତ୍ତା ମୁଁ ତ ଆଉ କେବେ କାହାରିଠାରେ ଦେଖି ନାହିଁ ? ଏ ଯେପରି ସାକ୍ଷାତ୍ ବେଦବ୍ୟାସଙ୍କ ପରି ପ୍ରତୀୟମାନ୍ ହେଉଛନ୍ତି । ବେଦକୁ ଏପରି ଭାବରେ କଣ୍ଠସ୍ଥ କରିବା ଅନ୍ୟ କାହା ପକ୍ଷରେ ସମ୍ଭବପର ନୁହେଁ । ବେଦବ୍ୟାସ ଛଳନା କରି ଏ ରୂପ ପରିଗ୍ରହଣ କରି ଆସୁ ନାହାନ୍ତି ତ ?'' ଆଚାର୍ଯ୍ୟ ଈଷତ୍ ହାସ୍ୟ କରି କହିଲେ, ''ପଦ୍ମପାଦ ! ତୁମ କଥା ସତ୍ୟ ବୋଲି ଅନୁମିତ ହେଉଅଛି । ବୃଦ୍ଧ ଆଜି ଆସିଲେ ପ୍ରଥମେ ତାଙ୍କ ପରିଚୟ ଗ୍ରହଣ କରିବା ଉଚିତ ।''

ପରଦିନ ଯଥାସମୟରେ ବୃଦ୍ଧ ଆସି ଉପସ୍ଥିତ ହେଲେ । ବୃଦ୍ଧ ଆସିବା କ୍ଷଣି ପ୍ରଶ୍ନ କରିବାକୁ ଆରମ୍ଭ କଲେ । ଆଚାର୍ଯ୍ୟ ହସ ହସ ବଦନରେ ପ୍ରଶ୍ନ କଲେ, ''ମହାତ୍ମନ୍ ! ଉତ୍ତରପ୍ରଦାନ ପୂର୍ବରୁ ମୋର ଗୋଟିଏ ନିବେଦନ ଅଛି । ମୋର ଶିଷ୍ୟ କାଲି ମୋତେ କହିଲା ଯେ, ଆପଣ ସେହି ମହାମୁନି ବେଦବ୍ୟାସ । ଆମମାନଙ୍କୁ ଛଳନା କରିବାନିମିତ୍ତ ଏଠାକୁ ଆସିଛନ୍ତି । ଏ ଅନୁମାନ କ'ଣ ସତ୍ୟ ?'' ବୃଦ୍ଧ ଉତ୍ତର କଲେ, ''ହଁ, ଆପଣମାନଙ୍କ ଅନୁମାନ ସତ୍ୟ ।'' ଆଚାର୍ଯ୍ୟ ସେହି ଆଦିଗୁରୁଙ୍କୁ ଯଥାବିହିତ ସମ୍ମାନ ପ୍ରଦର୍ଶନପୂର୍ବକ କହିଲେ, ''ମହାଶୟ, କୃପାକରି ସ୍ୱୀୟ ରୂପ ପରିଗ୍ରହ କଲେ ଆମ୍ଭେମାନେ ସେହି ପରମଗୁରୁଙ୍କର ପୂଜା କରି ନିଜକୁ ଧନ୍ୟ ମନେକରନ୍ତୁ ।''

ବୃଦ୍ଧ ଏଥର ଧରା ପଡ଼ିଗଲେ । ହସି ହସି ସେ ପୁରାଣବର୍ଣ୍ଣିତ ସେହି କୃଷ୍ଣଦ୍ୱୈପାୟନ ରୂପ ଧାରଣ କଲେ । ସେହି କୃଷ୍ଣକାୟ ବିଶାଳବପୁ ଜଟାଭାର-ବିଲମ୍ବିତ ରୂପ ଦର୍ଶନକରି ଶଙ୍କର ଓ ତାଙ୍କର ଶିଷ୍ୟବର୍ଗ ବ୍ୟାସଦେବଙ୍କ ଚରଣତଳେ ମସ୍ତକ ଲୁଣ୍ଠିତକରି ପ୍ରଣାମ କଲେ ଓ ପୂଜା କଲେ ।

ଆଚାର୍ଯ୍ୟ ତତ୍ପରେ ପ୍ରଫୁଲ୍ଲଚିତ୍ତରେ କହିଲେ, "ମହାଶୟ ! ମୁଁ ଆପଣଙ୍କ ସୂତ୍ରର ଭାଷ୍ୟ ପ୍ରଣୟନ କରିଅଛି । ତେବେ ଆଉ ବିଚାରରେ ପ୍ରୟୋଜନ କ'ଣ ? ଆପଣ ଭାଷ୍ୟ ଖଣ୍ଡକ ଦେଖନ୍ତୁ । ଯଦି ଆପଣଙ୍କ ଅଭିମତ ହେବ, ତେବେ ପ୍ରକାଶିତ ହେବ, ନଚେତ୍ ଏହା ବିଲୁପ୍ତ ହେବ । ମୁଁ ସୂତ୍ରର ଭାଷ୍ୟ ପ୍ରଣୟନ କରି ଖୁବ୍ ଦୁଃସାହସିକତା ପ୍ରଦର୍ଶନ କରିଅଛି ।" ଏହା କହି ଭାଷ୍ୟଗୁଡ଼ିକ ବ୍ୟାସଦେବଙ୍କ ହସ୍ତରେ ଅର୍ପଣ କଲେ । ବ୍ୟାସଦେବ ଭାଷ୍ୟ ପାଠ କରିବାକୁ ଆରମ୍ଭ କଲେ । ପାଠ ଶେଷ କରି କହିଲେ, "ଶଙ୍କର ! ଶିବ ନିଜେ ଅବତାର ଗ୍ରହଣ କରି ମୋ ସୂତ୍ରର ଭାଷ୍ୟ ରଚନା କରିବେ ବୋଲି ମୁଁ ପୂର୍ବରୁ ଜାଣିଥିଲି । ବର୍ତ୍ତମାନ ତୁମେ ସେହି ଶିବ କି ନା, ଏହା ଜାଣିବା ନିମିତ୍ତ ଏବଂ ମୋ ବ୍ରହ୍ମସୂତ୍ରର ଭାଷ୍ୟ କିପରି ହୋଇଛି ଦେଖିବାପାଇଁ ମୁଁ ଏଠାକୁ ଆଗମନ କରିଅଛି । ତୁମର ଏ ଭାଷ୍ୟ ଉପଯୁକ୍ତ ହୋଇଅଛି, ମୋ ଭାବ ଯଥାର୍ଥରେ ତୁମ ଭାଷ୍ୟରେ ପରିବ୍ୟକ୍ତ ହୋଇଅଛି । ଅନେକ ସ୍ଥଳରେ ମୋ ଇଚ୍ଛାଠାରୁ ଅଧିକ ବିଷୟ ମଧ୍ୟ ଏଥିରେ ବ୍ୟକ୍ତ ହୋଇଅଛି ଏବଂ କେତେକ ସ୍ଥଳର ସୂତ୍ର ପ୍ରତି କଟାକ୍ଷ ମଧ୍ୟ କରାଯାଇଅଛି; ତଥାପି ମୁଁ ଏହା ପାଠ କରି ଅତିଶୟ ସନ୍ତୁଷ୍ଟ । କାରଣ ସୂତ୍ର ବୋଲି ମୁଁ ସେଥିରେ ମୋର ମନୋଭାବ ସମ୍ୟକ୍‌ରୂପେ ବ୍ୟକ୍ତ କରିପାରି ନ ଥିଲି । କେବଳ ମୌଖିକ ଭାବରେ ଶିକ୍ଷା ପ୍ରଦାନ କରିଥିଲି ମାତ୍ର । ତୁମର ଏହି ଜନ୍ମଗ୍ରହଣ ବିଷୟ ମୁଁ ହିମାଳୟରେ ଗୋଟିଏ ଯଜ୍ଞସ୍ଥଳରେ ପ୍ରକାଶ କରିଥିଲି । ଗୁରୁ ଗୋବିନ୍ଦପାଦଙ୍କ ମୁଖରୁ ତୁମେ ତାହା ଶ୍ରବଣ କରିଥିବ । ଗୋବିନ୍ଦପାଦ ଓ ଗୌଡ଼ପାଦ ପ୍ରଭୃତି ମୋର ଶିଷ୍ୟ-ସଂପ୍ରଦାୟ । ଗୌଡ଼ପାଦ ମୋ ପୁତ୍ର ଶୁକଙ୍କଠାରୁ ସାକ୍ଷାତ୍‌ଭାବରେ ଶିକ୍ଷା ଲାଭ କରିଥିଲେ । ବର୍ତ୍ତମାନ ମୋ ସୂତ୍ରର ଭାଷ୍ୟ ରଚନା ହେବାଦ୍ୱାରା ଜଗତରେ ପୁନରାୟ ବୈଦିକ ଧର୍ମ ପ୍ରତିଷ୍ଠିତ ହେବ । ମୋ ଆଶୀର୍ବାଦରେ ତୁମ ଭାଷ୍ୟ ଜଗତରେ ଅମର ହୋଇ ରହିବ । ଶଙ୍କର ! ତୁମେ ଭାଷ୍ୟ ପ୍ରଣୟନ କରି ଜ୍ଞାନୀମାନଙ୍କର ଅଶେଷ ଉପକାର ସାଧନ କରିଅଛ । ବ୍ରହ୍ମସୂତ୍ର ଅତିଶୟ ଦୁର୍ଜ୍ଞେୟ

ହେଲେ ମଧ୍ୟ ତୁମେ ତାକୁ ସହଜସାଧ୍ୟ କରି ଦେଇଅଛ । ତୁମେ ପୁନରାୟ ବେଦାନ୍ତ ବ୍ୟାଖ୍ୟାରେ ନିରତ ହୁଅ; ମୁଁ ସ୍ୱସ୍ଥାନକୁ ଗମନ କରୁଛି ।

ବ୍ୟାସଦେବଙ୍କ ବାକ୍ୟ ଶ୍ରବଣ କରି ଶଙ୍କର କହିଲେ, ‘‘ଭଗବାନ୍ ! ନାନା ଲୋକଙ୍କର ନାନାବିଧ କୁତ୍ସିତ ବ୍ୟାଖ୍ୟାରେ ବେଦାନ୍ତ ଶାସ୍ତ୍ର କଳୁଷିତ ହୋଇ ଯାଇଥିବାର ଦେଖି ମୁଁ ଯଥାଶକ୍ତି ଏହାର ସଂସ୍କାର ସାଧନ କରି ଅଦ୍ୱୈତମତ ସ୍ଥାପନ କରିଅଛି । ମୋର କର୍ତ୍ତବ୍ୟ ବର୍ତ୍ତମାନ ଶେଷ ହୋଇଅଛି । ମୁଁ ଆପଣଙ୍କ ସାକ୍ଷାତରେ ଏହି କ୍ଷଣଭଙ୍ଗୁର ଦେହ ପରିତ୍ୟାଗ କରିବାକୁ ଇଚ୍ଛା କରୁଅଛି ।’’

ଏହା ଶୁଣି ବ୍ୟାସଦେବ କହିଲେ, ‘‘ଯତିବର ! ତୁମର କର୍ମ ଶେଷ ହୋଇ ନାହିଁ । ବ୍ରହ୍ମସୂତ୍ର ଗ୍ରନ୍ଥ ତିନୋଟି ପ୍ରସ୍ଥାନରେ ବିଭକ୍ତ । ବେଦାନ୍ତ ନ୍ୟାୟପ୍ରସ୍ଥାନ ବୋଲି ପ୍ରସିଦ୍ଧ, ଶ୍ରୁତି ଓ ସ୍ମୃତି ନାମକ ବେଦାନ୍ତର ଆଉ ଦୁଇଟି ପ୍ରସ୍ଥାନ ଅବଶିଷ୍ଟ ଅଛି । ଏହି ପ୍ରସ୍ଥାନ ଦୁଇଟିର ଭାଷ୍ୟ ପ୍ରଣୟନ ନ କଲେ ସୂତ୍ରଭାଷ୍ୟ ପ୍ରତିଷ୍ଠିତ ହୋଇପାରିବ ନାହିଁ । ସୁତରାଂ ତୁମକୁ ସେହି କାର୍ଯ୍ୟଟି ମଧ୍ୟ କରିବାକୁ ହେବ ।’’

ଆଚାର୍ଯ୍ୟ ହସ ହସ ବଦନରେ କହିଲେ, ‘‘ଭଗବାନ୍ ! ଆପଣଙ୍କ ଆଶୀର୍ବାଦରୁ ମଧ୍ୟ ମୁଁ ମୋର ସେ କାର୍ଯ୍ୟ ଶେଷ କରିସାରିଛି ।’’ ଏହା କହି ଶଙ୍କର ଅନ୍ୟ ଭାଷ୍ୟଗୁଡ଼ିକ ବ୍ୟାସଦେବଙ୍କ ହସ୍ତରେ ପ୍ରଦାନ କଲେ । ବ୍ୟାସଦେବ ଏଥିରେ ସନ୍ତୁଷ୍ଟ ହୋଇ କାର୍ଯ୍ୟ ଶେଷ ହୋଇଛି ବୋଲି ସ୍ୱୀକାର କଲେ । ଏଥିରେ ଶଙ୍କର ପୁନରାୟ ଦେହରକ୍ଷାନିମିତ୍ତ ଅନୁମତି ପ୍ରଦାନ କରିବାକୁ ବ୍ୟାସଦେବଙ୍କୁ ନିବେଦନ କଲେ । କ୍ଷଣକାଳ ଚିନ୍ତାମଗ୍ନ ହୋଇ ବ୍ୟାସଦେବ କହିଲେ, ‘‘ନା, ତୁମ କାର୍ଯ୍ୟ ଏପର୍ଯ୍ୟନ୍ତ ଶେଷ ହୋଇ ନାହିଁ । ଆଉ ଗୋଟିଏ ମହତ୍ କର୍ମ ଅନୁଷ୍ଠାନ କରିବାର ଅବଶିଷ୍ଟ ଅଛି । ତାହା ତୁମ ବ୍ୟତୀତ ଅନ୍ୟ କାହାରିଦ୍ୱାରା ସମ୍ଭବ ନୁହେଁ । ବର୍ତ୍ତମାନ ସୁଦ୍ଧା ଅନେକ କୃତବିଦ୍ୟ ପଣ୍ଡିତ ଅଛନ୍ତି, ଯାହାଙ୍କୁ ପରାଜୟ କରିବା ଏକାନ୍ତ ଆବଶ୍ୟକ । ତୁମେ ସେହି ପଣ୍ଡିତମାନଙ୍କୁ ପରାଜୟ କରିବାନିମିତ୍ତ ଉପଯୁକ୍ତ ଗ୍ରନ୍ଥ ପ୍ରଣୟନ କରିଅଛ ସତ୍ୟ, ତଥାପି ସ୍ୱୟଂ ସେମାନଙ୍କୁ ପରାଜୟ କରିବାପାଇଁ ଆଉ କିଛି ଦିନ ପର୍ଯ୍ୟନ୍ତ ଏହି ପୃଥିବୀରେ ତୁମକୁ ବାସ କରିବାକୁ ହେବ । ତୁମେ ବର୍ତ୍ତମାନ ଚାଲିଗଲେ ଜଗତବାସୀଙ୍କର ମୋକ୍ଷଲାଭର ଇଚ୍ଛା ତିରୋହିତ ହେବ । ତୁମେ ଦିଗ୍‌ବିଜୟୀ ପଣ୍ଡିତମାନଙ୍କୁ ବିଚାରରେ ପରାଜିତ କରି ସ୍ୱମତକୁ ଆନୟନ ନ କରିବା ପର୍ଯ୍ୟନ୍ତ ଜନସାଧାରଣ ବେଦାନ୍ତର ଅର୍ଥ

ଗ୍ରହଣ କରିପାରିବେ ନାହିଁ । ସାଧାରଣ ଲୋକେ ମହତ୍ ବ୍ୟକ୍ତିଙ୍କର ଅନୁସରଣ କରିଥାନ୍ତି । ତେଣୁ ତୁମେ ବର୍ତ୍ତମାନ ଦେହତ୍ୟାଗର ବାସନା ପରିତ୍ୟାଗ କର ।''

ଶଙ୍କର ଉତ୍ତର କଲେ, ''ମହାଶୟ ! ମୋର ଆୟୁ ଶେଷ ହୋଇଯାଇଛି । ଆପଣ ଜଗତର ହିତନିମିତ୍ତ ଚାରି ଯୁଗରେ ବର୍ତ୍ତମାନ ଅଛନ୍ତି । ଆପଣଙ୍କ ଇଚ୍ଛା ନିଶ୍ଚୟ କାର୍ଯ୍ୟକାରୀ ହେବ । ଆପଣଙ୍କ କୃପା ହେଲେ ମୋ ଶିଷ୍ୟମାନେ ମଧ୍ୟ ପ୍ରଚାରକାର୍ଯ୍ୟ କରିପାରିବେ । ମୋର ଦେହଧାରଣର କିଛି ପ୍ରୟୋଜନ ନାହିଁ ।'' ବ୍ୟାସଦେବ କହିଲେ, ''ଷୋଡ଼ଶ ବର୍ଷରେ ଯେ ତୁମର ଆୟୁକ୍ଷୟ, ଏହା ତୁମ ସ୍ୱେଚ୍ଛାଜନିତ ପ୍ରାରବ୍ଧ । ତୁମେ ଏ ସମୟରେ ନିଜେ ଇଚ୍ଛା କରି ଦେହରକ୍ଷା କରିବାକୁ ମନସ୍ଥ କରିବ । ଜ୍ଞାନର ପୂର୍ଣ୍ଣତା ହେଲେ ଏହିପରି ଘଟିଥାଏ, ମୁଁ ଏହା ଜାଣିପାରି ଜଗତରେ ତୁମକୁ ଆଉ କିଛି ଦିନ ରଖାଇବାକୁ ଆସିଅଛି । ଏ କାର୍ଯ୍ୟ ତୁମ ବ୍ୟତୀତ ଅନ୍ୟ କାହାରିଦ୍ୱାରା ସମ୍ଭବ ହେବ ନାହିଁ । ଏଥିପାଇଁ ବିଶେଷ ଶକ୍ତି ଆବଶ୍ୟକ । ମୋ ଆଶୀର୍ବାଦରେ ତୁମେ ଆଉ ଷୋଳ ବର୍ଷ ଏ ଜଗତରେ ରହିପାରିବ । ତୁମେ ପ୍ରଥମେ କର୍ମବାଦର ଅଗ୍ରଣୀ ପଣ୍ଡିତ କୁମାରିଲ ଭଟ୍ଟଙ୍କୁ ପରାଜିତ କର । ତତ୍ପରେ ଅପରାପର ପଣ୍ଡିତମାନଙ୍କୁ ପରାଜିତ କର । ବୌଦ୍ଧ, ଜୈନ ପ୍ରଭୃତି ଅବୈଦିକ ମତାବଲମ୍ବୀମାନଙ୍କୁ କୁମାରିଲ ପରାଜିତ କରିଅଛି । ସେ ତୁମ ମତ ଗ୍ରହଣ କଲେ ଭାରତବାସୀ ସମସ୍ତେ ତୁମ ମତ ଗ୍ରହଣ କରିବେ । ବିଧାତା ତୁମକୁ ଅଳ୍ପାୟୁ କରି ଜନ୍ମ ଦେଇଛନ୍ତି ସତ୍ୟ, ମାତ୍ର ବର୍ତ୍ତମାନ ବିବିଧ ପୁଣ୍ୟକର୍ମଦ୍ୱାରା ତୁମର ଆୟୁ ବର୍ଦ୍ଧିତ ହୋଇଯାଇଛି । ଯାଅ, ବିରୋଧୀମାନଙ୍କର ଗର୍ବ ଖର୍ବ କର । ତେଜସ୍ୱୀ ବାକ୍ୟଦ୍ୱାରା ଅଦ୍ୱୈତମତର ପରିପନ୍ଥୀମାନଙ୍କୁ ଭେଦବାଦରୁ ନିବୃତ୍ତ କର ।''

ଶଙ୍କର କିଛି କାଳ ମୌନ ରହି ଭାବିଲେ, ଲଗ୍ନସ୍ଥ ବୃହସ୍ପତିଙ୍କଦ୍ୱାରା ଆୟୁବୃଦ୍ଧି ଘଟିଥାଏ । ଶ୍ରୀଗୁରୁଦେବ ହିଁ ବୃହସ୍ପତି । ତେଣୁ ଆମ ସଂପ୍ରଦାୟର ଆଦିଗୁରୁ ବ୍ୟାସଦେବଙ୍କ ଆଶୀର୍ବାଦରୁ ମୋର ଆୟୁ ବୃଦ୍ଧି ଦୈବନିର୍ଦ୍ଧାରିତ । ଏହା ମନେକରି ସେ କହିଲେ, ''ଆଚ୍ଛା, ଆପଣଙ୍କ ଆଦେଶ ଶିରୋଧାର୍ଯ୍ୟ କଲି ।''

ଏକଥା ଶୁଣି ଶିଷ୍ୟମାନେ ଆନନ୍ଦରେ ଆତ୍ମହରା ହୋଇପଡ଼ିଲେ । ପଦ୍ମପାଦ ହର୍ଷୋତ୍‌ଫୁଲ୍ଲ ହୋଇ ବ୍ୟାସଦେବଙ୍କ ପାଦଧୂଳି ଗ୍ରହଣ କଲେ । ଆଚାର୍ଯ୍ୟ ଶିଷ୍ୟମାନଙ୍କ ଆନନ୍ଦରେ ଆନନ୍ଦିତ ହୋଇ ଈଷତ୍ ହାସ୍ୟ କରିବାକୁ ଲାଗିଲେ । ତାଙ୍କର ନୂତନ ଜୀବନ ଆରମ୍ଭ ହେଲା ।



# ଶଙ୍କରଙ୍କ କର୍ତ୍ତବ୍ୟଜ୍ଞାନ

ଆଚାର୍ଯ୍ୟଙ୍କ ମନରେ ଅଜ୍ଞାତସାରରେ ଏହା ପରଠାରୁ ଦିଗ୍‌ବିଜୟ ବାସନା ବଳବତୀ ହୋଇଉଠିଲା । ସେ ତାଙ୍କର ଏହି ଶୁଭ ବାସନାକୁ ଅବଲମ୍ବନ କରି କାର୍ଯ୍ୟ ଆରମ୍ଭ କରିବାକୁ ଇଚ୍ଛା ପ୍ରକାଶ କଲେ । ଶଙ୍କର ଭଟ୍ଟପାଦଙ୍କଦ୍ୱାରା ସ୍ୱୀୟ ଭାଷ୍ୟର ବାର୍ତ୍ତିକ ରଚନା କରାଇବା ଉଦ୍ଦେଶ୍ୟରେ ଉତ୍ତର କାଶୀ ପରିତ୍ୟାଗ କରି କୁମାରିଲଙ୍କ ଅନୁସନ୍ଧାନରେ ବହିର୍ଗତ ହେଲେ । ବହୁ ଅନୁସନ୍ଧାନ ପରେ ସେ ଜାଣିଲେ ଯେ, କୁମାରିଲ ସମଗ୍ର ଭାରତବର୍ଷ ଜୟ କରି ପ୍ରୟାଗରେ ଅବସ୍ଥାନ କରୁଛନ୍ତି । ତେଣୁ ଶଙ୍କର ଯମୁନାତୀର ଅବଲମ୍ବନପୂର୍ବକ ପ୍ରୟାଗଧାମରେ ଉପନୀତ ହେଲେ । ଏହି ପଥରେ ଆଚାର୍ଯ୍ୟ କୁରୁକ୍ଷେତ୍ର ଓ ଇନ୍ଦ୍ରପ୍ରସ୍ଥ ପ୍ରଭୃତି ଦର୍ଶନ କରି କ୍ରମେ ବୃନ୍ଦାବନଧାମରେ ଉପସ୍ଥିତ ହେଲେ । ଏଠାରେ ଭାଗବତ, ପଞ୍ଚରାତ୍ର ଓ ବୈଖାନସ ନାମଧେୟ ବୈଷ୍ଣବସାଧୁମାନେ ବାସ କରୁଥିଲେ । ଆଚାର୍ଯ୍ୟ ଏହି ସ୍ଥାନରେ ଗୋବିନ୍ଦାଷ୍ଟକ ସ୍ତୋତ୍ର ରଚନା କରି ସ୍ତବ କରିଥିଲେ । ସେ ଏହା ପରେ ନାନା ସ୍ଥାନ ଦର୍ଶନପୂର୍ବକ ପ୍ରୟାଗଧାମରେ ଉପନୀତ ହେଲେ । ପ୍ରୟାଗରେ ଉପସ୍ଥିତ ହୋଇ ଶଙ୍କର ଗୋଟିଏ ଉତ୍କୃଷ୍ଟ ସ୍ତବ ରଚନା କରି ତ୍ରିବେଣୀଦେବୀଙ୍କୁ ସ୍ତୁତି କଲେ । ଏହା ପରେ ଶଙ୍କର ଶୁଣିବାକୁ ପାଇଲେ ଯେ, ଅଦ୍ଭୁତ କୀର୍ତ୍ତିମାନ ମହାତ୍ମା ଭଟ୍ଟପାଦ ଗୁରୁବଧ ପାପର ପ୍ରାୟଶ୍ଚିତ୍ତ କରିବାନିମିତ୍ତ ଆସ୍ତିକ୍ୟ ବୁଦ୍ଧି ପ୍ରଣୋଦିତ ହୋଇ ତୃଷାନଳରେ ପ୍ରବେଶ କରୁଛନ୍ତି । ସେ କାଳବିଳମ୍ବ ନ କରି ଭଟ୍ଟପାଦଙ୍କ ଉଦ୍ଦେଶ୍ୟରେ ଯାତ୍ରା କଲେ । କିଛି ଦୂର ଯାଇ ଭଟ୍ଟପାଦଙ୍କୁ ଗୋଟିଏ ପ୍ରକାଣ୍ଡ ତୁଷାରସ୍ତୂପ ଉପରେ ଉପବିଷ୍ଟ ହୋଇଥିବାର ଦେଖିଲେ । ସ୍ତୂପର ନିମ୍ନରେ ଅଗ୍ନି ପ୍ରଜ୍ୱଳିତ । ପ୍ରଭାକର ପ୍ରଭୃତି ତାଙ୍କର ପ୍ରିୟ ଶିଷ୍ୟବର୍ଗ ଅଶ୍ରୁପୂର୍ଣ୍ଣ ନୟନରେ ଦଣ୍ଡାୟମାନ । ସମସ୍ତେ ହାହାକାର କରୁଛନ୍ତି । ସମସ୍ତେ କହୁଛନ୍ତି, ଆଉ କିଏ ଆମର ବୈଦିକ ଧର୍ମ ରକ୍ଷା କରିବ ?

ଆଚାର୍ଯ୍ୟ ଶଙ୍କର କୁମାରିଲଙ୍କ ନିକଟକୁ ଗମନ କଲେ । ବହୁ ଶିଷ୍ୟସମାବୃତ ଷୋଡ଼ଶ-ବର୍ଷବୟସ୍କ ଜଣେ ସନ୍ନ୍ୟାସୀଙ୍କ ପ୍ରତି ଭଟ୍ଟପାଦଙ୍କର ଦୃଷ୍ଟି ଆକୃଷ୍ଟ ହେଲା ।

ଭଟ୍ଟପାଦ ଅଳ୍ପ ଦିନ ହେଲା ଶଙ୍କରଙ୍କ କୀର୍ତ୍ତି-ଗାଥା କେବଳ ଲୋକମୁଖରୁ ଶ୍ରବଣ କରିଥିଲେ; କିନ୍ତୁ ତାଙ୍କୁ ଦେଖି ନ ଥିଲେ । ବର୍ତ୍ତମାନ ଶଙ୍କରଙ୍କୁ ଦର୍ଶନ କରି କୁମାରିଲ ଅତିଶୟ ଆନନ୍ଦିତ ହେଲେ ଏବଂ ସେହି ତୁଷାନଳରେ ବସି ମଧ୍ୟ ଆଚାର୍ଯ୍ୟଙ୍କୁ ଯଥାବିଧି ଅଭ୍ୟର୍ଥନା କରି କହିଲେ, ''ମୁଁ ଅଳ୍ପ ଦିନ ହେଲା ଆପଣଙ୍କ କଥା ଶୁଣିବାକୁ ପାଇଛି । ଆପଣଙ୍କ ସହିତ କିପରି ସାକ୍ଷାତ ହେବ, ସେ ଇଚ୍ଛା ମୋର ଥିଲା । କାରଣ ଆପଣ ମଧ୍ୟ ମୋପରି ଜଣେ ବେଦପ୍ରାମାଣ୍ୟବାଦୀ । ବର୍ତ୍ତମାନ ଏଠାକୁ ଆପଣଙ୍କ ଆଗମନର ଅଭିପ୍ରାୟ ପ୍ରକାଶ କରନ୍ତୁ ।''

ଶଙ୍କର କହିଲେ—''ପଣ୍ଡିତପ୍ରବର ! ମୁଁ ବେଦାନ୍ତର ଅଦ୍ୱୈତ ସିଦ୍ଧାନ୍ତ ପ୍ରଚାର କରିବାପାଇଁ ଆଦିଷ୍ଟ ହୋଇ ବ୍ରହ୍ମସୂତ୍ର ପ୍ରଭୃତି ପ୍ରସ୍ଥାନ ତ୍ରୟର ଭାଷ୍ୟ ରଚନା କରିଅଛି । ଆପଣ ଯଦି ଏହି ମତ ଗ୍ରହଣ କରି ପାରିବେ, ତାହାହେଲେ ଏହା ନିର୍ଦ୍ଦୋଷଭାବରେ ଜଗତରେ ପ୍ରଚାରିତ ହୋଇପାରିବ । ଆପଣଙ୍କ ଶକ୍ତି ଓ ପାଣ୍ଡିତ୍ୟ ଅତୁଳନୀୟ । ତେଣୁ ମୁଁ ଆପଣଙ୍କ ନିକଟକୁ ଆସିଅଛି । କୁମାରିଲ ଶଙ୍କରଙ୍କର ସୁମିଷ୍ଟ ଅଥଚ ସାହସପୂର୍ଣ୍ଣ ବାକ୍ୟ ଶୁଣି ସ୍ତମ୍ଭୀତ ହୋଇଗଲେ । ମଧ୍ୟେ ମଧ୍ୟେ ସାମାନ୍ୟ କ୍ରୋଧର ମଧ୍ୟ ଉଦୟ ହେଉଥିଲା । ମନେ ମନେ ଭାବିଲେ, ଏହି ବାଳକ ମୋତେ ତାହାର ମତ ଗ୍ରହଣ କରି ସେ ପ୍ରଣୟନ କରିଥିବା ଭାଷ୍ୟର ବାର୍ତ୍ତିକ ରଚନା କରିବାକୁ କହୁଛି । କି ଦୁଃସାହସ ! ଏହା ତାର ଔଦ୍ଧତ୍ୟ ନା ଗର୍ବ ନା ଦୈବୀପ୍ରତିଭା ! କିନ୍ତୁ କୁମାରିଲ ନିଜର ମନୋଭାବ ସଂଯତ କରି ଗମ୍ଭୀରଭାବରେ କହିଲେ, ''କାହିଁ ?—ଆପଣଙ୍କ ଭାଷ୍ୟ ଆଣନ୍ତୁ । ପଦ୍ମପାଦ ଏହା ଶୁଣି ସଙ୍ଗେ ସଙ୍ଗେ ଭାଷ୍ୟ ଖଣ୍ଡିକ ଭଟ୍ଟପାଦଙ୍କ ହସ୍ତରେ ଅର୍ପଣ କଲେ । ଭାଷ୍ୟ ପାଠକରି କୁମାରିଲଙ୍କ ମନରୁ କ୍ରୋଧ ଅନ୍ତର୍ହିତ ହୋଇଯାଇ ଶ୍ରଦ୍ଧା ଓ ବିସ୍ମୟରେ ହୃଦୟ ପୂର୍ଣ୍ଣ ହୋଇଗଲା । ସେ ଦେଖିଲେ ଯେ, ତାଙ୍କର ଅଭୀଷ୍ଟ ଅନେକ କଥା ଆଚାର୍ଯ୍ୟ ଭାଷ୍ୟ ମଧ୍ୟରେ ଲେଖିଅଛନ୍ତି । ଯେଉଁସବୁ କଥା ଶ୍ରଦ୍ଧାବାନ୍ ବେଦଜ୍ଞଙ୍କ ଭିନ୍ନ ଅନ୍ୟ କେହି ଗ୍ରହଣ କରିବେ ନାହିଁ ବୋଲି ଭଟ୍ଟପାଦ ପ୍ରଚାର କରୁ ନ ଥିଲେ, ସେହିସବୁ ବିଷୟ ଅବୈଦିକ ମତର ପ୍ରାଧାନ୍ୟହେତୁ ଭାଷ୍ୟ ମଧ୍ୟରେ ସ୍ଥାନ ପାଇଛି । ସ୍ଥାନେ ସ୍ଥାନେ ତାଙ୍କ ମତ ଅତି ଅପୂର୍ବ ଯୁକ୍ତିବଳରେ ଖଣ୍ଡନ କରାଯାଇଛି । ବାଳକ ସନ୍ନ୍ୟାସୀଙ୍କ ସହିତ ବିଚାରରେ ପ୍ରବୃତ୍ତ ହେବାନିମିତ୍ତ କୁମାରିଲଙ୍କର ପ୍ରବଳ ଇଚ୍ଛା ହେଲା; କିନ୍ତୁ ତୁଷାରସ୍ତୁପର ନିମ୍ନରେ ଅଗ୍ନିର ଅବସ୍ଥା

ଦେଖି ତାହା ଅଳ୍ପ ସମୟ ମଧ୍ୟରେ ତାଙ୍କ ଅଙ୍ଗ ସ୍ପର୍ଶ କରି ତାଙ୍କୁ ଦଗ୍ଧ କରିଦେବ ଭାବି ସେ ସେଥିରୁ ନିବୃତ୍ତ ହୋଇ କହିଲେ, ‘‘ହେ ଯତୀଶ୍ୱର ! ଆପଣଙ୍କ ପରି ବ୍ୟକ୍ତିଙ୍କ ଦର୍ଶନଲାଭ ଅତିଶୟ ଦୁର୍ଲ୍ଲଭ । ମୁଁ ପୂର୍ବଜନ୍ମର ପୁଣ୍ୟଫଳରୁ ଆପଣଙ୍କ ଦର୍ଶନ ଲାଭ କରିଅଛି । ମୋର ଅନ୍ତିମକାଳ ଉପସ୍ଥିତ । ଗୁରୁବଧ ପାପର ପ୍ରାୟଶ୍ଚିତ୍ତ ଉଦ୍ଦେଶ୍ୟରେ ଏହି ତୁଷାନଳରେ ମୁଁ ପ୍ରାଣତ୍ୟାଗ କରୁଅଛି । ସୁତରାଂ ବର୍ତ୍ତମାନ ଆଉ ବିଚାର କରିବାର ସମୟ ନାହିଁ । ମୁଁ ଜୀବନରେ ଅନେକ ନିବନ୍ଧ ରଚନା କରିଅଛି ଓ କର୍ମମାର୍ଗ ନିର୍ଣ୍ଣୟ କରିଅଛି; ନୈୟାୟିକମାନଙ୍କର ଯୁକ୍ତି ଖଣ୍ଡନ କରିଛି, ବୈଷୟିକ ସୁଖ ଦୁଃଖ ଅନୁଭବ କରିଛି; କିନ୍ତୁ କୌଣସି ପ୍ରକାରେ କାଳକୁ ଖଣ୍ଡନ କରିପାରିଲି ନାହିଁ । ମୁଁ ସ୍ୱତଃସିଦ୍ଧ ବେଦକୁ ପ୍ରମାଣ କରିବାକୁ ଯାଇ ବେଦବାକ୍ୟ ଓ ଲୌକିକ ବାକ୍ୟଦ୍ୱାରା ଅଙ୍ଗୀକୃତ ଈଶ୍ୱରଙ୍କ ନିରାକରଣ କରିଅଛି । ହେ ଯତିବର ! ଈଶ୍ୱରଙ୍କ ବ୍ୟତୀତ ଜଗତ ସୁଖ-ସ୍ୱାଚ୍ଛନ୍ଦ୍ୟରେ ରହିପାରେ ନାହିଁ । ସେହି ଈଶ୍ୱରଙ୍କର ନିରାକରଣ ମୋ ଉଦ୍ଦେଶ୍ୟ ନୁହେଁ । ମୁଁ ତର୍କଛଳରେ ଈଶ୍ୱରଙ୍କ ନାସ୍ତିତ୍ୱ ପ୍ରମାଣ କରିଛି; କିନ୍ତୁ ଈଶ୍ୱରଙ୍କ ନାସ୍ତିତ୍ୱ ପ୍ରମାଣ କରିବା ମୋର ଅଭିପ୍ରାୟ ନୁହେଁ । ବେଦବିରୋଧୀ ବୌଦ୍ଧଗଣ ଜଗତ ଆକ୍ରମଣ କଲାବେଳେ ମୁଁ ସେମାନଙ୍କୁ ପରାଜୟ କରି ବେଦୋକ୍ତ ପନ୍ଥା ବା ବୈଦିକ ଆଚାର ରକ୍ଷା କରିବାନିମିତ୍ତ ପ୍ରଥମେ ସେହି କାର୍ଯ୍ୟରେ ପ୍ରବୃତ ହୋଇ କେଉଁ କର୍ମ ବିହିତ ଓ କେଉଁ କର୍ମ ନିଷିଦ୍ଧ, ତାହା ସ୍ଥିର କରିଛି । ବୌଦ୍ଧ-ସଂପ୍ରଦାୟ ପ୍ରବଳ ହୋଇ ରାଜା, ରାଜକୀୟ ଅମାତ୍ୟବର୍ଗ ଓ ଜନପଦବାସୀମାନଙ୍କୁ ସ୍ୱବଶରେ ରଖି ପ୍ରଚାର କରୁଥିଲେ—‘‘ହେ ଗୃହସ୍ଥଗଣ ! ଦେଖ, ରାଜନ୍ୟବର୍ଗ ଆମର ବଶୀଭୂତ, ଅମାତ୍ୟଗଣ ଆମର ଆଜ୍ଞାବହ । ଏ ଦେଶ ଆମରି । ତୁମେମାନେ କେବେହେଲେ ବୈଦିକମାର୍ଗରେ ଆଦର ପ୍ରକାଶ କର ନାହିଁ । ବେଦୋକ୍ତ କ୍ରିୟାକଳାପ ପରିତ୍ୟାଗ କର । ବୈଦିକ ବାକ୍ୟର କୌଣସି ପତ୍ୟକ୍ଷ ପ୍ରମାଣ ନାହିଁ ।’’ ମୁଁ ଅବୈଦିକ ସଂପ୍ରଦାୟର ଉଚ୍ଛେଦ ମାନସରେ ବଦ୍ଧପରିକର ହୋଇ ତାହାରି ପ୍ରତିବିଧାନରେ ବ୍ରତୀ ହୋଇଥିଲି । ବେଦର ପ୍ରାମାଣ୍ୟ ଓ ନିତ୍ୟତ୍ୱ ମୋର ପ୍ରଧାନ ଲକ୍ଷ୍ୟର ବିଷୟ ଥିଲା । ତେଣୁ ବେଦର ଜ୍ଞାନକାଣ୍ଡ ଓ ଈଶ୍ୱରତତ୍ତ୍ୱ ବିଷୟରେ ମୁଁ ଔଦାସୀନ୍ୟ ପ୍ରଦର୍ଶନ କରିଥିଲି । ଆପଣ ମୋ ଦ୍ୱାରା ଯେଉଁ କାର୍ଯ୍ୟ କରାଇବାକୁ ଇଚ୍ଛା କରୁଛନ୍ତି, ତାହା ମୋ ଶିଷ୍ୟ ମଣ୍ଡନ ମିଶ୍ରଙ୍କଦ୍ୱାରା କରାଇପାରିବେ । ତାକୁ ଯଦି ଆପଣ ବିଚାରରେ ପରାଜିତ

କରି ସ୍ୱମତକୁ ଆନୟନ କରିପାରିବେ, ତେବେ ମୋତେ ପରାଜୟ କରୁଛନ୍ତି ବୋଲି ଜାଣିବେ । ସେ ଯଦି ଆପଣଙ୍କ ମତ ଗ୍ରହଣ କରେ କିମ୍ବା ଆପଣଙ୍କ ଭାଷ୍ୟର ବାର୍ତ୍ତିକ ରଚନା କରେ, ତେବେ ଜାଣିବେ ଆପଣଙ୍କ ମତ ଚିରକାଳ ବିରାଜମାନ ରହିବ । ସେ ମୋର ଶିଷ୍ୟ ଓ ଅତ୍ୟନ୍ତ ଶ୍ରଦ୍ଧାର ପାତ୍ର, ତାକୁ କେହି କେହି ବିଶ୍ୱରୂପାଚାର୍ଯ୍ୟ ମଧ୍ୟ କହନ୍ତି । ସେ ଜଣେ ମହା ଧନୀ ଗୃହସ୍ଥ । ଯାବତୀୟ ବୈଦିକ ଯାଗ-ଯଜ୍ଞାଦିରେ ସେ ବିଶେଷଭାବରେ ନିପୁଣ । ତାକୁ ବ୍ରାହ୍ମଣମାନଙ୍କର ରାଜା କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ବର୍ତ୍ତମାନ ନର୍ମଦାତୀରସ୍ଥ ମହୀଷ୍ମତୀନଗରରେ ବାସ କରୁଅଛି । ତାକୁ ସମସ୍ତେ ବ୍ରହ୍ମାଙ୍କ ଅବତାର ବୋଲି ଶ୍ରଦ୍ଧା-ଭକ୍ତି କରନ୍ତି । ବ୍ୟାସ ଓ ଜୈମିନି ପ୍ରଭୃତି ମୁନିମାନେ ତାକୁ ଦର୍ଶନଦାନ କରନ୍ତି । ଆପଣ ତା ପତ୍ନୀ ସରସ୍ୱତୀ ଦେବୀଙ୍କୁ ମଧ୍ୟସ୍ଥ ଭାବରେ ଗ୍ରହଣ କରିବେ; କାରଣ ମଣ୍ଡନସହିତ ବିଚାରରେ ମଧ୍ୟସ୍ଥତା କରିବା ବ୍ୟକ୍ତି ମୁଁ ଅପର କାହାକୁ ଦେଖିପାରୁ ନାହିଁ । ସେ ଶୋଣନଦୀ ତୀରବର୍ତ୍ତୀ ବିଷ୍ଣୁ ମିଶ୍ରଙ୍କର କନ୍ୟା; ପିତାଙ୍କ ନିକଟରୁ ସେ ସର୍ବବିଦ୍ୟା ଲାଭ କରିଅଛି । ବିଦ୍ୟାରେ ସେ ଯେପରି ସାକ୍ଷାତ୍ ସରସ୍ୱତୀ, ସେଥିପାଇଁ ସେ ଏହି ନାମରେ ପରିଚିତା । ଆପଣ ନିଶ୍ଚିନ୍ତ ମନରେ ସେଠାକୁ ଗମନ କରନ୍ତୁ । ମୋ ଶରୀରକୁ ଅଗ୍ନିତାପ ସ୍ପର୍ଶ କଲାଣି । ମୁଁ ଆଉ ଅନ୍ୟ ଚିନ୍ତା କରିବି ନାହିଁ । ଆପଣ ମୋତେ ନାମ ଶ୍ରବଣ କରାନ୍ତୁ ।'' ଆଚାର୍ଯ୍ୟ କହିଲେ, ''ପଣ୍ଡିତପ୍ରବର ! ଆପଣ ଅନୁମତି ଦେଲେ ମୁଁ କମଣ୍ଡଳୁ-ଜଳଦ୍ୱାରା ଏହି ଅଗ୍ନି ନିର୍ବାପିତ କରିଦେଇପାରିବି । ଆପଣ ବିଚାର କରନ୍ତୁ, ଅଦ୍ୱୈତ ମତ ସତ୍ୟ କି ନୁହେଁ । ପରୀକ୍ଷା କରି ସତ୍ୟ ବୋଲି ଜାଣିଲେ ତାହା ଗ୍ରହଣ କରନ୍ତୁ । ସୁତରାଂ ଆପଣ ବିଚାର କଲେ ସବୁଠାରୁ ଭଲ ହେବ ।'' ଏହା ଶୁଣି ଭଟ୍ଟପାଦ କହିଲେ, ''ଯତିବର ! ବୌଦ୍ଧମାନଙ୍କର ସିଦ୍ଧାନ୍ତରହସ୍ୟ ମୋର ଅଜ୍ଞାତ ଥିବାରୁ ମୁଁ ସେମାନଙ୍କୁ ପରାଜୟ କରିପାରିଲି ନାହିଁ । ତେଣୁ ଅଗତ୍ୟା ବୌଦ୍ଧମାନଙ୍କର ଶରଣାପନ୍ନ ହୋଇ ସେମାନଙ୍କ ଶିଷ୍ୟତ୍ୱ ଗ୍ରହଣପୂର୍ବକ ସେମାନଙ୍କ ଉପଦେଶ ଶ୍ରବଣ କରିବାକୁ ବାଧ୍ୟ ହେଲି । ଯେ ଗୋଟିଏ ମାତ୍ର ଅକ୍ଷର ପ୍ରଦାନ କରନ୍ତି ସେ ଗୁରୁ । ମୁଁ ବୌଦ୍ଧଗୁରୁଙ୍କଠାରୁ ଶାସ୍ତ୍ରୋପଦେଶ ଗ୍ରହଣ କରି ସେହି ବୌଦ୍ଧକୁଳର ଧ୍ୱଂସସାଧନ କରିଥିବାହେତୁ ମୋର ଗୁରୁତର ପାପ ହୋଇଅଛି ଏବଂ ମହର୍ଷି ଜୈମିନିଙ୍କର ମୀମାଂସା-ଦର୍ଶନରେ ନିବିଷ୍ଟଚିତ୍ତ ହୋଇ ଈଶ୍ୱରଙ୍କ ନାସ୍ତିତ୍ୱ ପ୍ରମାଣ

କରିବାଦ୍ୱାରା ମୋର ଅନ୍ୟ ପାପ ଉତ୍ପନ୍ନ ହୋଇଅଛି । ଯତିବର ! ମୁଁ ଏହି ଉଭୟବିଧ ପାପରୁ ନିଷ୍କୃତି ଲାଭ କରିବା ନିମିତ୍ତ ବର୍ତ୍ତମାନ ତୁଷାନଳରେ ପ୍ରବେଶ କରୁଅଛି । ମୋତେ ଆଉ ସଂକଳ୍ପଚ୍ୟୁତ କରାନ୍ତୁ ନାହିଁ । ଆପଣ ଅଦ୍ୱୈତ ମତ ରକ୍ଷାକରିବା ନିମିତ୍ତ ଭୂତଳରେ ଅବତୀର୍ଣ୍ଣ ହୋଇଛନ୍ତି । ତୁଷାନଳରେ ପ୍ରବେଶ କରିବା ପୂର୍ବରୁ ଆପଣଙ୍କ ସହିତ ମୋର ସାକ୍ଷାତ ହୋଇଥିଲେ ମୁଁ ପାପକ୍ଷୟ ନିମିତ୍ତ ଏପରି କାର୍ଯ୍ୟର ଅନୁଷ୍ଠାନ କରି ନ ଥାନ୍ତି । ଆପଣଙ୍କଠାରେ ଯୋଗ-ପ୍ରଭାବ ବିଦ୍ୟମାନ; କିନ୍ତୁ ମୁଁ ଦୀକ୍ଷାଗ୍ରହଣପୂର୍ବକ ଯେଉଁ ବ୍ରତର ଅନୁଷ୍ଠାନ କରିଅଛି, ତାହା ପରିତ୍ୟାଗ କଲେ ମୋତେ ପ୍ରତ୍ୟବାୟଭାଗୀ ହେବାକୁ ପଡ଼ିବ । ପଣ୍ଡିତଗଣ ମୋତେ ନିନ୍ଦା କରିବେ । ଆପଣ ମୋତେ କ୍ଷମା କରନ୍ତୁ ଓ ମୋତେ ବ୍ରହ୍ମନାମ ପ୍ରଦାନ ପୂର୍ବକ କୃତାର୍ଥ କରନ୍ତୁ । ଶଙ୍କର କୁମାରିଲଙ୍କୁ ବ୍ରହ୍ମନାମ ପ୍ରଦାନ କଲେ । ତତ୍ପରେ କୁମାରିଲ ଶଙ୍କରଙ୍କ ଦିବ୍ୟମୂର୍ତ୍ତି ଦର୍ଶନ କରୁ କରୁ ଅଗଣିତ ଦର୍ଶକବୃନ୍ଦଙ୍କ ହୃଦୟ ବିଦୀର୍ଣ୍ଣ କରି ତୃଷାନଳରେ ଦେହରକ୍ଷା କଲେ ।



# ଭଟ୍ଟପାଦଙ୍କ ପରିଚୟ

କୁମାରିଲ ଭଟ୍ଟ ଦକ୍ଷିଣଦେଶୀୟ ବ୍ରାହ୍ମଣ । ଚୋଳଦେଶ ଏହାଙ୍କର ଜନ୍ମସ୍ଥାନ । ଭାରତରେ ବୈଦିକ ଧର୍ମ ପୁନଃ ପ୍ରତିଷ୍ଠିତ ହେବାରେ ଏହି ମହାତ୍ମା ପ୍ରଧାନ ସେନାପତିର କାର୍ଯ୍ୟ କରିଥିଲେ । ସମସ୍ତେ ଜାଣନ୍ତି ଯେ, ଏକ ସମୟରେ ବୌଦ୍ଧଧର୍ମ ସମଗ୍ର ଭାରତରେ ପ୍ରଚାରିତ ହୋଇଥିଲା । ବୌଦ୍ଧମାନେ ହିନ୍ଦୁଧର୍ମର ନାନାବିଧ ଦୋଷ ପ୍ରଦର୍ଶନ କରିବାକୁ ଯାଇ କହୁଥିଲେ, ''ହିନ୍ଦୁ ସଂପ୍ରଦାୟରେ ଯେଉଁମାନେ ସଦାଚାରୀ ବୋଲି ପ୍ରସିଦ୍ଧ, ସେମାନେ ମଧ୍ୟ ଧର୍ମର ଅତିକ୍ରମ ଓ ହିନ୍ଦୁଶାସ୍ତ୍ରନିଷିଦ୍ଧ କର୍ମ କରିଛନ୍ତି । ଦେଖନ୍ତୁ, ପ୍ରଜାପତି ବ୍ରହ୍ମା; ସେ ନିଜ କନ୍ୟାଠାରେ ଆସକ୍ତ ହେଲେ; ଇନ୍ଦ୍ର ଗୁରୁପତ୍ନୀ ହରଣ କଲେ; କୃଷ୍ଣଦ୍ୱୈପାୟନ ବିଚିତ୍ରବୀର୍ଯ୍ୟଙ୍କ ଭାର୍ଯ୍ୟାଙ୍କ ଗର୍ଭରେ ପୁତ୍ର ଉତ୍ପାଦନ କଲେ; ଗୁରୁ ଦ୍ରୋଣଙ୍କୁ ବଧ କରିବାନିମିତ୍ତ ଯୁଧିଷ୍ଠିର ମଧ୍ୟ ମିଥ୍ୟା ବ୍ୟବହାର କଲେ; ଅର୍ଜୁନ ମାତୁଳକନ୍ୟା ସୁଭଦ୍ରାଙ୍କୁ ବିବାହ ଓ ସୁରାପାନ ପ୍ରଭୃତି ଦୁଷ୍କର୍ମ କଲେ; ଏହିସବୁ ସେହି ବୈଦିକଶାସ୍ତ୍ର ବାକ୍ୟଦ୍ୱାରା ପ୍ରମାଣିତ ହୁଏ ।'' କୁମାରିଲ ବୌଦ୍ଧ ପଣ୍ଡିତମାନଙ୍କର ଏହି ଯୁକ୍ତି ଖଣ୍ଡନ କରିବାକୁ ଯାଇ 'ମୀମାଂସା-ତନ୍ତ୍ରବାର୍ତ୍ତିକ' ଗ୍ରନ୍ଥ ପ୍ରଣୟନପୂର୍ବକ ଉକ୍ତ ବେଦବିରୋଧୀମାନଙ୍କର ଆପତ୍ତି ଖଣ୍ଡନ କରିଥିଲେ । ସେ ହିନ୍ଦୁଶାସ୍ତ୍ରର ଯେଉଁ ବ୍ୟାଖ୍ୟା କରିଥିଲେ, ସେଥିରୁ ତାଙ୍କର ପ୍ରତିଭା ଓ ପାଣ୍ଡିତ୍ୟର ଯଥେଷ୍ଟ ପରିଚୟ ମିଳିଥିଲା । ସେ ଆପତ୍ତି ଖଣ୍ଡନ କରିବାକୁ ଯାଇ କହିଲେ, ''ପ୍ରଜାପାଳନର ଅଧିକାରୀ ବୋଲି ପ୍ରଜାପତି ଶବ୍ଦର ଅର୍ଥ ଆଦିତ୍ୟ । ତାଙ୍କ୍ ଆଗମନରେ ବେଳା ବର୍ଦ୍ଧିତ ହୁଏ ବୋଲି ବେଳା ତାଙ୍କର ଦୁହିତା । ବେଳାରେ ଅରୁଣ-କିରଣରୂପ ଯେଉଁ ବୀଜ ନିକ୍ଷିପ୍ତ ହୁଏ, ତାହା ସ୍ତ୍ରୀ-ପୁରୁଷର ସଂଯୋଗ ବୋଲି ଶାସ୍ତ୍ରରେ ବର୍ଣ୍ଣିତ ହୋଇଅଛି । ପ୍ରକୃତପକ୍ଷରେ ପ୍ରଜାପତି ଆପଣା କନ୍ୟାଗମନ କରିନାହାନ୍ତି । ଇନ୍ଦ୍ର ଶବ୍ଦର ଅର୍ଥ ତେଜଃପୁଞ୍ଜ ବା ସୂର୍ଯ୍ୟ । ଅହଃ ଅର୍ଥାତ୍ ଦିବସରେ ଲୀନ ହୁଅନ୍ତି ବୋଲି ଅହଲ୍ୟା ଶବ୍ଦର ଅର୍ଥ ରାତ୍ରି । ଇନ୍ଦ୍ର (ସୂର୍ଯ୍ୟ) ଅହଲ୍ୟା (ରାତ୍ରି)ର ଜରଣର (କ୍ଷୟକରଣର) କାରଣ ବୋଲି ଇନ୍ଦ୍ର ଅହଲ୍ୟାଜାର ନାମରେ ଅଭିହିତ । ପରସ୍ତ୍ରୀ ହରଣ ଦୋଷ ଯୋଗୁଁ ତାଙ୍କୁ ଅହଲ୍ୟାଜାର କୁହାଯାଏ ନାହିଁ । ପତିହୀନା ପୁତ୍ରାଭିଳାଷିଣୀ ରମଣୀ ଋତୁମତୀ ହେଲେ ଗୁରୁଦେବଙ୍କକର୍ତ୍ତୃକ ଆଦିଷ୍ଟ ହୋଇ ଦେବରଙ୍କଠାରୁ ପୁତ୍ରଗ୍ରହଣ କରିବା ଶାସ୍ତ୍ରସମ୍ମତ

କାର୍ଯ୍ୟ । କୃଷ୍ଣଦ୍ୱୈପାୟନ ମାତାଙ୍କ ଆଦେଶରେ ଭ୍ରାତୃଜାୟାଙ୍କର ଋତୁରକ୍ଷା କରି ଗର୍ଭସଞ୍ଚାର କରାଇଥିଲେ । ତେଣୁ ସେ ଶାସ୍ତ୍ରନିଷିଦ୍ଧ କାର୍ଯ୍ୟ କରିନାହାନ୍ତି । ଯୁଧିଷ୍ଠିର ଦ୍ରୋଣବଧରେ ଯେଉଁ ଅସତ୍ୟ ବ୍ୟବହାର କରିଥିଲେ, ସେଥିନିମିତ୍ତ ସେ ପ୍ରାୟଶ୍ଚିତ୍ତ କରିଥିଲେ । ପରେ ଏଥିନିମିତ୍ତ ଅଶ୍ୱମେଧ ଯଜ୍ଞର ଅନୁଷ୍ଠାନ ମଧ୍ୟ କରିଥିଲେ । ସୁରା ତିନି ପ୍ରକାର—ଗୌଡ଼ୀ, ପୈଷ୍ଟୀ ଓ ମାଧ୍ୱୀ । ଏହି ତିନି ପ୍ରକାର ମଧ୍ୟରେ ପୈଷ୍ଟୀ ପାନ କରିବା ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଙ୍କ ପକ୍ଷରେ ନିଷିଦ୍ଧ ନ ଥିଲା । ସୁଭଦ୍ରା ବସୁଦେବଙ୍କର ଔରସଜାତ କନ୍ୟା ନୁହନ୍ତି । ସୁଭଦ୍ରା ଜ୍ଞାତି-ସମ୍ପର୍କୀୟ ବଳରାମଙ୍କର ଭଉଣୀ । ତେଣୁ ତାଙ୍କ ସହିତ ବିବାହ କରିବାରେ ଅର୍ଜୁନଙ୍କର ଦୋଷ ନାହିଁ ।'' କୁମାରିଲ ମୀମାଂସାଦର୍ଶନ ଅନୁସାରେ ବିଚାର କରୁଥିବାରୁ ସେ କହୁଥିଲେ ''କର୍ମ ହିଁ ଜୀବର ଶୁଭାଶୁଭ ଫଳର ନିଦାନ । ଅତଏବ ଯାଗାଦି କରିବା କର୍ତ୍ତବ୍ୟ । କାରଣ ଅନୁଷ୍ଠିତ ଯାଗାଦିଦ୍ୱାରା ସୁକୃତର ସୃଷ୍ଟି ହୁଏ ଏବଂ ସେହି ସୁକୃତିଫଳରେ ସ୍ୱର୍ଗାଦି ଲାଭ ହୋଇଥାଏ ।'' ଶବରସ୍ୱାମୀ ମୀମାଂସାସୂତ୍ରର ବା ଜୈମିନିସୂତ୍ରର ପ୍ରଥମ ଭାଷ୍ୟ କରିଥିଲେ । ଏହା 'ଶବରଭାଷ୍ୟ' ନାମରେ ଖ୍ୟାତ୍ । କୁମାରିଲ ଶବରଭାଷ୍ୟ ପ୍ରଥମ ଅଧ୍ୟାୟର ପ୍ରଥମ ପାଦର ବାର୍ତ୍ତିକ ରଚନା କରିଥିଲେ । ଏହାର ନାମ 'ଶ୍ଳୋକବାର୍ତ୍ତିକ' । ଅନ୍ୟାନ୍ୟ ବାର୍ତ୍ତିକର ନାମ ମୀମାଂସା-ତନ୍ତ୍ରବାର୍ତ୍ତିକ ଓ ଲଘୁବାର୍ତ୍ତିକ ।

ବୌଦ୍ଧମାନେ ଯେପରି ବେଦବିରୋଧୀ ଭଟ୍ଟପାଦ ସେହିପରି ବେଦାନୁରାଗୀ । ବୌଦ୍ଧ ନୈୟାୟିକମାନଙ୍କ ମଧ୍ୟରେ ଧର୍ମପାଳ ପ୍ରଧାନ । ଧର୍ମପାଳଙ୍କ ବିଚାରରେ ବହୁ ବୈଦିକ ବ୍ରାହ୍ମଣ ଓ ଜୈନ ପରାଜୟ ସ୍ୱୀକାର କରିଥିଲେ । ଏହି ଧର୍ମପାଳଙ୍କ ନିକଟରୁ କୁମାରିଲଙ୍କ ଖୁଡୁତା ଧର୍ମକୀର୍ତ୍ତି ବୌଦ୍ଧମତ ଶିକ୍ଷା କରି ଦେଶକୁ ଫେରିଆସିଲେ ଓ କୁମାରିଲଙ୍କୁ ବିଚାରରେ ପରାଜିତ କଲେ । କୁମାରିଲ ପଣ ଅନୁସାରେ ବୌଦ୍ଧମତରେ ଦୀକ୍ଷିତ ହେବାକୁ ବାଧ୍ୟ ହେଲେ । ଏହା ପରେ ବୌଦ୍ଧସିଦ୍ଧାନ୍ତ-ରହସ୍ୟ ଅବଗତ ହେବା ଇଚ୍ଛାରେ କୁମାରିଲ ନାଳନ୍ଦା ବିହାରକୁ ଆସି ଧର୍ମପାଳଙ୍କର ଶିଷ୍ୟତ୍ୱ ସ୍ୱୀକାର କଲେ ଏବଂ ବୌଦ୍ଧଶାସ୍ତ୍ର ମଧ୍ୟ ଶିକ୍ଷା କଲେ । କିନ୍ତୁ କୁମାରିଲଙ୍କ ଅନ୍ତରରେ ସେ ସମୟରେ ମଧ୍ୟ ବୈଦିକ ଭାବ ବିଦ୍ୟମାନ ଥାଏ । କେତେଦିନ ପରେ କୁମାରିଲଙ୍କ ଶିକ୍ଷା ଶେଷ ହୋଇଗଲା । ଦିନେ ଗୋଟିଏ ସଭା ମଧ୍ୟରେ ବୌଦ୍ଧଗୁରୁ ବ୍ୟାଖ୍ୟା କରୁଥିବା ବେଳେ ଭୀଷଣ ଭାବରେ

ବେଦର ନିନ୍ଦା କରିବାକୁ ଲାଗିଲେ । କୁମାରିଲ ଧୀରଭାବରେ ଅଧୋବଦନରେ ତାହା ଶ୍ରବଣ କରୁଥିଲେ । ସେ ବେଦର ଏପରି ନିନ୍ଦା ଶୁଣି ଅଶ୍ରୁ ସମ୍ବରଣ କରିପାରିଲେ ନାହିଁ । ଏହା ଦେଖି ଜଣେ ଭିକ୍ଷୁ କୁମାରିଲଙ୍କ ପ୍ରତି ଗୁରୁଦେବଙ୍କର ଦୃଷ୍ଟି ଆକର୍ଷଣ କରାଇଦେଲେ । ଗୁରୁଦେବ କୁମାରିଲଙ୍କୁ ଏଥିର କାରଣ ପଚାରିବାରୁ ସେ କହିଲେ, ଆପଣ ବେଦ ବିଷୟରେ ଅଯଥା ନିନ୍ଦାବାଦ କରିବାରୁ ମୁଁ ଅତିଶୟ କ୍ଷୁବ୍‌ଧ । ଏହା ଶୁଣି ଗୁରୁଦେବ ରୁଷ୍ଟ ହୋଇ କହିଲେ, ତେବେ ଚାଲ, ପ୍ରମାଣ କରିବା, ବେଦ କିପରି ପ୍ରାମାଣ୍ୟ ଗ୍ରନ୍ଥ ଓ ମୁଁ କେଉଁଠି ଅନ୍ୟାୟ କରିଛି । ଏହାପରେ ବେଦର ପ୍ରାମାଣ୍ୟ ନେଇ କୁମାରିଲଙ୍କସହ ବୌଦ୍ଧଗୁରୁଙ୍କ ଶାସ୍ତ୍ରାଲୋଚନା ଚାଲିଲା । ଶେଷରେ କୁମାରିଲ କହିଲେ, ''ସର୍ବଜ୍ଞଙ୍କର ଉପଦେଶ ଭିନ୍ନ ଜୀବ ସର୍ବଜ୍ଞ ହୋଇପାରେ ନାହିଁ । ବୁଦ୍ଧଦେବ ବେଦରୁ ଜ୍ଞାନ ଲାଭ କରି ପରେ ସେ ବେଦକୁ ଅସ୍ୱୀକାର କଲେ । ଏହା ତାଙ୍କର ଚୌର୍ଯ୍ୟ ଭିନ୍ନ ଅନ୍ୟ କିଛି ନୁହେଁ ।'' ଏହା ଶୁଣି ବୌଦ୍ଧଗୁରୁ ଅତିଶୟ କ୍ରୁଦ୍ଧ ହୋଇ କହିଲେ, ''ଏହାଙ୍କୁ ଉଚ୍ଚ ପ୍ରସାଦରୁ ତଳକୁ ପକାଇ ଦେଇ ମାରିଦେବା ଉଚିତ୍ ।''

ଶିଷ୍ୟମାନେ କୁମାରିଲଙ୍କୁ ଟାଣିନେଇ ବଳପୂର୍ବକ ଅତି ଉଚ୍ଚ ଛାତଉପରୁ ତଳକୁ ଗଡ଼ାଇଦେଲେ । ପତନକାଳରେ କୁମାରିଲ ଉଚ୍ଚ ସ୍ୱରରେ କହି ଉଠିଲେ— 'ବେଦ ଯଦି ସତ୍ୟ ହୋଇଥିବ, ତେବେ ମୁଁ ଅକ୍ଷତ ଶରୀରେ ଜୀବିତ ରହିବି ।' ଭୂତଳରେ ପତିତ ହୋଇ ମଧ୍ୟ କୁମାରିଲଙ୍କ ଶରୀର ଅକ୍ଷତ ହୋଇଥିଲା । ତାଙ୍କର ଦେହରେ କିଛିହେଲେ ଆଘାତ ଲାଗିଲା ନାହିଁ । କେବଳ ତାଙ୍କ ଚକ୍ଷୁରେ ସାମାନ୍ୟ ମାତ୍ର ଆଘାତ ଲାଗିଲା । ସେ ବୌଦ୍ଧମାନଙ୍କୁ ସମ୍ବୋଧନ କରି କହିଲେ— ''ଆହେ ଅହିଂସାପରାୟଣ ବୌଦ୍ଧଗଣ ! ମୁଁ ବେଦ ପ୍ରମାଣ ସ୍ଥଳରେ 'ଯଦି' ଏହି ସନ୍ଦେହସୂଚକ ବାକ୍ୟ ପ୍ରୟୋଗ କରିଥିବାରୁ ଏବଂ କପଟତା ଅବଲମ୍ବନ କରି ବୌଦ୍ଧଗୁରୁଙ୍କ ନିକଟରୁ ଶାସ୍ତ୍ର ଶ୍ରବଣ କରିଥିବାରୁ ମୋର ଚକ୍ଷୁରେ ସାମାନ୍ୟ ଆଘାତ ଲାଗିଲା । କାରଣ ମୁଁ ବୌଦ୍ଧ ଅଧ୍ୟାପକମାନଙ୍କଠାରୁ ଶିକ୍ଷା କରିଥିବାରୁ ସେମାନେ ମୋର ଗୁରୁସ୍ଥାନୀୟ ।'' ବୌଦ୍ଧମାନେ କୁମାରିଲଙ୍କର ଦୈବୀଶକ୍ତି ଥିବାର ଜାଣିପାରି ତାଙ୍କୁ ପରିତ୍ୟାଗ କଲେ । ବ୍ରାହ୍ମଣମାନେ ଏ ସମ୍ବାଦ ପାଇବା ମାତ୍ରକେ କୁମାରିଲଙ୍କୁ ସଙ୍ଗରେ ଘେନିଗଲେ । ବୌଦ୍ଧମାନେ ଏଥିରେ ବିଶେଷ ଚିନ୍ତିତ ଓ ବ୍ୟଥିତ ହୋଇପଡ଼ିଲେ । ପୁଣି ବୌଦ୍ଧମାନଙ୍କ ସହିତ ବିଚାର କରିବାର

ସ୍ଥିର ହେଲା । ଯେ ପରାଜିତ ହେବ, ସେ ବିଜେତାର ମତ ଗ୍ରହଣ କରିବ କିମ୍ବା ତୁଷାନଳରେ ଦେହରକ୍ଷା କରିବ । ଉଭୟ ପକ୍ଷ ଏଥିରେ ସମ୍ମତି ପ୍ରଦାନ କଲେ । ଯଥାରୀତି ବିଚାର ହେଲା । ବୌଦ୍ଧମାନେ ଯଥାସାଧ ଚେଷ୍ଟା କରି ମଧ୍ୟ ସଫଳମନୋରଥ ହୋଇପାରିଲେ ନାହିଁ । ଅବଶେଷରେ ବୌଦ୍ଧଗୁରୁ ପରାଜିତ ହୋଇ ପୂର୍ବୋକ୍ତ ପଣ ଅନୁସାରେ ବୁଦ୍ଧଦେବଙ୍କ ମତ ତ୍ୟାଗ ନ କରି ତୁଷାନଳରେ ସର୍ବସମକ୍ଷରେ ଦେହରକ୍ଷା କଲେ । ରାଜଗୃହରୁ ବୌଦ୍ଧପ୍ରାଧାନ୍ୟ ଲୋପ ପାଲା । କୁମାରିଲଙ୍କ ବିଜୟରେ ବ୍ରାହ୍ମଣମାନେ ଉତ୍ସାହିତ ହୋଇଉଠିଲେ । ମଗଧରାଜ କୁମାରିଲଙ୍କ ପ୍ରତି ଆକୃଷ୍ଟ ହୋଇ ତାଙ୍କଦ୍ୱାରା ଗୋଟିଏ ଅଶ୍ୱମେଧ ଯଜ୍ଞର ଅନୁଷ୍ଠାନ କରାଇଲେ । କୁମାରିଲଙ୍କପ୍ରଭାବରେ ବୌଦ୍ଧପ୍ରାଧାନ୍ୟ ଲୋପ ପାଇବାକୁ ଲାଗିଲା ।

ଏହାପରେ କୁମାରିଲ ଦକ୍ଷିଣଦେଶ ବିଜୟ କରିବାରେ ମନୋନିବେଶ କଲେ । ଦକ୍ଷିଣଦେଶରେ ଜୈନମାନେ ବେଦର ପ୍ରବଳ ଶତ୍ରୁ ଥିଲେ । ଏହି ସମୟରେ ସୁଧନ୍ୱା ନାମରେ ଜଣେ ଧର୍ମାନୁରାଗୀ ରାଜା ଥିଲେ । ସେ ସବୁ ଧର୍ମକୁ ଉତ୍ସାହିତ କରି ସଭାରେ ସ୍ଥାନ ପ୍ରଦାନ କରୁଥିଲେ । କୁମାରିଲ ଏହି ସ୍ଥାନରେ ଉପନୀତ ହେଲେ ଏବଂ ରାଜସଭାକୁ ଯାଇ ଜୈନମତର ନିନ୍ଦା କଲେ । ଉଭୟ ପକ୍ଷ ମଧ୍ୟରେ ବିବାଦ ଉପସ୍ଥିତ ହେଲା । ବିଚାରର ପଣ ରହିଲା ଯେ, ବିଜିତ ବିଜେତାର ମତ ଗ୍ରହଣ କରିବ । ବିଷୟ-ବେଦର ପ୍ରାମାଣ୍ୟ ଅର୍ଥାତ୍ ବେଦକୁ ଅଭ୍ରାନ୍ତ, ସର୍ବଜ୍ଞାନପ୍ରଦ ଓ ନିତ୍ୟ ବୋଲି ସ୍ୱୀକାର ନ କଲେ କେବେହେଲେ ଜୀବର ଭ୍ରମ ଦୂର ହୋଇପାରିବ ନାହିଁ । ସର୍ବଜ୍ଞ ପୁରୁଷଙ୍କର ଯେଉଁ ଜ୍ଞାନ, ତାହାର ଭାଷାକୁ ବେଦ କହନ୍ତି । ବେଦ କାହାଦ୍ୱାରା ରଚିତ ନୁହେଁ । ବହୁ ଚେଷ୍ଟା କରି ଜୈନମାନେ ଜୟୀ ହୋଇ ପାରି ନ ଥିଲେ ମଧ୍ୟ ପରାଜୟ ସ୍ୱୀକାର କଲେ ନାହିଁ ।

ରାଜା ସୁଧନ୍ୱା ମଧ୍ୟସ୍ଥ ଥିଲେ । ସେ ଉଭୟ ପକ୍ଷର ସୂକ୍ଷ୍ମ ଯୁକ୍ତି ବୁଝିପାରିଲେ ନାହିଁ । ଅଗତ୍ୟା ରାଜା କହିଲେ ଯେ, ସେ ଯାହାଙ୍କର ଅଦ୍ଭୁତ ଶକ୍ତି ଦେଖିପାରିବେ, ତାଙ୍କୁ ହିଁ ଜୟୀ ବୋଲି ସ୍ୱୀକାର କରିବେ । ସେ କହିଲେ, ବିଚାର କରୁଥିବା ଉଭୟବାଦୀଙ୍କୁ ଉଚ୍ଚ ପର୍ବତଶିଖରରୁ ତଳକୁ ଫିଙ୍ଗି ଦିଆଯିବ । ଯେ ପର୍ବତଶିଖରରୁ ତଳେ ପଡ଼ି ମଧ୍ୟ ଅକ୍ଷତ ଶରୀରରେ ଜୀବିତ ରହିପାରିବେ, ତାଙ୍କରି କଥା ସତ୍ୟ ବୋଲି ଗୃହୀତ ହେବ । ଉଭୟ ପକ୍ଷ ଏଥିରେ ସମ୍ମତ ହେଲେ । ଯଥାସମୟରେ

ଉଭୟଙ୍କୁ ଉଚ୍ଚ ପର୍ବତଶିଖରରୁ ତଳକୁ ଫିଙ୍ଗିଦିଆଗଲା । କୁମାରିଲ ଜୀବିତ ରହିଲେ, ଜୈନସାଧୁ ପ୍ରାଣ ହରାଇଲେ । ରାଜା ସୁଧନ୍ୱା କୁମାରିଲଙ୍କ ଜୟ ଘୋଷଣା କଲେ । ରାଜା ଘୋଷଣା କଲେ ଯେ ସମସ୍ତେ କୁମାରିଲଙ୍କ ମତ ଗ୍ରହଣ କରନ୍ତୁ । ଏଥିରେ ଜୈନମାନେ ଆପତ୍ତି କରି କହିଲେ, ''ମହାଶୟ ! ଏପରି ଶକ୍ତି ପରୀକ୍ଷାଦ୍ୱାରା ଜ୍ଞାନର ପରିଚୟ ମିଳେ ନାହିଁ । ଯୋଗପ୍ରଭାବରେ ଏପରି କରାଯାଇପାରେ । ସୁଧନ୍ୱା ରାଜା ତତ୍‌କ୍ଷଣାତ୍ କହିଲେ, ଆଚ୍ଛା, ଆଉ ଦିନେ ଉଭୟ ପକ୍ଷ ମୋ ସଭାକୁ ଆସିବେ । ମୁଁ ଅନ୍ୟ ପ୍ରକାରରେ ପରୀକ୍ଷା କରିବି ।'' ରାଜା ଗୋପନରେ ଗୋଟିଏ ସର୍ପ ଆଣି ତାହା ଗୋଟିଏ କଳସ ମଧ୍ୟରେ ସ୍ଥାପନପୂର୍ବକ ଦିନେ ଉଭୟ ପକ୍ଷଙ୍କୁ ସଭାମଧ୍ୟକୁ ଆହ୍ୱାନ କରି କହିଲେ, ''ମହାତ୍ମାଗଣ, ଆପଣମାନେ ଲିଖିତ ଭାବରେ ଉତ୍ତର ଦିଅନ୍ତୁ ଯେ, ଏହି କଳସ ମଧ୍ୟରେ କ'ଣ ଅଛି ।'' କୁମାରିଲ ଦୈବପ୍ରତିଭାବଳରେ ସର୍ପ ଅଛି ବୋଲି ଲେଖି ରାଜାଙ୍କୁ ଦେଲେ । ଜୈନମାନେ ପରଦିନ ପ୍ରଶ୍ନର ଉତ୍ତର ଦେବେ ବୋଲି ସମୟ ନେଲେ । ସେମାନେ ସମସ୍ତ ରାତି ତାରା ଦେବୀଙ୍କ ଉପାସନା କରି ତାଙ୍କ ପ୍ରସାଦରୁ ଜାଣିପାରିଲେଯେ, କଳସ ମଧ୍ୟରେ ସର୍ପ ଅଛି । ସେମାନେ ମଧ୍ୟ ପରଦିନ ଲିଖିତ ଭାବରେ ରାଜାଙ୍କୁ ଏ କଥା ଜଣାଇଲେ । ସୁତରାଂ ବିଚାରରେ କାହାରି ପରାଜୟ ହେଲା ନାହିଁ । ତତ୍ପରେ ରାଜା କହିଲେ, ''ଆପଣମାନଙ୍କୁ ସମୟ ଦେବାରୁ ଆପଣମାନେ ସମାନ ଉତ୍ତର ପ୍ରଦାନ କଲେ । କିନ୍ତୁ ମୁଁ ଆଉ କାହାରିକୁ ସମୟ ଦେଇପାରିବି ନାହିଁ । ବର୍ତ୍ତମାନ ଉଭୟ ପକ୍ଷ କହନ୍ତୁ, ସର୍ପଶରୀରରେ କିଛି ବିଶେଷ ଚିହ୍ନ ଅଛି କି ନାହିଁ ?'' କୁମାରିଲ କହିବାକୁ ପ୍ରସ୍ତୁତ ହୋଇଗଲେ । ଜୈନମାନେ କୌଣସି ଉତ୍ତର ଦେଇପାରିଲେ ନାହିଁ । ମହାରାଜା ସମୟ ନ ଦେଇ କୁମାରିଲଙ୍କୁ ଉତ୍ତର ଦେବାକୁ ଆଦେଶ ଦେଲେ । କୁମାରିଲ ଯଥାର୍ଥ ଉତ୍ତର ପ୍ରଦାନ କରିବାରୁ ତାଙ୍କର ଜୟ ଘୋଷଣା କରାଗଲା । ଜୈନମାନେ ମ୍ରିୟମାଣ ହେଇପଡ଼ିଲେ । ରାଜାଙ୍କ କଠୋର ଆଦେଶରେ ଜୈନମାନଙ୍କ ମଧ୍ୟରୁ ଅନେକ ବୈଦିକ ଧର୍ମ ଗ୍ରହଣ କଲେ; ଆଉ କେତେକ ଦେଶତ୍ୟାଗ କଲେ ଏବଂ ଅନ୍ୟ କେତେ ଜଣ ଗୋପନରେ ଅବସ୍ଥାନ କରିବାକୁ ଲାଗିଲେ ।

କୁମାରିଲଙ୍କ ସହିତ ଏହା ପରେ ଆଉ କେହି ବିଚାର କରିବାକୁ ଅଗ୍ରସର ହେଲେ ନାହିଁ । ସେ ଜନସାଧାରଣଙ୍କୁ ଯଜ୍ଞାଦି ବୈଦିକଧର୍ମରେ ବ୍ରତୀ କରାଇ ପ୍ରତ୍ୟକ୍ଷ ଫଳ ଦେଖାଇ ଦେଇପାରୁଥିଲେ ।

ଏହାଙ୍କର ଶିଷ୍ୟ ପ୍ରଭାକର ଜଣେ ପ୍ରଧାନ ପଣ୍ଡିତ । ସେ ସର୍ବଦା ଗୁରୁଦେବଙ୍କ ସହିତ ବିଚାରରେ ପ୍ରବୃତ୍ତ ହେଉଥିଲେ । ଦିନେ କୁମାରିଲ ଶବରଭାଷ୍ୟର ବାର୍ତ୍ତିକ ରଚନା କରୁଥିବାବେଳେ ଗୋଟିଏ ସ୍ଥାନରେ ସନ୍ଦିହାନ ହୋଇପଡ଼ିଲେ । ରାତିରେ ସେ ବିଷୟ ଭାବି ଭାବି କୁମାରିଲଙ୍କର ନିଦ୍ରା ହେଲା ନାହିଁ । ଶିଷ୍ୟ ପ୍ରଭାକର ଗୁରୁଦେବଙ୍କୁ ଏପରି ଚିନ୍ତାକୁଳ ଦେଖି ନିଜେ ବିଶେଷ ଚିନ୍ତିତ ଓ ଦୁଃଖରେ ମ୍ରିୟମାଣ ହୋଇପଡ଼ିଲେ । ଗୋଟିଏ ମୀଂମାସା ଗ୍ରନ୍ଥରେ ଅଛି, ''ଅତ୍ର ତୁ ନୋକ୍ତଂ ତତ୍ରାପି ନୋକ୍ତଂ, ଅତଃ ପୌନରୁକ୍ତ୍ୟମ''—ଭଟ୍ଟପାଦ ଏହାର ସଙ୍ଗତ ଅର୍ଥ କ'ଣ ହେବ ସ୍ଥିର କରିପାରୁ ନ ଥିଲେ । ଗୁରୁଦେବ ସ୍ଥାନାନ୍ତରକୁ ଯାଇଥିବାବେଳେ ପ୍ରଭାକର ଏହା ଦେଖି ଗୋଟିଏ ସଙ୍ଗତ ଅର୍ଥ ବାହାର କଲେ । ଗୁରୁଦେବ ଦୁଃଖିତ ହେବେ ଭାବି ତାହା ପ୍ରକାଶ କଲେ ନାହିଁ । କିନ୍ତୁ ଅବସର ବୁଝି ସେହି ପୁସ୍ତକରେ ''ତୁନା'' ''ଅପିନା'' ଏହିଭଳି ପଦଚ୍ଛେଦ କରି ରଖିଦେଲେ । ସୁତରାଂ ବାକ୍ୟ ହେଲା ଯେ, ''ଏଠାରେ କୁହାଯାଇ ନାହିଁ, ସେଠାରେ 'ଅପି' ପଦଦ୍ୱାରା କୁହାଯାଇଅଛି ।'' କୁମାରିଲ ଫେରିଆସି ପୁଣି ପୋଥି ଲେଉଟାଇ ଦେଖିଲା ମାତ୍ରେ ଅର୍ଥ ହୃଦୟଙ୍ଗମ କରିପାରିଲେ ଏବଂ ଏହା ପ୍ରଭାକରର କାର୍ଯ୍ୟ ବୋଲି ଜାଣିପାରି ତାଙ୍କୁ ଗୁରୁ ବୋଲି ସମ୍ବୋଧନ କଲେ । ଏହି ପ୍ରଭାକର ମୀମାଂସା-ଦର୍ଶନରେ ଯେଉଁ ଟୀକା କରିଛନ୍ତି, ତାହା ଗୁରୁମତ ବୋଲି ବିଖ୍ୟାତ ।

ଏହି କୁମାରଲ ବୈଦିକ ଧର୍ମର ପୁନଃ ପ୍ରତିଷ୍ଠା କରି ନ ଥିଲେ ବୌଦ୍ଧ ଓ ଜୈନମାନଙ୍କର ଭୀଷଣ ବେଦବିରୋଧୀ ଭାବଦ୍ୱାରା ବୈଦିକ ଧର୍ମର ପୁନର୍ଜୀବନ ଲାଭ ଆଶା ନ ଥିଲା । କୁମାରିଲଙ୍କ ଆଦେଶରେ ଶଙ୍କର ମଣ୍ଡନ ମିଶ୍ରଙ୍କସହିତ ବିଚାର କରିବାନିମିତ୍ତ ମହୀଷ୍ମତୀନଗର ଅଭିମୁଖରେ ପ୍ରସ୍ଥାନ କଲେ ।



# ମଣ୍ଡନ ମିଶ୍ରଙ୍କ ପରିଚୟ

ମଣ୍ଡନ ମିଶ୍ରଙ୍କ ଜନ୍ମଭୂମି ରାଜଗୃହନଗର । ଏହା ବିହାର ପ୍ରଦେଶ ଅନ୍ତର୍ଗତ ଅତି ପ୍ରାଚୀନ ନଗର । ତାଙ୍କ ପିତାଙ୍କ ନାମ ହିମ ମିଶ୍ର । ମଣ୍ଡନ ପ୍ରଥମରୁ ଅତ୍ୟନ୍ତ ପ୍ରତିଭାସମ୍ପନ୍ନ ଥିଲେ । ସେ ବାଲ୍ୟକାଳରୁ ନାନା ଶାସ୍ତ୍ରରେ ଅସାଧାରଣ ଜ୍ଞାନ ଲାଭ କରିଥିଲେ । ସେହି ପ୍ରଦେଶସ୍ଥ ଶୋଣନଦୀତୀରରେ ବିଷ୍ଣୁ ମିଶ୍ର ନାମଧେୟ ଜଣେ ବ୍ରାହ୍ମଣଙ୍କର ଉଭୟ-ଭାରତୀ ନାମକ ଏକ କନ୍ୟା ଥିଲା । ସେ ଶୈଶବରୁ ବ୍ୟାକରଣ, କାବ୍ୟ, ଅଳଙ୍କାର, ଜ୍ୟୋତିଷ, ସାଂଖ୍ୟ, ପାତଞ୍ଜଳି, ବୈଶେଷିକ, ନ୍ୟାୟ, ମୀମାଂସା, ବେଦାନ୍ତ ପ୍ରଭୃତି ସମସ୍ତ ଶାସ୍ତ୍ର ଅଧ୍ୟୟନ କରି ଅତ୍ୟନ୍ତ ବିଦୁଷୀ ହୋଇଥିଲେ । ମଣ୍ଡନ ଏହି ବିଦୁଷୀ ମହିଳାଙ୍କର ପ୍ରଶଂସା ଶ୍ରବଣ କରି ତାଙ୍କ ପ୍ରତି ଏକାନ୍ତ ଅନୁରକ୍ତ ହୋଇପଡ଼ିଲେ । ଉଭୟ-ଭାରତୀ ମଧ ମଣ୍ଡନଙ୍କ ସୁଖ୍ୟାତି ଶ୍ରବଣ କରି ତାଙ୍କୁ ପତିରୂପେ ଲାଭ କରିବାକୁ ଉନ୍ମନା ହୋଇ ରହିଥିଲେ । ହିମ ମିଶ୍ର ପୁତ୍ରର ମନୋଗତ ଭାବ ବୁଝିପାରି ବିଷ୍ଣୁ ମିଶ୍ରଙ୍କ ଗୃହକୁ ମଧ୍ୟସ୍ଥ ପ୍ରେରଣ କଲେ । ବିଷ୍ଣୁ ମିଶ୍ର ପୂର୍ବରୁ କନ୍ୟାର ମନୋଗତ ଭାବ ଅବଗତ ଥିଲେ । ସୁତରାଂ ସେ ମଧ୍ୟସ୍ଥମାନଙ୍କୁ କହିଲେ, ''ଆପଣ ଯେଉଁ ପ୍ରସ୍ତାବ ଆଗତ କଲେ, ତାହା ଅତୀବ ପ୍ରୀତିକର; ତଥାପି ମୋର ଥରେ ଗୃହିଣୀଙ୍କ ସହିତ ଏ ବିଷୟରେ ପରାମର୍ଶ କରିବା ଉଚିତ । କାରଣ, କନ୍ୟାସଂପ୍ରଦାନ କାର୍ଯ୍ୟ ସ୍ତ୍ରୀଲୋକମାନଙ୍କର ମତାମତ ସାପେକ୍ଷ । ସୁତରାଂ ମୁଁ ଯଦି ପତ୍ନୀଙ୍କର ଅନୁମତି ଗ୍ରହଣ ନ କରେ, ତେବେ ଯେ କୌଣସି କାରଣରୁ କନ୍ୟାର ଦୁଃଖ ହେଲେ ଗୃହିଣୀ ମୋତେ ନିଶ୍ଚୟ ତିରସ୍କାର କରିବେ ।''

ଅନନ୍ତ ବିଷ୍ଣୁ ମିଶ୍ର ପତ୍ନୀଙ୍କୁ ସମୁଦାୟ ବୃତ୍ତାନ୍ତ ଜଣାଇଲେ । ମିଶ୍ରଙ୍କ ପତ୍ନୀ କହିଲେ, ବର ସମ୍ବନ୍ଧରେ ଯେଉଁସବୁ ଜ୍ଞାତବ୍ୟ ବିଷୟ ଅଛି, ତାହା ନ ଜାଣି ମୁଁ କିପରି ସମ୍ମତି ଜ୍ଞାପନ କରିବି ? ଯାହାର ଧନବଳ, ଚରିତ୍ରବଳ ଓ କୁଳ ଉତ୍କୃଷ୍ଟ, ତାଙ୍କୁ କନ୍ୟା ପ୍ରଦାନ କରିବା କର୍ତ୍ତବ୍ୟ । ଶାସ୍ତ୍ରରେ ଅଛି—କୁଳ, ଶୀଳ, ବୟସ, ରୂପ, ବିଦ୍ୟା, ଧନ ଓ ସହାୟ ଏହି ସାତଗୋଟି ଗୁଣର ପରୀକ୍ଷା କରି କନ୍ୟା ପ୍ରଦାନ କରିବା ବିଧେୟ । ଏହା ବ୍ୟତୀତ ଅନ୍ୟ ବିଷୟନିମିତ୍ତ ଚିନ୍ତା କରିବାର ଆବଶ୍ୟକତା ନାହିଁ । ସୁତରାଂ ପ୍ରଥମେ ଉପରୋକ୍ତ ବିଷୟମାନଙ୍କର ଅନୁସନ୍ଧାନ

କରି ତତ୍ପରେ ମତ ଦେବା ବିଧେୟ । ବିଷ୍ଣୁ ମିଶ୍ର ଗୃହିଣୀଙ୍କୁ କହିଲେ ପ୍ରିୟେ, ଯେଉଁ କୁମାରିଲ ଭଟ୍ଟ ଦୁର୍ଜ୍ଜେୟ ବୌଦ୍ଧପଣ୍ଡିତମାନଙ୍କୁ ପରାସ୍ତ କରି ଜଗତରେ ବୈଦିକ ଆଚାରର ପୁନଃ ପ୍ରତିଷ୍ଠା କରିଛନ୍ତି, ମଣ୍ଡନ ମିଶ୍ର ସେହି ଭଟ୍ଟପାଦଙ୍କର ପ୍ରଧାନ ଶିଷ୍ୟ ବୋଲି ପ୍ରଖ୍ୟାତ । ବିଦ୍ୟା ହିଁ ବ୍ରାହ୍ମଣର ପରମ ଧନ; ସୁତରାଂ ଏହି ବରପାତ୍ରକୁ କନ୍ୟା ପ୍ରଦାନ କଲେ କନ୍ୟାର ମଙ୍ଗଳ ହେବା ସୁନିଶ୍ଚିତ । କିନ୍ତୁ ପ୍ରଥମେ କନ୍ୟାର ମନୋଗତ ଭାବ ଜାଣିବା ଆବଶ୍ୟକ । ଏହାପରେ ପିତା-ମାତା କନ୍ୟାର ଅଭିପ୍ରାୟ ବୁଝିବାକୁ ବହୁ ଚେଷ୍ଟା କରି ମଧ୍ୟ କନ୍ୟାଠାରୁ କୌଣସି ଉତ୍ତର ପାଇଲେ ନାହିଁ । ସେ କେବଳ କନ୍ୟାର ପ୍ରଫୁଲ୍ଲ ମୁଖ ଅବଲୋକନ କରି ବୁଝିଲେ ଯେ କନ୍ୟାର ଏଥିରେ ସମ୍ମତି ଅଛି ।

ଏହା ପରେ ବିବାହ ସମ୍ବନ୍ଧ ସ୍ଥିର ହୋଇଗଲା । ହିମ ମିଶ୍ର ଜ୍ୟୋତିର୍ବିଦମାନଙ୍କ ଦ୍ୱାରା ବିବାହ ମୁହୂର୍ତ୍ତ ସ୍ଥିର କରାଇଲେ । ବିବାହଦିବସରେ ମଣ୍ଡନ ମାଙ୍ଗଳିକ ଦ୍ରବ୍ୟାଦି ସହ ଶୋଣନଦୀତୀରରେ ବିଷ୍ଣୁ ମିଶ୍ରଙ୍କ ଗୃହରେ ଉପସ୍ଥିତ ହେଲେ । ବିଷ୍ଣୁ ମିଶ୍ର ବିବିଧ ବାଦ୍ୟ ସହକାରେ ଜାମାତାଙ୍କୁ ଗୃହକୁ ଆନୟନ କରି ବିଧିପୂର୍ବକ ସତ୍କାର କଲେ । ଯଥାରୀତି ଅଭ୍ୟର୍ଥନା ଶେଷ ହେବା ପରେ ହିମ ମିଶ୍ର ଓ ବିଷ୍ଣୁ ମିଶ୍ରଙ୍କ ପ୍ରୀତିସମ୍ଭାଷଣ ଶେଷରେ ଉଭୟ ପକ୍ଷରୁ ଉପସ୍ଥିତ ଜ୍ଞାତିକୁଟୁମ୍ବଙ୍କ ମଧ୍ୟରେ ସ୍ୱେଚ୍ଛାବିହାର, ହାସ୍ୟପରିହାସ ଓ ଆମୋଦ-ପ୍ରମୋଦ ଚାଲିବାକୁ ଲାଗିଲା । ଉଭୟ ପକ୍ଷ ବର-ବଧୂ ଦର୍ଶନ କରି ବିଶେଷ ଆନନ୍ଦ ଅନୁଭବ କଲେ । ଶୁଭଲଗ୍ନରେ ପାଣିଗ୍ରହଣ ସମ୍ପନ୍ନ ହୋଇଗଲା । ବିଦାୟକାଳରେ ଉଭୟ-ଭାରତୀଙ୍କ ପିତା-ମାତା ହିମ ମିଶ୍ରଙ୍କୁ କହିଲେ, ‘‘ଆପଣ ଅନୁଗ୍ରହ କରି ଆମର କେତେଗୋଟି କଥା ଶୁଣନ୍ତୁ । ଆମ କନ୍ୟା ନିତାନ୍ତ ଶିଶୁ । ସେ କିଛି ଜାଣେ ନାହିଁ । ଗୋଟିଏ ମାତ୍ର କନ୍ୟା ବୋଲି ତାକୁ ଗୃହକର୍ମ କରିବାକୁ ଶିକ୍ଷା ଦେଇପାରି ନାହୁଁ । ସୁତରାଂ ଆପଣ ଏହାକୁ ନିଜ କନ୍ୟା ପରି ରକ୍ଷଣାବେକ୍ଷଣ କରିବେ । ଦିନେ ଜଣେ ବ୍ରାହ୍ମଣ ଏହି କନ୍ୟାକୁ ଦେଖି କହିଥିଲେ, ‘‘ଏ କନ୍ୟା ସାକ୍ଷାତ୍ ସରସ୍ୱତୀ, ମାନବ-ରୂପରେ ମର୍ତ୍ତ୍ୟରେ ଜନ୍ମପରିଗ୍ରହ କରିଛନ୍ତି ।’’ ଆପଣମାନେ ଏହା ପ୍ରତି କେବେହେଲେ ରୁକ୍ଷ ବାକ୍ୟ ପ୍ରୟୋଗ କରିବେ ନାହିଁ । ସେହି ଦିନଠାରୁ ଆମେ ଆମର ସ୍ନେହପାଳିତା କନ୍ୟାକୁ ବିଶେଷ ଯତ୍ନ ସହକାରେ ପ୍ରତିପାଳନ କରୁଅଛୁ । ସମଦୁଣୀଙ୍କୁ କହିବେ, ତାଙ୍କ ବୋହୂର ପରିଚାଳନା ଭାର ତାଙ୍କୁ ଲାଗିଲା । ଏ ଲାବଣ୍ୟ ପ୍ରତିମା ତାଙ୍କରି

ଗଚ୍ଛିତ ଧନ ବୋଲି ଜାଣିବେ । ସେ ଏହାକୁ ଯେପରି ଗୃହକର୍ମରେ ନିଯୋଗ କରିବାକୁ ଚାହିଁବେ, ସେହିପରି ବ୍ୟବସ୍ଥା କରିବେ ।'' ତତ୍ପରେ ଉଭୟ-ଭାରତୀଙ୍କୁ ଲକ୍ଷ୍ୟକରି ପିତା କହିଲେ, ''ମା ! ତୁ ଆଜି ଗୋଟିଏ ଅଭିନବ ଅବସ୍ଥାରେ ଉପନୀତ ହେଲୁ । ଏହି ଅବସ୍ଥାରେ ତୁ ସର୍ବଦା ବୁଦ୍ଧିର ନୈପୁଣ୍ୟ ପ୍ରଦର୍ଶନ କରିବୁ । କାରଣ ତୋର ଶିଶୁ-ବ୍ୟବହାର ପିତା-ମାତାଙ୍କ ପକ୍ଷରେ ଯେପରି ପ୍ରୀତିକର, ଅନ୍ୟ ପକ୍ଷରେ କେବେହେଲେ ସେପରି ପ୍ରୀତିକର ହୋଇପାରିବ ନାହିଁ । ଲୋକେ ଯେପରି ଉପହାସ ନ କରିବେ, ତୁ ସେହିପରି ବ୍ୟବହାର ପ୍ରଦର୍ଶନ କରିବୁ । ପରିଣୟ ପୂର୍ବରୁ ପିତା-ମାତା କୁମାରୀମାନଙ୍କର ରକ୍ଷାକର୍ତ୍ତା; କିନ୍ତୁ ବିବାହ ହେଲା ପରେ ସ୍ୱାମୀ ହିଁ ତାର ଏକମାତ୍ର ପ୍ରଭୁ । ସୁତରାଂ ଏଣିକି ତୁ ତୋ ପତିଙ୍କର ଏକମାତ୍ର ଶରଣାପନ୍ନ ହୋଇ ରହିବୁ । ସ୍ୱାମୀଙ୍କ ପ୍ରତି ଐକାନ୍ତିକ ଭକ୍ତି ଥିଲେ ଐହିକ, ପାରତ୍ରିକ—ସବୁ ପ୍ରକାର ସୁଖ ଲାଭ କରି ପାରିବୁ । ମା ! ପତି ଅଭୁକ୍ତ ଥିଲେ ତୁ କେବେହେଲେ ଭୋଜନ କରିବୁ ନାହିଁ । ପତି ଦୂରପଥକୁ ଗମନ କଲେ, ତୁ କୌଣସି ପ୍ରକାର ବେଶଭୂଷାରେ ଭୂଷିତ ହେବୁ ନାହିଁ । ପତି ରୁଷ୍ଟ ହେଲେ ତୁ କୋପ ପ୍ରକାଶ କରି କୌଣସି କଥା କହିବୁ ନାହିଁ । କେବଳ ଏତିକି କହିବୁ ଯେ, 'ଆପଣ ମୋତେ କ୍ଷମା କରନ୍ତୁ ।' ପତି ପ୍ରଫୁଲ୍ଲ ହେଲେ ତତ୍କ୍ଷଣାତ୍ ପ୍ରଫୁଲ୍ଲତା ଅବଲମ୍ବନ କରିବୁ । କୌଣସି ପ୍ରକାର ପୂର୍ବ ଅଭିମାନ ମନରେ ପୋଷଣ କରିବୁ ନାହିଁ । ମୁଁ ଆଉ ଅଧିକ କ'ଣ କହିବି ! କ୍ଷମାଦ୍ୱାରା ହିଁ ସମୁଦାୟ ଅଭୀଷ୍ଟ ସିଦ୍ଧି ହୋଇଥାଏ । କ୍ଷମା ପରି ସଦ୍‌ଗୁଣ ଆଉ ନାହିଁ । ପତି ଗୃହରେ ନ ଥିଲେ ଯଦି ତାଙ୍କର ଆତ୍ମୀୟସ୍ୱଜନ ଅଥବା କୌଣସି ମହତ୍ ବ୍ୟକ୍ତି ତୋ ଗୃହକୁ ଆଗମନ କରନ୍ତି, ତାହାହେଲେ ବହୁ ସମ୍ମାନପୂର୍ବକ ତାଙ୍କର ପୂଜା କରିବୁ । ମା ! ପିତା-ମାତାଙ୍କ ପରି ଶାଶୂ ଶ୍ୱଶୁରଙ୍କ ଆଦେଶ ପାଳନପୂର୍ବକ ସେମାନଙ୍କର ସେବା କରିବୁ । ଦେବରମାନଙ୍କ ପ୍ରତି ମଧ୍ୟ ସହୋଦର-ତୁଲ୍ୟ ସ୍ନେହ ପ୍ରଦର୍ଶନ କରିବୁ । ଶାଶୂ, ଶ୍ୱଶୁର ଓ ଦେବର କୁପିତ ହେଲେ ସଂସାରରେ ପରସ୍ପର ଅନୈକ୍ୟ ସମ୍ପାଦିତ ହୋଇଥାଏ ।'' ଏ ଉପଦେଶ ଶେଷ ହେଲା ପରେ ବର-କନ୍ୟା ଉଭୟେ ରାଜଗୃହକୁ ଯାତ୍ରା କଲେ ।



# ମଣ୍ଡନଙ୍କ ସହିତ ସାକ୍ଷାତ

ବିବାହର କିଛି ଦିନ ପରେ ମଣ୍ଡନ ଜନ୍ମଭୂମି ରାଜଗୃହନଗର ପରିତ୍ୟାଗ କରି ଚେଦି ଦେଶର ରାଜଧାନୀ ଅତିଶୟ ସମୃଦ୍ଧିଶାଳିନୀ ମହୀଷ୍ମତୀ ନଗରୀକୁ ଯାଇ ସେଠାରେ ବାସ କଲେ । ଏହି ନଗରୀ ମଧ୍ୟ-ଭାରତ ଅନ୍ତର୍ଗତ ବିନ୍ଧ୍ୟପର୍ବତ ଓ ନର୍ମଦାର ମଧ୍ୟବର୍ତ୍ତୀ ସ୍ଥାନ । ଏହା ଆଧୁନିକ ଜବଲପୁର ନିକଟରେ ଅବସ୍ଥିତ । ଶଙ୍କର ଶିଷ୍ୟମାନଙ୍କସହ ମଣ୍ଡନଙ୍କୁ ପରାଜୟ କରିବାନିମିତ୍ତ ଉକ୍ତ ନଗରୀରେ ପ୍ରବେଶ କଲେ । ନଗରୀର ଅପୂର୍ବ ଶୋଭା ନିରୀକ୍ଷଣ କରି ଆନନ୍ଦ ଓ ବିସ୍ମୟରେ ସେ ମୁଗ୍ଧ ହୋଇଗଲେ । ଶଙ୍କର, ମଣ୍ଡନ ମିଶ୍ରଙ୍କ ଗୃହ ଅନ୍ୱେଷଣ କରିବାକୁ ଯାଇ ନର୍ମଦାକୁ ଜଳ ନେବାକୁ ଆସିଥିବା କେତେ ଜଣ ମହିଳାଙ୍କୁ ପ୍ରଶ୍ନ କଲେ, ‘‘ମା ! ମଣ୍ଡନ ମିଶ୍ରଙ୍କ ଗୃହ କେଉଁଠି କହିପାରିବେ କି ?’’ ମହିଳାମାନେ ସନ୍ନ୍ୟାସୀମାନଙ୍କୁ କହିଲେ, ‘‘ମହାଶୟ ! ମଣ୍ଡନ ମିଶ୍ରଙ୍କ ଗୃହ କ’ଣ ଅନ୍ୱେଷଣ କରିବାକୁ ପଡ଼ିବ ? ଯେଉଁ ଗୃହଦ୍ୱାରରେ ଦେଖିବେ, ପକ୍ଷୀମାନେ ପିଞ୍ଜରା ମଧ୍ୟରୁ କହୁଛନ୍ତି—‘ବେଦ ସ୍ୱତଃ ପ୍ରମାଣ ନା ପରତଃ ପ୍ରମାଣ’; ପୁଣି କହୁଛନ୍ତି, ‘କର୍ମ ଫଳଦାତା ନା ଈଶ୍ୱର ଫଳଦାତା ?’ ଅର୍ଥାତ୍ କାହାରି କାହାରି ମତ ଅନୁସାରେ ବେଦ ନିତ୍ୟ ଓ ସ୍ୱତଃସିଦ୍ଧ ପ୍ରମାଣ । ଅନ୍ୟ କାହାରି ମତରେ ବେଦ ବ୍ରହ୍ମରୁ ଉତ୍ପନ୍ନ । ଯାହା ବ୍ରହ୍ମରୁ ଉତ୍ପନ୍ନ, ତାହା ଅବଶ୍ୟ ପ୍ରାମାଣ୍ୟ । ତେଣୁ ବେଦ ପରତଃ ପ୍ରମାଣ । ଦେଖିବେ, ତାଙ୍କ ଗୃହଦ୍ୱାରର ଦୌବାରିକଗଣ ପରସ୍ପର ଶାସ୍ତ୍ରଚର୍ଚ୍ଚାରେ ରତ । ନିକଟରେ ଯଜ୍ଞଭସ୍ମ ପର୍ବତାକାରରେ ସ୍ତୂପୀକୃତ ହୋଇ ରହିଅଛି । ଏହା ମଣ୍ଡନ ପଣ୍ଡିତଙ୍କ ଗୃହ ବୋଲି ଜାଣିବେ ।’’ ମହିଳାମାନଙ୍କ ବାକ୍ୟ ଶ୍ରବଣ କରି ସମସ୍ତେ ଅବାକ୍ ହୋଇଗଲେ । ଆଚାର୍ଯ୍ୟଙ୍କ ମୁଖରେ ସାମାନ୍ୟ ହସ ଦେଖାଗଲା । ଅନନ୍ତର ଆଚାର୍ଯ୍ୟ ଶିଷ୍ୟମାନଙ୍କସହିତ ମଣ୍ଡନଙ୍କ ଦ୍ୱାରରେ ଉପନୀତ ହେଲେ । ପଦ୍ମପାଦ ଦୌବାରିକମାନଙ୍କୁ କହିଲେ, ‘‘ଆମେ ମଣ୍ଡନ ପଣ୍ଡିତଙ୍କ ସହିତ ସାକ୍ଷାତ କରିବା ମାନସରେ ଏଠାକୁ ଆସିଅଛୁ ?’’ ଦୌବାରିକଗଣ କହିଲେ, ‘‘ମହାଶୟ ! ବର୍ତ୍ତମାନ ସାକ୍ଷାତ ହୋଇପାରିବ ନାହିଁ; କାରଣ ସେ ପିତୃଶ୍ରାଦ୍ଧ କରୁଅଛନ୍ତି । ଆମକୁ ଆଦେଶ ଅଛି ଯେ, ଶ୍ରାଦ୍ଧସମୟରେ କୌଣସି ସନ୍ନ୍ୟାସୀ ଗୃହରେ ପ୍ରବେଶ କରିପାରିବେ ନାହିଁ ’’ ।

ଶଙ୍କର ଦୌବାରିକମାନଙ୍କୁ କହିଲେ, ''ତୁମେମାନେ ଟିକିଏ ପଚାରି ଆସ ଯେ, କେତେ ଜଣ ବେଦମାର୍ଗ ସନ୍ନ୍ୟାସୀ ତାଙ୍କସହିତ ସାକ୍ଷାତ କରିବାକୁ ଇଚ୍ଛା କରୁଛନ୍ତି ।'' ଦୌବାରିକ ସେଥିରେ ସ୍ୱୀକୃତ ହୋଇ ମିଶ୍ରଙ୍କୁ ସମସ୍ତ ନିବେଦନ କଲେ । ମଣ୍ଡନ ଉତ୍ତର କଲେ, ବର୍ତ୍ତମାନ ସେମାନଙ୍କ ସହିତ ସାକ୍ଷାତ ହୋଇପାରିବ ନାହିଁ । ସେମାନଙ୍କର ବାହାରେ ବସିବାନିମିତ୍ତ ଆସନର ବ୍ୟବସ୍ଥା କର ।'' ଥରକୁ ଥର ତିନି ଥର ଆଚାର୍ଯ୍ୟ ସମ୍ବାଦ ପ୍ରେରଣ କଲେ ଓ ପ୍ରତିଥର ମଣ୍ଡନ ତାହା ପ୍ରତ୍ୟାଖ୍ୟାନ କରିଦେଲେ ।

ଆଚାର୍ଯ୍ୟ ଶିଷ୍ୟମାନଙ୍କୁ ବାହାରେ ଅପେକ୍ଷା କରିବାକୁ ନିର୍ଦ୍ଦେଶ ଦେଇ ଯୋଗବଳରେ ଶୂନ୍ୟମାର୍ଗରେ ପ୍ରାଚୀର ଉଲ୍ଲଙ୍ଘନପୂର୍ବକ ମଣ୍ଡନଙ୍କ ଅଙ୍ଗନ ମଧ୍ୟରେ ପ୍ରବେଶ କଲେ । ଦୌବାରିକଗଣ ଏହି ଅଦ୍ଭୁତ ବ୍ୟାପାର ଦେଖି ବାଧାଦେବାକୁ ଆଉ ସାହସ କଲେ ନାହିଁ । ମଣ୍ଡନ ଶ୍ରାଦ୍ଧ ଉପଲକ୍ଷ୍ୟରେ ସମାଗତ ବ୍ୟାସ ଓ ଜୈମିନି ପ୍ରଭୃତି ମୁନିଙ୍କର ପାଦ ପ୍ରକ୍ଷାଳନ କରୁଥିଲେ । ସେ ଦେଖିଲେ, ଆକାଶମାର୍ଗରୁ ଜଣେ ମୁଣ୍ଡିତମସ୍ତକ ସନ୍ନ୍ୟାସୀ ଅଙ୍ଗନ ମଧ୍ୟରେ ପ୍ରବେଶ କଲେ । ମଣ୍ଡନଙ୍କ ମନରେ ଯୁଗପତ୍ କ୍ରୋଧ ଓ ବିସ୍ମୟ ଉଦୟ ହେଲା । କିନ୍ତୁ କ୍ରୋଧର ମାତ୍ରା ଅଧିକ ହୋଇଉଠିଲା; କାରଣ ଶାସ୍ତ୍ରରେ ଅଛି—ଶ୍ରାଦ୍ଧସମୟରେ ସନ୍ନ୍ୟାସୀଙ୍କୁ ଦର୍ଶନ କଲେ ଶ୍ରାଦ୍ଧ ପଣ୍ଡ ହୁଏ । ଆଚାର୍ଯ୍ୟ ପ୍ରଥମେ ମୁନିଦ୍ୱୟଙ୍କୁ ପ୍ରଣାମ କଲେ । ସେମାନେ ମଧ୍ୟ ଶଙ୍କରଙ୍କୁ ଯଥୋଚିତ ଅଭ୍ୟର୍ଥନା ଜ୍ଞାପନ କଲେ । ଏହା ଦେଖି ମଣ୍ଡନଙ୍କର କ୍ରୋଧ ଟିକିଏ ଶାନ୍ତ ହୋଇ ଆସିଲେ ମଧ୍ୟ ସେ ତାଚ୍ଛଲ୍ୟ ସହକାରେ ଶଙ୍କରଙ୍କୁ କହିଲେ, ''ଆହେ ମୁଣ୍ଡି କେଉଁଠାରୁ ?'' (ଅର୍ଥାତ୍ ହେ ମୁଣ୍ଡିତମସ୍ତକ ! ତୁମେ କେଉଁଠାରୁ ଆସିଲ ?)

ମଣ୍ଡନଙ୍କ ବାକ୍ୟର ଅନ୍ୟ ପ୍ରକାର ଅର୍ଥ କରି ଶଙ୍କର କହିଲେ, ''ଗଳଦେଶରୁ'' (ଅର୍ଥାତ୍ ମୁଁ ଗଳଦେଶରୁ ମସ୍ତକ ମୁଣ୍ଡନ କରିଅଛି ) ।

ମଣ୍ଡନ—''ମୁଁ ତୁମକୁ ପଥର ବିଷୟ ପ୍ରଶ୍ନ କରୁଅଛି ।''

ଏ ପ୍ରଶ୍ନର ମଧ୍ୟ ଅନ୍ୟ ଅର୍ଥ କରି ଶଙ୍କର କହିଲେ, ''ପଥର କଥା ? କାହିଁକି ପଥ କ'ଣ ଆପଣଙ୍କୁ କିଛି କହିଛି ?''

ମଣ୍ଡନ ଏହା ଶୁଣି କୁପିତ ହୋଇ କହିଲେ, 'ସୁରାପିତ ନା କ'ଣ ?'' (ଅର୍ଥାତ୍ ତୁମେ ସୁରାପାନ କରିଛ ନା କ'ଣ ?)

ଶଙ୍କର—ସୁରା ତ ପୀତବର୍ଣ୍ଣ ନୁହେଁ, ଏହା ତ ଶୁଭ୍ରବର୍ଣ୍ଣ ।

ମଣ୍ଡନ—ତୁମେ ବୋଧହୁଏ ତାହାହେଲେ ସୁରାପାନ କର, ନଚେତ୍ ସୁରାର ବର୍ଣ୍ଣ ଜାଣିଲ କିପରି ? ତେବେ ତୁମେ ତ ଖୁବ୍ ଭଲ ସନ୍ନ୍ୟାସୀ !

ଶଙ୍କର—ମୁଁ ସୁରାର ବର୍ଣ୍ଣ ଜାଣେ ସତ; କିନ୍ତୁ ତୁମେ ତ ସୁରାର ଆସ୍ୱାଦ ଜାଣ ବୋଲି ମନେ ହେଉଅଛି; କାରଣ ବର୍ଣ୍ଣ ଜାଣିଲେ ଯେ ପାନ କରାଯାଏ, ଏହା ତୁମେ ହିଁ କହୁଅଛ ।

ମଣ୍ଡନ—ଆହେ ଆଗନ୍ତୁକ ! ଗର୍ଦ୍ଦଭମାନେ ଯାହା ବହନ କରିବାକୁ କାତର, ତୁମେ ସେହି କନ୍ଥା ଅନାୟାସରେ ବହନ କରୁଅଛ; ଅଥଚ ଶିକ୍ଷା ଓ ଯଜ୍ଞୋପବୀତ ତୁମପକ୍ଷରେ ଏତେ ଭାର ବୋଧହେଲା ଯେ ତାହାକୁ ତ୍ୟାଗ କରିଅଛ ।

ଶଙ୍କର—ରମଣୀ ଯାହାକୁ ତିରସ୍କାର କରେ, ସେହି ବ୍ୟକ୍ତି ଯଦି ପୁନରାୟ ସେହି ରମଣୀ ପ୍ରତି ଅନୁରକ୍ତ ହୁଏ, ତେବେ ତାକୁ ଗର୍ଦ୍ଦଭ କୁହାଯାଏ । ରମଣୀକର୍ତ୍ତୃକ ତିରସ୍କୃତ ଓ ପୁନଃ ସେହି ରମଣୀଠାରେ ଆସକ୍ତ ଗର୍ଦ୍ଦଭମାନେ ଯାହା ବହନ କରିବାକୁ କ୍ଳେଶକର ମନେ କରନ୍ତି, ମୁଁ ସେହି କନ୍ଥାର ଭାର ବହନ କରି ସେମାନଙ୍କ ଭାର ଲାଘବ କରୁଅଛି । ଏଥିରେ ମୋର ଦୋଷ କେଉଁଠି ହେଉଛି, ବୁଝିପାରୁ ନାହିଁ । ଦେଖନ୍ତୁ, ଶ୍ରୁତିରେ ଅଛି, 'ବ୍ରାହ୍ମଣମାନେ କର୍ମସଞ୍ଚିତ ସ୍ୱର୍ଗାଦି ଲୋକସକଳ ପରୀକ୍ଷା କରି ବୈରାଗ୍ୟ ଅବଲମ୍ବନ କରିବେ । (୧) ଯେଉଁ ଦିନ ସଂସାର-ବୈରାଗ୍ୟ ଉତ୍ପନ ହେବ, ସେହିଦିନ ସନ୍ନ୍ୟାସ ଅବଲମ୍ବନ କରିବେ । (୨) ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ କିମ୍ବା ବାନପ୍ରସ୍ଥ ଆଶ୍ରମରୁ ସମୁଦାୟ ଆଶ୍ରମଧର୍ମ ପରିତ୍ୟାଗ କରି ଆତ୍ମତତ୍ତ୍ୱ ଶ୍ରବଣ କରିବେ । (୩) କର୍ମଦ୍ୱାରା, ସନ୍ତାନଦ୍ୱାରା କିମ୍ବା ଧନଦ୍ୱାରା ମୁକ୍ତିଲାଭ ହୋଇପାରେ ନାହିଁ । ଏକମାତ୍ର ତ୍ୟାଗଦ୍ୱାରା ହିଁ ମୁକ୍ତି ଲାଭ ହୋଇଥାଏ । (୪) ପରିବ୍ରାଜକ, ବର୍ଣ୍ଣଭେଦଶୂନ୍ୟ, ବସ୍ତ୍ରବିହୀନ ଓ ମୁଣ୍ଡିତମସ୍ତକ ହେବେ, ଦାରପରିଗ୍ରହ କରିବେ ନାହିଁ । (୫) ସୁତରାଂ ଶିଖା ଏବଂ ଯଜ୍ଞୋପବୀତ ରକ୍ଷାକଲେ ଉପରୋକ୍ତ ଶ୍ରୁତିବାକ୍ୟର ଅନ୍ୟଥାଚରଣ ହେବ ବୋଲି ମୁଁ ତାହା ପରିତ୍ୟାଗ କରିଅଛି । ଆଉ ଦେଖନ୍ତୁ, ସନ୍ନ୍ୟାସ ବ୍ୟତୀତ କେବେହେଲେ ବ୍ରହ୍ମନିଷ୍ଠା ଉତ୍ପନ୍ନ ହୋଇପାରେ ନାହିଁ; ସୁତରାଂ ମୁଁ ବ୍ରହ୍ମତତ୍ତ୍ୱ ଲାଭ ଉଦ୍ଦେଶ୍ୟରେ ଆଶ୍ରମୋଚିତ ଚିହ୍ନ ଶିଖା ଓ ଉପବୀତ ପରିତ୍ୟାଗ କରି ସନ୍ନ୍ୟାସ ଗ୍ରହଣ କରିଅଛି । ଏଥିରେ ତୁମେ କାହିଁକି ଯେ କ୍ରୁଦ୍ଧ ହେଉଅଛ, ତାହା ମୁଁ ବୁଝିପାରୁ ନାହିଁ ।'

ମଣ୍ଡନ—ଆହେ ଆଗନ୍ତୁକ । ଏବେ ବୁଝିପାରିଛି ପତ୍ନୀଙ୍କୁ ପାଳନ କରିବାକୁ ତୁମେ ଅସମର୍ଥ ହୋଇଅଛ । ଯାହାହେଉ ଶିଷ୍ୟ ଓ ପୁସ୍ତକର ଭାର ବହନ କରିବା ଦ୍ୱାରା ତୁମର ଅପୂର୍ବ ବ୍ରହ୍ମନିଷ୍ଠା ପ୍ରକାଶିତ ହେଉଅଛି ।

ଶଙ୍କର—ଆହେ ଗୃହସ୍ଥପ୍ରବର ! ତୁମେ ବ୍ରହ୍ମଚର୍ଯ୍ୟ ଅବସ୍ଥାରେ ଗୁରୁଶୁଶ୍ରୂଷା କରିବାକୁ ଅସମର୍ଥ ବୋଧକରି ଗୁରୁଗୃହରୁ ସ୍ୱଗୃହକୁ ପ୍ରତ୍ୟାଗମନ କରିଅଛ । କିନ୍ତୁ, ବର୍ତ୍ତମାନ ସର୍ବଦା ପତ୍ନୀସେବାରେ ଅନୁରକ୍ତ ଥିବାରୁ ତୁମର ଅଭିନବ କର୍ମନିଷ୍ଠା* ପ୍ରକାଶିତ ହେଉଅଛି ବୋଲି ଜଣାପଡୁଛି ।

ମଣ୍ଡନ—ଆହେ ଆଗନ୍ତୁକ ! ତୁମେ ସ୍ତ୍ରୀଲୋକର ଗର୍ଭରେ ବାସ କଲ, ସ୍ତ୍ରୀଲୋକଦ୍ୱାରା ଲାଳିତପାଳିତ ହେଲ । ତୁମେ ଏପରି ମୂର୍ଖ ଓ କୃତଘ୍ନ ଯେ ସେହି ସ୍ତ୍ରୀଲୋକଙ୍କର ଉପକାର ବିସ୍ମୃତ ହୋଇ ସେମାନଙ୍କୁ ନିନ୍ଦା କରୁଛ ?

ଶଙ୍କର—ହଁ, ମୁଁ ମୂର୍ଖ ସତ; କିନ୍ତୁ ତୁମର ବ୍ୟବହାର ତ ଅଳ୍ପ ଅଜ୍ଞତାର ପରିଚାୟକ ନୁହେଁ ! ତୁମେ ଯେଉଁ ସ୍ତ୍ରୀଜାତିର ଦେହରୁ ଉତ୍ପନ୍ନ ହେଲ, ଯେଉଁମାନଙ୍କ ଦୁଗ୍ଧ ପାନ କଲ, ସେହି ସ୍ତ୍ରୀଲୋକଙ୍କ ସହିତ ତୁମେ କିପରି ପଶୁପରି ବ୍ୟବହାର କରୁଅଛ, ଭାବି ଦେଖିଛ କି ?

ମଣ୍ଡନ—ହଁ, ଗୃହସ୍ଥମାନେ ପଶୁ ସତ; କିନ୍ତୁ ତୁମେ ଇନ୍ଦ୍ରହତ୍ୟାକାରୀ । ଯେ ତ୍ରିବିଧ ଅଗ୍ନି ପରିତ୍ୟାଗ କରି ସନ୍ନ୍ୟାସ ଗ୍ରହଣ କରନ୍ତି, ଶ୍ରୁତିରେ ଅଛି, ସେମାନେ ଇନ୍ଦ୍ରହତ୍ୟାପାପରେ ଲିପ୍ତ ହୁଅନ୍ତି ।

ଶଙ୍କର—ଯେତେ ପାପ ଅଛି, ତନ୍ମଧ୍ୟରେ ଆତ୍ମହତ୍ୟା ସବୁଠାରୁ ବଡ଼ ପାପ । ଶ୍ରୁତିରେ ଅଛି, ଯେଉଁମାନେ ବ୍ରହ୍ମବିଦ୍ ନୁହନ୍ତି, ସେମାନେ ଆତ୍ମଘାତୀ । ସେମାନେ ମରଣ ପରେ ନରକଗାମୀ ହୁଅନ୍ତି ।

ମଣ୍ଡନ—ତୁମେ ଦ୍ୱାରପାଳମାନଙ୍କୁ ପ୍ରବଞ୍ଚିତ କରି ଚୋର ପରି ଏଠାକୁ କାହିଁକି ଆସିଛ ?

---

*କର୍ମନିଷ୍ଠା—ଗୃହସ୍ଥଙ୍କ କର୍ତ୍ତବ୍ୟ ବେଦୋକ୍ତ ପଞ୍ଚମହାଯଜ୍ଞ ହେଉଛି—ବ୍ରହ୍ମଯଜ୍ଞ, ଦେବଯଜ୍ଞ, ପିତୃଯଜ୍ଞ, ଭୂତଯଜ୍ଞ ଓ ନୃଯଜ୍ଞ । ବେଦାଧ୍ୟୟନ ବ୍ରହ୍ମଯଜ୍ଞ; ଶ୍ରାଦ୍ଧ ପିତୃଯଜ୍ଞ; ହୋମ ଦେବଯଜ୍ଞ; ଶୃଗାଳ ଓ କାକ ପ୍ରଭୃତିଙ୍କୁ ଆହାର୍ଯ୍ୟ ଦାନ ଭୂତଯଜ୍ଞ; ଅତିଥି-ପୂଜା ନୃଯଜ୍ଞ ।

ଶଙ୍କର—ମୁଁ ଚୋର ପରି ଆସିଛି ସତ; କିନ୍ତୁ ତୁମେ ଭିକ୍ଷୁମାନଙ୍କୁ ଆହାର୍ଯ୍ୟର ଭାଗ ନ ଦେଇ ଚୋର ପରି ବିଷୟଭୋଗ କରୁଛ କାହିଁକି ?

ମଣ୍ଡନ—ତୁମେ କେବଳ ସୁସ୍ୱାଦୁ ଅନ୍ନଲୋଭରେ ଯତିବେଶ ଧାରଣ କରି ବୁଲୁଅଛ, ନଚେତ୍ ବ୍ରହ୍ମଜ୍ଞାନ କଳିକାଳରେ ତୁମ ଭଳି ମେଧାହୀନ ବ୍ୟକ୍ତିଙ୍କ ନିକଟରେ ରହିବା ଅସମ୍ଭବ ।

ଶଙ୍କର—କଳିକାଳରେ ଅଗ୍ନିହୋତ୍ର ଯାଗଯଜ୍ଞ ନାହିଁ ଓ ତୁମ ଭଳି ସଂସାରାସକ୍ତ ଲୋକଙ୍କର ସ୍ୱର୍ଗଲାଭ ସୁଦୂରପରାହତ । ତୁମେ କେବଳ ଇନ୍ଦ୍ରିୟସୁଖ ଉପଭୋଗ ନିମିତ୍ତ ଛଳନା କରି ଧାର୍ମିକ ଗୃହସ୍ଥର ସାଜ ପିନ୍ଧିଅଛ ।

ମଣ୍ଡନ କ୍ରୁଦ୍ଧ ହୋଇ କହିଉଠିଲେ, ଦୂର ହୁଅ ମୂର୍ଖ । ମୁଁ କର୍ମସମୟରେ ବାକ୍ୟାଳାପ କରିବାକୁ ଇଚ୍ଛା କରୁ ନାହିଁ । ମଣ୍ଡନ ଶଙ୍କରଙ୍କୁ ଏହିପରି ନାନା ରୂଢ଼ବାକ୍ୟ ପ୍ରୟୋଗ କଲେ । ଏହା ଶୁଣି ନିମନ୍ତ୍ରିତ ଋଷିକଳ୍ପ ମୁନିଦ୍ୱୟ କହିଲେ, "ବତ୍ସ ମଣ୍ଡନ ! ଯାହାଙ୍କର ବାସନା ବିନଷ୍ଟ ହୋଇଅଛି, ଯେ ଆତ୍ମତତ୍ତ୍ୱ ଅବଗତ ଅଛନ୍ତି, ତାଙ୍କ ପ୍ରତି କଟୁବାକ୍ୟ ପ୍ରୟୋଗ କରିବା ସାଧୁଜନୋଚିତ କାର୍ଯ୍ୟ ନୁହେଁ । ଏ ବ୍ୟକ୍ତି ଯତି; ତେଣୁ ନାରାୟଣ ସ୍ୱରୂପ । କୃପା କରି ଏ ସ୍ୱୟଂ ତୁମ ଗୃହକୁ ଆଗମନ କରିଛନ୍ତି । ସୁତରାଂ ଏହାଙ୍କର ଯଥୋଚିତ ସତ୍କାର କରିବା ବିଧେୟ ।" ମଣ୍ଡନଙ୍କର କ୍ରୋଧ ଶାନ୍ତ ହେଲା । ସେ ବିଶେଷ ଲଜ୍ଜିତ ହୋଇ ଶଙ୍କରଙ୍କୁ ବିନୀତଭାବରେ କହିଲେ, "ଆପଣ ଜଣେ ବିଦ୍ୱାନ୍ । ମୋର ଗୁରୁମାନଙ୍କର ଯେତେବେଳେ ଆପଣ ସମ୍ମାନର ପାତ୍ର, ସେତେବେଳେ ମୋର ମଧ୍ୟ ପୂଜନୀୟ । ବର୍ତ୍ତମାନ ବେଦବିରୋଧୀ ବୌଦ୍ଧମାନଙ୍କ ପ୍ରାଦୁର୍ଭାବହେତୁ ଆପଣଙ୍କୁ ଜଣେ ବୌଦ୍ଧ ଭାବି ମୁଁ ଏପରି ବ୍ୟବହାର କରିଅଛି । ଅନୁଗ୍ରହ କରି ମୋତେ କ୍ଷମା କରନ୍ତୁ ।"

ଏହିପରି ଶାସ୍ତ୍ରବିଧି ଅନୁସାରେ ଶଙ୍କରଙ୍କୁ ଯଥାବିଧି ଅର୍ଚ୍ଚନା କରି ଭିକ୍ଷା ଗ୍ରହଣ କରିବାନିମିତ୍ତ ଅନୁରୋଧ କଲେ । ଶଙ୍କର କହିଲେ "ମହାଶୟ ! ମୁଁ ତର୍କ-ଭିକ୍ଷା କାମନା କରି ଆପଣଙ୍କ ନିକଟରେ ଉପସ୍ଥିତ ହୋଇଅଛି, ଅନ୍ନ-ଭିକ୍ଷାରେ ମୋର ପ୍ରୟୋଜନ ନାହିଁ । ଆମ ଦୁହିଁଙ୍କ ମଧ୍ୟରେ ଯେ ବିବାଦରେ ପରାସ୍ତ ହେବ, ସେ ଅନ୍ୟର ଶିଷ୍ୟତ୍ୱ ସ୍ୱୀକାର କରିବ—ଏହି ପଣ ରଖି ମୋତେ ତର୍କ-ଭିକ୍ଷା ପ୍ରଦାନ କରନ୍ତୁ । ବେଦାନ୍ତ, ଶାସ୍ତ୍ରସମ୍ମତ ପଥ ପ୍ରଚାର କରିବା ବ୍ୟତୀତ

ମୋର ଅନ୍ୟ କିଛି ବାଞ୍ଛନୀୟ ନୁହେଁ । ଆପଣ ସର୍ବଦା ଯଜ୍ଞକାର୍ଯ୍ୟରେ ବ୍ରତୀ ହୋଇ ବେଦାନ୍ତର ଉଦ୍ଦିଷ୍ଟ ମୁକ୍ତିମାର୍ଗ ପ୍ରତି ଅବଜ୍ଞା ପ୍ରକାଶ କରୁଛନ୍ତି । ମୁଁ ସମୁଦାୟ ବିପକ୍ଷଙ୍କୁ ପରାଜିତ କରି ଜଗତରେ ବେଦାନ୍ତପଥର ସିଦ୍ଧାନ୍ତ କରି ତାହା ବିସ୍ତାର କରିବାନିମିତ୍ତ ବଦ୍ଧପରିକର ହୋଇଅଛି । ହୁଏତ ଆପଣ ମୋ ମତ ଶ୍ରବଣ କରି ଏହା ଗ୍ରହଣ କରନ୍ତୁ, ନଚେତ୍ କହନ୍ତୁ; ଆପଣ ମୋ ନିକଟରେ ପରାଜିତ ହେଲେ ।''

ଶଙ୍କରଙ୍କର ଗର୍ବିତ ବାକ୍ୟ ଶ୍ରବଣ କରି ମଣ୍ଡନ ବିସ୍ମୟାଭିଭୂତ ହେଲେ ଏବଂ ଗୌରବ ରକ୍ଷା କରିବା ଇଚ୍ଛାରେ କହିଲେ, ''ମହାଶୟ ! ଯଦି ସ୍ୱୟଂ ସହସ୍ର ବଦନ ଶେଷଦେବ ଅନନ୍ତ ଆଗମନ କରନ୍ତି, ତାହାହେଲେ ମଧ୍ୟ ମଣ୍ଡନ ପରାଜିତ ହେଲା ବୋଲି ସ୍ୱୀକାର କରିବ ନାହିଁ । ଅନେକ ଦିନ ହେଲା ମୋ ହୃଦୟରେ ଗୋଟିଏ ଅଭିଳାଷ ଉଦୟ ହୋଇଥିଲା ଯେ, କୌଣସି ବିଦ୍ୱାନ୍ ବ୍ୟକ୍ତି ମୋ ଗୃହକୁ ଆଗମନ କଲେ, ମୁଁ ତାଙ୍କସହିତ ଶାସ୍ତ୍ରୀୟ ବିଚାର କରନ୍ତି । ଆଜି ମୋର ସେହି ଶୁଭଦିନ ଉପସ୍ଥିତ । ବର୍ତ୍ତମାନ ଆମର ବିବାଦ ଆରମ୍ଭ ହେଉ ଏବଂ ଶାସ୍ତ୍ରୀୟ ବିବାଦଦ୍ୱାରା ଆମ ଉଭୟଙ୍କର ଶାସ୍ତ୍ରାଭ୍ୟାସର ପରିଶ୍ରମ ସଫଳ ହେଉ । ଭୂତଳବାସୀ ପଣ୍ଡିତମାନେ ଆମର ତର୍କସୁଧା ଗ୍ରହଣ କରି ଆନନ୍ଦ ଲାଭ କରନ୍ତୁ । ଯତିବର ! ମୁଁ ତର୍କ ଭିକ୍ଷା ପ୍ରଦାନ କଲେ ଆପଣ ଗ୍ରହଣ କରିବେ, ଅନ୍ୟ ଭିକ୍ଷା ଗ୍ରହଣ କରିବେ ନାହିଁ, ଏପରି କହିବା ସଙ୍ଗତ ହୋଇ ନାହିଁ । ଆପଣ ମୋତେ ଚିହ୍ନି ନାହାନ୍ତି । ଯେଉଁ ଈଶ୍ୱର କୃତାନ୍ତର ନିଅନ୍ତା, ମୁଁ ତାଙ୍କର ନାଶକର୍ତ୍ତା । କାରଣ ମୀମାଂସା-ଦର୍ଶନ କହେ 'ଈଶ୍ୱର ନାହାନ୍ତି । କର୍ମହିଁ ଜୀବର ଶୁଭାଶୁଭ ଫଳ ପ୍ରଦାନ କରେ ।' ମୁଁ ତର୍କଦ୍ୱାରା ଉକ୍ତ ମତ ଦୃଢ଼ କରିଅଛି । ମୋ ତର୍କପ୍ରଭାବରେ ଈଶ୍ୱରଙ୍କ ନାସ୍ତିତ୍ୱ ପ୍ରମାଣିତ ହୋଇଯାଇଛି । ମୁଁ ବାଦକର୍ତ୍ତାଙ୍କର ପ୍ରତୀକ୍ଷା କରୁଥିଲି । ଆଜି ଆପଣଙ୍କୁ ପାଇ ପରମ ପ୍ରୀତ ହୋଇଅଛି ! ଲୋକେ ମୋତେ ଯାଜ୍ଞିକ ଗୃହସ୍ଥମାନଙ୍କ ମଧ୍ୟରେ ପ୍ରଧାନ ବ୍ୟକ୍ତି ବୋଲି ଜାଣନ୍ତି । ଆପଣ ମଧ୍ୟ ବିବାଦୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଭିକ୍ଷୁ । ଅତଏବ ଆମର ବିବାଦ ଆରମ୍ଭ ହେଉ । କିନ୍ତୁ ଏ ବିବାଦ କାଲିଠାରୁ ଆରମ୍ଭ ହେବ । କାରଣ ଆପଣ କୃପା କରି ମୋ ଗୃହକୁ ଆଗମନ କରିଛନ୍ତି; ତେଣୁ ମୁଁ ନିଜକୁ ଧନ୍ୟ ଓ କୃତାର୍ଥ ମନେ କରୁଅଛି । ବର୍ତ୍ତମାନ ମଧ୍ୟାହ୍ନିକ କ୍ରିୟା ସମ୍ପନ୍ନ କରନ୍ତୁ ।

ଅନନ୍ତର ମଣ୍ଡନ ଅତିଥିମାନଙ୍କୁ ଯଥାବିଧି ଅର୍ଚ୍ଚନା କଲେ । ସେମାନେ ଆହାର କରି ଉପବେଶନ କଲାବେଳେ ମଣ୍ଡନଙ୍କ ଶିଷ୍ୟମାନେ ସେମାନଙ୍କୁ ଚାମର ବ୍ୟଜନ କରିବାକୁ ଲାଗିଲେ । ନିମନ୍ତ୍ରିତ ଅତିଥିବୃନ୍ଦ ପରମ ଆନନ୍ଦ ଉପଭୋଗ କରି ପୁନରାୟ ପରମରମଣୀୟ ରେବାନଦୀର ତଟଦେଶସ୍ଥିତ ଦେବାଳୟରେ ରାତ୍ରିଯାପନ କଲେ ।



# ଶଙ୍କରଙ୍କ ସ୍ୱ ମତ-ପ୍ରତିଷ୍ଠା

ପରଦିନ ପ୍ରଭାବ ହେଲା । ମଣ୍ଡନ ବିଚାରର ସର୍ବବିଧ ଆୟୋଜନ ଶେଷ କରି ଆଚାର୍ଯ୍ୟଙ୍କୁ ଆହ୍ୱାନ କଲେ । ଆଚାର୍ଯ୍ୟ ଶିଷ୍ୟମାନଙ୍କ ସହିତ ନିର୍ଦ୍ଦିଷ୍ଟ ଆସନରେ ଉବବେଶନ କଲେ ଏବଂ ଅନ୍ୟ ଦିଗରେ ମଣ୍ଡନ ଓ ତାଙ୍କ ପକ୍ଷର ଲୋକମାନେ ଉପବେଶନ କରିବା ପରେ ମଧ୍ୟସ୍ତ ଆସନ ଶୂନ୍ୟ ରହିଲା । ମଣ୍ଡନ ଶଙ୍କରଙ୍କୁ ପୁନରାୟ ତାଙ୍କ ଆଗମନର ଅଭିପ୍ରାୟ ପ୍ରଶ୍ନ କରିବାରୁ ଶଙ୍କର ଉତ୍ତରଦେଲେ, ''ମୁଁ କେତେ ଜଣ ଶିଷ୍ୟଙ୍କସହିତ ପ୍ରୟାଗଧାମରୁ ଏଠାକୁ ଆସିଛି । କାରଣ ମୁଁ ଆପଣଙ୍କୁ ବାଦରେ ପରାଜିତ କରି ଆପଣଙ୍କଦ୍ୱାରା ବ୍ରହ୍ମସୂତ୍ର ଭାଷ୍ୟ ଉପରେ ଗୋଟିଏ ବାର୍ତ୍ତିକ ରଚନା କରାଇବି । ମୁଁ ଏହି ଉଦ୍ଦେଶ୍ୟରେ ପ୍ରଥମେ ଭଟ୍ଟପାଦଙ୍କ ନିକଟକୁ ଗମନ କରିଥିଲି । କିନ୍ତୁ ସେତେବେଳେ ସେ ଗୁରୁବଧ ପାପର ପ୍ରାୟଶ୍ଚିତ୍ତ ସ୍ୱରୂପ ତୁଷାନଳରେ ଦେହରକ୍ଷା କରୁଥିଲେ । ଆପଣଙ୍କର ଅଶେଷ ପ୍ରଶଂସା କରି ଆପଣଙ୍କ ନିକଟକୁ ମୋତେ ପ୍ରେରଣ କରିଅଛନ୍ତି । ସେ କହିଛନ୍ତି—ମୋ ସହିତ ବାଦପ୍ରବୃତ୍ତ ହୋଇ ଆପଣ ପରାଜୟ ସ୍ୱୀକାର କରି ମୋ ଶିଷ୍ୟତ୍ୱ ଗ୍ରହଣ କଲେ ମତ୍ ପ୍ରଚାରିତ ବେଦାନ୍ତର ଅଦ୍ୱୈତ ବ୍ରହ୍ମାତ୍ମଜ୍ଞାନ ଚିରକାଳ ବିଦ୍ୟମାନ ରହିବ । ସେ ଆହୁରି ମଧ୍ୟ କହିଛନ୍ତି ଯେ, ମୋ ନିକଟରେ ଆପଣ ପରାଜୟ ସ୍ୱୀକାର କଲେ ତାଙ୍କର ମଧ୍ୟ ପରାଜୟ ହେଲା ବୋଲି ଜଣାଯିବ । ହେ ପଣ୍ଡିତପ୍ରବର ! ମୁଁ ଏହି ଉଦ୍ଦେଶ୍ୟରେ ଆପଣଙ୍କ ନିକଟକୁ ଆସିଅଛି ।''

ମଣ୍ଡନ ଗୁରୁଦେବଙ୍କ ଅନ୍ତର୍ଦ୍ଧାନ ସମ୍ବାଦ ଶୁଣି କ୍ଷଣକାଳନିମିତ୍ତ ଶୋକାଭିଭୂତ ହୋଇପଡ଼ିଲେ । ତତ୍ପରେ ଶୋକ ସମ୍ବରଣ କରି କହିଲେ 'ବିବାଦ କାର୍ଯ୍ୟନିମିତ୍ତ ମଧ୍ୟସ୍ଥ ନିଯୁକ୍ତ ହେବା ଆବଶ୍ୟକ ।' ଶଙ୍କର କହିଲେ, ମୁଁ ଭଟ୍ଟପାଦଙ୍କ ନିକଟରୁ ଶ୍ରବଣ କରିଛି, ଆପଣଙ୍କ ପତ୍ନୀ ସରସ୍ୱତୀ ଦେବୀ ଏ ବିବାଦରେ ମଧ୍ୟସ୍ଥ କାର୍ଯ୍ୟନିମିତ୍ତ ଏକମାତ୍ର ଉପଯୁକ୍ତା । ଆପଣଙ୍କର କୌଣସି ଆପତ୍ତି ନ ଥିଲେ ସେ ମଧ୍ୟସ୍ଥର ଆସନ ଅଳଂକୃତ କରନ୍ତୁ ।' ମଣ୍ଡନ କିଛିକ୍ଷଣ ନିସ୍ତବ୍ଧ ହୋଇ କହିଲେ, ''ହଁ, ସେ ଏ କାର୍ଯ୍ୟରେ ସମର୍ଥା, ଏଥିରେ ସନ୍ଦେହ ନାହିଁ । କିନ୍ତୁ ସେ ମୋର ପତ୍ନୀ; ସୁତରାଂ ମୋ ପ୍ରତି ପକ୍ଷପାତ କରିବା ସ୍ୱାଭାବିକ ।'' ଶଙ୍କର ଗମ୍ଭୀର ଭାବରେ କହିଲେ, ''ମୋର ସେ ଭୟ ନାହିଁ । ସତ୍ୟର ଅପଳାପ କରିବା ସହଜସାଧ

ନୁହେଁ । ଆଉ ଆପଣଙ୍କ ପତ୍ନୀ ସରସ୍ୱତୀ ଦେବୀ କ'ଣ ତାହା କରିବେ ?'' ଏକଥା ଶୁଣି ମଣ୍ଡନ ଆହୁରି ଅଧିକ ବିସ୍ମିତ ହୋଇ ସ୍ୱୀକୃତି ପ୍ରଦାନ କଲେ ଏବଂ ସରସ୍ୱତୀ ଦେବୀଙ୍କୁ ଆହ୍ୱାନ କରି ମଧ୍ୟସ୍ଥ ଆସନ ଅଳଂକୃତ କରିବାକୁ ଅନୁରୋଧ କଲେ । ସରସ୍ୱତୀ ଦେବୀ ଟିକିଏ ବିସ୍ମିତଭାବରେ ଶଙ୍କରଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କଲେ । ଶଙ୍କର ସରସ୍ୱତୀ ଦେବୀଙ୍କୁ ପ୍ରଣାମ କରି କହିଲେ, ''ମା ! ଆପଣ ମଧ୍ୟସ୍ଥ ହୁଅନ୍ତୁ । ଭଟ୍ଟପାଦ କହିଛନ୍ତି—ଆପଣ ମଧ୍ୟସ୍ଥ ହେଲେ ସୁବିଚାର ହେବ । ତେଣୁ ଆପଣ ସେ ଆସନ ଗ୍ରହଣ କରନ୍ତୁ । ସରସ୍ୱତୀ ଦେବୀ ଉଭୟଙ୍କ ଇଚ୍ଛା ବୁଝି ସଲଜ୍ଜଭାବରେ ମଧ୍ୟସ୍ଥ ଆସନ ଗ୍ରହଣ କଲେ । ଅନନ୍ତର ସରସ୍ୱତୀ ଦେବୀ ଉଭୟ ପକ୍ଷ ବିଚାରର ପଣ ନିର୍ଣ୍ଣୟ କରି ନିଜ ପକ୍ଷ ନିର୍ଦ୍ଦେଶ କରିବାକୁ ଆଦେଶ ଦେଲେ । ମଣ୍ଡନ ଶଙ୍କରଙ୍କୁ ଲକ୍ଷ୍ୟ କରି ସଗର୍ବରେ କହିଲେ, ''ଶଙ୍କର ଯାହା କହିବେ, ମୁଁ ତାହାର ବିପରୀତି ପକ୍ଷ ଗ୍ରହଣ କରିବି । ବିଚାରାର୍ଥୀ ହୋଇ ଆସିଥିବାରୁ ସେ ପ୍ରଥମେ ତାଙ୍କ ନିଜ ପକ୍ଷ ନିର୍ଦ୍ଦେଶ କରନ୍ତୁ । ପରାଜିତ ବ୍ୟକ୍ତି ବିଜେତାର ମତ ଓ ଶିଷ୍ୟତ୍ୱ ଗ୍ରହଣ କରିବେ । ମୁଁ ପରାଜିତ ହେଲେ ଶଙ୍କରଙ୍କ ଶିଷ୍ୟ ହୋଇ ସନ୍ନ୍ୟାସୀ ହେବି ଓ ଶଙ୍କର ପରାଜିତ ହେଲେ ଦଣ୍ଡ-କମଣ୍ଡଳୁ ତ୍ୟାଗ-ପୂର୍ବକ ବିବାହ କରି ଗୃହସ୍ଥ ଜୀବନ ଯାପନ କରିବେ ।

ଆଚାର୍ଯ୍ୟ କହିଲେ, ''ଏହିପରି ପଣ ହିଁ ମୋର ଅଭୀଷ୍ଟ । ବର୍ତ୍ତମାନ ମୋ ପକ୍ଷ କ'ଣ, ତାହା ଶୁଣନ୍ତୁ । ଅଦ୍ୱୈତ ବ୍ରହ୍ମାତ୍ମଜ୍ଞାନ ହିଁ ବେଦର ତାତ୍ପର୍ଯ୍ୟ । କର୍ମ ବା ଉପାସନା ଚିତ୍ତଶୁଦ୍ଧିର ଉପାୟ ବା ଦ୍ୱାରବିଶେଷ । ସୁତରାଂ ଜ୍ଞାନ ଓ କର୍ମ କିମ୍ବା ଜ୍ଞାନ ଓ ଉପାସନା ସ୍ୱରୂପତଃ ଏକାବେଳକେ ଅସ୍ୱୀକାର୍ଯ୍ୟ । ତେଣୁ ମୁକ୍ତିନିମିତ୍ତ ଜଣେ ବ୍ୟକ୍ତିକୁ ଏକ ସମୟରେ ଜ୍ଞାନ ଓ କର୍ମ କିମ୍ବା ଜ୍ଞାନ ଓ ଉପାସନା କରିବାକୁ ହେବ ନାହିଁ । କର୍ମ ଓ ଉପାସନଦ୍ୱାରା ଚିତ୍ତଶୁଦ୍ଧି ହେଲେ ମୁଁ ହେଉଛି ବ୍ରହ୍ମ, ବ୍ରହ୍ମ ହେଉଛନ୍ତି ମୁଁ ଏବଂବିଧ ଅଦ୍ୱୈତ ଜ୍ଞାନରେ ମୁକ୍ତି ହୁଏ । ଏହି ମୁକ୍ତିରେ ଜୀବ ବ୍ରହ୍ମ ମଧ୍ୟରେ କୌଣସି ଭେଦ ରହେ ନାହିଁ । ଶୁଦ୍ଧ ଜଳବିନ୍ଦୁ ଶୁଦ୍ଧ ଜଳରେ ମିଶିଯିବା ପରି ଅଭେଦ ହୋଇଯାଏ । ତାହାକୁ ପୁନରାୟ ବନ୍ଧନଦଶାରେ ପତିତ ହେବାକୁ ପଡ଼େ ନାହିଁ । କର୍ମ ବା ଉପାସନାଦ୍ୱାରା ସାକ୍ଷାତ୍‌ଭାବରେ ମୁକ୍ତିଲାଭ ହୋଇପାରେ ନାହିଁ ।''

ଶଙ୍କର ତାଙ୍କର ମତପୁଷ୍ଟିନିମିତ୍ତ ପୁନରାୟ କହିଲେ, ''ଶୁକ୍ତି (ପିଲାଙ୍କୁ ଦୁଧ ପିଆଇବାପାଇଁ ରୂପାରେ ତିଆରି ଶାମୁକା) ଯେପରି ରଜତର ସ୍ୱଭାବାକ୍ରାନ୍ତ ହୋଇ ରଜତ ରୂପରେ ପ୍ରକାଶିତ ହୁଏ, ସେହିପରି ଭାବରେ ନିତ୍ୟ ଜ୍ଞାନ ସୁଖ ସ୍ୱରୂପ ଏକ ପରମାର୍ଥ ନିର୍ମଳ ବ୍ରହ୍ମ, ଅନାଦି ଅଜ୍ଞାନରେ ଆବୃତ ହୋଇ ଏହି ଅଖିଳ ବ୍ରହ୍ମାଣ୍ଡାକାରରେ ପ୍ରକାଶ ପାଇଥାଆନ୍ତି । ପରମାତ୍ମାଙ୍କର ଐକ୍ୟଜ୍ଞାନ ହେଲେ ନିଖିଳ ଜଗତର ଏକମାତ୍ର କାରଣ ଏହି ଅଜ୍ଞାନର ନାଶ ହୁଏ । ଯେଉଁ ସ୍ଥାନକୁ ଗଲେ ଏହି ଅଜ୍ଞାନ ଲୟପ୍ରାପ୍ତ ହୁଏ, ତାହା ହିଁ ପରମାତ୍ମା । ସେହି ପରମାତ୍ମା ବୋଧ ହିଁ ନିର୍ବାଣ ଏବଂ ସେହି ସ୍ୱରୂପାବସ୍ଥାକୁ ଜୀବନ୍ମୁକ୍ତି କୁହାଯାଏ । ବେଦାନ୍ତ ଶାସ୍ତ୍ର ମୋର ଏହି ସିଦ୍ଧାନ୍ତକୁ ଅନୁମୋଦନ କରୁଅଛି । ବୈଦାନ୍ତିକ ପ୍ରମାଣ ହେଉଛି—

(୧) ବ୍ରହ୍ମ ଏକ, ଅଦ୍ୱିତୀୟ, ସତ୍ୟ ଓ ଜ୍ଞାନସ୍ୱରୂପ; ତାଙ୍କର ଅନ୍ତ ନାହିଁ, ସେ ବିଜ୍ଞାନମୟ ଓ ଆନନ୍ଦମୟ । (ଏକମେବାଦ୍ୱିତୀୟଂ ସତ୍ୟଂ ଜ୍ଞାନମନନ୍ତଂ ବିଜ୍ଞାନମାନନ୍ଦଂ ବ୍ରହ୍ମ—ଇତି ଶ୍ରୁତି )

(୨) ଏହି ପରିଦୃଶ୍ୟମାନ ଅଖିଳ ବ୍ରହ୍ମାଣ୍ଡ କେବଳ ବ୍ରହ୍ମମୟ । (ସର୍ବଂ ଖଲ୍ୱିଦଂ ବ୍ରହ୍ମ—ଇତି ଶ୍ରୁତିଃ)

(୩) ଆତ୍ମଜ୍ଞାନୀ ଶୋକରୁ ଉତ୍ତୀର୍ଣ୍ଣ ହୁଅନ୍ତି । (ତରତି ଶୋକାଦାତ୍ମବିତ୍—ଇତି ଶ୍ରୁତିଃ)

(୪) ଯେ ଏକମାତ୍ର ବ୍ରହ୍ମଦର୍ଶନ କରିଛନ୍ତି, ସେହି ଅବସ୍ଥାରେ ତାଙ୍କର ଶୋକ ବା କ'ଣ । (ତତ୍ର କୋ ମୋହଃ କଃ ଶୋକ ଏକତ୍ୱମନୁ ପଶ୍ୟତଃ—(ଇତି ଶ୍ରୁତିଃ)

(୫) ଯେ ବ୍ରହ୍ମଙ୍କୁ ଜାଣନ୍ତି, ସେ ବ୍ରହ୍ମ ହିଁ ହୋଇଯାନ୍ତି । (ବ୍ରହ୍ମବିଦ୍ ବ୍ରହ୍ମୈବ ଭବତି—ଇତି ଶ୍ରୁତିଃ)

(୬) ସେ ଆଉ ସଂସାରକୁ ପୁନରାଗମନ କରନ୍ତି ନାହିଁ । (ନ ସ ପୁନରାବର୍ତ୍ତତେ—ଇତି ଶ୍ରୁତିଃ)

ପଣ୍ଡିତପ୍ରବର ! ମୋର ପ୍ରମାଣ ବିବୃତ ହେଲା । ମୁଁ ଯଦି ଏହି ବାଦରେ ପରାଜୟଭାଗୀ ହୁଏ, ତେବେ ମୁଁ କଷାୟବସ୍ତ୍ର ପରିତ୍ୟାଗ କରି ଆପଣଙ୍କ ପରି ଶୁକ୍ଳବସନ ପରିଧାନ କରିବି । ଉଭୟ-ଭାରତୀ ହିଁ ଜୟ-ପରାଜୟର ବିଚାର କରିବେ ।'' ମଣ୍ଡନ କହିଲେ, ''ମୋ ପକ୍ଷ ଶୁଣନ୍ତୁ । କର୍ମ ହିଁ ବେଦର ତାତ୍ପର୍ଯ୍ୟ ।

କର୍ମଫଳରେ ଅନନ୍ତସ୍ୱର୍ଗରୂପ ମୁକ୍ତି ଲାଭ ହୁଏ । ବ୍ରହ୍ମଙ୍କସହିତ ଅଭେଦ ଜ୍ଞାନରେ ବ୍ରହ୍ମଙ୍କସହିତ ଅଭିନ୍ନଭାବରୂପକ ମୁକ୍ତି ସମ୍ଭବପର ହୁଏ ନାହିଁ । ବ୍ରହ୍ମଙ୍କସହିତ ଆତ୍ମାର ଯେ ଅଭେଦ ଭାବନାର ଉପଦେଶ ବେଦରେ ଅଛି, ତାହା କର୍ମର ପୂର୍ଣ୍ଣତା ସାଧନନିମିତ୍ତ । ବ୍ରହ୍ମଜ୍ଞାନ ବେଦର ତାତ୍ପର୍ଯ୍ୟ ନୁହେଁ । ବ୍ରହ୍ମ ଥିଲେ ମଧ୍ୟ ତାଙ୍କସହିତ ଜୀବର ଭେଦ ହିଁ ବର୍ତ୍ତମାନ । କର୍ମ କ୍ଷୟ ହେଲେ ପୁନର୍ଜନ୍ମ ହୋଇଥାଏ । ଅନନ୍ତକାଳ କର୍ମ କଲେ ଅନନ୍ତସ୍ୱର୍ଗ ଭୋଗ ହୁଏ ।

ଆପଣ ଯେ କହିଲେ ପରମାତ୍ମା ଚିତ୍‌ସ୍ୱରୂପ, ଏ ବିଷୟରେ ବେଦାନ୍ତ ବାକ୍ୟ କେବେ ପ୍ରମାଣ ହୋଇ ନ ପାରେ । ଯେହେତୁ ଚିତ୍‌ବସ୍ତୁ ନିତ୍ୟଜ୍ଞାନସ୍ୱରୂପ; ତେଣୁ କାର୍ଯ୍ୟସହିତ ଏହାର କୌଣସି ସମ୍ବନ୍ଧ ନାହିଁ । ଶବ୍ଦର ଶକ୍ତି ଏକମାତ୍ର କାର୍ଯ୍ୟରେ ସଂଶ୍ଳିଷ୍ଟ ହୁଏ; କିନ୍ତୁ କାର୍ଯ୍ୟର ଅତୀତ ଚିତ୍‌ବସ୍ତୁ ପରମାତ୍ମାଙ୍କଠାରେ ସଂଶ୍ଳିଷ୍ଟ ହୋଇ ନ ପାରେ । ସୁତରାଂ ଚିତ୍‌ସ୍ୱରୂପ ପରମାତ୍ମା ଯେ ଅଛନ୍ତି, ତାହା ଜାଣିବୁ କିପରି ? ବେଦାନ୍ତର ପୂର୍ବଭାଗ 'ମୀମାଂସା-କାବ୍ୟ' ଅବଶ୍ୟ ପ୍ରମାଣ ବୋଲି ଗୃହୀତ । ପ୍ରସିଦ୍ଧ ଶବ୍ଦସମୂହର କେବଳ କାର୍ଯ୍ୟ ପ୍ରତି ଶକ୍ତି ସ୍ୱୀକୃତ ହୋଇଅଛି । କର୍ମରୁ ମୁକ୍ତିଲାଭ ହୁଏ । ଅତଏବ କର୍ମ ହିଁ ଶରୀରୀ ଜୀବଗଣଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ପ୍ରାର୍ଥନୀୟ । ଯାବଜ୍ଜୀବନ ଅଗ୍ନିହୋତ୍ର ଯଜ୍ଞ କରିବା ବିଧେୟ, ଇତ୍ୟାଦି ଶ୍ରୁତିବାକ୍ୟ ହିଁ ଏହାର ପ୍ରମାଣ । (ଯାବଜ୍ଜୀବମଗ୍ନି ହୋତ୍ରଂ ଜୁହୁୟାତ୍—ଇତି ଶ୍ରୁତିଃ) ଏ ବିଷୟରେ ବାଦ କରି ମୁଁ ପରାଜୟ ସ୍ୱୀକାର କଲେ ସନ୍ନ୍ୟାସାଶ୍ରମ ଗ୍ରହଣ କରିବି । ଆପଣ ବାଦରେ ମୋ ପତ୍ନୀଙ୍କୁ ଯେପରି ମଧ୍ୟସ୍ଥ ମନୋନୀତ କରିଛନ୍ତି, ମୁଁ ତାହା ହିଁ ସମର୍ଥନ କରୁଅଛି ।''



# ଶଙ୍କରଙ୍କ ବିଚାର

ବିଚାର ଆରମ୍ଭ ହେଲା । ଉଭୟ ପକ୍ଷର ଯୁକ୍ତି ଅତି ସୂକ୍ଷ୍ମରୁ ସୂକ୍ଷ୍ମତର ହୋଇଉଠିଲା । ଉଭୟେ ଶ୍ରୁତି, ଯୁକ୍ତି ଓ ଅନୁଭବ—ଏହି ତ୍ରିବିଧ ପ୍ରମାଣ ସାହାଯ୍ୟରେ ବିଚାର କରିବାକୁ ଲାଗିଲେ । କେହି କୌଣସିଠାରେ ଦୁର୍ବଳତା ପ୍ରଦର୍ଶନ କଲେ ନାହିଁ । ମଧ୍ୟାହ୍ନ ସମାଗତ ହେବାରୁ ସରସ୍ୱତୀ ଦେବୀ ଦେଖିଲେ, ବିଳମ୍ବ ହେଲେ ପତିଙ୍କ ମଧ୍ୟାହ୍ନ ସେବାରେ ତ୍ରୁଟି ଘଟିବ । ସେ କହିଲେ, ''ହେ ପଣ୍ଡିତପ୍ରବରଦ୍ୱୟ ! ଆପଣମାନେ ବିଚାର କରୁଥାଆନ୍ତୁ, ମୁଁ ଦୂରରେ ରହି ସମସ୍ତ ଶ୍ରବଣ କରୁଅଛି । କାରଣ ମୋତେ ପତିସେବାନିମିତ୍ତ ଆହାର୍ଯ୍ୟ ପ୍ରସ୍ତୁତ କରିବାକୁ ହେବ । ଏ କାର୍ଯ୍ୟରେ ଆଉ ବିଳମ୍ବ କରିବା ଉଚିତ ମନେ କରୁନାହିଁ ।'' ଏହା କହି ସରସ୍ୱତୀ ଦେବୀ ଉଭୟଙ୍କ ଗଳଦେଶରେ ପୁଷ୍ପମାଲ୍ୟ ଅର୍ପଣ କରି କହିଲେ, ''ଏହି ମାଲ୍ୟ ଯାହାଙ୍କ ଗଳଦେଶରୁ ମ୍ଳାନ ପଡ଼ିଯିବ, ତାଙ୍କରି ପରାଜୟ ହୋଇଛି ବୋଲି ବୁଝିବାକୁ ହେବ । ଆପଣମାନେ ବିଚାର କରୁଥାନ୍ତୁ ।'' କିନ୍ତୁ ସେଦିନ କାହାର ମାଲ୍ୟ ମ୍ଳାନ ହେଲା ନାହିଁ । ପରଦିନ ପୁଣି ବିଚାର ଆରମ୍ଭ ହେଲା । ଏହିପରି ଭାବରେ ସପ୍ତଦଶ ଦିବସ ଅତୀତ ହୋଇଗଲା । ଅଷ୍ଟାଦଶ ଦିବସରେ ମଣ୍ଡନ ଆଉ ଆତ୍ମପକ୍ଷ ସମର୍ଥନ କରିପାରିଲେ ନାହିଁ । ପରାଜୟ ଭୟରେ ଶରୀରରେ ଉଷ୍ମ ଓ ଘର୍ମ ଦେଖାଦେଲା । ମଣ୍ଡନଙ୍କର ମାଲ୍ୟ ମଳିନ ହୋଇଗଲା । ସରସ୍ୱତୀ ଦେବୀ ଏହା ଦେଖି ବିମର୍ଷ ହୋଇପଡ଼ିଲେ । ଉଭୟଙ୍କ ସମ୍ମତି ଅନୁସାରେ ସରସ୍ୱତୀ ଦେବୀ ଘୋଷଣା କଲେ, ''ଯତିବର ! ଆପଣଙ୍କର ବିଜୟ ହୋଇଅଛି । ମୋର ସ୍ୱାମୀ ପରାଜିତ ହୋଇଛନ୍ତି ।'' ଏହା ଶୁଣି ସମସ୍ତେ ଅବାକ୍ । ସନ୍ନ୍ୟାସୀମାନେ ଆନନ୍ଦରେ ଉତ୍‌ଫୁଲ୍ଲ । ଏହି ସମୟରେ ପଦ୍ମପାଦ ମଣ୍ଡନଙ୍କୁ ଲକ୍ଷ୍ୟ କରି କହିଲେ, ''ପଣ୍ଡିତପ୍ରବର ! ପଣ ଅନୁସାରେ କାର୍ଯ୍ୟ କରନ୍ତୁ ।'' ମଣ୍ଡନ ଅପ୍ରତିଭ ହୋଇ କହିଲେ—''ମୋର ଆଉ ଗୋଟିଏ ନିବେଦନ ଅଛି । ତାହାର ଉତ୍ତର ପ୍ରଦାନ କଲେ ମୁଁ ସନ୍ତୁଷ୍ଟ ହେବି । ଯତିବର ! ବଡ଼ ଦୁଃଖର ବିଷୟ, ଆପଣ ଜୈମିନି ମୁନିଙ୍କର ବାକ୍ୟଗୁଡ଼ିକୁ ଖଣ୍ଡନ କରିଛନ୍ତି । ମୀମାଂସା-ଦର୍ଶନରେ 'ଆମ୍ନାୟସ୍ୟ କ୍ରିୟାର୍ଥତ୍ୱାତ୍ ଆନର୍ଥକ୍ୟମତଦର୍ଥାନାମ' ଏହି ସୂତ୍ରଟିର ଅର୍ଥ ତାହାହେଲେ କ'ଣ ? ଏଥିରେ ତ ଜୈମିନି ସ୍ପଷ୍ଟଭାବରେ ବେଦକୁ କ୍ରିୟାବିଧିପର ବୋଲି

ସ୍ୱୀକାର କରିଛନ୍ତି ।'' ଆଚାର୍ଯ୍ୟ ଉତ୍ତର କଲେ, ''କର୍ମକାଣ୍ଡ ମଧ୍ୟରେ ସମସ୍ତ କଥା ହିଁ କ୍ରିୟାପର । କିନ୍ତୁ; ବେଦର ଜ୍ଞାନକାଣ୍ଡରେ ସବୁ କଥା କ୍ରିୟାପର ନୁହେଁ । ମହର୍ଷି ଜୈମିନିଙ୍କର କିଛି ମାତ୍ର ଦୋଷ ନାହିଁ । ଆମେମାନେ ଅନଭିଜ୍ଞତା ବଶତଃ ମୁନିଙ୍କର ଅଭିପ୍ରାୟ ଯଥାର୍ଥରୂପେ ପ୍ରମାଣ କରିପାରୁ ନ ଥାଇଁ ।''

ତତ୍ପରେ ମଣ୍ଡନଙ୍କ ବାକ୍ୟ ଶ୍ରବଣକରି ଶଙ୍କର ଜୈନିମଙ୍କ ଅଭିପ୍ରାୟ ବ୍ୟକ୍ତ କରିବାକୁ ଲାଗିଲେ । ସେ କହିଲେ, ''ମହର୍ଷି ଜୈମିନି ସ୍ୱୟଂ ପରବ୍ରହ୍ମଙ୍କ ବିଷୟରେ ଅତିଶୟ ଅନୁସନ୍ଧିତ୍ସୁ ଥିଲେ । କିନ୍ତୁ ଯେଉଁମାନଙ୍କ ବୁଦ୍ଧି ନିତାନ୍ତ ବିଷୟାସକ୍ତ, ସେହି ସଂସାରୀ ଲୋକମାନଙ୍କ ପ୍ରତି ଅନୁଗ୍ରହବଶତଃ ସାଧାରଣଙ୍କର କିପରି ବ୍ରହ୍ମପ୍ରାପ୍ତି ଘଟିବ, ତାହାର ଉପାୟ ଓ ସାଧନପନ୍ଥା ନିର୍ଣ୍ଣୟ କରିବାନିମିତ୍ତ କେବଳ ସେ ପୁଣ୍ୟକର୍ମ ନିରୂପଣ କରିଥିଲେ । ସେ ପରବ୍ରହ୍ମଙ୍କୁ ନିରୂପଣ କରି ନାହାନ୍ତି । ବ୍ରାହ୍ମଣମାନେ ବେଦବାକ୍ୟଦ୍ୱାରା ତାଙ୍କୁ ଜିଣିବାକୁ ଇଚ୍ଛା କରନ୍ତି । ତେଣୁ ବ୍ରାହ୍ମଣମାନଙ୍କର ବ୍ରହ୍ମଜ୍ଞାନ ଜାତ ହେବାନିମିତ୍ତ ବ୍ରହ୍ମଚର୍ଯ୍ୟାଦି ସର୍ବବିଧ ଧର୍ମବିଧାନ ସେ ପ୍ରଣୟନ କରିଛନ୍ତି । ଜୈମିନି ଋଷି ଅନୁମାନଗମ୍ୟ ପରମେଶ୍ୱରଙ୍କ ନିରାକରଣ କରିଛନ୍ତି; କିନ୍ତୁ ବେଦଗମ୍ୟ ପରମେଶ୍ୱରଙ୍କ ନିରାକରଣ କରି ନାହାନ୍ତି ।'' ଏହି କଥା କହି ଶଙ୍କର ନିମ୍ନଲିଖିତ ଭାବରେ ସୂତ୍ରର ସାମଞ୍ଜସ୍ୟ ବିଧାନ କରିଥିଲେ । ''ଏହି ଜଗତରେ ଅବଶ୍ୟ ଜଣେ କର୍ତ୍ତା ଅଛନ୍ତି । କାରଣ ଏହି ଜଗତ ଗୋଟିଏ କାର୍ଯ୍ୟ । ତାହାର ଦୃଷ୍ଟାନ୍ତ ସ୍ୱରୂପ ଜଣେ କର୍ତ୍ତା ନ ଥିଲେ ଯେପରି ଘଟପଟାଦିରୂପ କାର୍ଯ୍ୟର ଉତ୍ପତ୍ତି ହୋଇପାରେ ନାହିଁ, ସେହିପରି କର୍ତ୍ତାଙ୍କ ଅଭାବରେ ଜଗତର ସୃଷ୍ଟି ହୋଇପାରେ ନାହିଁ । ବେଦବାକ୍ୟ ନ ଥିଲେ ମଧ୍ୟ ଅନୁମାନଦ୍ୱାରା ଈଶ୍ୱରଙ୍କ ଅସ୍ତିତ୍ୱ ସିଦ୍ଧ ହୋଇଥାଏ । ବେଦଅନଭିଜ୍ଞ ବ୍ୟକ୍ତିମାନେ, ସେହି ମହତ୍ ପୁରୁଷଙ୍କୁ ଜାଣିପାରନ୍ତେ ନାହିଁ । ଜୈମିନି ମୁନି କଣାଦ ମୁନିଙ୍କ ଅନୁମାନଗମ୍ୟ ଈଶ୍ୱରଙ୍କର ନିରାକରଣ କରିଅଛନ୍ତି; ତେଣୁ ଜୈମିନିଙ୍କ ବାକ୍ୟରେ ଆମର ବିରୋଧ ଉପସ୍ଥିତ ହେଉ ନାହିଁ । ପରମେଶ୍ୱର-ବିଷୟକ ଅନୁମାନର ଖଣ୍ଡନ କରିଛନ୍ତି ବୋଲି ଯେ ସେ ନିରୀଶ୍ୱରବାଦୀ ବା ଈଶ୍ୱରବିଶ୍ୱାସୀ ନୁହନ୍ତି, ଏହା କେବେହେଲେ ସମ୍ଭବପର ନୁହେଁ । ଏଣୁ ପରମାତ୍ମବେତ୍ତାମାନଙ୍କର ଅଗ୍ରଗଣ୍ୟ ସେହି ଜୈମିନି ମୁନି ଯେ ନିରୀଶ୍ୱରବାଦୀ ଥିଲେ, ଏହା କଦାପି ବିଶ୍ୱାସଯୋଗ୍ୟ ନୁହେଁ ।

ଶଙ୍କରଙ୍କର ବାକ୍ୟ ଶୁଣି ଉଭୟ-ଭାରତୀ ଓ ଅନ୍ୟାନ୍ୟ ସଭାସଦ୍‌ଗଣ ଅତିଶୟ ସନ୍ତୁଷ୍ଟ ହେଲେ । ତଥାପି ମଣ୍ଡନଙ୍କ ମନ ସଂଶୟରହିତ ହେଲା ନାହିଁ । ମଣ୍ଡନ କହିଲେ, ‘‘ମୁଁ ମହର୍ଷି ବ୍ୟାସ ଓ ଜୈମିନି ମୁନିଙ୍କୁ ଆପଣଙ୍କ ସମ୍ମୁଖକୁ ଆହ୍ୱାନ କରି ଆପଣଙ୍କ ଅଭିମତ ବିଷୟରେ ପ୍ରଶ୍ନ କରିପାରେ କି ?’’ ଆଚାର୍ଯ୍ୟ କହିଲେ, ‘‘ତାହାହେଲେ ଆପଣ ସେମାନଙ୍କୁ ପ୍ରଶ୍ନ କରି ବୁଝିବାରେ ମୋର ଆପତ୍ତି ନାହିଁ ।’’

ମନ୍ତ୍ରସିଦ୍ଧ ମଣ୍ଡନ ତତ୍‌କ୍ଷଣାତ୍ ମନ୍ତ୍ରବଳରେ ମହର୍ଷିଦ୍ୱୟଙ୍କୁ ଆହ୍ୱାନ କଲେ । ମହର୍ଷିଦ୍ୱୟ ସେଠାରେ ଆବିର୍ଭୂତ ହେଲେ । ଆଚାର୍ଯ୍ୟ ଓ ମଣ୍ଡନ ଉଭୟେ ମୁନିଦ୍ୱୟଙ୍କୁ ଯଥାବିଧି ଅଭ୍ୟର୍ଥନା କଲା ପରେ ମଣ୍ଡନ କହିଲେ, ‘‘ମହାଶୟ, ଆପଣଙ୍କ ସୂତ୍ରାର୍ଥକୁ ଆଚାର୍ଯ୍ୟ ଯେଭଳି ବ୍ୟାଖ୍ୟା କରୁଛନ୍ତି, ତାହା କ’ଣ ଆପଣମାନଙ୍କ ଅଭିପ୍ରାୟ ? ଆପଣଙ୍କ ମୁଖରୁ ଏହାର ଉତ୍ତର ନ ଶୁଣିଲେ ମୋର ସନ୍ଦେହ ଦୂର ହେବ ନାହିଁ ।’’

ମହର୍ଷି ଜୈମିନି କହିଲେ, ‘‘ମଣ୍ଡନ ! ତୁମେ ଶଙ୍କରଙ୍କ ବାକ୍ୟରେ ସନ୍ଦେହ ପ୍ରକାଶ କର ନାହିଁ । ସେ ଯାହାକହୁଛନ୍ତି, ସମସ୍ତ ସତ୍ୟ । ଏହା ହିଁ ଆମର ଅଭିମତ ।‘‘ ମହର୍ଷି ବ୍ୟାସ ମଧ୍ୟ ଜୈମିନିଙ୍କ କଥାର ଅନୁମୋଦନ କଲେ ।

ପୁନରାୟ ମୁନିମାନେ ମଣ୍ଡନଙ୍କୁ କହିଲେ, ‘‘ବତ୍ସ ମଣ୍ଡନ ! ତୁମେ ଶଙ୍କରଙ୍କୁ ସାମାନ୍ୟ ବ୍ୟକ୍ତି ବୋଲି ମନେକର ନାହିଁ । ସେ ତ୍ରିକାଳଜ୍ଞ ମହାପୁରୁଷ । ସେ ସତ୍ୟଯୁଗରେ କପିଳ ରୂପରେ ‘ସାଂଖ୍ୟମତ’ ପ୍ରଚାର କରିଥିଲେ, ସେ ତ୍ରେତା ଯୁଗରେ ଦତ୍ତାତ୍ରେୟ ରୂପରେ ଯୋଗପଥ ପ୍ରଦର୍ଶନ କରିଥିଲେ ଓ ଦ୍ୱାପରଯୁଗରେ ବେଦବ୍ୟାସ ରୂପରେ ‘ବେଦାନ୍ତ ଦର୍ଶନ’ର ସୃଷ୍ଟି କରିଥିଲେ । ସେହି ବ୍ୟକ୍ତି କଳିଯୁଗରେ ‘ଅଦ୍ୱୈତ ମତ’ ସ୍ଥାପନ କରିବାନିମିତ୍ତ ଶଙ୍କର ରୂପରେ ଜନ୍ମଗ୍ରହଣ କରିଛନ୍ତି । ତୁମେ ଶ୍ରଦ୍ଧାପୂର୍ବକ ତାଙ୍କର ମତ ଗ୍ରହଣ କଲେ ତୁମର ସର୍ବାଭୀଷ୍ଟ ସିଦ୍ଧ ହେବ ।’’

ମୁନିମାନେ ବିଦାୟ ହେବା ପରେ ମଣ୍ଡନ କହିଲେ, ‘‘ଯତୀବର ! ମୋର ଆଉ ସନ୍ଦେହର ଅବକାଶ ନାହିଁ । ଆଜିଠାରୁ ମୁଁ ଆପଣଙ୍କର ଶିଷ୍ୟତ୍ୱ ସ୍ୱୀକାର କଲି । ଯଦି ଉପଯୁକ୍ତ ବିବେଚନା କରନ୍ତି, ତେବେ ମୋତେ ସନ୍ନ୍ୟାସ ମନ୍ତ୍ରରେ ଦୀକ୍ଷିତ କରନ୍ତୁ ।’’

ଶଙ୍କର ଉତ୍ତର କଲେ, ‘‘ଆପଣ ସନ୍ନ୍ୟାସର ଉତ୍ତମ ଅଧିକାରୀ । ଆପଣ ସନ୍ୟାସ ଗ୍ରହଣ କଲେ, ଲୋକମାନେ ସନ୍ନ୍ୟାସର ମର୍ଯ୍ୟାଦା ବୁଝିବେ । ଜ୍ଞାନରେ

ମଧ୍ୟ ଆପଣ ଅଦ୍ୱିତୀୟ ବ୍ୟକ୍ତି । ଜ୍ଞାନ ହେଲେ ସନ୍ନ୍ୟାସ ଆପଣା ମନକୁ ଉପସ୍ଥିତ ହୁଏ । ଆପଣ ସନ୍ନ୍ୟାସୀ ହେଲେ ବେଦାନ୍ତବାଦର ପ୍ରଚାର ହେବ ବୋଲି ଆପଣଙ୍କ ନିକଟକୁ ଆଗମନ କରିଅଛି ।'' ଏହା ଦେଖି ମଣ୍ଡନଙ୍କ ପକ୍ଷର ଲୋକମାନେ ଅତ୍ୟନ୍ତ ବିମର୍ଷ ହେଲେ । ସମସ୍ତେ କହିଲେ, 'ବେଦର କର୍ମକାଣ୍ଡ ଆଜିଠାରୁ ଲୋପ ପାଇଲା । ଲୋକେ ଆଉ କର୍ମ ପ୍ରତି ସ୍ପୃହା ନ ରଖି କେବଳ ସନ୍ନ୍ୟାସୀ ହେବେ । ଭାରତ ଭାଗ୍ୟରେ ଭଲ ଅଛି କି ମନ୍ଦ ଅଛି, ତାହା ଜଗଦୀଶ୍ୱର ଜାଣନ୍ତି ।'

ଏ ପର୍ଯ୍ୟନ୍ତ ସରସ୍ୱତୀ ଦେବୀ ଗମ୍ଭୀରଭାବରେ ଅବସ୍ଥାନ କରୁଥିଲେ । ସରସ୍ୱତୀ ଦେବୀ ମଣ୍ଡନଙ୍କୁ କ୍ଷାନ୍ତ ହେବାକୁ ନିର୍ଦ୍ଦେଶ ଦେଇ ଶଙ୍କରଙ୍କୁ ଲକ୍ଷ୍ୟ କରି କହିଲେ, ''ଯତିରାଜ ! ଆପଣ ମୋ ପତିଙ୍କୁ ବର୍ତ୍ତମାନ ସନ୍ନ୍ୟାସୀ କରିପାରିବେ ନାହିଁ । ତାଙ୍କର ସଂପୂର୍ଣ୍ଣ ପରାଜୟ ହୋଇ ନାହିଁ । ମୁଁ ଆପଣଙ୍କ ଅଭିପ୍ରାୟ ବୁଝିପାରିଛି; କିନ୍ତୁ ମୋର କିଛି କହିବାର ଅଛି । ବେଦରେ ଅଛି, ଆତ୍ମାର ଅର୍ଦ୍ଧେକ ପତ୍ନୀ । ମୁଁ ମୋ ସ୍ୱାମୀଙ୍କ ଆତ୍ମାର ଅର୍ଦ୍ଧଭାଗ । ଯେ ପର୍ଯ୍ୟନ୍ତ ମୁଁ ପରାଜିତ ନ ହୋଇଛି, ସେ ପର୍ଯ୍ୟନ୍ତ ମୋ ସ୍ୱାମୀ ପରାଜିତ ହୋଇ ନାହାନ୍ତି ବୋଲି ଜାଣିବେ । ସୁତରାଂ ବର୍ତ୍ତମାନ ମୋତେ ପରାସ୍ତ କରି ମୋ ସ୍ୱାମୀଙ୍କୁ ଆପଣ ଶିଷ୍ୟ କରନ୍ତୁ । ଆପଣଙ୍କସହିତ ବିବାଦ କରିବାନିମିତ୍ତ ମୁଁ ଅତ୍ୟନ୍ତ ଉତ୍ସୁକ ହୋଇଅଛି ।'' ଶଙ୍କର ଈଷତ ହାସ୍ୟ କରି କହିଲେ, ''ମା ! ପଣ୍ଡିତମାନେ କେବେହେଲେ କାମିନୀମାନଙ୍କ ସହିତ ବାଦ କରିବାକୁ ଇଚ୍ଛା କରନ୍ତି ନାହିଁ; ତେଣୁ ମୁଁ ଆପଣଙ୍କ ସହିତ ଶାସ୍ତ୍ରୀୟ ବିବାଦରେ ପ୍ରବୃତ୍ତ ହେବାକୁ ଇଚ୍ଛା କରୁନାହିଁ ।''

ସରସ୍ୱତୀ ଦେବୀ କହିଲେ, ''ପଣ୍ଡିତବର ! ଆପଣ ଅତି ଅନୁଚିତ କଥା କହୁଛନ୍ତି । ଯେ ଜଗତରେ ନିଜର ମତ ସ୍ଥାପନ କରିବାକୁ ବଦ୍ଧପରିକର, ଏପରି ଜିଗୀଷାସମ୍ପନ୍ନ ବ୍ୟକ୍ତିଙ୍କପକ୍ଷରେ ସମସ୍ତେ ସମତୁଲ୍ୟ । ପୁରାକାଳରେ ମହର୍ଷି ଯାଜ୍ଞବଲ୍କ୍ୟ, ଗାର୍ଗୀ ନାମ୍ନୀ ପ୍ରସିଦ୍ଧ ମହିଳାଙ୍କ ସହିତ ଶାସ୍ତ୍ରୀୟ କଳହ କରିଥିଲେ; ଏହା ବୃହଦାରଣ୍ୟକ ଉପନିଷଦରେ ଅଛି । ରାଜର୍ଷି ଜନକ ସୁଲଭା ନାମ୍ନୀ କୌଣସି କାମିନୀଙ୍କସହିତ ବାଦରେ ପ୍ରବୃତ୍ତ ହୋଇଥିଲେ; ଏ କଥା ମୋକ୍ଷଧର୍ମରେ ଉକ୍ତ ହୋଇଅଛି । ତେବେ ଆପଣ କିପରି କହୁଛନ୍ତି ଯେ, ପଣ୍ଡିତମାନଙ୍କର କାମିନୀମାନଙ୍କସହିତ ଶାସ୍ତ୍ରୀର ବିଚାର କରିବା ସଙ୍ଗତ ନୁହେଁ ?''

ସରସ୍ୱତୀ ଦେବୀଙ୍କର ଏ ଯୁକ୍ତି ଶୁଣି ଶଙ୍କର ତାଙ୍କସହିତ ବାଦ କରିବାକୁ ସମ୍ମତି ଜ୍ଞାପନ କଲେ । ତତ୍ପରେ ପଣ୍ଡିତସଭାରେ ଶଙ୍କରଙ୍କ ସହିତ ବିଚାର ଆରମ୍ଭ ହେଲା । ଉଭୟଙ୍କର ବୁଦ୍ଧି, ଚାତୁରୀ ଓ ବାକ୍ୟବିନ୍ୟାସର ନୈପୁଣ୍ୟ ଦର୍ଶନ କରି ସଭାସ୍ଥ ପଣ୍ଡିତବର୍ଗ ବିସ୍ମିତ ହୋଇଗଲେ । ଏହିପରି ଭାବରେ ଉଭୟଙ୍କର ବିବାଦରେ ସାତ ଦିନ ଅତୀତ ହୋଇଗଲା । ତତ୍ପରେ ଉଭୟ-ଭାରତୀ ଶାସ୍ତ୍ରୀୟ ବିଚାରରେ ଶଙ୍କରଙ୍କୁ ପରାଜୟ କରିବା ଆଶା ତ୍ୟାଗ କରି ମନେ ମନେ ଚିନ୍ତା କଲେ— ଏ ଯତି ବାଲ୍ୟକାଳରୁ ସନ୍ନ୍ୟାସୀ ଧର୍ମ ଅବଲମ୍ବନ କରିଅଛନ୍ତି, ନିଶ୍ଚୟ ଏ କାମଶାସ୍ତ୍ରରେ ଅନିପୁଣ । ସୁତରା କାମଶାସ୍ତ୍ରର ତର୍କଦ୍ୱାରା ମୁଁ ଏହାଙ୍କୁ ପରାଜୟ କରିବି । ଏହା ଭାବି ସେ ଶଙ୍କରଙ୍କୁ କାମଶାସ୍ତ୍ର ସମ୍ବନ୍ଧୀୟ ପ୍ରଶ୍ନ କଲେ । ସରସ୍ୱତୀ ଦେବୀ କହିଲେ, ‘‘ଯତିବର ! କହନ୍ତୁ, କାମର ଲକ୍ଷଣ କ’ଣ ? ଏହାର କେତେ କଳା ? ସେହି କଳାର ପ୍ରତ୍ୟେକର ଲକ୍ଷଣ ବା କ’ଣ ? ଶରୀରର କେଉଁ କେଉଁ ସ୍ଥାନରେ ତାହାର ଅବସ୍ଥିତି ଏବଂ କିପରି କ୍ରିୟାଦ୍ୱାରା ତାହାର ଆବିର୍ଭାବ ଓ ତିରୋଭାବ ହୁଏ ?’’

ଏ ପ୍ରଶ୍ନ ଶୁଣି ଆଚାର୍ଯ୍ୟ ନିରୁତ୍ତର ହୋଇଗଲେ । ସେ କେବେହେଲେ ଭାବି ନ ଥିଲେ ଯେ ସରସ୍ୱତୀ ଦେବୀ ତାଙ୍କୁ ଏହିପରି ପ୍ରଶ୍ନ କରିବେ । ସେ ନିସ୍ତବ୍ଧ ହୋଇ କହିଲେ, ‘‘ଜନନି ! ଆପଣ ଶାସ୍ତ୍ରୀୟ କଥା ପ୍ରଶ୍ନ କରନ୍ତୁ, ମୁଁ ଉତ୍ତର ଦେବି, ମୁଁ ସନ୍ନ୍ୟାସୀ, ମୋତେ କ’ଣ ଏପରି ପ୍ରଶ୍ନ କରିବା ଆପଣ ଉଚିତ ବିବେଚନା କରୁଛନ୍ତି ।’’

ସରସ୍ୱତୀ ଦେବୀ କହିଲେ, ‘‘କାହିଁକି ? କାମଶାସ୍ତ୍ର କ’ଣ ଶାସ୍ତ୍ର ମଧ୍ୟରେ ଗଣ୍ୟ ନୁହେଁ ? ଆପଣ ସନ୍ନ୍ୟାସୀ ହୋଇ ମଧ୍ୟ ଯେତେବେଳେ ବାଦ କରିବାନିମିତ୍ତ ପ୍ରସ୍ତୁତ, ସେତେବେଳେ ମୋ ପ୍ରଶ୍ନର ଉତ୍ତର ଦେବା କ’ଣ ଆପଣଙ୍କପକ୍ଷରେ ଉଚିତ ନୁହେଁ ? ଯେ ଅପୌରୁଷେୟ ବେଦର ତାତ୍ପର୍ଯ୍ୟ ନିର୍ଣ୍ଣୟ କରିବାକୁ ସକ୍ଷମ, ସେ କ’ଣ ସର୍ବଜ୍ଞ ନୁହନ୍ତି ? ସନ୍ନ୍ୟାସୀ ହେଲେ ଯଦି ଆପଣ ସିଦ୍ଧିଲାଭ କରିଥାଆନ୍ତି, ତାହାହେଲେ ତ ନିଶ୍ଚୟ ଆପଣ ଜିତେନ୍ଦ୍ରିୟ । କାମ କଥାରେ ଆପଣଙ୍କର ଚିତ୍ତବିକାର ହେବ ବା କାହିଁକି ? ଏଥିପାଇଁ କାମ କଥାରେ ଯେପରି ଚିତ୍ତବିକାର ନ ହେବ, ସେଥିନିମିତ୍ତ ସାଧକ ଅବସ୍ଥାରେ କାମଚିନ୍ତା ସନ୍ନ୍ୟାସୀମାନଙ୍କପକ୍ଷରେ ନିଷେଧ କରାଯାଇଅଛି । ସୁତରାଂ ଆପଣଙ୍କୁ ବର୍ତ୍ତମାନ ଏ ପ୍ରଶ୍ନ ନ କରିବି

କାହିଁକି ?'' ଏହା ଶୁଣି ଆଚାର୍ଯ୍ୟ ଅଧୋବଦନରେ ନିରୁତ୍ତର ହୋଇ ରହିଲେ । ଶିଷ୍ୟମାନେ ଚଞ୍ଚଳ ହୋଇପଡ଼ିଲେ; ବ୍ରାହ୍ମଣପଣ୍ଡିତମାନେ ଆନନ୍ଦରେ ଆତ୍ମହରା ହୋଇଗଲେ । ମଣ୍ଡନ ପତ୍ନୀଙ୍କୁ କହିଲେ, ''ଦେବି ! ମୁଁ ତର୍କରେ ପରାଜିତ ହୋଇ ନାହିଁ । ସତ୍ୟ ଅନୁରୋଧରେ ପରାଜୟ ସ୍ୱୀକାର କରିଅଛି । ତୁମେ ସନ୍ନ୍ୟାସୀଙ୍କୁ ଅପଦସ୍ଥ କର ନାହିଁ । ଏହି ଭାବରେ ତାଙ୍କୁ ପରାଜିତ ବୋଲି ପ୍ରତିପନ୍ନ କରିବା ଉଚିତ ନୁହେଁ ।''

ସରସ୍ୱତୀ ଦେବୀ କହିଲେ, ''କାହିଁକି ? ମୋର ପତି ଯାହାଙ୍କର ଶିଷ୍ୟତ୍ୱ ସ୍ୱୀକାର କରିବେ, ସେ ସର୍ବଜ୍ଞ କି ନା ତାହା କ'ଣ ମୁଁ ଥରେ ପରୀକ୍ଷା କରିବି ନାହିଁ ? ଜ୍ଞାନ ଲାଭ ହେଲେ ଇନ୍ଦ୍ରିୟଜୟୀ ଓ ସଂଯମୀ ହେବାର କଥା । କାମଚର୍ଚ୍ଚାରେ ଯଦି ତାଙ୍କର ଚିତ୍ତବିକାର ଉପସ୍ଥିତ ହେବ, ତେବେ ସେ ଆପଣଙ୍କର ଗୁରୁ ହେବାର ଯୋଗ୍ୟବ୍ୟକ୍ତି ନୁହନ୍ତି । ଆପଣ ଯେ ବିଚାରରେ ପରାଜିତ ହୋଇ ନାହାନ୍ତି, ତାହା ମୁଁ ସ୍ୱୀକାର କରୁଛି । ଆପଣଙ୍କ ପକ୍ଷ ଦୁର୍ବଳ ଥିଲା; ତେଣୁ ଆପଣ ପରାଜିତ ହେଲେ ।''

ମଣ୍ଡନ ନିରସ୍ତ ହେଲେ । ଶଙ୍କର କହିଲେ, ''ମା ! ବିଚାରର ନିୟମ ଅନୁସାରେ ମୁଁ ଆପଣଙ୍କ ନିକଟରୁ ମାସାଧିକ କାଳ ସମୟ ପ୍ରାର୍ଥନା କରୁଛି । ମୁଁ ସନ୍ନ୍ୟାସୀ; ନଚେତ୍ ଆପଣଙ୍କ ପ୍ରଶ୍ନର ଉତ୍ତର ବର୍ତ୍ତମାନ ବୁଦ୍ଧିପ୍ରଭାବରେ ପ୍ରଦାନ କରିପାରି ଥାଆନ୍ତି । କିନ୍ତୁ ଯତିଧର୍ମ ନାଶ ହେବା ଭୟରେ ହିଁ ଏହି ମୁଖଦେଇ ସେ ପ୍ରଶ୍ନର ଉତ୍ତର ଦେଇପାରିବି ନାହିଁ । କାମଚିନ୍ତା କଲେ ସନ୍ନ୍ୟାସାଶ୍ରମରୁ ଭ୍ରଷ୍ଟ ହେବାକୁ ପଡ଼େ । ସିଦ୍ଧ ହେଲେ ମଧ୍ୟ ଏ କାର୍ଯ୍ୟ କରିବାକୁ ଶାସ୍ତ୍ରରେ ନିଷେଧ ଅଛି । ଜ୍ଞାନୀମାନଙ୍କୁ ମଧ୍ୟ ବ୍ୟାବହାରିକ କ୍ଷେତ୍ରରେ ଶାସ୍ତ୍ରବିଧି ମାନି ଚଳିବାକୁ ପଡ଼େ । ମୁଁ ଏପରି କାର୍ଯ୍ୟ କଲେ ସନ୍ନ୍ୟାସୀଙ୍କ ଆଦର୍ଶରେ କଳଙ୍କ ଆରୋପିତ ହେବ । ମୋ ନାମରେ ସନ୍ନ୍ୟାସୀମାନେ ଅନ୍ୟାୟ କାର୍ଯ୍ୟ କରିବେ । ମୁଁ ଅନ୍ୟ ଶରୀରରେ ପ୍ରବେଶ କରି ଗ୍ରନ୍ଥ ରଚନାପୂର୍ବକ ଆପଣଙ୍କ ପ୍ରଶ୍ନର ଉତ୍ତର ପ୍ରଦାନ କରିବି । ଆପଣ ଏଥିରେ ସମ୍ମତ କି ନା କୁହନ୍ତୁ !'' ସରସ୍ୱତୀ ଦେବୀ କହିଲେ, ''ଆଚ୍ଛା, ପରକାୟାରେ ପ୍ରବେଶ କରି ଏ କାର୍ଯ୍ୟ କଲେ ମଧ୍ୟ କାମଚିନ୍ତାବଶତଃ ଆପଣଙ୍କୁ କ'ଣ ସନ୍ନ୍ୟାସାଶ୍ରମରୁ ଭ୍ରଷ୍ଟ ହେବାକୁ ପଡ଼ିବ ନାହିଁ ?'' ଶଙ୍କର ଉତ୍ତରରେ କହିଲେ, ''ଜନନୀ, ପୂର୍ବଜନ୍ମର ଚଣ୍ଡାଳ ପରଜନ୍ମରେ ବ୍ରାହ୍ମଣକୁଳରେ ଜନ୍ମିଲେ

ତା ବ୍ରାହ୍ମଣତ୍ୱର କ'ଣ କୌଣସି ହାନି ହୁଏ ?'' ସରସ୍ୱତୀ ଦେବୀ ନିଜର ଅସଙ୍ଗତି ବୁଝିପାରି କହିଲେ, ଯତିବର ! ଆପଣ ଯଦି ମୋ ପ୍ରଶ୍ନର ଉତ୍ତର ପ୍ରଦାନ ନ କରନ୍ତି ତେବେ ଆପଣ ମୋ ପତିଙ୍କୁ ଗୃହତ୍ୟାଗୀ କରାଇପାରିବେ ନାହିଁ । ସେ ଆପଣଙ୍କ ଶିଷ୍ୟ ହୋଇ ମଧ୍ୟ ଗୃହରେ ଅବସ୍ଥାନ କରିବେ ।'' ଆଚାର୍ଯ୍ୟ ଏଥିରେ ସ୍ୱୀକୃତି ପ୍ରଦାନ କଲେ ।

ଏହା ପରେ ସଭା ଭଙ୍ଗ ହେଲା । ସମସ୍ତେ ସରସ୍ୱତୀ ଦେବୀଙ୍କର ଭୂୟସୀ ପ୍ରଶଂସା କରିବାକୁ ଲାଗିଲେ । ସମସ୍ତେ ଉଭୟ-ଭାରତୀଙ୍କୁ ଧନ୍ୟ ଧନ୍ୟ ବୋଲି କହି ବିମର୍ଷଚିତ୍ତରେ ସ୍ଥାନ ପରିତ୍ୟାଗ କଲେ ।



# ଶଙ୍କରଙ୍କ ସାହସ

ଆଚାର୍ଯ୍ୟ ଶିଷ୍ୟମାନଙ୍କସହିତ ମହୀଷ୍ମତୀନଗର ତ୍ୟାଗ କରି ପୂର୍ବ ଅଭିମୁଖରେ ଯାତ୍ରା କଲେ । ସମ୍ମୁଖରେ ଦେଖିଲେ ଭୀଷଣ ଅରଣ୍ୟ । ଆଚାର୍ଯ୍ୟ ସେହି ଅରଣ୍ୟ ମଧ୍ୟରେ ପ୍ରବେଶ କଲେ । କିଛି ଦୂର ଅଗ୍ରସର ହୋଇ ଦେଖିଲେ ଯେ, ଅନେକ ଲୋକ ମହା କୋଳାହଳ କରୁଛନ୍ତି । ସେ ଅନୁସନ୍ଧାନ କରି ଜାଣିପାରିଲେ ଯେ, ଅମରୁକ ନାମକ ଜଣେ ରାଜା ମୃଗୟା କରିବାକୁ ଆସି ଦେହତ୍ୟାଗ କରିଛନ୍ତି ଓ ମନ୍ତ୍ରୀ ପ୍ରଭୃତି ରାଜଭୃତ୍ୟଗଣ ରାଜାଙ୍କୁ ବେଷ୍ଟନ କରି କ୍ରନ୍ଦନ କରୁଛନ୍ତି ।

ଆଚାର୍ଯ୍ୟ ଏହା ଦେଖି ପଦ୍ମପାଦଙ୍କୁ କହିଲେ, ''ପଦ୍ମପାଦ ! ବର୍ତ୍ତମାନ ମହା ସୁଯୋଗ ଉପସ୍ଥିତ । ଚାଲ, ଆମେ ଗୋଟିଏ ନିର୍ଜନ ଗୁହା ଅନ୍ୱେଷଣ କରିବା । ସେଠାରେ ତୁମେମାନେ ମୋ ଶରୀରକୁ ରକ୍ଷା କରିବ । ମୁଁ ଏହି ରାଜଶରୀରରେ ପ୍ରବେଶ କରି ମୋ କାର୍ଯ୍ୟ ସିଦ୍ଧି କରିବି ।'' ବହୁ ଅନୁସନ୍ଧାନ ପରେ ଗୋଟିଏ ନିରାପଦ ସ୍ଥାନ ଦେଖି ଆଚାର୍ଯ୍ୟ କହିଲେ, ''ମୁଁ ଏହି ଗୁହାରେ ଶରୀର ରକ୍ଷାକରି ରାଜଶରୀରରେ ପ୍ରବେଶ କରିବି । ତୁମେମାନେ ସାବଧାନରେ ମୋର ଏ ଶରୀରକୁ ରକ୍ଷା କରିବ । ଏକମାସ ପରେ ମୁଁ ପ୍ରତ୍ୟାବର୍ତ୍ତନ କରିବି । ତୁମାମାନଙ୍କର କୌଣସି ଚିନ୍ତାର କାରଣ ନାହିଁ ।''

ଏହି କଥା ଶୁଣି ପଦ୍ମପାଦ ବିଚଳିତ ହୋଇ କହିଲେ, ''ପ୍ରଭୁ ! ଆପଣ ସର୍ବଜ୍ଞ ପୁରୁଷ ଓ ଆପଣଙ୍କର ଅବିଦିତ ହୋଇ କିଛି ନାହିଁ । ଆଜି ମୁଁ ଭକ୍ତିରସହିତ ଆପଣଙ୍କ ଚରଣରେ କିଛି ନିବେଦନ କରିବାକୁ ମନସ୍ଥ କରିଅଛି । ଦେବ ! ଏହି ବାଚାଳ ଶିଷ୍ୟକୁ କୃପାକରି କ୍ଷମା କରିବେ । ଗୁରୁଦେବ ! ବିଷୟାନୁରାଗ ଅତି ଭୀଷଣ । ଏହାଦ୍ୱାରା ଅନେକ ସ୍ଥଳରେ ତାପସମାନଙ୍କର ବ୍ରତ ଭଙ୍ଗ ହୁଏ । ଆପଣ ସବୁବିଷୟରେ କୃତୀ ଏବଂ ଦକ୍ଷ । ଏ ସମସ୍ତ ବିବେଚନା କରି ଯାହା କର୍ତ୍ତବ୍ୟ, ତାହା କରନ୍ତୁ । ଆପଣ ନିନ୍ଦନୀୟ କାମଶାସ୍ତ୍ର ବିଷୟରେ ରତ ହେଲେ ଏହି ଜଗତ ଆଶ୍ରୟଶୂନ୍ୟତା ବା ଅନବସ୍ଥା ଦୋଷରେ କଳୁଷିତ ହୋଇଯିବ । ଆପଣ କେବେହେଲେ କର୍ତ୍ତବ୍ୟବିସ୍ମୃତ ହେବେ ନାହିଁ । ଗୋରକ୍ଷ ମୁନି ମତ୍ସେନ୍ଦ୍ରରାଜାଙ୍କ କଥା ଆପଣ ଜାଣନ୍ତି । ସୁତରାଂ ମୋର ଆପଣଙ୍କୁ ଅଧିକ କହିବା ଧୃଷ୍ଟତା ମାତ୍ର ।''

ଶଙ୍କର ସବୁ ଶୁଣି ପଦ୍ମପାଦଙ୍କୁ ଆଶ୍ୱାସ ପ୍ରଦାନ କରି କହିଲେ—"ବତ୍ସ ପଦ୍ମପାଦ ! ତୁମେମାନେ କୌଣସି ଚିନ୍ତା କର ନାହିଁ । ତୁ ଯାହା କହିଲୁ ସମସ୍ତ ସତ୍ୟ । ତଥାପି ତୁମେମାନେ ସାବଧାନରେ ମୋ ଶରୀରକୁ ରକ୍ଷାକରିବ । ଗୋପବଧୂମାନେ ଶ୍ରୀକୃଷ୍ଣଙ୍କ ସଙ୍ଗିନୀ ହୋଇ ମଧ୍ୟ ଯେପରି ତାଙ୍କର ମନ ହରଣ କରିପାରି ନଥିଲେ, ସେହିପରି ଯେଉଁ ବ୍ୟକ୍ତି ବୈଷୟକ ପଦାର୍ଥରେ ବୀତରାଗ ହୋଇପାରିଛନ୍ତି, ବିଷୟ ତାଙ୍କର ମନ କେବେହେଲେ ହରଣ କରିପାରିବ ନାହିଁ । ବତ୍ସ ! ମନର ସଂକଳ୍ପ ହିଁ ସମସ୍ତ କାମନାର ମୂଳ କାରଣ । ଶ୍ରୀକୃଷ୍ଣଙ୍କର ସଂକଳ୍ପ ନ ଥିବାରୁ କାମନାର ଉଦୟ ହୋଇପାରି ନ ଥିଲା । ତେଣୁ ମୋର କାମ ପଦାର୍ଥ ଉପରେ କଦାପି ଅନୁରାଗ ହେବ ନାହିଁ । ଆମେ କଳ୍ପନାବଳରେ ଯାହା ଦର୍ଶନ କରିଥାଉ, ଏହା ଈଶ୍ୱରଙ୍କ ସତ୍ତା ବ୍ୟତୀତ ଅନ୍ୟ କିଛି ନୁହେଁ । ଏହି ଜଗତ ମିଥ୍ୟା ବୋଲି ଭାବି କର୍ମରେ ଲିପ୍ତ ହେଲେ ବନ୍ଧନ ସମ୍ଭବ ହେବ ନାହିଁ । ଯେପରି ସ୍ୱପ୍ନରେ ସୁକୃତ-ଦୁଷ୍କୃତ ସମସ୍ତ ଅନୁଷ୍ଠିତ ହେଲେ ମଧ୍ୟ ଜାଗତ୍ର ଅବସ୍ଥାରେ ଏହି ବିଷୟରେ ମିଥ୍ୟା ଜ୍ଞାନ ହେବାରୁ ତାହାର କୌଣସି ଫଳ ଉଦୟ ହୁଏ ନାହିଁ, ଏହି ଜଗତ ମଧ୍ୟ ସେହିପରି ବୋଲି ଜାଣିବ । ପରମାର୍ଥବିତ୍ ବ୍ୟକ୍ତି କୌଣସି ପାପ ବା ପୁଣ୍ୟରେ ଲିପ୍ତ ହୁଅନ୍ତି ନାହିଁ । ବତ୍ସ ! ମୁଁ ଏହି ଦେହରେ ଥାଇ କାମଶାସ୍ତ୍ରର ଅନୁଶୀଳନ କଲେ ମଧ୍ୟ ମୋର କୌଣସି ଦୋଷ ହେବାର ସମ୍ଭାବନା ନ ଥିଲା; ତଥାପି ସାଧୁଜନୋଚିତ ଶିଷ୍ଟାଚାର ରକ୍ଷା କରିବାନିମିତ୍ତ ମୁଁ ଅନ୍ୟ ଶରୀରରେ ପ୍ରବେଶ କରି କାମଶାସ୍ତ୍ରର ଆଲୋଚନା କରିବାପାଇଁ ମନସ୍ଥ କରିଅଛି ।"

ତଦନନ୍ତର ଶିଷ୍ୟମାନେ ଗୁରୁଦେବଙ୍କ ଆଜ୍ଞାପାଳନରେ ସ୍ୱୀକୃତ ହେବାରୁ ଆଚାର୍ଯ୍ୟ ବିଦାୟ ଗ୍ରହଣ କରି ଯୋଗବଳରେ ଅତିବାହିକ ଦେହ (ଜ୍ଞାନେନ୍ଦ୍ରିୟ, କର୍ମେନ୍ଦ୍ରିୟ, ପ୍ରାଣ, ମନ ଓ ବୁଦ୍ଧି) ଧାରଣପୂର୍ବକ ସେହି ଅମରୁକ ରାଜାଙ୍କ ଶରୀରରେ ପ୍ରବେଶ କଲେ । ସେ ପ୍ରଥମେ ପ୍ରାଣବାୟୁ ସଞ୍ଚାଳନପୂର୍ବକ ମସ୍ତକର ରନ୍ଧ୍ରପଥ ଦେଇ ବହିର୍ଗତ ହେଲେ ଏବଂ ସଙ୍ଗେ ସଙ୍ଗେ ମୃତ ରାଜଶରୀରରେ ମସ୍ତକ-ରନ୍ଧ୍ରପଥ ଦେଇ ପ୍ରବେଶ କଲେ । ଏଣେ ରାଜାଙ୍କ ଶରୀରରେ ଜୀବନର ଲକ୍ଷଣ ପ୍ରକାଶିତ ହେଲା । ରାଜା ଭୂମିଶଯ୍ୟା ତ୍ୟାଗ କରି ଦଣ୍ଡାୟମାନ ହେଲେ । ରାଜାଙ୍କ ପୁନର୍ଜୀବନ-ଲାଭ ଦର୍ଶନ କରି ସମସ୍ତେ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ନାନା ଗୀତ, ବାଦ୍ୟ, ନୃତ୍ୟଦ୍ୱାରା ରାଜଭବନରେ ଉତ୍ସବ କରିବାକୁ ଲାଗିଲେ ।

ପୁରୋହିତମାନେ ଶାନ୍ତିକର୍ମ ସମାପ୍ତ କରି ରାଜାଙ୍କୁ ବିବିଧ ପ୍ରକାର ଯଜ୍ଞ ସମ୍ପାଦନ କରିବାକୁ ଉପଦେଶ ପ୍ରଦାନ କଲେ । ରାଜଶରୀର ପ୍ରବିଷ୍ଟ ଶଙ୍କର ରାଜଧାନୀରେ ଉପସ୍ଥିତ ହୋଇ ବିବିଧ ସାନ୍ତ୍ୱନାପୂର୍ଣ୍ଣ ବାକ୍ୟରେ ଆତ୍ମୀୟମାନଙ୍କୁ ତୁଷ୍ଟ କଲେ । ସେ ଅମାତ୍ୟମାନଙ୍କ ସହିତ ପରାମର୍ଶ କରି ଅତି ସୁନ୍ଦରଭାବରେ ରାଜ୍ୟପାଳନ କରିବାକୁ ଲାଗିଲେ । ତାଙ୍କ ରାଜପଦାରୋହଣ ପରଠାରୁ ରାଜ୍ୟରେ ଅଭିନବ ପରିବର୍ତ୍ତନ ଦେଖାଗଲା ଓ ନିୟମିତ ସୁବୃଷ୍ଟି ହେବାକୁ ଲାଗିଲା । ତରୁଲତାଗଣ ଅସମୟରେ ଫଳ ଧାରଣ କରିବାକୁ ଲାଗିଲେ । ଗୋମହିଷ ପ୍ରଭୃତି ପ୍ରଚୁର ଦୁଗ୍ଧ ଦାନ କଲେ । ପ୍ରଜାମାନେ ଆନନ୍ଦରେ ସ୍ୱଧର୍ମ ଅନୁଶୀଳନ କରିବାକୁ ଲାଗିଲେ । ସେ ଏକାକୀ ରହନ୍ତି; ରାତ୍ରିରେ କ'ଣ ଲେଖନ୍ତି ଓ ଭାବନ୍ତି । ରାତ୍ରିରେ ରାଜମହିଷୀମାନେ ନିକଟକୁ ଆସିଲେ ଅସୁସ୍ଥ ଥିବାର ଛଳନା ଦେଖାଇ ସେମାନଙ୍କୁ ବିଦାୟ ଦିଅନ୍ତି । ବୁଦ୍ଧି-କୌଶଳପୂର୍ଣ୍ଣ ବିଷୟରେ ପ୍ରଶ୍ନ କଲେ ରାଜା ଅପୂର୍ବ ଉପଦେଶ ପ୍ରଦାନ କରନ୍ତି; କିନ୍ତୁ ରାଜଅନ୍ତଃପୁରରେ ନିର୍ଲିପ୍ତଭାବରେ ଚଳନ୍ତି । କ୍ରମେ ଅନ୍ତଃପୁରବାସୀନୀମାନେ ବିଶେଷ ଅସନ୍ତୁଷ୍ଟ ହୋଇପଡ଼ିଲେ । ଫଳରେ ମନ୍ତ୍ରୀ ଓ ରାଣୀଙ୍କ ମନରେ କ୍ରମେ ସନ୍ଦେହ ଉପସ୍ଥିତ ହେଲା । ଶଙ୍କର କିଛି ଦିନ ସ୍ୱହସ୍ତରେ ରାଜ୍ୟ ଶାସନ କରି ବିଶ୍ୱସ୍ତ ଅମାତ୍ୟମାନଙ୍କ ଉପରେ ରାଜ୍ୟଭାର ଅର୍ପଣପୂର୍ବକ ବିଳାସିନୀ କାମିନୀମାନଙ୍କ ନିକଟରୁ କାମକଳା ତତ୍ତ୍ୱ ଅବଗତ ହେଲେ ଏବଂ ଶ୍ରଦ୍ଧା, ପ୍ରୀତି, ଧୃତି, କୀର୍ତ୍ତି ପ୍ରଭୃତି କାମକଳାର ତତ୍ତ୍ୱ ସକଳ ବୁଝିପାରିଲେ । କାମକଳା ପ୍ରମଦାମାନଙ୍କ ଦେହର କେଉଁ କେଉଁ ଅଂଶରେ ଆଶ୍ରୟ କରିଥାଏ, ଶୁକ୍ଳ-କୃଷ୍ଣପକ୍ଷ ଭେଦରେ କାମକଳାର ଅବସ୍ଥିତିର ନିୟମ ଇତ୍ୟାଦି ଅନୁଶୀଳନ କରି ଅଳ୍ପଦିନ ମଧ୍ୟରେ କାମଶାସ୍ତ୍ରରେ ସୁପଣ୍ଡିତ ହୋଇଉଠିଲେ ଏବଂ ମହର୍ଷି ବାତ୍ସ୍ୟାୟନ ପ୍ରଣୀତ କାମସୂତ୍ର ଓ ଏହାର ଭାଷ୍ୟ ପର୍ଯ୍ୟାଲୋଚନା କରି ଅଭିନବ ଅର୍ଥଯୁକ୍ତ ଖଣ୍ଡିଏ ସୁନ୍ଦର ପୁସ୍ତକ ରଚନା କଲେ । ପବିତ୍ର ଚିତ୍ତରେ ଏହି ଶାସ୍ତ୍ର ଆଲୋଚନା କଲେ ମାନବଦେହରେ ଅନେକ ଦୁରୂହ ବିଷୟରେ ଅଭିଜ୍ଞତା ଲାଭ ହୋଇଥାଏ ।

କ୍ରମେ ମନ୍ତ୍ରୀ ଓ ରାଣୀଙ୍କ ମନରେ ସନ୍ଦେହ ଉପସ୍ଥିତ ହେଲା । ମନ୍ତ୍ରୀ ରାଜାଙ୍କ କାର୍ଯ୍ୟକୁଶଳତା ଓ ବୁଦ୍ଧିର ଚମତ୍କାରିତା ଦର୍ଶନ କରି ସନ୍ଦିହାନ ହୋଇପଡ଼ିଲେ ଏବଂ ଗୋପନରେ ରାଣୀଙ୍କସହିତ ପରାମର୍ଶ କରି ସ୍ଥିର କଲେ ଯେ, ସମ୍ଭବତଃ

କୌଣସି ଯୋଗୀ ବିଶେଷ ଉଦ୍ଦେଶ୍ୟ ସାଧନନିମିତ୍ତ ମୃତ ରାଜଶରୀରରେ ପ୍ରବେଶ କରିଅଛନ୍ତି । ଏପରି ରାଜାଙ୍କ ଅଧୀନରେ ରାଜ୍ୟ ରହିଲେ ଶୀଘ୍ର ବିଶେଷ ଉନ୍ନତିର ସମ୍ଭାବନା । ଅତଏବ ଏହି ରାଜାଙ୍କୁ ଆବଦ୍ଧ କରି ରଖିବାକୁ ହେବ । ମନ୍ତ୍ରୀ କହିଲେ—"ଏହାଙ୍କର ନିଶ୍ଚୟ ଯୋଗୀ ଦେହ ଅଛି । ତାହା ନଷ୍ଟ ନ କଲେ ଏହାଙ୍କୁ ଏଠାରେ ଆବଦ୍ଧ କରି ରଖି ହେବ ନାହିଁ ।" ଶୀଘ୍ର ରାଣୀଙ୍କ ଆଦେଶରେ ରାଜ୍ୟ ସାରା ସର୍ବତ୍ର ଗୋପନରେ ଘୋଷଣା କରାଗଲା ଯେ, ରାଜ୍ୟ ମଧ୍ୟରେ ଯେପରି କୌଣସି ମୃତଦେହ ଅସତ୍‌କୃତ ହୋଇ ନ ରହେ । ଯେଉଁଠାରେ କୌଣସି ମୃତଦେହ ମିଳିବ, ରାଜବ୍ୟୟରେ ରାଜକର୍ମଚାରୀମାନେ ହିଁ ତାହାର ସତ୍କାର କରିବେ; ଅନ୍ୟଥା ଦଣ୍ଡନୀୟ ହେବେ । କେହି କୌଣସି ମୃତଦେହର ସନ୍ଧାନ ଦେଲେ ବିଶେଷ ଭାବରେ ମଧ୍ୟ ପୁରସ୍କୃତ ହେବେ ।

ରାଣୀଙ୍କ ଆଦେଶ ରାଜ୍ୟରେ ପ୍ରତିପାଳିତ ହେଲା । ରାଜକର୍ମଚାରୀମାନେ ପ୍ରତ୍ୟହ ମୃତଦେହଗୁଡ଼ିକୁ ଅଗ୍ନିଦ୍ୱାରା ସତ୍କାର କରିବାକୁ ଲାଗିଲେ । ରାଜ୍ୟର ଦରିଦ୍ର ପ୍ରଜାମାନେ ପୁରସ୍କାର ଲୋଭରେ ଚତୁର୍ଦ୍ଦିଗ ଭ୍ରମଣ କରି ମୃତଦେହକୁ ଅନୁସନ୍ଧାନ କରି ରାଜକର୍ମଚାରୀମାନଙ୍କୁ ସମ୍ବାଦ ଦେଲେ । କ୍ରମେ ଲୋକମାନେ ମୃତଦେହ ଅନୁସନ୍ଧାନ କରୁ କରୁ ଆଚାର୍ଯ୍ୟଙ୍କ ମୃତଶରୀରର ସନ୍ଧାନ ପାଇଲେ । ରାଜକର୍ମଚାରୀମାନେ ଗୁହା ନିକଟରେ ଉପସ୍ଥିତ ହୋଇ ଦେଖିଲେ ଯେ, ସମ୍ବାଦଟି ପ୍ରକୃତରେ ସତ୍ୟ । ସେମାନେ ସନ୍ନ୍ୟାସୀମାନଙ୍କୁ ରାଣୀଙ୍କ ଆଦେଶ ଶୁଣାଇ ମୃତଦେହର ସତ୍କାର କରିବାକୁ ଅନୁରୋଧ କଲେ । ଏହାଶୁଣି ଶିଷ୍ୟମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲେ । ପଦ୍ମପାଦ ପ୍ରଭୃତି ରାଜକର୍ମଚାରୀମାନଙ୍କୁ ନାନା ପ୍ରକାର ବୁଝାଇ ଏକ ସପ୍ତାହ ପର୍ଯ୍ୟନ୍ତ ଶରୀର ସତ୍କାର ନ କରିବାକୁ ପ୍ରାର୍ଥନା କଲେ । ମନ୍ତ୍ରୀଙ୍କ ଆଦେଶରେ ରାଜାଙ୍କ ନିକଟକୁ ଅନ୍ୟ କେହି ଯିବାକୁ ବାରଣ କରାଯାଇଥିବା ସମ୍ବାଦ ପାଇ ଗୁରୁଗତପ୍ରାଣ ପଦ୍ମପାଦ ଶେଷରେ ଗୋଟିଏ ଛଦ୍ମବେଶୀ ଗାୟକଦଳ ଗଠନ କରି ମନ୍ତ୍ରୀଙ୍କୁ ସଙ୍ଗୀତ ଶୁଣାଇ ସନ୍ତୁଷ୍ଟ କଲା ପରେ ରାଜାଙ୍କୁ ସଙ୍ଗୀତ ଶୁଣାଇବାନିମିତ୍ତ ଅନୁମତି ଭିକ୍ଷା କଲେ । ମନ୍ତ୍ରୀ ସେମାନଙ୍କ ଅଭିସନ୍ଧି ବୁଝି ନ ପାରି ଗାୟକମାନଙ୍କୁ ରାଜାଙ୍କ ନିକଟକୁ ଯାଇ ସଙ୍ଗୀତ ଗାନ କରିବାକୁ ଆଦେଶ ପ୍ରଦାନ କଲେ । ପଦ୍ମପାଦ ପ୍ରଧାନ ଗାୟକବେଶରେ କତିପୟ ସହଚରମାନଙ୍କ ସହିତ ରାଜାଙ୍କ ନିକଟରେ ଉପସ୍ଥିତ ହେଲେ । ସେ ଅନ୍ୟ

ସଙ୍ଗୀତ ଗାନ ନ କରି ତତ୍ତ୍ୱମସି ବାକ୍ୟଘଟିତ ଗୋଟିଏ ସଙ୍ଗୀତ ଗାନ କରି ଆତ୍ମପରିଚୟ ପ୍ରଦାନ କଲେ ଏବଂ କୌଶଳରେ ଆଚାର୍ଯ୍ୟଙ୍କୁ ତାଙ୍କ ପରିତ୍ୟକ୍ତ ଦେହର ଅବସ୍ଥାନ ନିବେଦନ କଲେ । ଆଚାର୍ଯ୍ୟ ତତ୍କ୍ଷଣାତ୍ ରାଜନବରକୁ ଯାଇ ସ୍ୱରଚିତ ସେହି କାମଶାସ୍ତ୍ର ଖଣ୍ଡିକ ଘେନି ଆସି ପୁରସ୍କାରସ୍ୱରୂପ ଗାୟକରୂପୀ ପଦ୍ମପାଦଙ୍କ ହସ୍ତରେ ଅର୍ପଣ କଲେ ଏବଂ ଗାୟକମାନେ ବହୁଦୂର ଯିବା ପରେ ମନ୍ତ୍ରୀଙ୍କସହିତ ପରାମର୍ଶ କରି ଯୁବରାଜଙ୍କ ଉପରେ ଶାସନଭାର ନ୍ୟସ୍ତ କରି ରାଜଦେହ ତ୍ୟାଗପୂର୍ବକ ସ୍ୱଦେହକୁ ଫେରି ଆସିଲେ । ପଦ୍ମପାଦଙ୍କୁ ଏତକି କାର୍ଯ୍ୟ କରିବାକୁ ପ୍ରାୟ ଏକ ସପ୍ତାହ ଅତୀତ ହୋଇଗଲା ।

ରାଜକର୍ମଚାରୀମାନେ ଆଚାର୍ଯ୍ୟଙ୍କ ଶିଷ୍ୟମାନଙ୍କର ବହୁ ବାଧା ସତ୍ତ୍ୱେ ତାଙ୍କ ଶରୀରକୁ ନେଇ ଚିତା ଉପରେ ରଖି ଅଗ୍ନି ସଂଯୋଗ କରିଦେଲେ । ଠିକ୍ ଏହି ସମୟରେ ପଦ୍ମପାଦ ଓ ତାଙ୍କର ସଙ୍ଗୀମାନେ ସେଠାରେ ଉପସ୍ଥିତ ହୋଇ ଗୁରୁଦେବଙ୍କ ଶରୀରର ଏପରି ଅବସ୍ଥା ଦେଖି ବିଶେଷ ଶୋକାକୁଳିତ ହୋଇପଡ଼ିଲେ । ଏଣେ ଆଚାର୍ଯ୍ୟଙ୍କ ଶରୀରରେ ଜୀବନଲକ୍ଷଣ ପ୍ରକାଶ ପାଇଲା । ଜୀବନ୍ତ ବ୍ୟକ୍ତିକୁ ଦଗ୍ଧ କର ନାହିଁ ବୋଲି ସମସ୍ତେ ଚିତ୍କାର କରିଉଠିଲେ । ଆଚାର୍ଯ୍ୟ ଚିତା ଉପରେ ବସି ସଙ୍କଟନାଶନ ଲକ୍ଷ୍ମୀ-ନୃସିଂହ ସ୍ତବ ପାଠ କରି ଅଗ୍ନିସ୍ତମ୍ଭନ କରିଦେଲେ । ରାଜକର୍ମଚାରୀମାନେ ଭୀତତ୍ରସ୍ତ ହୋଇ ସେଠାରୁ ପଳାୟନ କଲେ । ଶିଷ୍ୟମାନେ ଆଚାର୍ଯ୍ୟଙ୍କ ସୁସ୍ଥତା ସମ୍ପାଦନ କରିବାରେ ବ୍ୟସ୍ତ ହୋଇପଡ଼ିଲେ । ଶଙ୍କର ଆଶୀର୍ବାଦ କରି କହିଲେ, "ଶିଷ୍ୟଗଣ ! ତୁମ୍ଭେମାନେ ବ୍ୟସ୍ତ ହୁଅ ନାହିଁ । ମୋ ଦେହରେ ବିଶେଷ କିଛି କ୍ଷତି ହୋଇନାହିଁ ।" ଗ୍ରନ୍ଥଟି ନିରାପଦରେ ଅଛି କି ନାହିଁ ବୋଲି ପ୍ରଶ୍ନ କରିବାରେ ପଦ୍ମପାଦ ଗ୍ରନ୍ଥ ପ୍ରଦର୍ଶନ କଲେ । ଏହା ପରେ ଶିଷ୍ୟମାନଙ୍କ ସହ ଆଚାର୍ଯ୍ୟ ଦେବ ମହୀଷ୍ମତୀନଗର ଉଦ୍ଦେଶ୍ୟରେ ପ୍ରସ୍ଥାନ କଲେ ।



# ମଣ୍ଡନ ମିଶ୍ରଙ୍କ ସନ୍ନ୍ୟାସ

ଶଙ୍କର ମହୀଷ୍ମତୀ ନଗରରେ ପଦାର୍ପଣ କରି ଦେଖିଲେ ମଣ୍ଡନ ମିଶ୍ରଙ୍କର ପୂର୍ବ ଅଭିମାନ ଆଦୌ ନାହିଁ । ଯାଗ-ଯଜ୍ଞ ପ୍ରତି ସେ ଆସ୍ଥାହୀନ ହୋଇପଡ଼ିଛନ୍ତି । ତାଙ୍କର ସଂସାରରେ ଆସକ୍ତି ସଂପୂର୍ଣ୍ଣ ଶିଥିଳ ହୋଇଯାଇଛି । ସେ ଶଙ୍କରଙ୍କୁ ଦେଖି କହିଲେ, ''ଯତିବର ! ମୋର ଗୃହ, ମୋର ଶରୀର ଓ ଅନ୍ୟାନ୍ୟ ଯାହା ସବୁ 'ମୋର' ବୋଲି ଥିଲା, ଆଜିଠାରୁ ସେ ସମସ୍ତ ଆପଣଙ୍କର ।'' ଏହା କହି ମଣ୍ଡନ ଆଚାର୍ଯ୍ୟଙ୍କ ଚରଣ ତଳେ ନିପତିତ ହେଲେ । ସରସ୍ୱତୀ ଦେବୀଙ୍କୁ ଲକ୍ଷ୍ୟ କରି ଆଚାର୍ଯ୍ୟ କହିଲେ, ''ମା ! ନିଅନ୍ତୁ ଏହି ଗ୍ରନ୍ଥ । ଏଥିରେ ଆପଣଙ୍କ ପ୍ରଶ୍ନର ସମସ୍ତ ଉତ୍ତର ଦିଆଯାଇଛି ।'' ମଣ୍ଡନ ଓ ସରସ୍ୱତୀ ଦେବୀ ଗ୍ରନ୍ଥଖଣ୍ଡିକ ଦେଖିବାକୁ ଲାଗିଲେ । ତତ୍ପରେ ସରସ୍ୱତୀ ଦେବୀ କହିଲେ, ''ଯତିବର ! ଏଥର ଆପଣଙ୍କର ଜୟ ସଂପୂର୍ଣ୍ଣ ହେଲା । ଆପଣ ଆମ ଦୁଇଜଣଙ୍କୁ ପରାଜୟ କରିବେ, ଏହା ମୁଁ ପୂର୍ବରୁ ଜାଣିଥିଲି । ମୁଁ ଯେତେବେଳେ ବାଳିକା ଥିଲି, ସେ ସମୟରେ ଦିନେ ଜଣେ ତପସ୍ୱୀ ଆମ ଗୃହକୁ ଆସିଥିଲେ । ମୋ ଜନନୀ ତାଙ୍କୁ ଯଥାବିଧି ପାଦ୍ୟା-ଅର୍ଘ୍ୟ ଦ୍ୱାରା ପୂଜା କରିବାରୁ ତପସ୍ୱୀ ପ୍ରସନ୍ନ ହୋଇ ତାଙ୍କର ପୂଜା ଗ୍ରହଣପୂର୍ବକ ମୋର ଭବିଷ୍ୟତ ସମ୍ବନ୍ଧରେ ବର୍ତ୍ତମାନ ଯାହା ସବୁ ଘଟିଗଲାଣି ସେ ସମସ୍ତ କହିଥିଲେ । ତନ୍ମଧ୍ୟରେ ସେ ବହୁ ବିସ୍ମୟଜନକ କଥା ବ୍ୟକ୍ତ କରିଥିଲେ । ସେ କହିଥିଲେ, ବେଦ-ବିଦ୍ୱେଷୀ ବୌଦ୍ଧ ପ୍ରଭୃତି ଦୁଷ୍ଟବାଦୀମାନେ ପ୍ରଳୟ ହୋଇ ପୃଥିବୀରେ ସମସ୍ତ ବୈଦିକପଥ ବିପନ୍ନ କରୁଅଛନ୍ତି । ଏହି ସମସ୍ତ ବିଷୟର ପୁନରୁଦ୍ଧାର କରିବା ନିମିତ୍ତ ବେଦସ୍ରଷ୍ଟା ବ୍ରହ୍ମାଙ୍କ ସଦୃଶ ମଣ୍ଡନ ମିଶ୍ର ନାମକ ଜଣେ ପଣ୍ଡିତ ଭୂତଳରେ ଜନ୍ମଗ୍ରହଣ କରିଛନ୍ତି । ତୁମର ଏହି କନ୍ୟା ତାଙ୍କୁ ପତି ରୂପରେ ପ୍ରାପ୍ତ ହୋଇ ନାନାବିଧ ଯାଗ-ଯଜ୍ଞ ସମ୍ପନ୍ନ କରିବ, ଅନେକ ପୁତ୍ର ସନ୍ତାନ ପ୍ରସବ କରିବ ଏବଂ ଅତିଶୟ ସୁଖ ସମୃଦ୍ଧି ଲାଭ କରିବ । ଅନନ୍ତର କୁମତାବଲମ୍ବୀ ବୌଦ୍ଧମାନେ ଯୁକ୍ତିବଳରେ ଉପନିଷଦର ପ୍ରତିପାଦ୍ୟ ପରଂବ୍ରହ୍ମଙ୍କୁ ଏକାବେଳକେ ନିରାକରଣ କଲାବେଳେ ସେହି ସବୁ ସିଦ୍ଧାନ୍ତ ଖଣ୍ଡନପୂର୍ବକ ଅଦ୍ୱୈତବାଦର ପୁନଃ ସ୍ଥାପନ ନିମିତ୍ତ ମହାଦେବଙ୍କ ଅଂଶରେ ଭଗବାନ ଶଙ୍କରାଚାର୍ଯ୍ୟ ଜନ୍ମ ଗ୍ରହଣ କରିବେ । ସେହି ଯତିବେଶଧାରୀ ଶଙ୍କରଙ୍କ ସହିତ ତୁମ ଜାମାତାଙ୍କର ବହୁକାଳ

ଶାସ୍ତ୍ରୀୟ ବିଚାର ହେବ । ତତ୍ପରେ ସେ ଶଙ୍କରଙ୍କ ନିକଟରେ ପରାଜୟ ସ୍ୱୀକାର କରିବେ, ଇତ୍ୟାଦି; ଏ ତ ସମସ୍ତ ଘଟିଗଲାଣି । ତେଣୁ ମୋର ସ୍ୱାମୀ ନିଶ୍ଚୟ ଆପଣଙ୍କ ଶିଷ୍ୟତ୍ୱ ସ୍ୱୀକାର କରିବେ । ଦିବାକରର ତେଜରେ ଚନ୍ଦ୍ର ପ୍ରଭୃତି ଜ୍ୟୋତିଷ୍କମାନଙ୍କର ଯେପରି ଅଭିନବତ୍ୱ ଲାଭ ହୁଏ, ଆପଙ୍କ ନିକଟରେ ପରାଜିତ ହୋଇ ଆମର ସେହିପରି ଅଭିନବତ୍ୱ ଲାଭ ହୋଇଅଛି । ଆପଣ ସର୍ବଜ୍ଞ । ପୃଥିବୀର ସମୁଦାୟ ପଣ୍ଡିତମଣ୍ଡଳୀ ସମବେତ ହେଲେ ମଧ୍ୟ ଆପଣଙ୍କ ସହିତ ବାଦରେ ଜୟଲାଭ କରିପାରିବେ ନାହିଁ । ଅତଏବ ଆମେ ଯେ ପରାଭୂତ ହେଲୁ ଏହା ବିସ୍ମୟକର ନୁହେଁ ।''

ତତ୍ପରେ ଉଭୟ-ଭାରତୀ ମନେ ମନେ ଚିନ୍ତା କରିବାକୁ ଲାଗିଲେ ମୋର ସ୍ୱାମୀ ତ ବର୍ତ୍ତମାନ ସନ୍ନ୍ୟାସ ଗ୍ରହଣ କରିବାକୁ ଯାଉଛନ୍ତି । ସ୍ୱାମୀ ସନ୍ନ୍ୟାସ ଗ୍ରହଣ କଲେ ସ୍ତ୍ରୀକୁ ବୈଧବ୍ୟ ଭୋଗିବାକୁ ହୁଏ । ମୋର ସ୍ୱାମୀ ସ୍ୱଚକ୍ଷୁରେ ମୋର ବୈଧବ୍ୟ ଦଶା ନିରୀକ୍ଷଣ କରିବେ, ଏହା ଅତିଶୟ ଦୁଃଖଦାୟକ; ସୁତରାଂ ସ୍ୱାମୀଙ୍କ ସନ୍ନ୍ୟାସ ପୂର୍ବରୁ ମୋର ପ୍ରସ୍ଥାନ ମଙ୍ଗଳଜନକ । ଏହା ଭାବି ସରସ୍ୱତୀ ଦେବୀ ଶଙ୍କରଙ୍କୁ କହିଲେ—''ଯତିବର ! ଆପଣ ତ ସବୁ ଜାଣନ୍ତି । ମୋ ସ୍ୱାମୀଙ୍କର ଭାର ଆପଣ ଗ୍ରହଣ କରନ୍ତୁ ଆଉ ଏବଂ ମୋତେ ସ୍ୱଧାମକୁ ପ୍ରସ୍ଥାନ କରିବାଲାଗି ଅନୁମତି ଦିଅନ୍ତୁ ।'' ଆଚାର୍ଯ୍ୟ ସରସ୍ୱତୀ ଦେବୀଙ୍କର ଅଭିପ୍ରାୟ ବୁଝିପାରି କହିଲେ—''ମା ! ଆପଣ ସାକ୍ଷାତ୍ ଭଗବତୀ ଭାରତୀଙ୍କ ଅଂଶରେ ଅବତୀର୍ଣ୍ଣା । ଆପଣ ବାକ୍ୟର ଅଧିଷ୍ଠାତ୍ରୀ ଦେବୀ ଏବଂ ଚିତ୍‌ସ୍ୱରୂପା । ଆପଣ ଦେହରକ୍ଷା କଲେ ଦେଶରୁ ସର୍ବବିଦ୍ୟା ଅନ୍ତର୍ହିତ ହୋଇଯିବ । ମୋର ଶିଷ୍ୟମାନେ ଶୃଙ୍ଗେରୀ ଠାରେ ଗୋଟିଏ ମଠ ସ୍ଥାପନ କରିବାକୁ ଇଚ୍ଛା କରିଛନ୍ତି, ଆପଣ ସେଠାକୁ ଯାଇ ସେମାନଙ୍କୁ ବିଦ୍ୟା ପ୍ରଦାନ କରନ୍ତୁ ।''

ସରସ୍ୱତୀ ଦେବୀ କହିଲେ, ''ହେଉ ମୁଁ ସେଠାରେ ଦୈବୀ ଶରୀରରେ ଅବସ୍ଥାନ କରି ଆପଣଙ୍କର ପ୍ରାର୍ଥନା ପୂରଣ କରିବି । ଆପଣ ସେଠାରେ ଶ୍ରୀଯନ୍ତ୍ର ସ୍ଥାପନ କରିବେ । ମୁଁ ସେହିଠାରେ 'ଶାରଦା' ନାମରେ ବିରାଜିତ ରହି ଆପଣଙ୍କ ଅଭୀଷ୍ଟ ପୂରଣ କରିବି । ତତ୍ପରେ ସରସ୍ୱତୀ ଦେବୀ ଯୋଗବଳରେ ଦେହ ତ୍ୟାଗ କଲେ ।

ଏହାପରେ ମଣ୍ଡନ ଯଥାବିଧାନରେ ସନ୍ନ୍ୟାସ ଗ୍ରହଣ କଲେ । ଶଙ୍କର ତାଙ୍କୁ କହିଲେ, ‘‘ବିଜ୍ଞବର ! ସଂସାରର ମମତା ପରିତ୍ୟାଗ କର । କାରଣ ପ୍ରାଣୀମାନେ ବାହ୍ୟ ପ୍ରିୟବସ୍ତୁଗୁଡ଼ିକ ସହିତ ଯେତିକି ସମ୍ପର୍କ ରଖିବେ, ସେତିକି ଶୋକ-ଶଙ୍କୁ ସେମାନଙ୍କ ହୃଦୟରେ ପ୍ରୋଥିତ ହେବ । ଲୋକେ ଦିବାନିଶି ସୁଖ ଆଶାରେ ନାନା କାର୍ଯ୍ୟର ଅନୁଷ୍ଠାନ କରିଥାନ୍ତି; ମାତ୍ର ଏଥିରେ ସେମାନଙ୍କୁ କିଛି ମାତ୍ର ସୁଖ ମିଳେ ନାହିଁ । ପୁଣ୍ୟକାର୍ଯ୍ୟ ବ୍ୟତୀତ ଜୀବନରେ ସୁଖ କିମ୍ବା ଶାନ୍ତି ଲାଭ ହେବା ଅସମ୍ଭବ । ବେଦାନ୍ତଶାସ୍ତ୍ର ଆଲୋଚନାରେ ଯାହାଙ୍କର ବୁଦ୍ଧି ପରିପକ୍ୱ ହୋଇଅଛି, ଏକମାତ୍ର ତତ୍ତ୍ୱ ଉପଦେଶ ଶ୍ରବଣରେ ତାଙ୍କର ଆତ୍ମସାକ୍ଷାତ୍‌କାର ହୁଏ; କିନ୍ତୁ ଯେଉଁମାନେ ଅତିଶୟ ମୂଢ଼ ଓ ଅଜ୍ଞ, ସେମାନେ ଯଦି ଗୁରୁପାଦପଦ୍ମ ସେବା କରନ୍ତି ଓ ଗୁରୁଦେବଙ୍କ ବାକ୍ୟରେ ବିଶ୍ୱାସ ସ୍ଥାପନ କରନ୍ତି, ତାହାହେଲେ ସେମାନଙ୍କର କ୍ରମେ ଆତ୍ମସାକ୍ଷାତ୍‌କାର ଲାଭ ହୋଇଥାଏ ।’’ ଶଙ୍କରଙ୍କ ନିକଟରୁ ତତ୍ତ୍ୱପୂର୍ଣ୍ଣ ଉପଦେଶ ପ୍ରାପ୍ତ ହୋଇ ମଣ୍ଡନ କହିଲେ, ‘‘ଗୁରୁଦେବ ! ଆପଣଙ୍କ କଟାକ୍ଷପାତରେ ମୋର ଅଜ୍ଞାନାନ୍ଧକାର ବିଦୂରିତ ହେଲା ଓ ମୁଁ ଧନ୍ୟ ହେଲି ।’’ ଅନନ୍ତର ଶଙ୍କର ମଣ୍ଡନଙ୍କୁ ‘ସୁରେଶ୍ୱରାଚାର୍ଯ୍ୟ’ ନାମ ପ୍ରଦାନ କଲେ ଏବଂ ବ୍ରହ୍ମବିଦ୍ୟା ପ୍ରଚାରନିମିତ୍ତ ଆଦେଶ ଦେଲେ । ସେ ଏହି ସମୟରେ ମଣ୍ଡନଙ୍କୁ ତତ୍ତ୍ୱ-ଉପଦେଶ ଦେଇ ‘ତତ୍ତ୍ୱୋପଦେଶ’ ନାମକ ଖଣ୍ଡିଏ ସାର କଥାପୂର୍ଣ୍ଣ କ୍ଷୁଦ୍ରଗ୍ରନ୍ଥ ରଚନା କରିଥିଲେ ।



# ହସ୍ତାମଲକାଚାର୍ଯ୍ୟ ଓ ଆଚାର୍ଯ୍ୟ ଶଙ୍କର

ମଣ୍ଡନ ମିଶ୍ରଙ୍କ ପରାଜୟ ପରେ ଶଙ୍କରଙ୍କ ଶିଷ୍ୟମାନଙ୍କ ମନରେ ଦିଗ୍‌ବିଜୟବାସନା ବଳବତୀ ହୋଇଉଠିଲା । ସେମାନେ କେବଳ ଦିଗ୍‌ବିଜୟ ନିମିତ୍ତ ଆଚାର୍ଯ୍ୟଙ୍କୁ ଅନୁରୋଧ କରିବାକୁ ଲାଗିଲେ । ଆଚାର୍ଯ୍ୟ ଏ ସମସ୍ତ ଶୁଣି ଦିନେ କହିଲେ, ''ଯଶାକାଂକ୍ଷା ଜ୍ଞାନୀମାନଙ୍କର ମହାଶତ୍ରୁ । ତୁମେମାନେ ଏଥିପ୍ରତି ସର୍ବଦା ସାବଧାନ ରହ ।'' ଅବଶେଷରେ ଶିଷ୍ୟମାନଙ୍କର ଏକାନ୍ତ ଅନୁରୋଧରେ ସେ ଦକ୍ଷିଣାଭିମୁଖରେ ଯାତ୍ରା କଲେ । ମଣ୍ଡନ ମିଶ୍ରଙ୍କ ପରାଜୟ ସମ୍ବାଦ ଶୁଣି ଆଉ କେହି ଆଚାର୍ଯ୍ୟଙ୍କ ନିକଟକୁ ବିଚାରନିମିତ୍ତ ଆସିଲେ ନାହିଁ; କେବଳ ଉପଦେଶ ଶ୍ରବଣନିମିତ୍ତ ଆସିବାକୁ ଲାଗିଲେ ।

ନାନା ସ୍ଥାନ ଭ୍ରମଣ କରି ଆଚାର୍ଯ୍ୟ ଶ୍ରୀଶୈଳ ନାମକ ସ୍ଥାନରେ କିଛିଦିନ ଅବସ୍ଥାନ କଲେ । ସେଠାରେ ବିଭିନ୍ନ ସଂପ୍ରଦାୟବାଦୀମାନଙ୍କୁ ଅଦ୍ୱୈତ ମତରେ ଦୀକ୍ଷିତ କଲେ । ଶେଷରେ ଗୋକର୍ଣ୍ଣ ନାମକ ସ୍ଥାନରେ ଉପସ୍ଥିତ ହୋଇ ବିଖ୍ୟାତ ଶୈବ ସାଧକ ନୀଳକଣ୍ଠଙ୍କ ସହିତ ବିଚାର କରି ତାଙ୍କୁ ସ୍ୱମତକୁ ଆନୟନ କଲେ । ସେଠାରୁ ହରିଶଙ୍କରପୁର ପଥଦେଇ 'ମୂକମ୍ବିକା' ନାମକ ତୀର୍ଥରେ ଉପସ୍ଥିତ ହେବା ସମୟରେ ଗୋଟିଏ ମୃତ ବାଳକକୁ ପ୍ରାଣଦାନ ଦେଲେ ଓ ତାହାର ପିତାମାତାଙ୍କୁ ବିଦାୟଦେଇ ଅମ୍ବିକା ଦେବୀଙ୍କ ମନ୍ଦିରରେ ପ୍ରବେଶ କଲେ । ଦେବୀଙ୍କୁ ଦର୍ଶନ କଲାମାତ୍ରେ ଆଚାର୍ଯ୍ୟଙ୍କର ଆନନ୍ଦାଶ୍ରୁ ପ୍ରବାହିତ ହେବାକୁ ଲାଗିଲା ଏବଂ ସେ ଦେବୀଙ୍କର ଗୋଟିଏ ସ୍ତୋତ୍ର ରଚନା କରି ସ୍ତବ କରିବାକୁ ଲାଗିଲେ । ସ୍ତବ, ସ୍ତୋତ୍ର ଓ ପୂଜା-ଆରାଧନା ଶେଷକରି ସେଠାରେ ସେ ଅବସ୍ଥାନ କଲେ । ଏଣେ ମୃତ ବାଳକକୁ ଜୀବନଦାନ କରିଥିବା ସମ୍ବାଦ ପ୍ରଚାରିତ ହେବାରୁ ବହୁ ଗୃହସ୍ଥ ଓ ଧନୀ ବ୍ୟକ୍ତି ତାଙ୍କର ଶିଷ୍ୟତ୍ୱ ସ୍ୱୀକାର କଲେ । କେତେଦିନ ପରେ ଶ୍ରୀବେଲୀ ନାମକ ଏକ ବ୍ରାହ୍ମଣ ପ୍ରଧାନ ସ୍ଥାନରେ ସେ ଉପନୀତ ହେଲେ । ଏଠାରେ ଦୁଇ ସହସ୍ର ଅଗ୍ନିହୋତ୍ରୀ ବ୍ରାହ୍ମଣ ବାସ କରୁଥିଲେ । ଯଜ୍ଞାହୁତିର ଘୃତଗନ୍ଧରେ ସ୍ଥାନଟି ସୌରଭପୂର୍ଣ୍ଣ ଏବଂ ବେଦପାଠ ଧ୍ୱନିରେ ଚତୁର୍ଦ୍ଦିଗ ମୁଖରିତ ହୋଇଉଠୁଥିଲା । ଉକ୍ତ ନଗରର ମଧ୍ୟସ୍ଥଳରେ ପାର୍ବତୀ ଦେବୀ ଓ ପିନାକପାଣି ମହାଦେବଙ୍କ ମନ୍ଦିର ଥିଲା । ଆଚାର୍ଯ୍ୟ ସେହି ନଗର ମଧ୍ୟରେ ପ୍ରବେଶ କରି ଦେବଦର୍ଶନ କଲାପରେ

ଗୋଟିଏ ନିରୁପଦ୍ରବ ସ୍ଥାନରେ ଆସନ ଗ୍ରହଣ କଲେ । ବ୍ରାହ୍ମଣମାନେ ସମ୍ବାଦ ପାଇ ଦଳ ଦଳ ହୋଇ ମୀମାଂସକପ୍ରବର ସୁରେଶ୍ୱରଙ୍କୁ ଦର୍ଶନ କରିବାନିମିତ୍ତ ଆଗମନ କଲେ । ଏମାନେ ସମସ୍ତେ କର୍ମକାଣ୍ଡରେ ଅନୁରକ୍ତ ଓ ମୀମାଂସକ ମତାବଲମ୍ବୀ । ସୁତରାଂ ଆଚାର୍ଯ୍ୟଙ୍କ ଅଦ୍ୱୈତ ସିଦ୍ଧାନ୍ତର ବିରୋଧୀ; କିନ୍ତୁ ଏମାନଙ୍କ ନେତା ମଣ୍ଡନ ମିଶ୍ର ସନ୍ନ୍ୟାସ ଗ୍ରହଣ କରି ଆଚାର୍ଯ୍ୟଙ୍କ ସଙ୍ଗରେ ଅବସ୍ଥାନ କରୁଛନ୍ତି ଦେଖି ତର୍କଯୁଦ୍ଧ କରିବାକୁ ଜଣେ ହେଲେ ଅଗ୍ରସର ହେଲେ ନାହିଁ । ଆଚାର୍ଯ୍ୟଙ୍କ ଆଦେଶରେ ସୁରେଶ୍ୱର ଓ ପଦ୍ମପାଦ ହିଁ ଏମାନଙ୍କୁ ଉପଦେଶ ଦେବାକୁ ଲାଗିଲେ । ଅଦ୍ୱୈତ ମତରେ କର୍ମକାଣ୍ଡର ସ୍ଥାନ ଅଛି, ଅଧିକାର ଭେଦରେ କର୍ମକାଣ୍ଡର ମଧ୍ୟ ଆବଶ୍ୟକତା ରହିଛି । ଏହା ଜାଣି ବ୍ରାହ୍ମଣମାନେ ଆଉ ବିବାଦର ଅବକାଶ ମଧ୍ୟ ପାଇଲେ ନାହିଁ । ସେମାନେ ବ୍ରହ୍ମଜ୍ଞାନକୁ ବେଦର ପରମ ତାତ୍ପର୍ଯ୍ୟ ଜାଣି ସ୍ୱଧର୍ମାଚରଣରେ ଉତ୍ସାହିତ ହେଲେ ।

ଏହି ଗ୍ରାମରେ ପ୍ରଭାକର ନାମକ ଜଣେ ଶାସ୍ତ୍ରବିତ୍ ନିଷ୍ଠାବାନ ବ୍ରାହ୍ମଣ ବାସ କରୁଥିଲେ । ଯଥେଷ୍ଟ ଧନ ସମ୍ପତ୍ତି ଥିଲେ ମଧ୍ୟ ତାଙ୍କ ମନରେ ସୁଖ ନ ଥିଲା । କାରଣ ତାଙ୍କର ଏକମାତ୍ର ପୁତ୍ର ତ୍ରୟୋଦଶ ବର୍ଷ ଅତିକ୍ରମ କରିଥିଲେ ମଧ୍ୟ ତାହାର ବାକସ୍ଫୂର୍ତ୍ତି ହେଲା ନାହିଁ । ସେ ସର୍ବଦା ଜଡ଼ଙ୍କ ପରି ଅବସ୍ଥାନ କରେ । ଖୁଆଇଦେଲେ ଖାଏ, ଶୁଆଇଦେଲେ ଶୁଏ, ଉଠାଇଦେଲେ ଉଠେ; ଯେପରି କି ସେ ଗୋଟିଏ ଜୀବିତ ମାଂସପିଣ୍ଡ । ପ୍ରଭାକର ଆଚାର୍ଯ୍ୟଙ୍କର ଅଦ୍ଭୁତ କୀର୍ତ୍ତିକଥା ଶ୍ରବଣ କରି କିଞ୍ଚିତ୍ ଫଳମୂଳାଦି ଉପହାରସହ ଆଚାର୍ଯ୍ୟଙ୍କର ସମୀପରେ ଉପସ୍ଥିତ ହୋଇ ପୁତ୍ରର ଅବସ୍ଥା ବର୍ଣ୍ଣନା କରି ତାହାର ଜଡ଼ତ୍ୱ ଦୂରକରିବାନିମିତ୍ତ ନିବେଦନ କଲେ ଏବଂ ପଦଯୁଗଳ ଧାରଣପୂର୍ବକ ଅଶ୍ରୁବିସର୍ଜନ କରିବାକୁ ଲାଗିଲେ । ଦୟାର ଅବତାର ଶଙ୍କର ଏହା ଶୁଣି ବାଳକକୁ ସମ୍ବୋଧନ କରି କହିଲେ, ''ଉଠ ବତ୍ସ, ଉଠ !'' ବାଳକଟିକୁ ଉଠାଇ ବସାଇଦେବା ସଙ୍ଗେ ସଙ୍ଗେ ସେ ପୁଣି ପଚାରିଲେ, ''ବାଳକ ! ତୁମେ କିଏ ? ତୁମର ନାମ କ'ଣ ? ତୁମେ କେଉଁଠାରୁ ଆସିଅଛ ? କେଉଁଠାକୁ ଯିବ ? ତୁମେ କ'ଣ ଇଚ୍ଛା କରୁଅଛ ?'' ଏ କଥା ଶୁଣି ବାଳକ ଆତ୍ମସ୍ୱରୂପର ପରିଚାୟକ ତ୍ରୟୋଦଶ ଶ୍ଳୋକାତ୍ମକ ପ୍ରସିଦ୍ଧ ହସ୍ତାମଳକ ସ୍ତୋତ୍ରଟି ଧୀରେ ଧୀରେ ଅତି ବିଶୁଦ୍ଧଭାବରେ ପାଠ କରିବାକୁ ଲାଗିଲା । ସମସ୍ତେ ଅବାକ୍ । ବାଳକର ପିତା ହତବୁଦ୍ଧି ହୋଇଗଲେ ଏବଂ ଆଚାର୍ଯ୍ୟଙ୍କ ଶିଷ୍ୟଗଣ ବିସ୍ମୟରେ ଅଭିଭୂତ ହୋଇପଡ଼ିଲେ ।

ସ୍ତୋତ୍ର ସମାପ୍ତ ହେଲା । ବାଳକ ପୂର୍ବପରି ବସି ରହିଲା । ପ୍ରଭାକର ଆନନ୍ଦରେ ବିଭୋର ହୋଇ ପୁତ୍ରକୁ ଆଲିଙ୍ଗନ କରି ଆଚାର୍ଯ୍ୟଙ୍କ ପଦଧୂଳି ବାଳକର ମସ୍ତକରେ ଅର୍ପଣ କଲେ । ସ୍ତୋତ୍ରର ଅର୍ଥ ସ୍ମରଣ କରି ଆଚାର୍ଯ୍ୟଙ୍କ ଶିଷ୍ୟଗଣ ଚମତ୍କୃତ ହେଲେ । ଏପରି ଗଭୀର ଅର୍ଥପୂର୍ଣ୍ଣ ଆତ୍ମଜ୍ଞାନୋପଦେଶ ସ୍ତୋତ୍ର ସେମାନେ ଅନ୍ୟତ୍ର ଶୁଣିଛନ୍ତି କି ନା ଭାବିବାକୁ ଲାଗିଲେ । ଆଚାର୍ଯ୍ୟ କହିଲେ, ‘‘ପଦ୍ମପାଦ ! ଏହା ପ୍ରସିଦ୍ଧ ହସ୍ତାମଳକ ସ୍ତୋତ୍ର । ନିର୍ଗୁଣ ବ୍ରହ୍ମୋପାସକ ଜ୍ଞାନୀମାନଙ୍କର ଏହା ଅତ୍ୟନ୍ତ ଆଦରର ବସ୍ତୁ । ତୁମେମାନେ ମଧ ଏ ସ୍ତୋତ୍ର ପାଠକରିବାକୁ ଅଭ୍ୟାସ କରିବ ।’’ ଏହାପରେ ଆଚାର୍ଯ୍ୟ ସ୍ତୋତ୍ରର ବ୍ୟାଖ୍ୟା କରିବାକୁ ଲାଗିଲେ ।

ଅନନ୍ତର ଆଚାର୍ଯ୍ୟ ପ୍ରଭାକରଙ୍କୁ ଲକ୍ଷ୍ୟ କରି କହଲେ, ‘‘ଏ ପୁତ୍ର ସଂସାରରେ ରହିବାର ଯୋଗ୍ୟ ନୁହେଁ । ବ୍ରହ୍ମଜ୍ଞାନ ଏହାଠାରେ ପୂର୍ଣ୍ଣଭାବରେ ବିକଶିତ ହୋଇଅଛି । ଏ ବାଳକ ବ୍ରହ୍ମଜ୍ଞମାନଙ୍କର ଆଦର୍ଶସ୍ଥାନୀୟ । ପ୍ରାରବ୍ଧ କ୍ଷୟନିମିତ୍ତ ଏ ଦେହ ଧାରଣ କରି ରହିଅଛି । ଏହାଦ୍ୱାରା ଆପଣଙ୍କର କୌଣସି ଅଭୀଷ୍ଟ ସିଦ୍ଧ ହେବ ନାହିଁ । ଆପଣ ମୋତେ ଏ ବାଳକକୁ ପ୍ରଦାନ କରନ୍ତୁ ।’’

ଏହା ଶୁଣି ପ୍ରଭାକରଙ୍କ ମସ୍ତକରେ ଯେପରି ବଜ୍ରପାତ ହେଲା । ସେ ପଣ୍ଡିତ ହେଲେ ମଧ ପୁତ୍ରସ୍ନେହର ଦୁଶ୍ଛେଦ୍ୟ ବନ୍ଧନ ଛେଦନ କରିବା ଭଳି ଜ୍ଞାନ ସେ ପର୍ଯ୍ୟନ୍ତ ଲାଭ କରିପାରି ନ ଥିଲେ । ଜଡ଼ପୁତ୍ର ବାଞ୍ଛନୀୟ; ତଥାପି ତାହାର ବିରହ ଅସହନୀୟ । ସେ ଯୁକ୍ତକରରେ ଆଚାର୍ଯ୍ୟଙ୍କୁ କହିଲେ; ‘‘ଭଗବନ୍ ! ଏହାର ଜନନୀ ନିତାନ୍ତ ପୁତ୍ରଗତପ୍ରାଣା । ମୁଁ ଏହାର ଅଦର୍ଶନ ସହ୍ୟ କରି ପାରିବି ସତ ମାତ୍ର ସେ କଦାପି ତାହା ସହ୍ୟ କରି ପାରିବ ନାହିଁ । ଆଚାର୍ଯ୍ୟ ସେଥିରେ ଅନୁମତି ପ୍ରଦାନ କରିବାରେ ପ୍ରଭାକର ପୁତ୍ରକୁଁ ନେଇ ଗୃହକୁ ପ୍ରତ୍ୟାଗମନ କଲେ । ସେ ଆନନ୍ଦ ଓ ନିରାନନ୍ଦରେ ଦୋଦୁଲ୍ୟମାନ ହୋଇ ପତ୍ନୀଙ୍କୁ ସମୁଦାୟ ବୃତ୍ତାନ୍ତ କହିଲେ । ବ୍ରାହ୍ମଣୀ ମଧ ଯୁଗପତ୍ ଆନନ୍ଦ ଓ ଦୁଃଖରେ ଅଭିଭୂତ ହୋଇପଡ଼ିଲେ । ଶେଷରେ ପୁତ୍ରକୁ କଥା କହିବାନିମିତ୍ତ ବାରମ୍ବାର ଅନୁରୋଧ କଲେ ମଧ ପୁତ୍ର ପୂର୍ବପରି ଜଡ଼ଭାବାପନ୍ନ ହୋଇ ରହିଲା । ଅନନ୍ତର ସମସ୍ତ ଆଶା ତ୍ୟାଗ କରି ବ୍ରାହ୍ମଣଦମ୍ପତି ଅତିଶୟ ବିଷଣ୍ଣଭାବରେ ରାତ୍ରି ଯାପନ କଲେ ।

ପରଦିନ ପ୍ରଭାତରେ ପତ୍ନୀ ସହ ପ୍ରଭାକର ପୁତ୍ରକୁ ନେଇ ଆଚାର୍ଯ୍ୟଙ୍କ ସମୀପରେ ଉପସ୍ଥିତ ହେଲେ । ବ୍ରାହ୍ମଣୀ ଗଳଲଗ୍ନୀକୃତ ବାସ ହୋଇ ଆଚାର୍ଯ୍ୟଙ୍କୁ

ଭୂମିଷ୍ଠ ପ୍ରଣାମପୂର୍ବକ ଆକୁଳଭାବରେ କ୍ରନ୍ଦନ କରି କହିଲେ, ''ମହାଶୟ ! ଆପଣଙ୍କ କୃପାରୁ ଏହାର ବାକ୍‌ସ୍ଫୂର୍ତ୍ତି ହୋଇଅଛି । ଆପଣ ଅନୁଗ୍ରହ କରି ଏହାର ମତିଗତି ବଦଳାଇ ଦିଅନ୍ତୁ ଓ ସେ ଯେପରି ସଂସାରୀ ହେବ ତାହାର ବ୍ୟବସ୍ଥା କରିଦିଅନ୍ତୁ । ମୋ ପୁତ୍ର ଜଡ଼ ହେଲେ ମଧ ମୁଁ ତାକୁ ଛାଡ଼ି ରହିପାରିବି ନାହିଁ । ଆପଣଙ୍କ ଭିନ୍ନ ମୋର ଅନ୍ୟ ଗତି ନାହିଁ ।''

ଆଚାର୍ଯ୍ୟ ଅତିଶୟ ଦୟାର୍ଦ୍ରଭାବରେ କହିଲେ, ''ମା, କ୍ଷାନ୍ତ ହୁଅ । ପୁତ୍ର ସ୍ନେହରେ ମୁଗ୍ଧ ହୋଇ ଏଭଳି କାତର ହୁଅ ନାହିଁ । ଏ ପୁତ୍ରଦ୍ୱାରା ତୁମର କୌଣସି ଇଚ୍ଛା ପୂର୍ଣ୍ଣ ହେବ ନାହିଁ । ଏ ବାଳକର ଦେହ ତୁମ ପୁତ୍ରର ଦେହ ସତ୍ୟ, ମାତ୍ର ଏହାର ଆତ୍ମା ତୁମ ପୁତ୍ରର ଆତ୍ମା ନୁହେଁ । ତୁମ ପୁତ୍ରର ଶରୀରରେ ଜଣେ ସିଦ୍ଧ ପୁରୁଷ ବାସ କରୁଛନ୍ତି ।''

ବ୍ରାହ୍ମଣୀ କାତର ଭାବରେ କହିଲେ, ''ଏ କଥା ତ ମୁଁ କିଛି ମାତ୍ର ଜାଣି ନାହିଁ ।'' ଆଚାର୍ଯ୍ୟ କହିଲେ, ''ମା ! ଆଚ୍ଛା, ମନେକରନ୍ତୁ ଦେଖି, ଆପଣମାନେ ଯେତେବେଳେ ତୀର୍ଥଭ୍ରମଣ ଉଦ୍ଦେଶ୍ୟରେ ଯମୁନାତୀରରେ ଅବସ୍ଥାନ କରୁଥିଲେ, ସେତେବେଳେ ଆପଣଙ୍କ ପୁତ୍ରଟି ଦୁଇ ବର୍ଷର ହୋଇଥିଲା । ଦିନେ ଆପଣ ଯମୁନା-ସ୍ନାନ ଉଦ୍ଦେଶ୍ୟରେ ଯାଇଥିବା ସମୟରେ ଜଣେ ସାଧୁଙ୍କୁ ଦେଖି ଆପଣଙ୍କ ଶିଶୁପୁତ୍ରଟିକୁ ସାଧୁଙ୍କ ନିକଟରେ ଛାଡ଼ିଦେଲେ ଓ ତାଙ୍କୁ ନଜର ରଖିବାକୁ କହି ସ୍ନାନ କରିବାକୁ ଗଲେ । କିନ୍ତୁ ସାଧୁ ଆପଣଙ୍କ କଥା ଶୁଣିପାରି ନଥିଲେ ।

ଏଣେ ପୁତ୍ରଟି ଖେଳୁଥିବା ଅବସ୍ଥାରେ ଯମୁନାଜଳରେ ପଡ଼ି ପ୍ରାଣ ହରାଇଲା । ଆପଣ ସ୍ନାନ-ଶେଷରେ ପୁତ୍ରକୁ ପ୍ରାଣହୀନ ଅବସ୍ଥାରେ ଦେଖି ସାଧୁଙ୍କ ଚରଣତଳେ ସ୍ଥାପନ କରି କ୍ରନ୍ଦନ କରିବାକୁ ଲାଗିଲେ । ଆପଣଙ୍କ କ୍ରନ୍ଦନରେ ସାଧୁଙ୍କର ଧ୍ୟାନ ଭଗ୍ନ ହେଲା । ସାଧୁ ସମସ୍ତ ଘଟଣା ଶୁଣି ନିଜର ଦୋଷ ବୁଝିପାରି ପୁନରାୟ ଧ୍ୟାନସ୍ଥ ହେଲେ ଏବଂ ଯୋଗବଳରେ ପୁତ୍ର-ଶରୀରରେ ପ୍ରବେଶ କଲେ । ତତ୍ପରେ ପୁତ୍ରଟି ଜୀବିତହେଲା । ଆପଣମାନେ ଭାବିଲେ, ସାଧୁଙ୍କ କୃପାରୁ ପୁତ୍ରର ପ୍ରାଣ ରକ୍ଷା ହେଲା । ଏଣେ ସାଧୁ ଦେହରକ୍ଷା କଲେ । ଏ କଥା ଆପଣ ସେତେବେଳେ ଜାଣିପାରିଲେ ନାହିଁ । ପରେ କିନ୍ତୁ ଜାଣିଲେ ଯେ, ସାଧୁଙ୍କର ଦେହରକ୍ଷା ହୋଇଅଛି । ଏ ଘଟଣାଟି ସତ୍ୟ କି ନା, କୁହନ୍ତୁ ତ ?''

ବ୍ରାହ୍ମଣୀ ସମସ୍ତ ଘଟଣା ଶୁଣି ସ୍ତମ୍ଭୀତା ହୋଇଗଲେ । ପ୍ରଭାକର ମଧ୍ୟ ବିସ୍ମିତ ହେଲେ । ବ୍ରାହ୍ମଣୀ କହିଲେ, ''ହଁ, ସେ ଘଟଣାଟି ମନେପଡୁଛି । କିନ୍ତୁ ସେ ସାଧୁ ଯେ, ମୋ ପୁତ୍ରଶରୀରରେ ପ୍ରବେଶ କରିଅଛନ୍ତି, ଏ କଥା ଆମର ବିଶ୍ୱାସ ହେଉ ନାହିଁ । ସେ ଯାହାହେଉ, ମୁଁ ଏହାକୁ ଛାଡ଼ି ରହିପାରିବି ନାହିଁ । ଆପଣଙ୍କ କୃପା ହେଲେ ସମସ୍ତ ସମ୍ଭବ ହୋଇପାରେ । ଆପଣ ଏହାକୁ ସଂସାରୀ ହେବାକୁ ଆଦେଶ ଦିଅନ୍ତୁ । ଆମର କେହି ନାହିଁ, ଆମେମାନେ ଏହି ପୁତ୍ରକୁ ନେଇ ସମସ୍ତ ଦୁଃଖ ପାସୋରି ପାରିବୁ ।''

ଆଚାର୍ଯ୍ୟ କହିଲେ, ''ମା ! ଏକମାତ୍ର ପୁତ୍ରକୁ ତ୍ୟାଗ କରି ଜନନୀପକ୍ଷରେ ଜୀବନଧାରଣ କରିବା ଅତି କଷ୍ଟକର; କିନ୍ତୁ ଏ ପୁତ୍ରଦ୍ୱାରା ତୁମର କୌଣସି ଇଷ୍ଟ ସିଦ୍ଧି ହେବ ନାହିଁ । ଏ ବାଳକ ପୂର୍ଣ୍ଣ ଜ୍ଞାନୀ । ଦେହ ଉପରେ ଏହାର କୌଣସି ମମତା ନାହିଁ । ଆମ ସାଙ୍ଗରେ ଥିଲେ ଏ କଥାବାର୍ତ୍ତା କରିପାରିବ; କିନ୍ତୁ ଆପଣଙ୍କ ନିକଟରେ କିଛି ମାତ୍ର ବାକ୍ୟ ଉଚ୍ଚାରଣ କରିପାରିବ ନାହିଁ । ବ୍ରହ୍ମଜ୍ଞମାନେ ଦେହଧାରଣ କଲେ ମଧ୍ୟ ସଂସାରରୁ ଦୂରରେ ରହିବାକୁ ଇଚ୍ଛା କରନ୍ତି । ବିଷୟଠାରୁ ବିଷୟୀ ସଙ୍ଗ ଅତି ଭୟାବହ । ସନ୍ନ୍ୟାସ ଆଶ୍ରମ ହିଁ ବ୍ରହ୍ମଜ୍ଞମାନଙ୍କର ଅନୁକୂଳ । ଆପଣ ପୁତ୍ରକୁ ପ୍ରଶ୍ନ କରି ବୁଝନ୍ତୁ, ସେ କ'ଣ କରିବାକୁ ଇଚ୍ଛା କରୁଛି ।''

ବ୍ରାହ୍ମଣୀ ସଜଳନୟନରେ ପୁତ୍ରକୁ ଆଲିଙ୍ଗନ କରି କହିଲେ, ''ଆଚ୍ଛା ବାବୁ ! ତୁ କ'ଣ ଆମକୁ ଛାଡ଼ିଯିବାକୁ ଇଚ୍ଛା କରୁଛୁ ? ଆମ ନିକଟରେ ରହିବାକୁ କ'ଣ ତୋତେ ସୁଖ ଲାଗୁ ନାହିଁ ?'' ବ୍ରାହ୍ମଣକୁମାର ଦେଖିଲା, ଏପରି ସୁଯୋଗ ଛାଡ଼ିବାର ନୁହେଁ । ସେ ଜନକ-ଜନନୀଙ୍କୁ ପ୍ରଣାମ କରି କହିଲା, ''ମା ! ତୁମେମାନେ ମୋତେ ପରିତ୍ୟାଗ କର । ଯେତେଦିନ ଜୀବିତ ଥିବି, ସେତେଦିନ ଏ ମହାପୁରୁଷଙ୍କ ସଙ୍ଗ ମୋର ବାଞ୍ଛନୀୟ । ତୁମେମାନେ ମୋତେ ବୃଥାରେ ଆବଦ୍ଧ କର ନାହିଁ । ଭଗବାନ ତୁମଙ୍କୁ ଅନ୍ୟ ଗୋଟିଏ ପୁତ୍ରସନ୍ତାନ ପ୍ରଦାନ କରିବେ ।''

ପୁତ୍ରର ବାକ୍ୟ ଶ୍ରବଣ କରିବାପରେ ପ୍ରଭାକର ଓ ତାଙ୍କର ପତ୍ନୀଙ୍କର ଚୈତନ୍ୟ ଉଦୟ ହେଲା । ସେମାନେ ଶୋକବିସ୍ମୃତ ହେଲେ । ପତିପତ୍ନୀ ଉଭୟେ ଆଚାର୍ଯ୍ୟଙ୍କ ଚରଣରେ ପ୍ରଣାମ କରି ପୁତ୍ରକୁ ମଧ୍ୟ ପ୍ରଣାମ କଲେ । ଅନନ୍ତର ଉଦାସପ୍ରାଣ ବ୍ରାହ୍ମଣ ଦମ୍ପତି ଧୀରେ ଧୀରେ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

ଶ୍ରୀବେଲୀ ଗ୍ରାମବାସୀଗଣ ଏହି ଘଟଣା ଦେଖି ଓ ଶୁଣି ବିସ୍ମିତ ହୋଇଗଲେ । ବର୍ତ୍ତମାନ ସମସ୍ତେ ସେହି ପ୍ରଭାକରତନୟଙ୍କୁ ଓ ଆଚାର୍ଯ୍ୟଙ୍କୁ ଦର୍ଶନ କରିବାନିମିତ୍ତ ଦଳଦଳ ହୋଇ ଆସିବାକୁ ଲାଗିଲେ । ଆଚାର୍ଯ୍ୟ ଏହି ବ୍ରାହ୍ମଣକୁମାରଙ୍କୁ ଯଥାବିଧି ସନ୍ନ୍ୟାସ ପ୍ରଦାନ କରି ତାହାଙ୍କ ନାମ ଦେଲେ 'ହସ୍ତାମଲକାଚାର୍ଯ୍ୟ' । ରାହୁମୁକ୍ତ ଚନ୍ଦ୍ରମାର ଶୋଭା ଯେପରି ବିସ୍ତାର ଲାଭ କରେ, ସନ୍ନ୍ୟାସ ଗ୍ରହଣ ପରେ ହସ୍ତାମଲକଙ୍କର ତାଦୃଶ ଶୋଭା ବିରାଜିତ ହେବାକୁ ଲାଗିଲା । ସେ ଶଙ୍କରଙ୍କ ଶିଷ୍ୟମାନଙ୍କ ମଧ୍ୟରେ ପଦ୍ମପାଦ ଓ ସୁରେଶ୍ୱରଙ୍କ ପରି ସମ୍ମାନିତ ହେବାକୁ ଲାଗିଲେ । ଶିଷ୍ୟର ସମ୍ମାନ ବର୍ଦ୍ଧନ କରିବାନିମିତ୍ତ ଏବଂ ଅପର ଶିଷ୍ୟମାନଙ୍କୁ ଶିକ୍ଷାଦେବାନିମିତ୍ତ ଆଚାର୍ଯ୍ୟ ହସ୍ତାମଲକଙ୍କ ପଠିତ ପବିତ୍ର 'ହସ୍ତାମଲକ ସ୍ତୋତ୍ର' ଉପରେ ସେହିଠାରେ ଗୋଟିଏ ଅପୂର୍ବ ଭାଷ୍ୟ ରଚନା କଲେ ।



# କ୍ରୋଟକାଚାର୍ଯ୍ୟ ଓ ଆଚାର୍ଯ୍ୟ ଶଙ୍କର

ଶ୍ରୀବେଲୀ ତ୍ୟାଗ କରି ଆଚାର୍ଯ୍ୟ ଶଙ୍କର ଶିଷ୍ୟମାନଙ୍କ ସହିତ ଶୃଙ୍ଗଗିରି ନାମକ ସ୍ଥାନକୁ ଗମନ କଲେ । ଶଙ୍କର ସନ୍ନ୍ୟାସ ଗ୍ରହଣ କରିବା ନିମିତ୍ତ ଗୁରୁ ଗୋବିନ୍ଦପାଦଙ୍କ ଉଦ୍ଦେଶ୍ୟରେ ନର୍ମଦାତୀର ଦେଇ ଯାଉଥିବାବେଳେ ସେ ଏହି ସ୍ଥାନରେ ଭେକଶାବକ ଓ ସର୍ପର ମିତ୍ରତା ଦର୍ଶନ କରିଥିଲେ । ବିଭାଣ୍ଡକ ମୁନିଙ୍କର ଆଶ୍ରମ ଏହି ସ୍ଥାନରେ ଥିଲା । ତଦୀୟ ପୁତ୍ର ଋଷ୍ୟଶୃଙ୍ଗଙ୍କ ନାମ ଅନୁସାରେ ଏହି ସ୍ଥାନର ନାମ ଶୃଙ୍ଗଗିରି । ସ୍ଥାନର ମହାତ୍ମ୍ୟ ଶ୍ରବଣ କରି ପଦ୍ମପାଦ ପ୍ରଭୃତି ଶିଷ୍ୟଗଣଙ୍କର ସେଠାରେ ଗୋଟିଏ ମଠ ସ୍ଥାପନ କରିବାନିମିତ୍ତ ଆଗ୍ରହ ଜାତ ହେଲା । ମଣ୍ଡନପତ୍ନୀ ସରସ୍ୱତୀ ଦେବୀ ମଧ୍ୟ ଏହି ସ୍ଥାନରେ ଦୈବୀ ଶରୀରରେ ଅବସ୍ଥାନ କରିବେ ବୋଲି ସମ୍ମତା ହୋଇଥିଲେ । ଏହି ସ୍ଥାନର ଅତି ନିକଟରେ ଚାଲୁକ୍ୟବଂଶୀୟ ବିକ୍ରମାଦିତ୍ୟଙ୍କ ଭ୍ରାତା ଆଦିତ୍ୟବର୍ମନଙ୍କର ରାଜଧାନୀ ଥିଲା ।

ରାଜା ଆଦିତ୍ୟବର୍ମନ ଆଚାର୍ଯ୍ୟଙ୍କ ଆଗମନ ବାର୍ତ୍ତା ଶ୍ରବଣ କରି ତତ୍‌କ୍ଷଣାତ୍ ସନ୍ନ୍ୟାସୀମାନଙ୍କର ସେଠାରେ ରହିବାର ସମସ୍ତ ସୁବିଧା କରିଦେଲେ । ଶିଷ୍ୟମାନେ ସ୍ଥାନର ସୌନ୍ଦର୍ଯ୍ୟ ଦର୍ଶନ କରି ମୁଗ୍ଧ ହୋଇଗଲେ ଏବଂ ଆଚାର୍ଯ୍ୟଙ୍କ ନିର୍ଦ୍ଦେଶ ଅନୁଯାୟୀ ସ୍ଥାନନିର୍ଣ୍ଣୟପୂର୍ବକ ଗୋଟିଏ ପର୍ଣ୍ଣକୁଟୀର ନିର୍ମାଣ କଲେ । ଆଚାର୍ଯ୍ୟ ଓ ଶିଷ୍ୟମାନେ ସେ ସ୍ଥାନରେ ଅବସ୍ଥାନ କରିବାକୁ ଲାଗିଲେ । କ୍ରମେ ରାଜକର୍ମଚାରୀ, ଶିଷ୍ୟ ଓ ଧନୀମାନଙ୍କ ସାହାଯ୍ୟରେ ସମସ୍ତ ସନ୍ନ୍ୟାସୀଙ୍କ ବାସୋପଯୋଗୀ ଗୃହ ନିର୍ମିତ ହୋଇଗଲା ।

ଆଚାର୍ଯ୍ୟ ସେହି ପର୍ଣ୍ଣକୁଟୀରରେ ବାସ କରି ଶିଷ୍ୟମାନଙ୍କୁ ଅଧ୍ୟାପନା କରାଇ ଓ ଜିଜ୍ଞାସୁମାନଙ୍କୁ ଉପଦେଶ ଦେଇ ନିର୍ଜନ ଅରଣ୍ୟ ମଧ୍ୟରେ ଅତି ଆନନ୍ଦରେ ସମୟ ଅତିବାହିତ କରିବାକୁ ଲାଗିଲେ । ସାଧାରଣଙ୍କର କୌଣସି ବିଷୟରେ ସଂକଳ୍ପ ଉଦୟ ହେଲେ ତାହା ପୂର୍ଣ୍ଣ ନ ହେବା ପର୍ଯ୍ୟନ୍ତ ମନ ମଧ୍ୟରେ ପୁନଃ ପୁନଃ ଉଦିତ ହେଉଥାଏ । ବ୍ରହ୍ମନିଷ୍ଠ ବ୍ୟକ୍ତିମାନଙ୍କର ଯଦି ସଂକଳ୍ପ ଉଦୟ ହୁଏ, ତାହାହେଲେ ଅବକାଶ ପାଇବା ମାତ୍ରେ ତାହା ସେମାନଙ୍କ ହୃଦୟାକାଶରେ ଉଦିତ ହୁଏ । କ୍ରମେ ସୁରେଶ୍ୱର ଓ ପଦ୍ମପାଦ ପ୍ରଭୃତିଙ୍କ ମଧ୍ୟରେ ମଠ ନିର୍ମାଣ କରିବା ବିଷୟରେ ଆଲୋଚନା ହେବାକୁ ଲାଗିଲା । ଧନୀ ଗୃହସ୍ଥମାନଙ୍କର ଅନୁଚରବର୍ଗ

ଓ ରାଜକର୍ମଚାରୀମାନେ କହିଲେ, "ଆପଣ ଆମକୁ ଆଦେଶ ଦେଲେ ଆମେ ମଠ ନିର୍ମାଣ କରିଦେବୁ ।" ଏ ସମ୍ବାଦ ପଦ୍ମପାଦ ପ୍ରଭୃତି ଶିଷ୍ୟମାନେ ଆଚାର୍ଯ୍ୟଙ୍କୁ ନିବେଦନ କରିବାରୁ ଆଚାର୍ଯ୍ୟ କହିଲେ, "ମୋର ପ୍ରିୟ ଶିଷ୍ୟବୃନ୍ଦ ! ଶୁଣ, ସନ୍ନ୍ୟାସୀମାନଙ୍କର ବାସଭବନର ପ୍ରୟୋଜନ ବା କ'ଣ ? କେବଳ ଭଗବତୀଙ୍କ ନିମିତ୍ତ ଗୋଟିଏ ଗୃହ ନିର୍ମାଣ କରାଯାଉ । ତୁମମାନଙ୍କୁ ସେହି ଗୃହର ଚାରିପାଖର ଚତ୍ୱରରେ ଅବସ୍ଥାନ କରିବାକୁ ହେବ । ସନ୍ନ୍ୟାସୀମାନଙ୍କର ଦେବାଳୟରେ, ଗୁରୁଗୃହରେ, ବୃକ୍ଷମୂଳରେ ଓ ଗିରିଗୁହାରେ ବାସ କରିବା ପ୍ରଶସ୍ତ । ଦେଖ, ମଠ ସ୍ଥାପନ କରିବାକୁ ଯାଇ ତୁମେମାନେ ଯେପରି ଜଣେ ଜଣେ ସଂସାରୀ ହୋଇ ନ ଯାଅ । ତୁମମାନଙ୍କର ଆଶ୍ରୟ ଏକମାତ୍ର ଭଗବାନ । ତୁମେମାନେ କେବଳ ତାଙ୍କରିଠାରେ ମନୋନିବେଶ କରିବା ଉଚିତ । ସନ୍ନ୍ୟାସୀମାନଙ୍କର ନିଜସ୍ୱ ସ୍ଥାନ କିମ୍ବା କୌଣସି ନିର୍ଦ୍ଦିଷ୍ଟ ସ୍ଥାନ କଦାପି ବାଞ୍ଛନୀୟ ନୁହେଁ ।" ପଦ୍ମପାଦ ଆଚାର୍ଯ୍ୟଙ୍କ ଇଙ୍ଗିତ ହୃଦୟଙ୍ଗମ କଲେ । ସେ ପ୍ରଥମେ ଶାରଦା ଦେବୀଙ୍କ ନିମିତ୍ତ ଗୋଟିଏ ମନ୍ଦିର ପ୍ରସ୍ତୁତ କରିବାକୁ ଅନୁମତି ଦେଲେ । ଧନୀ ଭକ୍ତଙ୍କ ଯତ୍ନରେ ସେହି ଅରଣ୍ୟ ମଧ୍ୟରେ ଯଥୋପଯୁକ୍ତ ମଠ-ଭବନ ନିର୍ମିତ ହେଲା । ଶୁଭଦିନରେ ଓ ଶୁଭକ୍ଷଣରେ ସେଠାରେ ଶାରଦାଯନ୍ତ୍ର ସ୍ଥାପିତ ହେଲା । ସଶିଷ୍ୟ ଆଚାର୍ଯ୍ୟ ଭଗବତୀଙ୍କର ଷୋଡ଼ଶୋପଚାର ପୂଜା କରିବାନିମିତ୍ତ ଶିଷ୍ୟମାନଙ୍କୁ ଉତ୍ସାହ ଦେବାକୁ ଲାଗିଲେ । ସେ ଶିଷ୍ୟମାନଙ୍କୁ ଉପଦେଶ ଦେଇ କହିଲେ, ଶିଷ୍ୟଗଣ ! ତୁମେମାନେ ଦେବୀଙ୍କ ଉପାସନା ବିଷୟରେ ସର୍ବଦା ସଜାଗ ଦୃଷ୍ଟି ରଖିଥିବ । ନିର୍ଗୁଣ ବ୍ରହ୍ମସ୍ୱରୂପତ୍ୱ ଲାଭ ତୁମମାନଙ୍କର ଲକ୍ଷ୍ୟ ହେଲେ ମଧ୍ୟ କଦାପି ଉପାସନାରେ ଅବହେଳା ପ୍ରଦର୍ଶନ କରିବ ନାହିଁ । ଯେପର୍ଯ୍ୟନ୍ତ ଦେହରକ୍ଷା କରିବା ପ୍ରବୃତ୍ତି ଥିବ, ସେତେଦିନ ଯାଇ ଉପାସନା ନିରତ ରହିବ । ଦେହର ପ୍ରତି ଅଙ୍ଗ ଗୋଟିଏ ଗୋଟିଏ ଦେବତାଙ୍କ ସ୍ଥାନ । ଦେବତାମାନଙ୍କ ଅଧୀନତା ଲଙ୍ଘନପୂର୍ବକ କେହି ଜୀବିତ ରହିପାରନ୍ତି ନାହିଁ । ରାଜାଙ୍କୁ କର ଦେଇ ସେବା କରିବା ଯେପରି ପ୍ରଜାର କର୍ତ୍ତବ୍ୟ, ସେହିପରି ଦେବତାପୂଜା ମାନବର ଅବଶ୍ୟ କର୍ତ୍ତବ୍ୟ । ଉପାସନାଦ୍ୱାରା ଚିତ୍ତ ଶୁଦ୍ଧ ହୁଏ; ସଂଶୟ, ବିପର୍ଯ୍ୟୟ ଓ ବିସ୍ମୃତି ବିନଷ୍ଟ ହୁଏ, ଏଥିରେ ଏକାଗ୍ରତା ଜନ୍ମେ । ଏକାଗ୍ରତା ହିଁ ଯୋଗରାଜ୍ୟର ଦ୍ୱାରବିଶେଷ । ଏହା ହେଲେ ସଞ୍ଚିତ ଦୂରିତମାନ କ୍ଷୟ ହୁଏ ଏବଂ ଶୁଭାଦୃଷ୍ଟି ଜନ୍ମେ । ଅତଏବ ବ୍ରହ୍ମଜ୍ଞାନାଭ୍ୟାସ କରିବା ସଙ୍ଗେ

ସଙ୍ଗେ ଉପାସନା କରିବା ବିଧେୟ । ଏ କାର୍ଯ୍ୟରେ ଅବହେଳା କରିବା କଦାପି ଉଚିତ ନୁହେଁ । ଶାରଦା ଦେବୀ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ । ତାଙ୍କ ଉପାସନାରେ ବିଦ୍ୟାର ସ୍ଫୂର୍ତ୍ତି ହୁଏ । ବିଦ୍ୟାସ୍ଫୂର୍ତ୍ତି ନ ହେଲେ ଅଜ୍ଞାନ ଦୂର ହୁଏ ନାହିଁ । ଅଜ୍ଞାନ ବିନଷ୍ଟ ନ ହେଲେ ଜ୍ଞାନର ଉଦୟ ହୁଏ ନାହିଁ । ଏଣୁ ନିବୃତ୍ତିମାର୍ଗୀ ସନ୍ନ୍ୟାସୀମାନଙ୍କର ମଧ୍ୟ ଶାରଦା ଦେବୀଙ୍କର ଉପାସନା କରିବା ଏକାନ୍ତ କର୍ତ୍ତବ୍ୟ ।''

ଆଚାର୍ଯ୍ୟଙ୍କ ଉପଦେଶ ବାକ୍ୟ ଶ୍ରବଣ କରି ସମସ୍ତେ ତୃପ୍ତ ହେଲେ । ଦ୍ୱାଦଶବର୍ଷ ପୂର୍ବରୁ ଆଚାର୍ଯ୍ୟଙ୍କ ହୃଦୟରେ ଯେଉଁ ବାସନାର ଉଦୟ ହୋଇଥିଲା, ତାହା ପଦ୍ମପାଦଙ୍କଠାରେ ସଂକ୍ରମିତ ହୋଇ ସେହି ପଦ୍ମପାଦଙ୍କ ଯତ୍ନରେ ହିଁ ବାସ୍ତବରୂପ ଧାରଣ କଲା । ବ୍ରହ୍ମଜ୍ଞଙ୍କର ଶୁଭଦୃଷ୍ଟି ଓ ପୁଣ୍ୟଫଳ ତାଙ୍କର ମିତ୍ରମାନେ ଲାଭକରନ୍ତି ଏବଂ ଦୂରଦୃଷ୍ଟ ଓ ମନ୍ଦଫଳ ଶତ୍ରୁମାନେ ଲାଭ କରନ୍ତି ।

ତତ୍ପରେ ଅତିଥି-ଅଭ୍ୟାଗତଙ୍କନିମିତ୍ତ କେତେଗୁଡ଼ିଏ ଗୃହ ନିର୍ମାଣ କରିବାର ଆବଶ୍ୟକ ପଡ଼ିବା କଥା ଶୁଣି ଆଚାର୍ଯ୍ୟ କହିଲେ, ''ପଦ୍ମପାଦ ! ଏଥି ନିମିତ୍ତ ସନ୍ନ୍ୟାସୀମାନେ ପରିବ୍ରାଜକ ହୋଇଥାଆନ୍ତି । ଦେଖ, ଭକ୍ତମାନଙ୍କ ସମାଗମରେ ଏ ସ୍ଥାନଟି ଗୋଟିଏ ଜନପଦ ହେବାକୁ ବସିଲାଣି । ଶୃଙ୍ଗେରୀ ଶୀଘ୍ର ଗୋଟିଏ କ୍ଷୁଦ୍ର ଗ୍ରାମରେ ପରିଣତ ହୋଇଯାଉଅଛି । କର୍ଣ୍ଣାଟଉଜ୍ଜୟିନୀର ରାଜା ସୁଧନ୍ୱା ଆଚାର୍ଯ୍ୟଙ୍କ ସମ୍ବାଦ ପାଇଁ ଶୃଙ୍ଗଗିରିକୁ ଆସି ଶିଷ୍ୟତ୍ୱ ଗ୍ରହଣ କଲେ ଏବଂ ଅଧିକାଂଶ ସମୟ ଆଚାର୍ଯ୍ୟଙ୍କ ନିକଟରେ ଅବସ୍ଥାନ କରିବାକୁ ଲାଗିଲେ । ଆଚାର୍ଯ୍ୟ ଦେବ ମଠ ନିର୍ମାଣ ସମ୍ବନ୍ଧରେ କିଛି ନ ବୁଝି ସର୍ବଦା ଅଧ୍ୟାପନା ଓ ଉପଦେଶଦାନରେ ରତ ରହନ୍ତି ଏବଂ ଅଧିକାଂଶ ସମୟ ସମାଧିସ୍ଥ ହୋଇ ରହିବାକୁ ସୁଖବୋଧ କରନ୍ତି । ଏହି ସ୍ଥାନରେ ଆଚାର୍ଯ୍ୟ ଓ ତାଙ୍କ ଶିଷ୍ୟମାନଙ୍କର ବହୁ ଲୋକ ଶିଷ୍ୟତ୍ୱ ସ୍ୱୀକାର କଲେ । କ୍ରମେ ଆଚାର୍ଯ୍ୟ ନାନାଶ୍ରେଣୀର ବ୍ୟକ୍ତିଙ୍କନିମିତ୍ତ ନାନାବିଧ ତତ୍ତ୍ୱକଥାପୂର୍ଣ୍ଣ କ୍ଷୁଦ୍ର କ୍ଷୁଦ୍ର ଉପଦେଶ ମୂଳକ ଗ୍ରନ୍ଥ, ସ୍ତବସ୍ତୁତି ପ୍ରଭୃତି ରଚନାର ଆବଶ୍ୟକତା ଉପଲବ୍ଧି କଲେ ଏବଂ ତାହା ସମ୍ପନ୍ନ କଲେ । ଏହି ସମୟରେ ଆଚାର୍ଯ୍ୟ ବିବେକଚୂଡ଼ାମଣି, ଅପରୋକ୍ଷାନୁଭୂତି, ଦୃକ୍‌ଦର୍ଶନ ବିବେକ, ଅଜ୍ଞାନବୋଧିନୀ, ବୋଧିସାର, ଆତ୍ମବୋଧ, ବେଦାନ୍ତ-କେଶରୀ, ଲଳିତା ତ୍ରିସତୀଭାଷ୍ୟ, ପ୍ରପଞ୍ଚସାର, ଆତ୍ମାନାତ୍ମ ବିବେକ, ମୋହମୁଦ୍‌ଗର, ସର୍ବବେଦାନ୍ତ-ସିଦ୍ଧାନ୍ତ ସାରସଂଗ୍ରହ, ସର୍ବଦର୍ଶନ ସିଦ୍ଧାନ୍ତ, ମନୀଷାପଞ୍ଚକ ପ୍ରଭୃତି ଅମୂଲ୍ୟ ଉପଦେଶପୂର୍ଣ୍ଣ କ୍ଷୁଦ୍ର ଗ୍ରନ୍ଥମାନ ରଚନା

କଲେ । ଅଭ୍ୟସ୍ତ ଶାସ୍ତ୍ରର ଆବୃତ୍ତି କରିବାପରି ଆଚାର୍ଯ୍ୟଦେବ ଏଗୁଡ଼ିକ ଆବୃତ୍ତି କରନ୍ତି ଓ ଶିଷ୍ୟମାନେ ତାହା ଲେଖି ରଖନ୍ତି ।

ଶିଷ୍ୟମାନଙ୍କନିମିତ୍ତ ଗ୍ରନ୍ଥ ରଚନା କରି ମଧ ଆଚାର୍ଯ୍ୟ ଦେବ କ୍ଷାନ୍ତ ହେଲେ ନାହିଁ । ସେହି ଉପଦେଶାବଳୀ ଯେପରି କାର୍ଯ୍ୟରେ ପରିଣତ ହେବ ସେଥିନିମିତ୍ତ ସେ ବିଶେଷ ଯତ୍ନ କରିବାକୁ ଲାଗିଲେ । ଏହି ସମୟରେ ଗିରିନାମକ୍ ଜଣେ ବ୍ରାହ୍ମଣକୁମାର ଆଗମନ କରି ଆଚାର୍ଯ୍ୟଙ୍କ ଶରଣ ଗ୍ରହଣ କଲେ । ସେ ଏକାବେଳକେ ନିରକ୍ଷର ଥିଲେ; ଅଥଚ ସାଧୁ ହେବାପାଇଁ ତାଙ୍କର ଅତି ବଳବତୀ ଇଚ୍ଛା ଥିଲା ।

ସେ ଆଚାର୍ଯ୍ୟ ଓ ତାଙ୍କ ଶିଷ୍ୟମାନଙ୍କର ବିଦ୍ୟାନୁରାଗ ତଥା ଶାସ୍ତ୍ରୀୟ ବାକ୍ୟାଳାପ ଶ୍ରବଣ କରି ହତାଶ ହୋଇ ଆଚାର୍ଯ୍ୟଙ୍କ ସେବାରେ ପ୍ରବୃତ୍ତ ହେଲେ । ଗୁରୁସେବା ହିଁ ସର୍ବବିଦ୍ୟାର ମୂଳ ବୋଲି ଜାଣି ସେ ତାହା ଅବଲମ୍ବନ କଲେ । ଗିରି ସ୍ୱଭାବତଃ ଅତ୍ୟନ୍ତ ମୃଦୁଭାଷୀ, ବିନୀତ, ଅନଳସ ଏବଂ ସମସ୍ତଙ୍କ ଗୁରୁଦେବଙ୍କର ପ୍ରିୟାନୁଷ୍ଠାନତତ୍ପର । ସେ ସମସ୍ତ ଗୁରୁ ଭ୍ରାତାଙ୍କର ସନ୍ତୋଷବିଧାନ କରି ମଧ ଆଚାର୍ଯ୍ୟଙ୍କ ସମୀପରେ ନିୟତ ବାସ କରୁଥିଲେ । ଗିରି ଥିବା ଯୋଗୁ ଅନ୍ୟ କେହି ଆଚାର୍ଯ୍ୟଙ୍କର କୌଣସି ପ୍ରକାର ସେବା କରିବାକୁ ସୁଯୋଗ ପାଇଲେ ନାହିଁ । ଆଚାର୍ଯ୍ୟ ଅଧ୍ୟୟନ, ଅଧ୍ୟାପନା କଲାବେଳେ ଗିରି ଯୁକ୍ତକରରେ ଦଣ୍ଡାୟମାନ ରହୁଥିଲେ । ସେ କିଛି ନ ବୁଝିଲେ ମଧ ଶୁଣିବାରେ କେବେହେଲେ ଅମନଯୋଗୀ ହେଉନଥିଲେ ।

ଦିନେ ଆଚାର୍ଯ୍ୟ ଅଧ୍ୟାପନାନିମିତ୍ତ ଉପବିଷ୍ଟ ହୋଇ ଗୁରୁପ୍ରଣାମାଦି ସମାପନ ପରେ ଇତସ୍ତତଃ ଦୃଷ୍ଟିପାତପୂର୍ବକ ପାଠ ଆରମ୍ଭ ନ କରି ବସି ରହିଲେ । ଶିଷ୍ୟମାନେ ଏହା ଦେଖି ଟିକିଏ ବିସ୍ମିତ ହୋଇ ଅପେକ୍ଷା କରିବାକୁ ଲାଗିଲେ । ପଦ୍ମପାଦଙ୍କର ଉଦ୍‌ବେଗ ଟିକିଏ ଅଧିକ ହେଲା । ସେ କହିଲେ, ''ମହାଭାଗ ! ଆପଣ ଅଧ୍ୟାପନାରୁ ବିରତ ହେଲେ କାହିଁକି ? କାହାକୁ ଅପେକ୍ଷା କରୁଛନ୍ତି କି ?'' ଆଚାର୍ଯ୍ୟ କହିଲେ, ''କାହିଁ, ତୁମେମାନେ ତ ସମସ୍ତେ ଉପସ୍ଥିତ ହୋଇନାହଁ ? ଗିରିକୁ ତ ମୁଁ ଦେଖୁ ନାହିଁ ? ସେ ଆସିଲେ ପାଠ ଆରମ୍ଭ ହେବ ।''

ଏହିପରିଭାବରେ ଆଉ କିଛି ସମୟ ଅତିବାହିତ ହୋଇଗଲା । କିନ୍ତୁ ସେପର୍ଯ୍ୟନ୍ତ ଗିରି ଉପସ୍ଥିତ ହୋଇପାରିଲେ ନାହିଁ । ପରିଶେଷରେ ଜଣେ ଶିଷ୍ୟ କହିଲେ, "ଭଗବନ୍ ! ଗିରି ନଦୀକୂଳରେ ଆପଣଙ୍କର ବସ୍ତ୍ର ପ୍ରକ୍ଷାଳନ କରୁଅଛି ।" ଯାହାହେଉ, ଆଚାର୍ଯ୍ୟଙ୍କ ଇଚ୍ଛାନୁସାରେ ସମସ୍ତେ ଗିରିଙ୍କନମିତ୍ତ ଅପେକ୍ଷା କରିବାକୁ ଲାଗିଲେ । ପଦ୍ମପାଦ ଭାବିଲେ, ଗୁରୁଦେବ ଗିରିଙ୍କନିମିତ୍ତ ଅପେକ୍ଷା କରୁଛନ୍ତି କାହିଁକି ? ସେ ତ ଏକାବେଳକେ ନିରକ୍ଷର । କିଛି ତ ବୁଝି ପାରନ୍ତି ନାହିଁ । ପଦ୍ମପାଦଙ୍କର ଉଦ୍‌ବେଗ ବର୍ତ୍ତମାନ ବିସ୍ମୟରେ ପରିଣତ ହେଲା । ସେ କୌତୂହଳପରବଶ ହୋଇ କହିଲେ, "ଗୁରୁଦେବ ! ଗିରି ଏକାବେଳକେ ନିରକ୍ଷର । ସେ କ'ଣ ଆପଣଙ୍କ ଉପଦେଶ ଗ୍ରହଣ କରିବାକୁ ସମର୍ଥ ହୋଇପାରିବ "?

ଆଚାର୍ଯ୍ୟ ପଦ୍ମପାଦଙ୍କ କଥା ଶ୍ରବଣ କରି ଈଷତ୍ ହାସ୍ୟପୂର୍ବକ କହିଲେ, "ଆଚ୍ଛା, ସେ ଆସୁ । ନ ବୁଝିଲେ ମଧ୍ୟ ସେ ଅତିଶୟ ଶ୍ରଦ୍ଧାସହକାରେ ସବୁକଥା ଶ୍ରବଣ କରେ ।"

ଏଣେ ଗିରିଙ୍କ ଭାଗ୍ୟ ସୁପ୍ରସନ୍ନ ହୋଇଉଠିଲା । ତାଙ୍କର ଐକାନ୍ତିକ ଗୁରୁଭକ୍ତି ତାଙ୍କୁ ସର୍ବବିଦ୍ୟାଧାରଣର ଉପଯୋଗୀ କରି ପକାଇଲା । ଗ୍ରହଣ କରିବା ଓ ଧାରଣ କରିବାର ସାମର୍ଥ୍ୟ ଏବଂ ଶ୍ରଦ୍ଧା ହିଁ ଅଧିକାରର ହେତୁ । ଉପଦେଶ ଗ୍ରହଣ କରିବାର ସାମର୍ଥ୍ୟ ଯାହାଙ୍କର ନାହିଁ ଏବଂ ଗୁରୁ ଓ ତାଙ୍କ ଉପଦେଶବାକ୍ୟରେ ଯେଉଁମାନଙ୍କର ଶ୍ରଦ୍ଧା ନାହିଁ, ସେମାନେ କେବେହେଲେ ଉପଦେଶର ଅଧିକାରୀ ହୋଇପାରନ୍ତି ନାହିଁ । ଏହି ଗ୍ରହଣ ପୁଣି ଦୁଇ ପ୍ରକାରର—ଲୌକିକ ଓ ଶାସ୍ତ୍ରୀୟ । ବୁଦ୍ଧି ଓ ସଂସ୍କୃତ ଭାଷାରେ ଜ୍ଞାନ ଥିଲେ ବିଦ୍ୟାଗ୍ରହଣରେ ଲୌକିକ ସାମର୍ଥ୍ୟ ହୁଏ; କିନ୍ତୁ ଶାସ୍ତ୍ରାନୁସାରେ ସଂସ୍କାରାଦି ପ୍ରାପ୍ତି ନ ହେଲେ ବିଦ୍ୟାଗ୍ରହଣ ପାଇଁ ଶାସ୍ତ୍ରୀୟ ସାମର୍ଥ୍ୟ ଜାତ ହୁଏ ନାହିଁ । ଗିରିଙ୍କର ଜ୍ଞାନାଭାବବଶତଃ ଲୌକିକ ସାମର୍ଥ୍ୟ ନ ଥିଲା; କିନ୍ତୁ ଉପନୟନାଦି ସଂସ୍କାର ହେତୁ ବିଦ୍ୟା ଗ୍ରହଣନିମିତ୍ତ ଶାସ୍ତ୍ରୀୟ ସାମର୍ଥ୍ୟ ଜାତ ହୋଇଥିଲା । ବର୍ତ୍ତମାନ ଅତି ଉତ୍କଟ ଗୁରୁଭକ୍ତିରୂପ ଶ୍ରଦ୍ଧାଦ୍ୱାରା ତାଙ୍କର ବୁଦ୍ଧି ବିକଶିତ ହେଲା । ଶ୍ରଦ୍ଧାଦ୍ୱାରା ଲୌକିକ ସାମର୍ଥ୍ୟ ମଧ୍ୟ ଜାତ ହୁଏ ।

ଗୁରୁଭକ୍ତିରୂପ ଶ୍ରଦ୍ଧାଦ୍ୱାରା ଗିରିଙ୍କର ବିଦ୍ୟାଗ୍ରହଣ କରିବାର ସାମର୍ଥ୍ୟ ଆସିଗଲା । ଆଚାର୍ଯ୍ୟ ମଧ୍ୟ ଗୁରୁଭକ୍ତିର ମାହାତ୍ମ୍ୟ ବୁଝାଇବା ନିମିତ୍ତ, ଶିଷ୍ୟମାନଙ୍କର ବୁଦ୍ଧିମତ୍ତା ଓ ବିଦ୍ୟାଭିମାନ ଦୂରକରିବା ନିମିତ୍ତ ଏବଂ ନିର୍ବୋଧ ବ୍ୟକ୍ତି ଯେ

ଉପେକ୍ଷଣୀୟ ନୁହନ୍ତି, ଏସବୁ କଥା ବୁଝାଇବାନିମିତ୍ତ ମନେ ମନେ ଗିରିଙ୍କୁ ସର୍ବବିଦ୍ୟା ପ୍ରଦାନ କଲେ । ଆଶୀର୍ବାଦଦାତାଙ୍କ ପ୍ରଭାବରେ ମଧ୍ୟ ଇଷ୍ଟଲାଭ ହୋଇଥାଏ ଏବଂ ଆଶୀର୍ବାଦ ଗ୍ରହୀତାଙ୍କ ପ୍ରଭାବରେ ମଧ୍ୟ ସମୟ ସମୟରେ ସେହି ଉଦ୍ଦେଶ୍ୟ ସିଦ୍ଧ ହୁଏ । ଏ କ୍ଷେତ୍ରରେ ଉଭୟେ ଯୋଗ୍ୟ ବ୍ୟକ୍ତି । ସୁତରାଂ ଗିରିଙ୍କର ହୃଦୟାନ୍ଧକାର ଦୂରୀଭୂତ ହୋଇଗଲା । ଗିରି ଗୁରୁଦେବଙ୍କ କୃପାରୁ ବ୍ରହ୍ମବିଦ୍ୟାଧାରଣର ଯୋଗ୍ୟ ଆଧାରରେ ପରିଣତ ହେଲେ । ଗିରିଙ୍କର ହୃଦୟକନ୍ଦର ବ୍ରହ୍ମବିଦ୍ୟାଲୋକରେ ସମୁଜ୍ଜ୍ୱଳ ହୋଇଉଠିଲା । ଗିରି ତତ୍‌କ୍ଷଣାତ୍ ତ୍ରୋଟକ ଛନ୍ଦରେ ଗୋଟିଏ ଗୁରୁମାହାତ୍ମ୍ୟସୂଚକ ସ୍ତୋତ୍ର ରଚନା କରି ଆଚାର୍ଯ୍ୟଙ୍କର ବସ୍ତ୍ର ଧୌତ କରି ସାରି ତାହା ଘେନି ଆଚାର୍ଯ୍ୟଙ୍କ ସମୀପରେ ଉପସ୍ଥିତ ହେଲେ । ସମସ୍ତେ ଗିରିଙ୍କ ମୁଖରୁ ଅପରୂପ ଶ୍ଳୋକ ଗାଥା ଶ୍ରବଣ କରି ଚମତ୍କୃତ ହୋଇଗଲେ । ସେ କେବେହେଲେ ସଂସ୍କୃତ ବାକ୍ୟ ଉଚ୍ଚାରଣ କରିପାରେ ନାହିଁ, ତା ମୁଖରୁ ଅପୂର୍ବ ଶ୍ଳୋକ ଶ୍ରବଣ କରି ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ଲାଗିଲେ । ଗିରି ଆଚାର୍ଯ୍ୟଙ୍କ ଚରଣରେ ସାଷ୍ଟାଙ୍ଗ ପ୍ରଣାମ କରି ଉପବେଶନ କଲେ ।

ଶିଷ୍ୟବର୍ଗ ଦଣ୍ଡାୟମାନ ହୋଇ ଆଚାର୍ଯ୍ୟଙ୍କୁ ଯୁକ୍ତକରରେ କହିଲେ, ''ଭଗବନ୍ ! ଆମ ପ୍ରତି ପ୍ରସନ୍ନ ହୁଅନ୍ତୁ ।'' କେହି କହିଲା, ''ଗୁରୁଦେବ ! ଆମ ପ୍ରତି ଗିରିଙ୍କ ପରି କୃପାଦୃଷ୍ଟିପାତ କରନ୍ତୁ ।'' କିଏ କହିଲା, ''ଗୁରୁଦେବ ! ଆପଣଙ୍କ କୃପାବଳରେ ଗିରି ଆଜି ଧନ୍ୟ ହୋଇଗଲେ । ଆପଣଙ୍କ ଭିନ୍ନ ଆମର ଗତି ନାହିଁ ।''

ଆଚାର୍ଯ୍ୟ ସମସ୍ତଙ୍କୁ ସସ୍ନେହରେ ଆଶୀର୍ବାଦ କରି କହିଲେ, ''ଶିଷ୍ୟଗଣ ! ତୁମେମାନେ ସମସ୍ତେ ଗିରିଙ୍କ ପରି ଶ୍ରଦ୍ଧାପରାୟଣ ହୁଅ । ଶ୍ରଦ୍ଧାରୁ ଏକାଗ୍ରତା ଜନ୍ମେ । ଶ୍ରଦ୍ଧାଦ୍ୱାରା ଚିତ୍ତର ଚାଞ୍ଚଲ୍ୟ ଦୂର ହୁଏ; ଚିତ୍ତ ବିଶୁଦ୍ଧ ହୁଏ । ଏକାଗ୍ର ଅନ୍ତରରେ ଯାହାଙ୍କ ଧ୍ୟାନ କରାଯାଏ, ତାଙ୍କରି ବିଷୟରେ ବିଶେଷ ଜ୍ଞାନ ଉଦିତ ହୁଏ; ବିସ୍ମୃତି, ସଂଶୟ କିମ୍ବା ଭ୍ରମ ଆଉ ହୁଏ ନାହିଁ । ଶ୍ରଦ୍ଧା ହିଁ ସର୍ବବିଦ୍ୟାର ମୂଳ । ପୂର୍ଣ୍ଣମାତ୍ରାରେ ଅକପଟ ଶ୍ରଦ୍ଧା ଜାତ ହେଲେ ଆଉ କୌଣସି ନ୍ୟୂନତା ରହେ ନାହିଁ । ଯେଉଁ ସାଧନ ଚତୁଷ୍ଟୟ ବଳରେ ଲୋକେ ବେଦାନ୍ତର ଅଧିକାରୀ ହୁଅନ୍ତି, ତାହାର କୌଣସି ଆବଶ୍ୟକତା ଆଉ ପଡ଼େ ନାହିଁ ।''

ଏହା କହି ଆଚାର୍ଯ୍ୟ ଗିରିଙ୍କ ମସ୍ତକ ସ୍ପର୍ଶପୂର୍ବକ ଆଶୀର୍ବାଦ କରି କହିଲେ, ''ଗିରି ! ତୁମେ ଅସୀମ ଗୁରୁଭକ୍ତି-ବଳରେ ଆଜି ସର୍ବବିଦ୍ୟାର ଅଧିକାରୀ ହେଲ । ତୁମର ଗୁରୁଭକ୍ତି ଜଗତରେ ଆଦର୍ଶସ୍ଥାନୀୟ ହୋଇ ରହିବ ।''

ଗିରି ଅବନତ ମସ୍ତକରେ ଆଶୀର୍ବାଦ ଗ୍ରହଣ କଲେ । ପଦ୍ମପାଦ, ସୁରେଶ୍ୱର ଓ ହସ୍ତାମଳକ ପ୍ରଭୃତି ଗିରିଙ୍କୁ ପ୍ରଣାମ କଲେ । ଗିରିଙ୍କର ପୂର୍ବର ଗମ୍ଭୀରଭାବ ଦୂରୀଭୂତ ହୋଇ ମୁଖରେ ହାସ୍ୟ ଦେଖାଗଲା । ସମସ୍ତେ କହିଲେ, ''ଧନ୍ୟ ଗିରି ! ଧନ୍ୟ ତୁମର ଗୁରୁଭକ୍ତି ।'' ଏପରି ଗୁରୁ ଓ ଗୁରୁ ଭକ୍ତଙ୍କ ସଙ୍ଗ ଲାଭ କରିଛନ୍ତି ବୋଲି ସମସ୍ତେ ନିଜ ନିଜକୁ ଧନ୍ୟ ମନେ କଲେ । ଦର୍ଶକମାନେ ମଧ୍ୟ ଆଚାର୍ଯ୍ୟଙ୍କ ମାହାତ୍ମ୍ୟ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଅନନ୍ତର ଆଚାର୍ଯ୍ୟ ଶୁଭଦିନ ଦେଖି ଗିରିଙ୍କୁ ସନ୍ନ୍ୟାସମନ୍ତ୍ରରେ ଦୀକ୍ଷିତ କଲେ । ଗିରିଙ୍କ ନାମ ହେଲା 'ତ୍ରୋଟକଚାର୍ଯ୍ୟ ।'

ହସ୍ତାମଳକ, ସୁରେଶ୍ୱର, ପଦ୍ମପାଦ ଓ ତ୍ରୋଟକାଚାର୍ଯ୍ୟ—ଏହି ଚାରିଜଣ ଶଙ୍କରଙ୍କର ପ୍ରଧାନ ଶିଷ୍ୟ । ଏମାନେ ସର୍ବଶାସ୍ତ୍ରରେ ପାରଦର୍ଶୀ ଥିଲେ । ଏମାନଙ୍କର ଆତ୍ମସଂଯମ, ବ୍ରହ୍ମନିଷ୍ଠା ଏବଂ ଅସାମାନ୍ୟ ବିଦ୍‌ବତ୍ତା ଦର୍ଶନ କରି ସମସ୍ତେ ବିସ୍ମିତ ହୋଇଗଲେ । କେହି କେହି ଉକ୍ତ ଚାରିଜଣଙ୍କୁ ବ୍ରହ୍ମାଙ୍କର ଚାରିମୁଖ ବୋଲି ବର୍ଣ୍ଣନା କରୁଥିଲେ । କେହି କେହି କହୁଥିଲେ ଏମାନେ ଚତୁର୍ବେଦର ସାକ୍ଷାତ୍ ପ୍ରତିମୂର୍ତ୍ତି । କିଏ ବା ଏମାନଙ୍କୁ ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହି ଚାରି ପୁରୁଷାର୍ଥ ବୋଲି କହୁଥିଲେ । ଅନ୍ୟମାନେ ଏହି ଚାରି ଜଣଙ୍କୁ ଚତୁର୍ବିଧ ମୁକ୍ତି ବୋଲି ଅଭିହିତ କରୁଥିଲେ । ଶଙ୍କର ଏହିସବୁ ପ୍ରତିଭାସମ୍ପନ୍ନ ଶିଷ୍ୟମାନଙ୍କୁ ପ୍ରାପ୍ତ ହୋଇ ନ ଥିଲେ ବା ଶିଷ୍ୟଙ୍କ ସାହାଯ୍ୟ ପାଇ ନ ଥିଲେ ବିରୁଦ୍ଧ ମତସମୂହର ଉଚ୍ଛେଦସାଧନପୂର୍ବକ ଲୋକଙ୍କ ହୃଦୟ କ୍ଷେତ୍ରରେ ଅଦ୍ୱୈତ ବିଦ୍ୟାର ପବିତ୍ର ବୀଜ ବପନ କରିବାକୁ ସମର୍ଥ ହୋଇପାରି ନ ଥାନ୍ତେ ।



# ପଦ୍ମପାଦ ଓ ଆଚାର୍ଯ୍ୟ ଶଙ୍କର

ଆଚାର୍ଯ୍ୟ ଶଙ୍କର ଗୁରୁଦେବଙ୍କ ଆଦେଶରେ କାଶୀଧାମରେ ବାସ କରୁଥିବା ବେଳେ ଅନେକେ ତାଙ୍କର ଶିଷ୍ୟତ୍ୱ ସ୍ୱୀକାର କରିଥିଲେ; କିନ୍ତୁ ପ୍ରଥମେ କେହି ତାଙ୍କ ଅବଲମ୍ବିତ ପଥର ଅନୁସରଣ କରିବାକୁ ଆଗ୍ରହ ପ୍ରକାଶ କରିନଥିଲେ । ଦିନେ ସନନ୍ଦନ ନାମକ ଜଣେ ବ୍ରାହ୍ମଣକୁମାର ତତ୍ତ୍ୱଜ୍ଞାନ ଲାଭ କରିବାନିମିତ୍ତ ଶଙ୍କରଙ୍କ ଚରଣତଳେ ଉପସ୍ଥିତ ହେଲେ । ଶଙ୍କର ଏହି ବାଳକର ଅନିର୍ବଚନୀୟ ଦେହକାନ୍ତି ଓ ଅପୂର୍ବ ବିନୟଭାବ ସନ୍ଦର୍ଶନ କରି ଅତିଶୟ ପରିତୁଷ୍ଟ ହେଲେ ଏବଂ ଆଦରପୂର୍ବକ ପ୍ରଶ୍ନ କଲେ, ''ବାଳକ ! ତୁମ ପରିଚୟ ପ୍ରଦାନ କର । ତୁମ ଶରୀରରେ ଅହଙ୍କାର ଲେଶମାତ୍ର ଦେଖାଯାଉ ନାହିଁ ଏବଂ ତୁମର ଧୈର୍ଯ୍ୟ ଦର୍ଶନ କରି ମୁଁ ଏକାନ୍ତ ପରିତୁଷ୍ଟ ହୋଇଅଛି ।'' ବ୍ରାହ୍ମଣକୁମାର କହିଲେ, ''ଗୁରୁଦେବ ! ମୁଁ ବ୍ରାହ୍ମଣ, ପୁଣ୍ୟସଲୀଳା କାବେରୀ ନଦୀତୀରବର୍ତ୍ତୀ ଚୋଳ ପ୍ରଦେଶ (ବର୍ତ୍ତମାନ ମହୀଶୂର ରାଜ୍ୟର ଦକ୍ଷିଣାଂଶ) ମୋର ଜନ୍ମଭୂମି । ମୁଁ ଗୁରୁ ଅନ୍ୱେଷଣ କରିବାକୁ ଆସି ଆପଣଙ୍କ ଚରଣତଳେ ଉପନୀତ ହୋଇଅଛି । ମହାଶୟ ! ମୁଁ ସଂସାରର ମୋହରେ ବିମୁଗ୍ଧ ଏବଂ ଏକାନ୍ତ ଶଙ୍କିତ । ମୋ ପ୍ରତି କୃପା କରନ୍ତୁ । ମୁଁ ଯେପରି ମୋହପାଶରୁ ମୁକ୍ତିଲାଭ କରିପାରିବି, ତାହାର ଉପାୟ ନିର୍ଦ୍ଧାରଣ କରିଦିଅନ୍ତୁ । ଗୁରୁଦେବ ! ସଂସାରପଥ ଅତିଶୟ ବିଘ୍ନସଙ୍କୁଳ । ଏଠାରେ ପ୍ରତି ପଦକ୍ଷେପରେ ମାନବର ସ୍ଖଳନ ନିଶ୍ଚିତ । ଆପଣ ମୋତେ ଏଥିରୁ ଉଦ୍ଧାର କରି ସୁପଥ ପ୍ରଦର୍ଶନ କରନ୍ତୁ । ଆପଣଙ୍କ ବାକ୍ୟ ଅମୃତସଦୃଶ ସ୍ନିଗ୍ଧ । ଜଗତବାସୀ ସମସ୍ତେ ସଂସାର-ତାପରେ ଏକାନ୍ତ ସନ୍ତପ୍ତ । ହିତାହିତ ବିଚାର କରିବାକୁ ଅଶକ୍ତ । ମୋର ବିଶ୍ୱାସ, ସେମାନେ ଆପଣଙ୍କ ଉପଦେଶ ପାଳନ କଲେ କଲ୍ୟାଣଭୋଗୀ ହେବେ । ଯେଉଁମାନେ ଆପଣଙ୍କ ଉପଦେଶ ପାଳନ କରିବାକୁ ଶ୍ରଦ୍ଧାବାନ, ଇନ୍ଦ୍ରଙ୍କର ଅମରାବତୀ, ସୁଧାଂଶୁଙ୍କର ସୁଧା, କୁବେରଙ୍କର ଅଳକାପୁରୀ ଏବଂ ଗନ୍ଧର୍ବମାନଙ୍କର ମନୋହର ସୌଧମାଳା ମଧ୍ୟ ସେମାନଙ୍କର ବୈରାଗ୍ୟ ବିନାଶ କରିବାକୁ ସକ୍ଷମ ହେବ ନାହିଁ । ଆପଣଙ୍କର ଚିତ୍ତ କୌଣସିଥିଲେ ହେଲେ ଆସକ୍ତ ନୁହେଁ । କୌଣସି ପାର୍ଥିବ ଭୋଗ୍ୟବସ୍ତୁ ଆପଣଙ୍କ ଚିତ୍ତକୁ ଆକର୍ଷଣ କରିବାପାଇଁ ସମର୍ଥ ନୁହେଁ । ମୋର ମଧ୍ୟ ଇହକାଳ କିମ୍ବା ପରକାଳଭୋଗରେ ସ୍ପୃହା ନାହିଁ ।

ଆପଣଙ୍କ ଉପଦେଶ-ସୁଧା ପାନ କରିବାନିମିତ୍ତ ମୁଁ ଏକାନ୍ତ ଉତ୍ସୁକ ହୋଇଅଛି । ପ୍ରଭୋ ! ଅନୁମତି ପ୍ରଦାନ କଲେ ମୁଁ ଆଜୀବନ ଆପଣଙ୍କର ସେବକପଦରେ ନିଯୁକ୍ତ ରହି ଉପାସନା କରିବି ।''

ଆଚାର୍ଯ୍ୟ ସନନ୍ଦନଙ୍କ ବାକ୍ୟ ଶ୍ରବଣ କରି ଏବଂ ତାଙ୍କର ବୈରାଗ୍ୟଭାବ ଦର୍ଶନ କରି ଅତିଶୟ ପ୍ରସନ୍ନ ହେଲେ ଏବଂ ସନନ୍ଦନଙ୍କୁ ତାଙ୍କ ନିକଟରେ ରହିବାପାଇଁ ଅନୁମତି ପ୍ରଦାନ କଲେ । ପରସ୍ପର ମଧ୍ୟରେ କେତେଦିନ ପର୍ଯ୍ୟନ୍ତ ପରୀକ୍ଷା ଚାଲିଲା । ଉଭୟେ ଉଭୟଙ୍କ ପ୍ରତି ସନ୍ତୁଷ୍ଟ ହେଲେ । ଗୁରୁ-ଶିଷ୍ୟଙ୍କ ମଧ୍ୟରେ ଏହିପରି ପରୀକ୍ଷା ବିଷୟ ଶାସ୍ତ୍ରରେ ଉଲ୍ଲେଖ ଅଛି । ଆଚାର୍ଯ୍ୟ ଦିନେ କହିଲେ, ''ସନନ୍ଦନ ! ସନ୍ନ୍ୟାସ ବ୍ୟତୀତ ମୁକ୍ତି ନାହିଁ । ଜ୍ଞାନର ଲକ୍ଷଣ ସନ୍ନ୍ୟାସ ଏବଂ ସନ୍ନ୍ୟାସର ଫଳରେ ହିଁ ମୁକ୍ତି ।'' ସନନ୍ଦନ କହିଲେ, ''ପ୍ରଭୋ ! ମୁଁ ବହୁପୂର୍ବରୁ ଆପଣଙ୍କ ନିକଟରେ ଆତ୍ମସମର୍ପଣ କରିସାରିଛି ।'' ଏହାପରେ ଯଥାସମୟରେ ଶଙ୍କର ବୈଦିକ ବିଧି ଅନୁସାରେ ସନନ୍ଦନଙ୍କୁ ସନ୍ନ୍ୟାସଦୀକ୍ଷା ପ୍ରଦାନ କଲେ । ଏହି ସନନ୍ଦନ ହିଁ ଶଙ୍କରଙ୍କର ପ୍ରଥମ ସନ୍ନ୍ୟାସୀ ଶିଷ୍ୟ ।

ତତ୍ପରେ ଶଙ୍କର ବିଶ୍ୱନାଥଙ୍କ ଆଦେଶ କ୍ରମେ ଭାଷ୍ୟ ରଚନା କରିବା ନିମିତ୍ତ କତିପୟ ଶିଷ୍ୟଙ୍କ ସହିତ କାଶୀ ତ୍ୟାଗ କରି ବଦରିକାଶ୍ରମ ଉଦ୍ଦେଶ୍ୟରେ ଯାତ୍ରାକଲେ ଏବଂ ବଦରିକାତୀର୍ଥରେ ଭାଷ୍ୟରଚନାରେ ନିରତ ରହିଲେ । ଭାଷ୍ୟ ରଚନା କରିବା ସଙ୍ଗେ ସଙ୍ଗେ ଭାଷ୍ୟ ପାଠ ହେଉଥାଏ । ସମସ୍ତଙ୍କଠାରୁ କିଛି ଅଧିକା ଭାବରେ ଶଙ୍କର ସନନ୍ଦନଙ୍କୁ ଭାଷ୍ୟପାଠ କରାଉଥିବା ଦେଖି ଅନ୍ୟ ଶିଷ୍ୟମାନଙ୍କ ମନରେ ଟିକିଏ ଈର୍ଷାର ସଞ୍ଚାର ହେଲା । କାରଣ କେହି ବୁଝିଲେ ନାହିଁ ଯେ ଗୁରୁ ଶିଷ୍ୟକୁ ଯେଉଁ ଉପଦେଶ ଦାନ କରନ୍ତି, ତାହା କେବଳ ଗୁରୁଙ୍କ ଦୟା ଉପରେ ନିର୍ଭର କରେ ନାହିଁ, ଏହା ଶିଷ୍ୟର ଆକର୍ଷଣଶକ୍ତିର ମଧ୍ୟ ପରିଚାୟକ । ଯାହାହେଉ, ଶଙ୍କର ଶିଷ୍ୟମାନଙ୍କର ଭାବ ବୁଝି କିପରି ଏହା ଦୂର କରିବେ ଏହି ସୁଯୋଗର ଅପେକ୍ଷା କରିବାକୁ ଲାଗିଲେ ।

ଦିନେ ସନନ୍ଦନ କୌଣସି କାର୍ଯ୍ୟ ଉପଲକ୍ଷ୍ୟରେ ଅଳକାନନ୍ଦା ନଦୀର ପରପାରକୁ ଗମନ କରିଥିଲେ । କିଛି ଦୂରରେ ଗୋଟିଏ ଚିରତୁଷାର ସେତୁ ବିଦ୍ୟମାନ । ପରପାରକୁ ଯିବାକୁ ହେଲେ ଅନେକ ବାଟ ବୁଲି ସେହି ସେତୁ ଉପର ଦେଇ ଯିବାକୁ ହୁଏ । ଆଚାର୍ଯ୍ୟ ଶିଷ୍ୟମାନଙ୍କ ସହିତ ଅପରପାର୍ଶ୍ୱରେ ନିଜ

ଭାବରେ ବିଭୋର ହୋଇ ବସିଛନ୍ତି । ସନନ୍ଦନ ଓ ସେମାନଙ୍କ ମଧ୍ୟରେ ବ୍ୟବଧାନ ଅତି ଅଳ୍ପ । ଏପରି କି କଥା କହିଲେ ମଧ୍ୟ ଶୁଣାଯାଏ । କିନ୍ତୁ ଉଭୟଙ୍କ ମଧ୍ୟରେ ବେଗବତୀ ସ୍ରୋତସ୍ୱତୀ ଅଳକାନନ୍ଦା ପରସ୍ପରକୁ ବହୁ ଦୂରରେ ଅବସ୍ଥାପିତ କରୁଅଛି ।

ଶିଷ୍ୟମାନଙ୍କୁ ସନନ୍ଦନଙ୍କର ମହତ୍ତ୍ୱ ପରିଚୟ ଦେବାପାଇଁ ଏହା ଉତ୍ତମ ସୁଯୋଗ ଜାଣି କୌଣସି ଗୁରୁତର ବିପଦ ଉପସ୍ଥିତ ହୋଇଥିବା ଭଳି କାତରସ୍ୱରରେ ଆଚାର୍ଯ୍ୟ ଡାକପକାଇଲେ, ''ସନନ୍ଦନ ! ମୋ ନିକଟକୁ ଶୀଘ୍ର ଆ, ସନନ୍ଦନ ! ଶୀଘ୍ର ଆ ।''

ସନନ୍ଦନ ଏତେଦିନ ପର୍ଯ୍ୟନ୍ତ ଗୁରୁଦେବଙ୍କ ନିକଟରେ ରହିଥିଲେ ମଧ୍ୟ ଗୁରୁଦେବଙ୍କୁ ପୂର୍ବରୁ କେବେହେଲେ ଏପରି ବ୍ୟସ୍ତ ହେବାର ଦେଖି ନ ଥିଲେ । ଶିଷ୍ୟମାନେ ବ୍ୟାକୁଳ ହୋଇ ଆଚାର୍ଯ୍ୟଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲେ । ସନନ୍ଦନ ପରପାରରେ ଥାଇ ଆଚାର୍ଯ୍ୟଙ୍କ ବ୍ୟାକୁଳଭାବ ଦର୍ଶନ କରି ଶୀଘ୍ର ଗୁରୁଦେବଙ୍କ ନିକଟକୁ ଆସିବାପାଇଁ ଉତ୍ସୁକ ହୋଇପଡ଼ିଲେ । କିନ୍ତୁ ସମ୍ମୁଖରେ ବେଗବତୀ ଗଙ୍ଗା । ସେ ଭାବିଲେ, କିପରି ଏ ନଦୀକୁ ପାର ହେବି ! ହଠାତ୍ ମନେପଡ଼ିଗଲା, ଗୁରୁଦେବଙ୍କଠାରେ ଯାହାଙ୍କର ଭକ୍ତିବିଶ୍ୱାସ ଥିବ, ସେ ସଂସାରରୂପ ମହାସମୁଦ୍ର ଅନାୟାସରେ ଉତ୍ତୀର୍ଣ୍ଣ ହୋଇପାରିବେ । ଏ କଥା ଭାବି ସେ ଚିନ୍ତା କଲେ, ତାହାହେଲେ ମୁଁ ସର୍ବଦା ଗୁରୁପଦରେ ମତି ରଖି ମଧ୍ୟ ଏହି ସାମାନ୍ୟ ଅପ୍ରଶସ୍ତ ପ୍ରବାହିନୀର ପରପାରକୁ ଯାଇପାରିବି ନାହିଁ ? ଏହା ଭାବି ସେ ନଦୀର ଗଭୀରତା କଥା ବିଚାର ନ କରି ଜଳମଧ୍ୟରେ ପଦନିକ୍ଷେପ କରି ଅଗ୍ରସର ହେବାକୁ ଲାଗିଲେ । ଯେଉଁ ସ୍ରୋତରେ ସାମାନ୍ୟ ତୃଣ ମଧ୍ୟ ସ୍ଥିର ରହିପାରେ ନାହିଁ, ଗୁରୁଗତପ୍ରାଣ ସନନ୍ଦନଙ୍କୁ ରକ୍ଷାକରିବା ନିମିତ୍ତ ଜାହ୍ନବୀ ଦେବୀ ସେହି ନଦୀସ୍ରୋତରେ ସନନ୍ଦନଙ୍କ ଗନ୍ତବ୍ୟପଥର ପ୍ରତି ପଦକ୍ଷେପରେ ଶ୍ରେଣୀବଦ୍ଧଭାବରେ ପଦ୍ମପୁଷ୍ପ ବିକଶିତ କରିଦେଲେ । ସନନ୍ଦନ ସେହି ପଦ୍ମଗୁଡ଼ିକ ଉପରେ ପଦକ୍ଷେପ କରି ନଦୀ ପାର ହୋଇ ଶଙ୍କରଙ୍କ ନିକଟରେ ଉପସ୍ଥିତ ହେଲେ । ଏହା ପରେ ଶଙ୍କରଙ୍କ ହୃଦୟ ଅତି ଆନନ୍ଦରେ ପୂର୍ଣ୍ଣ ହୋଇଗଲା । ଶିଷ୍ୟଗଣ ଅବାକ୍ ହୋଇ ଏହା ଲକ୍ଷ୍ୟ କରୁଥିଲେ । କ୍ଷଣକାଳ ପରେ ଆଚାର୍ଯ୍ୟ ଅନ୍ୟ ଶିଷ୍ୟମାନଙ୍କୁ ଲକ୍ଷ୍ୟ କରି କହିଲେ, ''ଦେଖ, ସନନ୍ଦନଙ୍କ ପ୍ରତି ଭଗବତୀଙ୍କର କିପରି ଅପାର କରୁଣା ! ତୁମେମାନେ ଆଜିଠାରୁ ସନନ୍ଦନଙ୍କୁ ପଦ୍ମପାଦ ବୋଲି ସମ୍ବୋଧନ କରିବ ।'' ଏହା କହି

ସନନ୍ଦନଙ୍କୁ ଆଲିଙ୍ଗନ କରି 'ପଦ୍ମପାଦ' ନାମ ପ୍ରଦାନ କଲେ ।

ସନନ୍ଦନ ସମସ୍ତ ବିଷୟ ବୁଝିପାରି ସଲଜ୍ଜଭାବରେ ଆଚାର୍ଯ୍ୟଙ୍କ ପଦଧୂଳି ଗ୍ରହଣ କଲେ ଏବଂ ଅଶ୍ରୁ ବିସର୍ଜନପୂର୍ବକ ଆଚାର୍ଯ୍ୟଙ୍କ ପଶ୍ଚାତ୍‌ଭାଗରେ ଉପବେଶନ କଲେ । ଶିଷ୍ୟମାନେ ମଧ୍ୟ ସେମାନଙ୍କ ଦୋଷ ବୁଝିପାରି ସତର୍କ ହେଲେ । ପଦ୍ମପାଦ ସର୍ବଦା ଗୁରୁଦେବଙ୍କ ଶୁଶ୍ରୂଷାରେ ରତ ରହି ଶଙ୍କରଙ୍କ ନିକଟରୁ ଏକାଗ୍ରଚିତ୍ତରେ ଆଧ୍ୟାତ୍ମ୍ୟବିଦ୍ୟାର ଉପଦେଶ ଗ୍ରହଣ କରିବାକୁ ଲାଗିଲେ । ଆଚାର୍ଯ୍ୟ ଅନ୍ୟ ଶିଷ୍ୟମାନଙ୍କୁ କହିଲେ, ''ତୁମେମାନେ ପଦ୍ମପାଦ ପରି ଗୁରୁଭକ୍ତ ହେବାକୁ ଚେଷ୍ଟା କର, ନିଶ୍ଚୟ ପୂର୍ଣ୍ଣମନୋରଥ ହେବ ।''



# ଶଙ୍କରଙ୍କ ଉଦାରଭାବ

ଆଚାର୍ଯ୍ୟ ଶଙ୍କର ମଣ୍ଡନ ମିଶ୍ରଙ୍କୁ ପ୍ରାପ୍ତ ହୋଇ ଦକ୍ଷିଣାଭିମୁଖରେ ଯାତ୍ରା କରୁଥିବାବେଳେ ମହାରାଷ୍ଟ୍ର ପ୍ରଭୃତି ଦେଶରେ ନିଜର ମତ ଓ ଗ୍ରନ୍ଥ ସବୁ ପ୍ରଚାର କରିବାକୁ ଲାଗିଲେ । ଏଥିରେ ସେ ଦେଶ ଲୋକଙ୍କର ଅନ୍ୟାନ୍ୟ ମତ ପ୍ରତି ଯେଉଁ ଆସ୍ଥା ଥିଲା, ତାହା ସଂପୂର୍ଣ୍ଣଭାବରେ ଦୂରୀଭୂତ ହେଲା । ତତ୍ପରେ ସେ ଶିଷ୍ୟମାନଙ୍କ ସହିତ ଭ୍ରମଣ କରି 'ଶ୍ରୀପର୍ବତ' ନାମକ ସ୍ଥାନରେ ଉପନୀତ ହେଲେ । କୃଷ୍ଣା ଓ ତୁଙ୍ଗଭଦ୍ରାର ସଙ୍ଗମସ୍ଥଳରେ ଶ୍ରୀଶୈଳ ଅବସ୍ଥିତ । ଏହି ପର୍ବତର ଶୃଙ୍ଗଗୁଡ଼ିକ ଅତିଶୟ ଉଚ୍ଚ । ପର୍ବତର ଉପରିଭାଗରେ ଗୋଟିଏ ନଦୀ ପ୍ରବାହିତ । ପ୍ରଫୁଲ୍ଲ କୁସୁମରେ ସମ୍ମୁଖସ୍ଥ ବନରାଜି ସୁଶୋଭିତ । ବିଶେଷତଃ ମଲ୍ଲିକା ପୁଷ୍ପର ସୌରଭରେ ଚତୁର୍ଦ୍ଦିଗ ସୁଗନ୍ଧୀକୃତ । ନଦୀତୀରସ୍ଥ ଉପବନ ମଧ୍ୟରେ ଗୋଟିଏ ପୁରାତନ ଶିବମନ୍ଦିର । ଏଥିରେ ଯେଉଁ ମହାଦେବ ଅବସ୍ଥିତ, ତାଙ୍କର ନାମ 'ମଲ୍ଲିକାର୍ଜ୍ଜୁନ' । ତାଙ୍କର ବାମଭାଗରେ ଭ୍ରମରା ଦେବୀ ମଲ୍ଲିକାର୍ଜ୍ଜୁନଙ୍କ ପତ୍ନୀରୂପରେ ବିରାଜମାନା । କଥିତ ଅଛି—ତୃତୀୟ ପାଣ୍ଡବ ଅର୍ଜ୍ଜୁନ ଏହି ମଲ୍ଲିକାକାନନ ମଧ୍ୟସ୍ଥ ମହାଦେବଙ୍କୁ ପ୍ରସ୍ଫୁଟିତ ମଲ୍ଲିକା କୁସୁମଦ୍ୱାରା ପୂଜା କରୁଥିବାରୁ ଏହାଙ୍କ ନାମ 'ମଲ୍ଲିକାର୍ଜ୍ଜୁନ' ହୋଇଅଛି । ଶଙ୍କର ଏହି ସ୍ଥାନରେ କିଛିଦିନ ଅବସ୍ଥାନ କରି ଶିଷ୍ୟମାନଙ୍କୁ ଶାରୀରିକ ସୂତ୍ରର ଉପଦେଶ ପ୍ରଦାନ କରିବାକୁ ଲାଗିଲେ । ଆଚାର୍ଯ୍ୟଙ୍କ ଆଗମନ ବାର୍ତ୍ତା ଶ୍ରବଣ କରି ନାନା ସଂପ୍ରଦାୟର ସାଧୁ-ସନ୍ନ୍ୟାସୀ ଦଳବଦ୍ଧ ହୋଇ ତାଙ୍କୁ ଦର୍ଶନ କରିବା ଇଚ୍ଛାରେ ଆଗମନ କଲେ । ସେମାନଙ୍କ ମଧ୍ୟରେ ପାଶୁପତ, ବୈଷ୍ଣବ, ଶାକ୍ତ, କାପାଳିକ ସଂପ୍ରଦାୟଙ୍କର ସଂଖ୍ୟା ଅତି ଅଧିକ । ଏମାନଙ୍କ ନେତାମାନେ ଆଚାର୍ଯ୍ୟଙ୍କର ଅଦ୍ୱୈତମତ ଶ୍ରବଣ କରି କ୍ରମେ ତାହାର ବିରୋଧୀ ହୋଇ ବିଚାରପ୍ରାର୍ଥୀ ହେଲେ । ଆଚାର୍ଯ୍ୟ ସେମାନଙ୍କସହିତ ବିଚାର କରିବାନିମିତ୍ତ ଶିଷ୍ୟମାନଙ୍କୁ ନିର୍ଦ୍ଦେଶ ଦେଲେ । ସେମାନେ ପରାଜିତ ହୋଇ ନିଜ ନିଜ ଧର୍ମମତ ପରିତ୍ୟାଗପୂର୍ବକ ଶଙ୍କରଙ୍କର ଶିଷ୍ୟତ୍ୱ ସ୍ୱୀକାର କଲେ । ଦେଶୀୟ ରାଜନ୍ୟବର୍ଗ ମଧ୍ୟ ଶଙ୍କରଙ୍କର ଶିଷ୍ୟତ୍ୱ ସ୍ୱୀକାର କରିବାକୁ ଲାଗିଲେ । ତ୍ୟାଗ-ସଂଯମପ୍ରଧାନ ଉପଦେଶ ଶ୍ରବଣ କରି ଧର୍ମ ନାମରେ ଅଧର୍ମାଚାରୀ ଭୋଗପ୍ରଧାନ ସଂପ୍ରଦାୟମାନଙ୍କର ବିଷମ ମନୋବେଦନା ଉପସ୍ଥିତ ହେଲା; କିନ୍ତୁ ଏମାନଙ୍କ

ମଧ୍ୟରୁ ଆଚାର୍ଯ୍ୟଙ୍କ ଉପରେ କାପାଳିକ ସଂପ୍ରଦାୟର କ୍ରୋଧ ଟିକିଏ ପ୍ରବଳ ଆକାର ଧାରଣ କଲା । କର୍ଣ୍ଣାଟ ଦେଶୀୟ କାପାଳିକ ରାଜା 'କ୍ରକଚ' ଏହି ସମ୍ବାଦ ଶ୍ରବଣ କରି ବିଚଳିତ ହୋଇପଡ଼ିଲେ ଏବଂ ଆଚାର୍ଯ୍ୟଙ୍କୁ ହତ୍ୟା କରିବାନିମିତ୍ତ ଲୋକ ନିଯୁକ୍ତ କରିବାକୁ ମନସ୍ଥ କଲେ । ଉଗ୍ରଭୈରବ ନାମକ ଜନୈକ କାପାଳିକ ସେହି ଶ୍ରୀଶୈଳରେ ଅବସ୍ଥାନ କରୁଥିଲା । ସେ କାପାଳିକ ରାଜା କ୍ରକଚଙ୍କ ଶିଷ୍ୟ ଓ ଶ୍ରୀଶୈଳର କାପାଳିକ ସଂପ୍ରଦାୟର ନେତା । ଉଗ୍ରଭୈରବ ପ୍ରଥମରୁ ଆଚାର୍ଯ୍ୟଙ୍କ ସହିତ ବିଚାରାଦି କରୁଥିଲା ଏବଂ ପରାସ୍ତ ହୋଇ କାପାଳିକ ରାଜା କ୍ରକଚଙ୍କୁ ସେ ସମ୍ବାଦ ପ୍ରେରଣ କଲା । କ୍ରକଚଙ୍କ ଇଚ୍ଛାନୁସାରେ ଓ ନିଜ ଅଭୀଷ୍ଟସିଦ୍ଧି କାମନାରେ କୌଶଳକ୍ରମେ ଆଚାର୍ଯ୍ୟଙ୍କୁ ହତ୍ୟା କରିବାପାଇଁ ସଂକଳ୍ପ କରି ଉଗ୍ରଭୈରବ ଆଚାର୍ଯ୍ୟଙ୍କ ସମୀପରେ ଉପସ୍ଥିତ ହେଲା ।

ଦିନେ ଶଙ୍କର ଶିଷ୍ୟମାନଙ୍କୁ ଅଧ୍ୟାପନା କରାଇ ଏକାନ୍ତ ମନରେ ଉପବେଶନ କରୁଛନ୍ତି, ଏପରି ସମୟରେ ଉଗ୍ରଭୈରବ ଆଚାର୍ଯ୍ୟଙ୍କ ସମୀପରେ ଉପନୀତ ହୋଇ ନିଜ ମତ ତ୍ୟାଗ କରି ଆଚାର୍ଯ୍ୟଙ୍କ ଶିଷ୍ୟତ୍ୱ ଗ୍ରହଣ କରିବାନିମିତ୍ତ ଆଗ୍ରହ ପ୍ରକାଶ କଲା । ଆଚାର୍ଯ୍ୟଙ୍କ ଦ୍ୱାର ସର୍ବଦା ସମସ୍ତଙ୍କପାଇଁ ଉନ୍ମୁକ୍ତ । ସରଳଚିତ୍ତ ଆଚାର୍ଯ୍ୟ ତତ୍‌କ୍ଷଣାତ୍ ଉଗ୍ରଭୈରବକୁ ଆଶ୍ରୟ ପ୍ରଦାନ କଲେ । ଉଗ୍ରଭୈରବ ଶିଷ୍ୟତ୍ୱ ସ୍ୱୀକାର କରି ଏପରି ଭାବରେ ସେବା କଲା ଯେ ସମସ୍ତେ ତା ସେବାରେ ସନ୍ତୁଷ୍ଟ ହୋଇଗଲେ ।

ଦିନେ ଉପଯୁକ୍ତ ସମୟ ଦେଖି ଉଗ୍ରଭୈରବ ଆଚାର୍ଯ୍ୟଙ୍କ ଚରଣ ତଳେ ପତିତ ହୋଇ ପ୍ରଣିପାତପୂର୍ବକ ଅଶ୍ରୁ ବିସର୍ଜନ କରିବାକୁ ଲାଗିଲା । ଆଚାର୍ଯ୍ୟ ଏହା ଦେଖି କହିଲେ, "ଉଗ୍ରଭୈରବ ! ଆଜି ହଠାତ୍ ତୁମର ଏପରି ଭାବାନ୍ତର ଉପସ୍ଥିତ ହେଲା କାହିଁକି ? ତୁମର କ'ଣ ହୋଇଛି କହ ।" ଉଗ୍ରଭୈରବ ଯୁକ୍ତକରରେ ବିନୀତ ଭାବରେ କହିଲା, "ଭଗବାନ ! ଏହି କେତେଦିନ ହେଲା ଆପଣଙ୍କ ସଙ୍ଗ ଲାଭ କରି ବୁଝିପାରିଛି ଯେ, ଆପଣ ସାକ୍ଷାତ୍ ଶଙ୍କର । ଆପଣ ଜଗତ ଉଦ୍ଧାର କରିବାନିମିତ୍ତ ମାନବଦେହ ଧାରଣ କରିଛନ୍ତି । ଉଦାରତା ଆପଣଙ୍କଠାରେ ମୂର୍ତ୍ତିମତୀ ହୋଇ ବିରାଜିତ । ଆତ୍ମପରଜ୍ଞାନ, ଦେହାଭିମାନ ଆପଣଙ୍କର ନାହିଁ । ଆପଣଙ୍କର ଅଣୁମାତ୍ର କୃପାକଟାକ୍ଷରେ ସାଧୁମାନଙ୍କ ହୃଦୟ-ବ୍ୟଥା ବିଦୂରିତ ହୁଏ ।" ଏହା କହି ଉଗ୍ରଭୈରବ ପୁନରାୟ କ୍ରନ୍ଦନ କରିବାକୁ ଲାଗିଲା । ଆଚାର୍ଯ୍ୟ

ଉଗ୍ରଭୈରବର କାତରତା ଦର୍ଶନ କରି କହିଲେ, ''ତୁମର କାତର ହେବାର କିଛି ପ୍ରୟୋଜନ ନାହିଁ । ତୁମେ କ'ଣ ଚାହୁଁଛ ପ୍ରକାଶ କଲେ ମୋଦ୍ୱାରା ଯାହା ହୋଇପାରିବ, ତୁମେ ସେଥିରୁ ବଞ୍ଚିତ ହେବ ନାହିଁ ।'' ଏହା ଶୁଣି ଉଗ୍ରଭୈରବ ଦେହରେ ପ୍ରାଣର ସଞ୍ଚାର ହେଲା । ସେ ଅଶ୍ରୁପୂର୍ଣ୍ଣନେତ୍ରରେ କହିବାକୁ ଲାଗିଲା, ''ଗୁରୁଦେବ, ମୁଁ ସଶରୀରରେ କୈଳାସପତି ପରମେଶ୍ୱରଙ୍କସହିତ ଏକତ୍ର ବାସ କରିବାପାଇଁ କାମନା କରି ଆଜକୁ ଶହେ ବର୍ଷ ଧରି ଦୁଷ୍କର ତପସ୍ୟା କରି ଆସୁଛି । ଭଗବାନ ତୁଷ୍ଟ ହୋଇ ମୋତେ ଏହି ବର ଦେଇଛନ୍ତି ଯେ, ତୁ ଯଦି ମୋର ପ୍ରୀତିକାମନାନିମିତ୍ତ କୌଣସି ରାଜା କିମ୍ବା କୌଣସି ସର୍ବଜ୍ଞ ପୁରୁଷଙ୍କର ମସ୍ତକଦ୍ୱାରା ଅଗ୍ନିରେ ହୋମ କରିପାରିବୁ, ତେବେ ତୋର ଅଭିଳାଷ ପୂର୍ଣ୍ଣ ହେବ । ମୋ ସଦୃଶ ବ୍ୟକ୍ତିପକ୍ଷରେ ନୃପତିମସ୍ତକ ଲାଭ କରିବା ଏକାନ୍ତ ଅସମ୍ଭବ ବୋଲି ଜାଣି ବହୁ ଅନୁସନ୍ଧାନ ପରେ ଆପଣଙ୍କୁ ସର୍ବଜ୍ଞ ବୋଲି ଜାଣିପାରିଛି । ଏହା ମୋର ଅତିଶୟ ସୌଭାଗ୍ୟର କଥା । ମୁନିବର ! ଅନୁଗ୍ରହ କରି ମୋ ପ୍ରାର୍ଥନା ପୂର୍ଣ୍ଣ କରନ୍ତୁ । ମହର୍ଷି ଦଧୀଚି ଯେପରି ଜଗତର ଉପକାର କରିବାନିମିତ୍ତ ଏହି କ୍ଷଣଭଙ୍ଗୁର ଦେହ ପରିତ୍ୟାଗପୂର୍ବକ କୀର୍ତ୍ତିବନ୍ତ ଦେହ ଲାଭ କରିଥିଲେ—ସେହିପରି ଆପଣ ମଧ୍ୟ ସ୍ୱୀୟ ମସ୍ତକ ପ୍ରଦାନପୂର୍ବକ ମୋର ପରମ ଉପକାର ସାଧିତ କରି ପୁଣ୍ୟପ୍ରବାହରେ ପୃଥିବୀ ପରିପ୍ଲାବିତ କରନ୍ତୁ । ଜ୍ଞାନୀବର, ମୁଁ ଦେହୀମାନଙ୍କର ଅଦେୟ ବସ୍ତୁ ପ୍ରାର୍ଥନା କରିଛି ସତ, ତଥାପି ଆପଣ ଇଚ୍ଛା କଲେ ତାହା ପ୍ରଦାନ କରିପାରନ୍ତି । କାରଣ ଆପଣ ସମସ୍ତ ପାର୍ଥିବବସ୍ତୁ ଉପରୁ ବୀତରାଗ ହୋଇପାରିଛନ୍ତି ।'' ଏହା କହି ଉଗ୍ରଭୈରବ ଆଚାର୍ଯ୍ୟଙ୍କ ଚରଣତଳେ ପତିତ ହୋଇ କୃପାଭିକ୍ଷା କଲା ।

ଶଙ୍କର ତାର କଥା ଶୁଣି କହିଲେ, ''ତାପସପ୍ରବର ! ତୁମେ ଯାହା ଅଭିଳାଷ କରିଅଛ, ତାହା ମାନବର ଚରମ ଲକ୍ଷ୍ୟ ହେବା ଉଚିତ ନୁହେଁ । ଏହା ମଧ୍ୟ ଅନିତ୍ୟ । ଶିବଲୋକରେ ଯେଉଁମାନେ ବାସକରନ୍ତି, ସେମାନେ ଶିବଙ୍କ କୃପାବଳରେ ଅଦ୍ୱୈତଜ୍ଞାନ ଲାଭ କରି ପରିଶେଷରେ ନିର୍ବାଣମୁକ୍ତି ଲାଭ କରନ୍ତି । ବ୍ରହ୍ମା, ବିଷ୍ଣୁ, ଶିବ ଏକ ପରମାତ୍ମାଙ୍କର ମାୟିକ ରୂପ । ଅଦ୍ୱୈତ ବ୍ରହ୍ମଜ୍ଞାନ ଭିନ୍ନ ଜୀବର ମୁକ୍ତି ନାହିଁ । ଦ୍ୱୈତଜ୍ଞାନ ଥିଲେ ଭୟ ଥାଏ ଏବଂ ଭୟ ଥିଲେ ଦୁଃଖ ଆସେ । ଏକମାତ୍ର ଅଦ୍ୱୈତଜ୍ଞାନ ହିଁ ଅଭୟ । ସେ ଜ୍ଞାନରେ ଜୀବ ଅଭୟପଦ,

ଲାଭ କରେ । ଶିବ, ବ୍ରହ୍ମା, ବିଷ୍ଣୁପଦରେ ମଧ୍ୟ ଦୁଃଖ ବିଦ୍ୟମାନ । ଏ ଜଗତ ତୁଳନାରେ ସେଠାରେ ଅନନ୍ତ ସୁଖ ଥିଲେ ମଧ୍ୟ ତାହା ଦୁଃଖଲେଶପରିଶୂନ୍ୟ ସୁଖ ନୁହେଁ । ତୁମେ ବୃଦ୍ଧ ଓ ବୁଦ୍ଧିମାନ୍ ସାଧକ, ତୁମେ ଏପରି ଅନିତ୍ୟ ସୁଖନିମିତ୍ତ ଏତେ ଆଗ୍ରହ ପ୍ରକାଶ କରୁଛ କାହିଁକି ? ଜାଣିରଖ, ତୁମେ ଯେପରି କାର୍ଯ୍ୟଦ୍ୱାରା ସୁଖ ଲାଭ କରିବାକୁ ଇଚ୍ଛା କରୁଛ, ସେ କାର୍ଯ୍ୟର ଫଳ ମଧ୍ୟ ଦୁଃଖ; ସୁତରାଂ ଏପରି ଆଗ୍ରହ ପ୍ରକାଶ କରିବା ତୁମର ଉଚିତ ହେଉନାହିଁ ।'' ଆଚାର୍ଯ୍ୟଙ୍କ ବାକ୍ୟ ଶ୍ରବଣ କରି ଉଗ୍ରଭୈରବ ବ୍ୟାକୁଳଭାବରେ କହିବାକୁ ଲାଗିଲା, ''ଭଗବାନ୍ ! ମୁଁ ସତ୍ୟ କରି କହୁଛି, ଆପଣଙ୍କ ପ୍ରଦତ୍ତ ଅଦ୍ୱୈତଜ୍ଞାନର ଉପଦେଶ ଧାରଣ କରିବାର କ୍ଷମତା ମୋର ନାହିଁ । ଆପଣ ଦୟାକରି ମୋ ମନୋବାଞ୍ଛା ପୂର୍ଣ୍ଣ କରନ୍ତୁ । ଯଦି କୈଳାସପତିଙ୍କ କୃପା ହେବ, ତେବେ ମୋର ଦିନେ ସେ ଜ୍ଞାନ ଲାଭ ହେବ । ମହାଭାଗ ! ମୋତେ ଏଥିରୁ ବଞ୍ଚିତ କରନ୍ତୁ ନାହିଁ । ଆପଣଙ୍କ ଭିନ୍ନ କେହି ମୋର ଅଭୀଷ୍ଟ ପୂରଣ କରିପାରିବେ ନାହିଁ ।'' ଏହା କହି ଉଗ୍ରଭୈରବ ଆଚାର୍ଯ୍ୟଙ୍କ ଚରଣତଳେ ପତିତ ହୋଇ କ୍ରନ୍ଦନ କରିବାକୁ ଲାଗିଲା ।

ଆଚାର୍ଯ୍ୟ ଭାବିଲେ, ଆହା ! ଅଜ୍ଞଲୋକମାନଙ୍କ ଉପରେ ଭୋଗବାସନାର କିଭଳି ପ୍ରବଳ ପ୍ରଭାବ ! ସେ ଶିବଲୋକର ଭୋଗବାସନା ଇଚ୍ଛା କରି ବ୍ରହ୍ମଜ୍ଞାନ ତୁଚ୍ଛ କରୁଛି । ଯାହାହେଉ, ଏ ଦେହ ତ ନଶ୍ୱର । ଦେହକୁ ଅତି ଯତ୍ନରେ ରକ୍ଷା କଲେ ମଧ୍ୟ ଦିନେ ତାହା ନିଶ୍ଚୟ ମୃତ୍ୟୁମୁଖରେ ପତିତ ହେବ । ଏପରି କ୍ଷଣଭଙ୍ଗୁର ଦେହଦ୍ୱାରା ଯଦି କାହାର କିଛି ପ୍ରୟୋଜନ ସିଦ୍ଧ ହୁଏ, ତେବେ ମରଣଧର୍ମୀ ମନୁଷ୍ୟପକ୍ଷରେ ଏହା ପରମ ପରୁଷାର୍ଥ । ଏହା ଭାବି ଉଗ୍ରଭୈରବକୁ ଲକ୍ଷ୍ୟ କରି ଆଚାର୍ଯ୍ୟ କହିଲେ, ''ସାଧକପ୍ରବର ! ତୁମେ ଯାହା କହିଲ, ତାହା ହିଁ ହେବ । ମୁଁ କୌଣସି ନିର୍ଜନ ସ୍ଥାନରେ ସମାଧିମଗ୍ନ ଅବସ୍ଥାରେ ଅବସ୍ଥାନ କରିବି । ତୁମେ ସେହି ସମୟରେ ମୋର ମସ୍ତକ ଛେଦନ କରି କାର୍ଯ୍ୟରେ ଲଗାଇବ । ମୁଁ ପ୍ରକାଶ୍ୟଭାବରେ ତୁମର ପ୍ରାର୍ଥନା ପୂରଣ କରିପାରିବି ନାହିଁ; କାରଣ ମୋର ଅନ୍ୟ ଶିଷ୍ୟମାନେ ଜାଣିପାରିଲେ ତୁମର ଉଦ୍ଦେଶ୍ୟ-ସାଧନ-ପଥରେ ବିଘ୍ନ ଉତ୍ପାଦନ କରିବେ ।''

ଉଗ୍ରଭୈରବ ଆନନ୍ଦରେ ବିହ୍ୱଳ ହୋଇ କହିଲା, ''ଭଗବାନ ! ଆପଣଙ୍କ କୃପାରୁ ମୁଁ ଧନ୍ୟ ହେଲି । ଏ କାର୍ଯ୍ୟକୁ ଅତି ଗୋପନରେ ସାଧନ କରିବାକୁ

ହେବ । ମୁଁ ମନେକରୁଛି ଯେ, ନିକଟବର୍ତ୍ତୀ ଅରଣ୍ୟରେ ଗୋଟିଏ ଭୈରବ ସ୍ଥାନ ଅଛି । ଏହା ଅତି ଭୀଷଣ ସ୍ଥାନ ଓ ଦୁର୍ଗମ ବୋଲି ସେଠାକୁ ଅନ୍ୟ କେହି ଗମନ କରନ୍ତି ନାହିଁ । ମୁଁ ସେଠାରେ ହୋମ ଓ ପୂଜାଦିର ଆୟୋଜନ କରିବି । ଆପଣ ଅନୁଗ୍ରହ କରି ଅମାବାସ୍ୟାର ମଧ୍ୟରାତ୍ରରେ ସେଠାକୁ ଗମନ କଲେ କୌଣସି ବାଧା ଘଟିବାର ସମ୍ଭାବନା ନାହିଁ । ମୁଁ ମଧ୍ୟପଥରୁ ଆପଣଙ୍କୁ ପାଛୋଟି ଘେନିଯିବି ।'' ଆଚାର୍ଯ୍ୟ କହିଲେ, ''ତେବେ ସେହିପରି ଆୟୋଜନ କର ।''

ଉଗ୍ରଭୈରବ ଆଚାର୍ଯ୍ୟଙ୍କୁ ପ୍ରଣାମ କରି ପୂର୍ବପରି ଶିଷ୍ୟମାନଙ୍କ ମଧ୍ୟରେ କିଛି ଦିନ ବାସ କଲା ଏବଂ ଦିନେ ସ୍ଥାନାନ୍ତରକୁ ଗମନ କରିବାର ଛଳନା ଦେଖାଇ ସମସ୍ତଙ୍କଠାରୁ ବିଦାୟ ନେଇ ପ୍ରସ୍ଥାନ କଲା । ଉଗ୍ରଭୈରବର ଏ ଗତିବିଧି ଲକ୍ଷ୍ୟ କରି ଅନ୍ୟମାନଙ୍କର ପ୍ରଥମେ ସନ୍ଦେହ ଜାତ ହୋଇଥିଲା; କିନ୍ତୁ ସେ ଯେ ଏପରି ଦୁଃସାହସିକ କାର୍ଯ୍ୟରେ ବ୍ରତୀ ହେବ, ତାହା କେହି ଅନୁମାନ କରିପାରିଲେ ନାହିଁ ।



# ଶିଷ୍ୟମାନଙ୍କର କର୍ତ୍ତବ୍ୟରେ ଅବହେଳା

ନିର୍ଦ୍ଦିଷ୍ଟ ଦିନ ସମାଗତ ହେଲା । ମଧ୍ୟରାତ୍ରି ଉପସ୍ଥିତ । ଶିଷ୍ୟମାନେ ନିଦ୍ରିତ । ଆଚାର୍ଯ୍ୟ ବୃଦ୍ଧ କାପାଳିକର ବାସନା ପୂର୍ଣ୍ଣ କରିବା ନିମିତ୍ତ ଦିନ ଗଣୁଥିଲେ । ସେଦିନ ତାଙ୍କର ଭଲ ନିଦ୍ରା ହେଲାନାହିଁ । ଶିଷ୍ୟମାନଙ୍କୁ ନିଦ୍ରାଭିଭୂତ ଥିବାର ଦେଖି ଆଚାର୍ଯ୍ୟ ଗୋପନରେ ଧୀରେ ଧୀରେ ନିଃଶବ୍ଦରେ ଅରଣ୍ୟ ଅଭିମୁଖରେ ପ୍ରସ୍ଥାନ କଲେ ।

ଉଗ୍ରଭୈରବ ଆଚାର୍ଯ୍ୟଙ୍କ ପ୍ରତୀକ୍ଷାରେ ଗଭୀର ଅରଣ୍ୟର ମଧ୍ୟପଥରେ ଅବସ୍ଥାନ କରୁଥିଲା । ସେ ଆଚାର୍ଯ୍ୟଙ୍କୁ ଦର୍ଶନ କରି ଆନନ୍ଦରେ ଆତ୍ମହରା ହୋଇଗଲା ଏବଂ ଆଚାର୍ଯ୍ୟଙ୍କ ଚରଣତଳେ ନିପତିତ ହୋଇ ନିର୍ଦ୍ଦିଷ୍ଟ ଗୁହାମଧ୍ୟକୁ ଘେନିଗଲା । ଆଚାର୍ଯ୍ୟ ଦେଖିଲେ; ନିର୍ଜନ ଗୁହା ମଧ୍ୟରେ ସିନ୍ଦୂରଲିପ୍ତ ଗୋଟିଏ ଭୈରବମୂର୍ତ୍ତି ଓ ସମ୍ମୁଖରେ ପୂଜୋପକରଣ ସଜ୍ଜିତ । ନିକଟରେ ପ୍ରଦୀପର କ୍ଷୀଣ ଆଲୋକରେ ସ୍ଥାନଟିର ଭୟଙ୍କର ଦୃଶ୍ୟ ପ୍ରକଟିତ ହେଉଅଛି । ଯମକିଙ୍କରସଦୃଶ କେତେ ଜଣ ତ୍ରିଶୂଳଧାରୀ କାପାଳିକ ମଧ୍ୟ ନିକଟରେ ବସିଛନ୍ତି । ଏହା ଗୋଟିଏ ଭୀଷଣ ଦୃଶ୍ୟ । ଉଗ୍ରଭୈରବର ବିଳମ୍ବ ଆଉ ସହ୍ୟ ହେଉ ନାହିଁ । ସେ ବଳିସ୍ଥାନ ପ୍ରଦର୍ଶନପୂର୍ବକ କହିଲା, ''ମହାଶୟ ! ଏହି ସ୍ଥାନରେ ଆପଣ ମସ୍ତକ ରଖି ଶୟନ କରନ୍ତୁ । ମୁଁ ଆପଣଙ୍କ ମସ୍ତକ ଛେଦନ କରି ହୋମାଦି ସମାପନ କରିବି ।''

ଆଚାର୍ଯ୍ୟ କହିଲେ, ''ଆଚ୍ଛା, ଟିକିଏ ଅପେକ୍ଷା କର । ମୁଁ ସମାଧିସ୍ଥ ହେଲା ପରେ ତୁମେ ତୁମର କର୍ତ୍ତବ୍ୟ ସାଧନ କରିବ ।'' ଉଗ୍ରଭୈରବ ଏଥିରେ ସମ୍ମତ ହୋଇ ଆଚାର୍ଯ୍ୟଙ୍କୁ ବସିବାନିମିତ୍ତ ଆସନ ପ୍ରଦାନ କରି ପୂଜାରେ ପ୍ରବୃତ୍ତ ହେଲା ।



# ପଦ୍ମପାଦଙ୍କ ଗୁରୁନିଷ୍ଠା

କିନ୍ତୁ ବିଧାତାର ବିଧାନ ଅନ୍ୟ ପ୍ରକାର । ବାଲ୍ୟକାଳରେ ଆଚାର୍ଯ୍ୟଙ୍କ ଶରଣଗ୍ରହଣ କରିବାପୂର୍ବରୁ ସନନ୍ଦନ ଦକ୍ଷିଣଦେଶର 'ବଳ' ନାମକ ପର୍ବତ ଉପରେ ନୃସିଂହଦେବଙ୍କ ଆରାଧନା କରୁଥିଲେ । ସେ ବାଲ୍ୟକାଳରେ ଶୁଣିଥିଲେ ଯେ ନୃସିଂହଦେବ ମାନବର ସକଳ ପ୍ରକାର ଅଭୀଷ୍ଟ ଅତିଶୀଘ୍ର ପୂରଣ କରିଥାନ୍ତି । ନୃସିଂହଦେବ ସନନ୍ଦନଙ୍କ ଆରାଧନାରେ ସନ୍ତୁଷ୍ଟ ହୋଇ ତାଙ୍କୁ ବନ ମଧ୍ୟରେ ସମୟ ସମୟରେ ଦର୍ଶନଦାନ କରୁଥିଲେ । ସନନ୍ଦନ ତାଙ୍କ ଦର୍ଶନ ଲାଳସାରେ ସେହି ବନ ମଧ୍ୟରେ ଫଳମୂଳ ଭକ୍ଷଣ କରି ଗିରିଗୁହାରେ ବାସ କରିବାକୁ ଲାଗିଲେ । ସେ ବନରେ କୌଣସି ଜନ-ମାନବ ନ ଥିଲେ । ଯେତିକି ଦିନ ଅତୀତ ହେଲା, ସନନ୍ଦନଙ୍କର ନୃସିଂହଦେବଙ୍କ ଦର୍ଶନ ଲାଳସା ସେତିକି ବଳବତୀ ହେବାକୁ ଲାଗିଲା । ସେ ଦିବାରାତ୍ର ତାଙ୍କର ଧ୍ୟାନରେ ଅତିବାହିତ କଲେ । ଦିନେ ହଠାତ୍ ଜଣେ ଯୁବକ ବ୍ୟାଧ କେଉଁ ସ୍ଥାନରୁ ଆସି ସେଠାରେ ଉପସ୍ଥିତ ହେଲା ଏବଂ ତାଙ୍କୁ ପ୍ରଶ୍ନ କଲା, ''ତୁମେ କାହାନିମିତ୍ତ ଏ ବନ ମଧ୍ୟରେ ଏକାକୀ ବାସ କରୁଅଛ ?'' ସନନ୍ଦନ ନିଜର ମନୋଭାବ ଗୋପନ କରି ତାଙ୍କୁ ଯେତେ ଉତ୍ତର ଦେଲେ ମଧ୍ୟ ବ୍ୟାଧ ପ୍ରଶ୍ନ ଉପରେ ପ୍ରଶ୍ନ କରିବାକୁ ଲାଗିଲା । ଅବଶେଷରେ ସନନ୍ଦନ ସେହି ବ୍ୟାଧକୁ କହିଲେ, ''ମୁଁ ଗୋଟିଏ ବନ୍ୟଜନ୍ତୁର ଅନ୍ୱେଷଣରେ ଏଠାରେ ବାସ କରୁଅଛି ।'' ବ୍ୟାଧ କହିଲା, ''ମୋତେ କହନ୍ତୁ, ମୁଁ ସେହି ଜନ୍ତୁର ସନ୍ଧାନ ତୁମକୁ ପ୍ରଦାନ କରିବି ।'' ସନନ୍ଦନ ଉତ୍ତର କଲେ, ''ସେ ଜନ୍ତୁର ମୁଖଟି ସିଂହ ପରି ଏବଂ ତା ଶରୀରର ଅବଶିଷ୍ଟ ଅଂଶ ମନୁଷ୍ୟ ପରି । ତୁମେ କ'ଣ ଏପରି ଜନ୍ତୁ ଦେଖିଛ ?''

ବ୍ୟାଧ ଏ କଥା ଶୁଣି କିଛି ନ କହି ଚାଲିଗଲା ଏବଂ କିଛିକ୍ଷଣ ପରେ ଲତାଦ୍ୱାରା ଗୋଟିଏ ନୃସିଂହମୂର୍ତ୍ତିକୁ ବନ୍ଧନ କରି ସନନ୍ଦନଙ୍କ ସମକ୍ଷରେ ଉପସ୍ଥାପିତ କଲା । ସନନ୍ଦନ ଏହା ଦେଖି ନୃସିଂହଦେବଙ୍କୁ ସ୍ତବ କରିବାକୁ ଆରମ୍ଭ କଲେ । ତତ୍ପରେ ନୃସିଂହଦେବ ସନ୍ତୁଷ୍ଟ ହୋଇ ବର ପ୍ରାର୍ଥନା କରିବାକୁ କହିଲେ । ସନନ୍ଦନ ସେତେବେଳେ ବାଳକ । ମାନବର ପ୍ରକୃତ ଅଭୀଷ୍ଟ କ'ଣ, ତାହା ସେ ଜାଣି ନ ଥିଲେ; ତେଣୁ ସେ କହିଲେ, ''ଭଗବନ୍ ! ଯଦି ମୋ ପ୍ରତି ସଦୟ ହୋଇଛନ୍ତି,

ତେବେ ମୋତେ ଏହି ବର ପ୍ରଦାନ କରନ୍ତୁ ଯେ, ମୁଁ ଯେତେବେଳେ ବିପନ୍ନ ହୋଇ ଆପଣଙ୍କୁ ସ୍ମରଣ କରିବି, ସେତେବେଳେ ମୋତେ ଦର୍ଶନ ଦାନ କରିବେ ଏବଂ ବିପଦରୁ ଉଦ୍ଧାର କରିବେ ।'' ଭଗବାନ ନୃସିଂହଦେବ 'ତଥାସ୍ତୁ' କହି ଅନ୍ତର୍ଦ୍ଧାନ ହୋଇଗଲେ ।

ଯେଉଁଦିନ ଆଚାର୍ଯ୍ୟଦେବ କାପାଳିକ ଆହ୍ୱାନରେ ବଳି ସ୍ଥାନକୁ ଗମନ କଲେ, ସେଦିନ ପଦ୍ମପାଦ ସ୍ୱପ୍ନରେ ଦେଖିଲେ ଯେ, ଜଣେ କାପାଳିକ ଅଚାର୍ଯ୍ୟଙ୍କ ଶିରଚ୍ଛେଦନ କରୁଅଛି ଓ ସମସ୍ତେ ତାହା ଲକ୍ଷ୍ୟ କରି ମଧ୍ୟ କିଛି ପ୍ରତିକାର କରିପାରୁ ନାହାନ୍ତି । ସେ ନିରୂପାୟ ହୋଇ ଆକୁଳଭାବରେ ନୃସିଂହଦେବଙ୍କୁ ସ୍ମରଣ କଲେ ଏବଂ ଗୁରୁଦେବଙ୍କ ପ୍ରାଣରକ୍ଷାନିମିତ୍ତ କାତରଭାବରେ ପ୍ରାର୍ଥନା କରିବାକୁ ଲାଗିଲେ । ସେ ଦେଖିଲେ, ଭଗବାନ ନୃସିଂହଦେବ ଅତି ଭୀଷଣ ଜ୍ୟୋତିର୍ମୟ ମୂର୍ତ୍ତିରେ ଆବିର୍ଭୂତ ହେଲେ ଓ ପରେ ପରେ ପଦ୍ମପାଦଙ୍କ ଶରୀରରେ ଆବିଷ୍ଟ ହୋଇଗଲେ ।

ପଦ୍ମପାଦ ନିଦ୍ରାରୁ ଉଠି ଭୀଷଣ ଗର୍ଜ୍ଜନପୂର୍ବକ ଅରଣ୍ୟ ଅଭିମୁଖରେ ଧାବିତ ହେଲେ । ପଦ୍ମପାଦଙ୍କ ଗର୍ଜ୍ଜନ ଶ୍ରବଣ କରି ଶିଷ୍ୟମାନଙ୍କର ନିଦ୍ରା ଭଙ୍ଗ ହେଲା । ସେମାନେ ତାଙ୍କର ଅନୁଗମନ କରିବାକୁ ଲାଗିଲେ । କ'ଣ ଘଟିଲା, ତାହା ଜାଣିବାକୁ କାହାର ଅବସର ହେଲା ନାହିଁ । ଦୈବ ପରିଚାଳିତ ହୋଇ ପଦ୍ମପାଦ ଘଟଣାସ୍ଥଳରେ ଉପସ୍ଥିତ ହେଲେ । ଏହି ସମୟରେ ଉଗ୍ରଭୈରବ ଶଙ୍କରଙ୍କୁ ଶିଳା ଉପରେ ଶାୟିତ କରି ଖଡ୍‌ଗ ଉତ୍ତୋଳନପୂର୍ବକ ଦଣ୍ଡାୟମାନ । କେବଳ ପ୍ରହାରରେ ଅପେକ୍ଷା । କିନ୍ତୁ ହଠାତ୍ ପଦ୍ମପାଦଙ୍କର ଗର୍ଜ୍ଜନ ଧ୍ୱନି ତାର କର୍ଣ୍ଣକୁହରରେ ପ୍ରବେଶ କଲା । ସେ ହତବୁଦ୍ଧି ହୋଇ ଇତସ୍ତତଃ ଦୃଷ୍ଟିନିକ୍ଷେପ କରୁଥିବା ବେଳେ ନୃସିଂହ-ଆବିଷ୍ଟ ପଦ୍ମପାଦ ଉପସ୍ଥିତ ହୋଇ ଉଗ୍ରଭୈରବ ହାତରୁ ଖଡ୍‌ଗ ନେଇ ସେହି ଖଡ଼୍‌ଗରେ ଉଗ୍ରଭୈରବର ମସ୍ତକ ଛେଦନ କଲେ ଏବଂ ଅତି ଭୀଷଣ ଧ୍ୱନିରେ ଚତୁର୍ଦ୍ଦିଗ ପ୍ରକମ୍ପିତ କରିବାକୁ ଲାଗିଲେ । ଇତ୍ୟବସରରେ ଅନ୍ୟ ଶିଷ୍ୟମାନେ ମଧ୍ୟ ସେଠାରେ ଉପସ୍ଥିତ ହୋଇଗଲେ । ସମସ୍ତେ ହତବୁଦ୍ଧି । ଉଗ୍ରଭୈରବର ଶିଷ୍ୟମାନେ ଏହା ଦେଖି ପଳାୟନ କଲେ ।

ନୃସିଂହଦେବଙ୍କ ଗର୍ଜ୍ଜନରେ ଆଚାର୍ଯ୍ୟଦେବଙ୍କ ସମାଧି ଭଗ୍ନ ହୋଇଗଲା । ମସ୍ତକଛେଦନରେ ମଧ୍ୟ ଯେଉଁ ସମାଧି ଭଗ୍ନ ହେବାର ନୁହେଁ, ଭଗବାନ ନୃସିଂହଦେବଙ୍କ ଗର୍ଜ୍ଜନରେ ତାହା ଭଗ୍ନ ହୋଇଗଲା । ଆଚାର୍ଯ୍ୟ ଦେଖିଲେ,

ପଦ୍ମପାଦଙ୍କୁ ଆଶ୍ରୟ କରି ଜ୍ୟୋତିର୍ମୟ ଅତି ଭୀଷଣ ନୃସିଂହମୂର୍ତ୍ତି । ପାର୍ଶ୍ୱରେ ଛିନ୍ନମସ୍ତକ ରକ୍ତାକ୍ତ କଳେବର ବୃଦ୍ଧ କାପାଳିକ ଶାୟିତ ଓ ଶିଷ୍ୟମାନେ ଅଦୂରରେ ଦଣ୍ଡାୟମାନ । ଆଚାର୍ଯ୍ୟଙ୍କ ଶରୀର ପ୍ରକମ୍ପିତ ହୋଇଉଠିଲା । ସେ ତତ୍‌କ୍ଷଣାତ୍ ନୃସିଂହଦେବଙ୍କୁ ସ୍ତବ କରିବାକୁ ଆରମ୍ଭ କଲେ । କିଛିକ୍ଷଣ ପରେ ନୃସିଂହଦେବ ଅନ୍ତର୍ଦ୍ଧାନ ହୋଇଯିବାପରେ ପଦ୍ମପାଦ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ଆଚାର୍ଯ୍ୟଙ୍କର ଇଙ୍ଗିତରେ ଶିଷ୍ୟମାନେ ପଦ୍ମପାଦଙ୍କର ଚୈତନ୍ୟ ସମ୍ପାଦନ କରାଇଲେ । କିଛିକ୍ଷଣ ପରେ ସେ ପ୍ରକୃତିସ୍ଥ ହେଲେ ।

ଉଗ୍ରଭୈରବର ନିଧନରେ ଆଚାର୍ଯ୍ୟ ଦୁଃଖିତ ହେଲେ । ଯାହାର କଲ୍ୟାଣ ନିମିତ୍ତ ସେ ମସ୍ତକ ପ୍ରଦାନ କରିବାକୁ ପ୍ରସ୍ତୁତ ଥିଲେ, ବର୍ତ୍ତମାନ ତାହାରି ମସ୍ତକ ଛିନ୍ନ ହୋଇ ପତିତ ହେଲା । ତେଣୁ ଆଚାର୍ଯ୍ୟ ଦୁଃଖିତ ହୋଇ ପଦ୍ମପାଦଙ୍କୁ କହିଲେ, ‘‘ବତ୍ସ ପଦ୍ମପାଦ ! ତୁମେ ଏଭଳି କର୍ମ କାହିଁକି କଲ ? ତୁମେ ସନ୍ନ୍ୟାସୀ, ପ୍ରାରବ୍‌ଧଭୋଗ ନିମିତ୍ତ ତୁମମାନଙ୍କର ଜନ୍ମ । ନରହତ୍ୟାର ହେତୁ ହେବା କ’ଣ ତୁମ ପକ୍ଷରେ ଉଚିତ ହେଲା ? ତୁମେ ଏ ଗର୍ହିତ ଆଚରଣ କାହିଁକି କଲ ? କାପାଳିକର ମଙ୍ଗଳ ନିମିତ୍ତ ମୁଁ ତାକୁ ମସ୍ତକ ପ୍ରଦାନ କରିବାକୁ ସମ୍ମତ ହୋଇଥିଲି। ତୁମେ କାହିଁକି ସେଥିରେ ବାଧା ପ୍ରଦାନ କଲ ? ସେ କାପାଳିକ କୈଳାସପତିଙ୍କ ସହିତ ଏକତ୍ର ବାସ କରିବାକୁ କାମନା କରି ବହୁ ଦୁଷ୍କର ତପସ୍ୟା କରିଥିଲା ଏବଂ ଶିବଙ୍କ ଆଦେଶାନୁସାରେ ସନ୍ନ୍ୟାସୀର ମସ୍ତକଦ୍ୱାରା ହୋମ କରିବା ନିମିତ୍ତ ଚେଷ୍ଟା କରିଥିଲା । ମୋ ମସ୍ତକଦ୍ୱାରା ହୋମ କରିଥିଲେ ସେ ସିଦ୍ଧମନୋରଥ ହୋଇଥାଆନ୍ତା । ସାଲୋକ୍ୟମୁକ୍ତି ମଧ୍ୟ ଏକପ୍ରକାର ମୁକ୍ତି ମଧ୍ୟରେ ପରିଗଣିତ; କିନ୍ତୁ ସେ ମୁକ୍ତି ନିମିତ୍ତ ବା କେତେ ଜଣ ଐକାନ୍ତିକ ଭାବରେ ଯତ୍ନ କରୁଛନ୍ତି ? ସେ ଯଦି ସେଥିନିମିତ୍ତ ଯତ୍ନବାନ ହୋଇଥିଲା, ସେଥିରେ କ୍ଷତି କ’ଣ ? ତୁମେ ଉଚିତ କାର୍ଯ୍ୟ କରି ନାହଁ ।’’ ପଦ୍ମପାଦ ଟିକିଏ ଲଜ୍ଜିତ ହୋଇ କହିଲେ, ‘‘ଭଗବନ୍ ! ଆମେ ଆପଣଙ୍କର ଏତେ ଶିଷ୍ୟ ଥାଉଥାଉ ଯଦି ଜଣେ କୌଶଳରେ ଓ ଗୋପନରେ ଆପଣଙ୍କର ପ୍ରାଣ ନାଶ କରିବ, ତେବେ ତାହା ଆମେ କଦାପି ସହ୍ୟ କରିପାରବୁ ନାହିଁ । ଉଗ୍ରଭୈରବ ଯଦି ଯଥାର୍ଥ ମୁକ୍ତିକାମୀ ହୋଇଥାନ୍ତା, ତେବେ ସେ ଗୋପନରେ ଏ କାର୍ଯ୍ୟ କଲା କାହିଁକି ? ପୁଣି ଆପଣ ଗୋପନରେ ମସ୍ତକ ଦାନ କରିବାକୁ ସମ୍ମତ ହେଲେ କିପରି ? ଆପଣଙ୍କ ଦୟାରୁ ଯଦି ଜଣେ

ମୁକ୍ତି ଲାଭ କରେ, ତାହାହେଲେ ଆମେ ଲକ୍ଷ ଲକ୍ଷ ବ୍ୟକ୍ତି କି ଅପରାଧ କରିଥିଲୁ ଯେ ଆପଣ ଆମ ସମସ୍ତଙ୍କ କଥା କିଛି ନଭାବି ଗୋପନରେ ଦୟାପରବଶ ହୋଇ ମସ୍ତକ ଦାନ କରିଦେଲେ ? ପୁଣି ଯଦି ଗୁରୁଦେବଙ୍କୁ ରକ୍ଷା କରିବାକୁ ଯାଇ ଆମକୁ ନରହତ୍ୟା କରିବାକୁ ପଡ଼େ, ତାର ଫଳ ସ୍ୱରୂପ ଯଦି ଆମେ ଅନନ୍ତ ନରକ ଭୋଗ କରୁ, ତାହା ମଧ୍ୟ ଆମର ବିଶେଷତଃ ମୋର ବରଣୀୟ । ଆଉ ଗୋଟିଏ କଥା, ମୁଁ ସ୍ୱପ୍ନରେ ଆପଣଙ୍କୁ ବିପନ୍ନ ଦେଖି ସେହି ସ୍ୱପ୍ନାବସ୍ଥାରେ ନୃସିଂହଦେବଙ୍କୁ ପ୍ରାର୍ଥନା କରିଥିଲି ମାତ୍ର । ତା'ପରେ ଆଉ କ'ଣ ହେଲା ତାହା ମୋର ଅଜ୍ଞାତ । ବର୍ତ୍ତମାନ ଦେଖୁଛି, ମୁଁ ଏଠାରେ ଅଛି । ଏଥିରେ ଯଦି ମୋର ଆପଣଙ୍କ ଚରଣତଳେ କିଛି ଅପରାଧ ହେଲା ବୋଲି ମନେ କରୁଛନ୍ତି, ତାହାହେଲେ ଦୟାକରି କ୍ଷମା କରନ୍ତୁ ।'' ଏହା କହୁ କହୁ ପଦ୍ମପାଦ ବିଚଳିତ ହୋଇ କ୍ରନ୍ଦନ କରିବାକୁ ଲାଗିଲେ ।

ସୁରେଶ୍ୱର ପ୍ରଭୃତି ଶିଷ୍ୟମାନେ ପଦ୍ମପାଦଙ୍କୁ ଧନ୍ୟ ଧନ୍ୟ କରିବାକୁ ଲାଗିଲେ । ସୁରେଶ୍ୱର କହିଲେ, ''ପଦ୍ମପାଦ ! ଆଜି ତୁମ ଯୋଗୁଁ ଆମେ ଗୁରୁଦେବଙ୍କୁ ପୁନଃ ପ୍ରାପ୍ତ ହେଲୁ । ନଚେତ୍ ଆଉ ରକ୍ଷା ପାଇବାର ଉପାୟ ନ ଥିଲା । ତୁମେ ଧନ୍ୟ, ତୁମକୁ ସହସ୍ରବାର ନମସ୍କାର ।'' ଆଚାର୍ଯ୍ୟ ଦେଖିଲେ ଯେ ଶିଷ୍ୟମାନେ ଭାବବିହ୍ୱଳ ଓ ଉତ୍ତେଜିତ; ତେଣୁ ଏ ସମୟରେ ଆଉ ଅଧିକ ଉପଦେଶ ଦେବାର କୌଣସି ମୂଲ୍ୟ ରହିବ ନାହିଁ । ତତ୍ପରେ ପଦ୍ମପାଦଙ୍କୁ କହିଲେ, ''ପଦ୍ମପାଦ ! ତୁମେ ଯାହା କରିଛ ଭଲ କରିଛ । ଦେଖୁଛି, ଆଉ କିଛି ଦିନ ଏ ଦେହଭାର ବହନ କରିବା ଭଗବାନଙ୍କର ଇଚ୍ଛା ।'' ଆଚାର୍ଯ୍ୟ ମଧ୍ୟ ଶିଷ୍ୟର ଶକ୍ତି ଦେଖି ଆନନ୍ଦିତ ହେଲେ ଓ ପଦ୍ମପାଦଙ୍କର ମୁଖରୁ ତାଙ୍କର ନୃସିଂହ ସିଦ୍ଧିକଥା ଶୁଣିଲେ । ସୁରେଶ୍ୱର ପ୍ରଭୃତି ଶିଷ୍ୟମାନେ ପଦ୍ମପାଦଙ୍କୁ ଅଧିକତର ଶ୍ରଦ୍ଧାଚକ୍ଷୁରେ ଦର୍ଶନ କରିବାକୁ ଲାଗିଲେ ।

ତତ୍ପରେ ଆଚାର୍ଯ୍ୟ ଶିଷ୍ୟମାନଙ୍କୁ ଉପଦେଶ ଛଳରେ କହିଲେ, ''ଶିଷ୍ୟଗଣ ! ତୁମେମାନେ ସନ୍ନ୍ୟାସର ଆଦର୍ଶରୁ କେବେହେଲେ ବିଚ୍ୟୁତ ହୁଅ ନାହିଁ । ସନ୍ନ୍ୟାସ ଦ୍ୱିବିଧ—ମୁଖ୍ୟ ଓ ଗୌଣ । ମୁଖ୍ୟ ସନ୍ନ୍ୟାସ ପୁଣି ଦୁଇ ପ୍ରକାର । ପୂର୍ବାଶ୍ରମରେ ଜ୍ଞାନଲାଭ ହୋଇ ନ ଥିଲେ ଜ୍ଞାନଲାଭ ଉଦ୍ଦେଶ୍ୟରେ ଯେଉଁ ସନ୍ନ୍ୟାସ ତାହା ପ୍ରଥମ । ଜ୍ଞାନଲାଭ ପରେ ଯେଉଁ ସନ୍ନ୍ୟାସ ତାହା ଦ୍ୱିତୀୟ । ଗୌଣ ସନ୍ନ୍ୟାସ

ତ୍ରିବିଧ—ସାତ୍ତ୍ୱିକ, ରାଜସିକ ଓ ତାମସିକ । ଏହା ବ୍ରହ୍ମଚାରୀ, ଗୃହସ୍ଥ ଓ ବାନପ୍ରସ୍ଥୀମାନଙ୍କର କର୍ତ୍ତବ୍ୟ । ଜ୍ଞାନଲାଭ ନିମିତ୍ତ ଯେଉଁ ସନ୍ନ୍ୟାସ, ତାହାର ନାମ 'ବିବିଦିଷା' ସନ୍ନ୍ୟାସ । ତୁମେମାନେ ଏହି ସନ୍ନ୍ୟାସ ଗ୍ରହଣ କରିଅଛ । ଏଥିରେ ଶ୍ରବଣ, ମନନ, ନିଦିଧ୍ୟାସନ ହିଁ ମୁଖ୍ୟ ସାଧନ । ଏଥିନିମିତ୍ତ ଯେଉଁ କର୍ମ କରିବାକୁ ହୁଏ, ତାହାର ପ୍ରଧାନ ଲକ୍ଷ୍ୟ ଶରୀରଧାରଣ । ସେଥିନିମିତ୍ତ ଆପଣା ମନକୁ ଯାହା ଉପସ୍ଥିତ ହେବ, ତାହା ବରଣ କରିବା କର୍ତ୍ତବ୍ୟ । ଏହାର ଗୌଣ ଲକ୍ଷ୍ୟ ସମାଜସଂରକ୍ଷଣାଦି କର୍ମ । ଏହା କେବଳ ଶାସ୍ତ୍ରୀୟ ଆଚରଣ ଅନୁଷ୍ଠାନଦ୍ୱାରା ସମ୍ପନ୍ନ ହୋଇଥାଏ । ଏଥିରେ କୌଣସି ବସ୍ତୁ ନିମିତ୍ତ ଆଗ୍ରହ ପ୍ରକାଶର ପ୍ରୟୋଜନ ନାହିଁ । ଜ୍ଞାନ ଲାଭ ହେବା ପରେ ଯେଉଁ ସନ୍ନ୍ୟାସ ତାହାର ନାମ 'ବିଦ୍‌ବତ୍ ସନ୍ନ୍ୟାସ' । ଏଥିରେ ପ୍ରାରବ୍ଧ ଅନୁସାରେ ଚଳିବାକୁ ହୁଏ । ମୋ ଦେହ ଯଦି ନାଶ ହୁଏ, ତେବେ ପ୍ରାରବ୍ଧବଶତଃ ନାଶ ହେଉଅଛି । ସେଥିରେ ତୁମେମାନେ ବାଧାପ୍ରଦାନ କାହିଁକି କରୁଛ ? ଯାହା ଆପଣା ମନକୁ ଘଟିବ, ତାକୁ ତ ବରଣ କରିବାକୁ ହେବ । ମୋ ଦେହଦ୍ୱାରା ଅନ୍ୟର ଅଧିକ ଉପକାର ସାଧିତ ହେବ, ଏପରି ଭାବିବା ମଧ୍ୟ ଉଚିତ ନୁହେଁ । ତୁମେମାନେ ଗୁରୁଭକ୍ତି ବଶତଃ ଏହା କରୁଛ ସତ୍ୟ, ମାତ୍ର ସନ୍ନ୍ୟାସୀମାନଙ୍କର ଏହା କର୍ତ୍ତବ୍ୟ ନୁହେଁ । ସୁତରାଂ ମୋର ଉପଦେଶ, ସନ୍ନ୍ୟାସର ଆଦର୍ଶରୁ କେବେହେଲେ ବିଚ୍ୟୁତ ହୁଅ ନାହିଁ ।''

ଅନନ୍ତର ପ୍ରଭାତ ହେବାରୁ ସମସ୍ତେ ଯଥାସ୍ଥାନକୁ ଫେରି ଆସିଲେ । କାପାଳିକଗଣ ପଦ୍ମପାଦ ଓ ଆଚାର୍ଯ୍ୟଙ୍କ ଅଦ୍ଭୁତ ଶକ୍ତି କଥା ଶ୍ରବଣ କରି ଦଳକୁ ଦଳ ଆସି ଶିଷ୍ୟତ୍ୱ ସ୍ୱୀକାର କରିବାକୁ ଲାଗିଲେ । ସମସ୍ତେ ଆଚାର୍ଯ୍ୟଙ୍କ ଉଦାରତା, ସ୍ୱାର୍ଥତ୍ୟାଗ ଓ ପରହିତପରାୟଣତା ଦେଖି ମୁଗ୍ଧ ହୋଇଗଲେ । ପଣ୍ଡିତମାନେ ଦଧୀଚିଙ୍କ ସଙ୍ଗରେ ଆଚାର୍ଯ୍ୟଙ୍କର ତୁଳନା କରିବାକୁ ଲାଗିଲେ । ସବୁଠାରେ ଆଚାର୍ଯ୍ୟ ଓ ତାଙ୍କ ଶିଷ୍ୟମାନଙ୍କ ଗୁରୁଭକ୍ତି କଥା ଆଲୋଚିତ ହେବାକୁ ଲାଗିଲା । ବିଦ୍ୟାବୁଦ୍ଧିଦ୍ୱାରା ଯାହା ହୋଇପାରି ନ ଥାଆନ୍ତା, ଏହି କାର୍ଯ୍ୟଦ୍ୱାରା ତାହା ଅଧିକ ପରିମାଣରେ ସାଧିତ ହେଲା । ସର୍ବତ୍ର ଅଦ୍ୱୈତବାଦର ବିଜୟ ପତାକା ଉଡ୍‌ଡୀୟମାନ ହେଲା ।



# ପଦ୍ମପାଦଙ୍କ ଅଭିମାନଚୂର୍ଣ୍ଣ

ତ୍ରୋଟକାଚାର୍ଯ୍ୟଙ୍କୁ ଉପଲକ୍ଷ୍ୟ କରି ଆଚାର୍ଯ୍ୟ ପୁନରାୟ ଭାଷ୍ୟପାଠ କରାଇବାକୁ ଆରମ୍ଭ କଲେ । କିଛିଦିନ ପରେ ଭାଷ୍ୟପାଠ ଶେଷ ହୋଇଗଲା । ଦିନେ ସୁରେଶ୍ୱରାଚାର୍ଯ୍ୟ ନିଭୃତରେ ଆଚାର୍ଯ୍ୟଙ୍କ ନିକଟକୁ ଆସି ଭକ୍ତିର ସହିତ ଆଚାର୍ଯ୍ୟଙ୍କୁ ପ୍ରଣାମ କରି କହିଲେ, ‘‘ଗୁରୁଦେବ ! ଆପଣଙ୍କ କୃପାରୁ ଆମର ଭାଷ୍ୟାଦି ଆଲୋଚନା ବହୁବାର ଶେଷ ହେଲାଣି । ମୋର ଆଉ କୌଣସି ବିଷୟରେ ସଂଶୟ ନାହିଁ । ପୂର୍ବରୁ ଶୁଣିଥିଲି, ମୋଦ୍ୱାରା କିଛି କରାଇବାକୁ ଆପଣଙ୍କର ଇଚ୍ଛା ଥିଲା । ତେବେ ମୋତେ କ'ଣ କରିବାକୁ ହେବ ଆଦେଶ କରନ୍ତୁ । କାରଣ ଯେ ଭକ୍ତିପୂର୍ଣ୍ଣଚିତ୍ତରେ ଗୁରୁଦେବଙ୍କ ଆଦେଶ ପ୍ରତିପାଳନ କରନ୍ତି, ତାଙ୍କର ଜୀବନ ଧନ୍ୟ ।’’ ଶଙ୍କର ତାଙ୍କ ପ୍ରଧାନ ଶିଷ୍ୟର ଏପରି ବିନୀତ ପ୍ରାର୍ଥନା ଶ୍ରବଣ କରି ଆହ୍ଲାଦିତ ହୋଇ କହିଲେ, ‘‘ସୁରେଶ୍ୱର ! ତୁମେ ମୋ ଭାଷ୍ୟ ଉପରେ ଗୋଟିଏ ବାର୍ତ୍ତିକ ରଚନା କର । ମୁଁ ଏଥିରେ ପରମ ସନ୍ତୋଷ ଲାଭ କରିବି ।’’ ସୁରେଶ୍ୱର କହିଲେ, ‘ଗୁରୁଦେବ ! ଆପଣଙ୍କ ତର୍କପୂର୍ଣ୍ଣ ଓ ଗଭୀର ଅର୍ଥପୂର୍ଣ୍ଣ ଭାଷ୍ୟର ସମାଲୋଚନା କରିବାର ସାମର୍ଥ୍ୟ ମୋର ନ ଥିଲେ ମଧ୍ୟ ଆପଣଙ୍କ କୃପାକଟାକ୍ଷପାତ ହେଲେ ମୁଁ ଯଥାଶକ୍ତି କାର୍ଯ୍ୟ କରିବାକୁ ସମର୍ଥ ହୋଇପାରିବି ।’’ ଶଙ୍କର ଆନନ୍ଦିତ ଚିତ୍ତରେ ସେଥିରେ ସ୍ୱୀକୃତି ପ୍ରଦାନ କଲେ । ସୁରେଶ୍ୱର ବାର୍ତ୍ତିକ ରଚନାରେ ମନୋନିବେଶ କଲେ ଓ ଆଚାର୍ଯ୍ୟଙ୍କ ନିରଭିମାନିତା, ଶିଷ୍ୟପ୍ରୀତି, ସତ୍ୟାନୁରାଗ ଦର୍ଶନ କରି ଅଭିଭୂତ ହୋଇପଡ଼ିଲେ ଏବଂ ପୂର୍ବପରି ଗୁରୁଭ୍ରାତା ଓ ନିଜ ଶିଷ୍ୟମାନଙ୍କ ସହିତ ବାକ୍ୟାଳାପ କରିବା ବନ୍ଦ କରିଦେଲେ । କ୍ରମେ ପଦ୍ମପାଦ ପ୍ରଭୃତି ଏ ବିଷୟରେ ଜାଣିପାରିଲେ । ଦିନେ ପଦ୍ମପାଦ ଭାବିଲେ, ଆଚାର୍ଯ୍ୟ ସୁରେଶ୍ୱରଙ୍କୁ ଟୀକା ରଚନା କରିବାକୁ ନ କହି ବାର୍ତ୍ତିକ ରଚନା କରିବାକୁ କାହିଁକି କହିଲେ ? ବାର୍ତ୍ତିକରେ ତ ଦୋଷଗୁଣ ବିଚାର କରବାକୁ ହୁଏ । ସୁରେଶ୍ୱର କର୍ମକାଣ୍ଡରେ ଜଣେ ନିଷ୍ଠାବାନ୍ ବ୍ୟକ୍ତି । ସେ ଟୀକାର ଦୋଷ ଯେପରି ଦେଖାଇ ପାରିବେ ତାକୁ ସେପରି ଖଣ୍ଡନ କରିପାରିବେ ନାହିଁ । କ୍ରମେ ପଦ୍ମପାଦଙ୍କଠାରୁ ଅନ୍ୟ ଶିଷ୍ୟମାନେ ଏ ବିଷୟ ଶୁଣି ପଦ୍ମପାଦଙ୍କ କଥାକୁ ସମର୍ଥନ କଲେ । ଦିନେ ପଦ୍ମପାଦଙ୍କ ପକ୍ଷପାତୀ ତାଙ୍କର କେତେ ଜଣ ଶିଷ୍ୟ ଆଚାର୍ଯ୍ୟଙ୍କୁ କହିଲେ, ‘‘ଗୁରୁଦେବ !

ଆପଣ ଜଗତର ହିତକାମନାରେ ଯେଉଁ କାର୍ଯ୍ୟ କରୁଛନ୍ତି, ଏହା ଯଥାର୍ଥ ହିତକର ହେବ ନାହିଁ । ମଣ୍ଡନ ଜଣେ ବିଦ୍ୱାନ୍ ବ୍ୟକ୍ତି । ସେ ଯାଗଯଜ୍ଞ ଆଦି କାର୍ଯ୍ୟରେ ଏତେ ଦିନ ଯାଏ ନିଯୁକ୍ତ ଥିଲେ ଏବଂ ଯୁକ୍ତିବଳରେ ଈଶ୍ୱର ନିରାକରଣ କରିଥିଲେ । ତାଙ୍କ ମତରେ କର୍ମ ହିଁ ସ୍ୱର୍ଗ ନରକାଦି ଫଳ ପ୍ରଦାନ କରିଥାଏ । କର୍ମ ବ୍ୟତୀତ ଅପର କୌଣସି ଈଶ୍ୱର ନାହାନ୍ତି । ଅତଏବ ଆଜନ୍ମକର୍ମନିରତ ସେହି ମଣ୍ଡନ ଯଦି ଆପଣଙ୍କ ଭାଷ୍ୟ ଉପରେ ବାର୍ତ୍ତିକ ରଚନା କରନ୍ତି, ତେବେ ତାହା କର୍ମକାଣ୍ଡରେ ପରିପୂର୍ଣ୍ଣ ହୋଇଯିବ । ଆହୁରି ଦେଖନ୍ତୁ, ମଣ୍ଡନ ବୁଦ୍ଧିପୂର୍ବକ ସନ୍ନ୍ୟାସ ଅବଲମ୍ବନ କରି ନାହାନ୍ତି; ବାଦରେ ପରାସ୍ତ ହୋଇ ଆପଣଙ୍କ ଶିଷ୍ୟତ୍ୱ ସ୍ୱୀକାର କରିଛନ୍ତି ମାତ୍ର । ସୁତରାଂ ମଣ୍ଡନ ଆମମାନଙ୍କର ବିଶ୍ୱାସଭାଜନ ହୋଇପାରି ନାହାନ୍ତି । ସେ କର୍ମକାଣ୍ଡର ପକ୍ଷପାତୀ । ଆମେ ଜାଣୁ, ଆପଣଙ୍କ ପ୍ରତି ସନନ୍ଦନଙ୍କର ଅସୀମ ଭକ୍ତି । ସେ ସ୍ୱାଭାବିକ ସିଦ୍ଧପୁରୁଷ । ଅତଏବ କେବଳ ସନନ୍ଦନ ହିଁ ବାର୍ତ୍ତିକ ରଚନା କରିବାକୁ ସମର୍ଥ । ଅଥବା ଆନନ୍ଦଗିରି ଆପଣଙ୍କ ଭାଷ୍ୟର ବାର୍ତ୍ତିକ ରଚନା କରନ୍ତୁ ।'' ତତ୍ପରେ ପଦ୍ମପାଦ ଉପସ୍ଥିତ ହେବାରୁ ଶଙ୍କର ପ୍ରଶ୍ନ କଲେ, ''ପଦ୍ମପାଦ ! ତୁମର ମତ କ'ଣ ? ସୁରେଶ୍ୱରଙ୍କ ବାର୍ତ୍ତିକ କ'ଣ ଭଲ ହେବ ନାହିଁ ?'' ପଦ୍ମପାଦ କହିଲେ, ''ଭଗବାନ୍ ! ଆପଣଙ୍କ ଭାଷ୍ୟ ଉପରେ ପୁଣି ବାର୍ତ୍ତିକ ରଚନାର ଆବଶ୍ୟକତା କିଛି ଦେଖିପାରୁ ନାହିଁ । ସୂତ୍ରଭାଷ୍ୟରେ କ'ଣ ଦୋଷ ଅଛି ଯେ, ବାର୍ତ୍ତିକଦ୍ୱାରା ଦାହା ଖଣ୍ଡନ କରାଯିବ ? ପୁଣି ଯଦି ଶିଷ୍ୟକୀର୍ତ୍ତି ପ୍ରଚାର କରିବା ଆପଣଙ୍କର ଇଚ୍ଛା ଥାଏ, ତେବେ ହସ୍ତାମଳକ ତ ଏହା କରିପାରନ୍ତେ । ସେ ତ ସିଦ୍ଧପୁରୁଷ । ସୁରେଶ୍ୱର ଏ କାର୍ଯ୍ୟ କଲେ ଭବିଷ୍ୟତରେ ଲୋକେ ଦୋଷପକ୍ଷକୁ ପ୍ରବଳ ବୋଲି କଳ୍ପନା କରିବେ । ମୋ ଶିଷ୍ୟମାନେ ମୋତେ ଏ କାର୍ଯ୍ୟ କରିବାକୁ କହୁଥିଲେ । କିନ୍ତୁ ସୁରେଶ୍ୱରଙ୍କୁ ଆପଣ ଯେତେବେଳେ ଏ କାର୍ଯ୍ୟ କରିବାକୁ ଆଦେଶ ପ୍ରଦାନ କରିଛନ୍ତି, ସେତେବେଳେ ମୋତେ ଏପରି କରିବା ଅନ୍ୟାୟ ହେବ ।''

ପଦ୍ମପାଦଙ୍କ କଥା ଶୁଣି ଆଚାର୍ଯ୍ୟ କହିଲେ, ''ହସ୍ତାମଳକର ସମ୍ପୂର୍ଣ୍ଣ ଆତ୍ମବୋଧ ହୋଇଅଛି ସତ୍ୟ, କିନ୍ତୁ ସେ ସର୍ବଦା ସମାହିତଚିତ୍ତରେ ଅବସ୍ଥାନ କରୁଥିବାରୁ ବାହ୍ୟ ବସ୍ତୁ ପ୍ରତି ତାର କୌଣସି ପ୍ରବୃତ୍ତି ନାହିଁ । ସୁତରାଂ ଯେ ବାଲ୍ୟକାଳରୁ ଆତ୍ମପଦାର୍ଥରେ ଚିତ୍ତ ଲୀନ କରିଅଛି, ସେ ବାର୍ତ୍ତିକ ରଚନା କରିପାରିବ

ନାହିଁ । ମଣ୍ଡନ ନିଖିଳ ପଦାର୍ଥର ତତ୍ତ୍ୱଜ୍ଞ ଏବଂ ସର୍ବଶାସ୍ତ୍ରରେ ପାରଦର୍ଶୀ । ମୁଁ ବହୁ ଯତ୍ନରେ ଧାର୍ମିକପ୍ରବର ମଣ୍ଡନଙ୍କୁ ଲାଭ କରିଅଛି । ମଣ୍ଡନ ଯଦି ତୁମର ପ୍ରୀତିଭାଜନ ନ ହୁଏ, ତାହାହେଲେ ମୁଁ କ'ଣ କରିବି ? ମୁଁ କିନ୍ତୁ ତା ବ୍ୟତୀତ ଅନ୍ୟ କାହାକୁ ବାର୍ତ୍ତିକ ରଚନାର ଉପଯୁକ୍ତ ବ୍ୟକ୍ତି ଦେଖି ପାରୁ ନାହିଁ । କିନ୍ତୁ ତୁମେମାନେ ସମସ୍ତେ ଯେତେବେଳେ ପ୍ରତିକୂଳ ମନ୍ତବ୍ୟ ପ୍ରଦାନ କରୁଛ, ମୁଁ ତାକୁ ଏ କାର୍ଯ୍ୟ କରିବାକୁ ନିଷେଧ କରୁଛି ।'' ପଦ୍ମପାଦଙ୍କ ଶିଷ୍ୟମାନେ କହିଲେ, ''ପ୍ରଭୋ ! ଏ କାର୍ଯ୍ୟ ନିମିତ୍ତ ଆପଣ ପଦ୍ମପାଦଙ୍କୁ ନିଯୁକ୍ତ କରନ୍ତୁ । ଆପଣ ଆଦେଶ ଦେଲେ ସେ ଅନ୍ୟଥା କରିପାରିବେ ନାହିଁ ।'' ପଦ୍ମପାଦ ଏ କଥା ଶୁଣି ପୁନରାୟ ଅନିଚ୍ଛା ପ୍ରକାଶ କରିବାରୁ ଆଚାର୍ଯ୍ୟ କହିଲେ, ''ପଦ୍ମପାଦ ! ଶିଷ୍ୟମାନଙ୍କର ଯେତେବେଳେ ଇଚ୍ଛା ହେଉଛି, ତୁମେ ଖଣ୍ଡିଏ ପୁସ୍ତକ ରଚନା କର ।'' ତତ୍ପରେ ଶିଷ୍ୟମାନଙ୍କୁ କହିଲେ, ''ଶିଷ୍ୟଗଣ ! ମୁଁ ତୁମମାନଙ୍କର ଅଭିପ୍ରାୟ ଅବଗତ ହେଲି ସତ୍ୟ; କିନ୍ତୁ ସୁରେଶ୍ୱରଙ୍କୁ ଯେତେବେଳେ ବାର୍ତ୍ତିକ ରଚନା କରିବା ପାଇଁ ଅନୁମତି ପ୍ରଦାନ କରିଛି, ସେତେବେଳେ ଅନ୍ୟ କାହାକୁ ଅନୁମତି ଦେବାକୁ ସମୀଚୀନ ମନେ କରୁ ନାହିଁ । ତେବେ ସନନ୍ଦନ ଇଚ୍ଛା କଲେ ଯେ କୌଣସି ପୁସ୍ତକ ଲେଖି ସେଥିରେ ନିଜର ବକ୍ତବ୍ୟ ଲିପିବଦ୍ଧ କରିପାରନ୍ତି ।'' ଶିଷ୍ୟମାନେ ଏଥିରେ ସମ୍ମତ ହୋଇ ପ୍ରସ୍ଥାନ କଲେ ।

ସୁରେଶ୍ୱର ତାଙ୍କ ଶିଷ୍ୟମାନଙ୍କଠାରୁ ସମସ୍ତ ବିଷୟ ଶୁଣି ଆଚାର୍ଯ୍ୟଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ତାଙ୍କୁ ଦେଖି ଆଚାର୍ଯ୍ୟ କହିଲେ, ''ସୁରେଶ୍ୱର ! ତୁମେ ମୋ ସୂତ୍ରଭାଷ୍ୟ ଉପରେ ବାର୍ତ୍ତିକ ରଚନା କର ନାହିଁ । ତୁମେ ବାର୍ତ୍ତିକ ରଚନା କଲେ ମୋର କେତେ ଜଣ ଶିଷ୍ୟ ତାହା ସହ୍ୟ କରିପାରିବେ ନାହିଁ ବୋଲି ମୋ ନିକଟରେ ଅଭିଯୋଗ କରୁଛନ୍ତି । ସେମାନେ କହୁଛନ୍ତି, ତୁମେ ବାର୍ତ୍ତିକ ରଚନା କଲେ ତାହା କର୍ମକାଣ୍ଡରେ ପରିପୂର୍ଣ୍ଣ କରିଦେବ । ତୁମେ କେଉଁଠି କହିଛ ଯେ, ଚତୁର୍ଥ ଆଶ୍ରମ ବେଦସିଦ୍ଧ ନୁହେଁ । ସେମାନେ ପୁନରାୟ କହୁଛନ୍ତି ଯେ, ଭିକ୍ଷୁମାନଙ୍କ ନିମିତ୍ତ ତୁମ ଦ୍ୱାର ଉନ୍ମୁକ୍ତ ନ ଥିଲା । ଦ୍ୱାରପାଳମାନେ ଭିକ୍ଷାର୍ଥୀମାନଙ୍କୁ ଭିତରକୁ ଛାଡ଼ି ନ ଦେବା ପାଇଁ ନିଯୁକ୍ତ ରହିଥିଲେ । ଯାହାହେଉ, ସେମାନଙ୍କର ଯେତେବେଳେ ଏତେ ଆପତ୍ତି, ତୁମେ ଯୋଗ୍ୟ ବ୍ୟକ୍ତି ହେଲେ ମଧ୍ୟ ତୁମ ଉପରେ ମୁଁ ବାର୍ତ୍ତିକ ରଚନାର ଦାୟିତ୍ୱ ପ୍ରଦାନ କରୁପାରୁ ନାହିଁ । ତୁମେ ସ୍ୱାଧୀନ ଭାବରେ ଖଣ୍ଡିଏ

ଗ୍ରନ୍ଥ ରଚନା କର । ତାହାହେଲେ ସେମାନେ ତୁମ ବିରୁଦ୍ଧରେ କିଛି କହିବାକୁ ସାହସ କରିବେ ନାହିଁ ଏବଂ ତୁମ ଉପରୁ ସେମାନଙ୍କର ଭ୍ରମଧାରଣା ଦୂର ହୋଇଯିବ ।''

ସୁରେଶ୍ୱର ଗୁରୁଦେବଙ୍କ ଆଦେଶକୁ ଶିରୋଧାର୍ଯ୍ୟକରି କିଛିଦିନ ମଧ୍ୟରେ 'ନୈଷ୍କର୍ମ୍ମ୍ୟ ସିଦ୍ଧି' ନାମକ ଖଣ୍ଡିଏ ଅପୂର୍ବ ଗ୍ରନ୍ଥ ରଚନା କରି ଆଚାର୍ଯ୍ୟଙ୍କୁ ନିବେଦନ କଲେ । ଆଚାର୍ଯ୍ୟ ଗ୍ରନ୍ଥପାଠ କରି ଅତ୍ୟନ୍ତ ସନ୍ତୁଷ୍ଟ ହେଲେ । ଏଥିରେ ଅତି ସୂକ୍ଷ୍ମ ଓ ଗଭୀର ଭାବରେ ଆତ୍ମତତ୍ତ୍ୱର ବିଚାର କରାଯାଇଥିଲା । ଶଙ୍କର ସମସ୍ତଙ୍କୁ ଏହା ପାଠ କରିବା ନିମିତ୍ତ ଅନୁରୋଧ କଲେ । ସମସ୍ତେ ଏହି ଗ୍ରନ୍ଥ ପାଠ କରି ଅତିଶୟ ଆନନ୍ଦିତ ହେଲେ ମଧ୍ୟ ତାଙ୍କଦ୍ୱାରା ବାର୍ତ୍ତିକ ରଚନା କରିବାକୁ କେହି ସମ୍ମତ ହେଲେ ନାହିଁ ।

ପଦ୍ମପାଦ କହିଲେ, ''ଭଗବନ୍ ! ସୁରେଶ୍ୱରଙ୍କ ଉପରେ ମୋର କୌଣସି ଈର୍ଷା ନାହିଁ । ସେ ଆମମାନଙ୍କର ଅତିଶୟ ଶ୍ରଦ୍ଧାର ପାତ୍ର । କିନ୍ତୁ ଆପଣଙ୍କ ସୂତ୍ରଭାଷ୍ୟ ଉପରେ ବାର୍ତ୍ତିକ ରଚନା କଥା ମନେହେଲେ ମୋ ଚିତ୍ତ ଅପ୍ରସନ୍ନ ହୋଇଯାଉଛି । ଆପଣଙ୍କ ଭାଷ୍ୟର ଦୋଷ ଗୁଣ ବିଚାର କରିବା ମୋତେ ସୁଖ ଲାଗୁ ନାହିଁ ।'' ଶିଷ୍ୟମାନେ ପଦ୍ମପାଦଙ୍କୁ ସମର୍ଥନ କଲେ । ହସ୍ତାମଳକ ଓ ତ୍ରୋଟକ ନୀରବ ରହିଲେ । କ୍ଷଣକାଳ ମୌନରହି ଆଚାର୍ଯ୍ୟଶଙ୍କର କହିଲେ, ''ସୁରେଶ୍ୱର ! ଦେଖୁଛି, ଏହା ଦୈବବିଡ଼ମ୍ବନା । ଯାହାହେଉ, ତୁମେ ଆଉ ବାର୍ତ୍ତିକରଚନା କରନାହିଁ । ତୁମେ ମୋର ଉପନିଷଦ ଭାଷ୍ୟ ଉପରେ ବାର୍ତ୍ତିକ ରଚନା କର । ସୁରେଶ୍ୱର ! ତୁମେ ଦୁଃଖିତ ହୁଅ ନାହିଁ । କାରଣ ତୁମର ଆଉ ଗୋଟିଏ ଜନ୍ମ ଅବଶିଷ୍ଟ ଅଛି । ତୁମେ ସେହିଜନ୍ମରେ ଅଦ୍ୱିତୀୟ ପଣ୍ଡିତ ହେବ । ସେତେବେଳେ ତୁମେ ମୋ ଭାଷ୍ୟ ଉପରେ ଗୋଟିଏ ଅପୂର୍ବ ଟୀକା ରଚନା କରିବ । ମୁଁ ଆଶୀର୍ବାଦ କରୁଛି, ତୁମର ସେହି ଟୀକା ସର୍ବଶ୍ରେଷ୍ଠ ଟୀକା ରୂପେ ପରିଗଣିତ ହେବ ।''

ସୁରେଶ୍ୱର ଏହା ଶୁଣି ଆବେଗ ସହକାରେ କହିଲେ, ''ଭଗବାନ୍ ! ମୋର 'ନୈଷ୍କର୍ମ୍ୟସିଦ୍ଧି' ପାଠକରି ସମସ୍ତେ ସନ୍ତୁଷ୍ଟ ହେଲେ ମଧ୍ୟ ଯେତେବେଳେ ଏମାନେ ମୁଁ ବାର୍ତ୍ତିକ ରଚନାକଲେ ଅବିଚାର କରିବି ବୋଲି ସନ୍ଦେହ କରୁଛନ୍ତି, ସେତେବେଳେ ସେମାନଙ୍କର ବିଦ୍ୱାନମାନଙ୍କ ସମଦର୍ଶନ ଓ ସଂସ୍କାର ବିଷୟରେ ବିଶ୍ୱାସ ନାହିଁ ।

ଆପଣଙ୍କ ଶିଷ୍ୟମାନେ ଯେ କହୁଛନ୍ତି, ଚତୁର୍ଥ ଆଶ୍ରମ ବେଦସିଦ୍ଧ ନୁହେଁ—ଏହା ମୋ ସିଦ୍ଧାନ୍ତ, ଏ କଥା ସେମାନେ ଠିକ୍ କହି ନାହାନ୍ତି । ସନ୍ନ୍ୟାସ ବେଦସିଦ୍ଧ ହୋଇ ନ ଥିଲେ ମୁଁ ବିବାଦରେ ପ୍ରବୃତ୍ତ ହେବା ପୂର୍ବରୁ କିପରି ପଣ କଲି ଯେ ପରାଜିତ ହେଲେ ସନ୍ନ୍ୟାସ ଗ୍ରହଣ କରିବି ? ପୁଣି ଭିକ୍ଷୁମାନଙ୍କୁ ମୋ ଗୃହରେ ପ୍ରବେଶ ନିଷେଧ ବୋଲି କହିବା କଥାର ଉତ୍ତରରେ କହୁଛି ଯେ, ଆପଣତ ମୋ ଗୃହରେ ଭିକ୍ଷାଗ୍ରହଣ ନିମିତ୍ତ ପଦାର୍ପଣ କରିଥିଲେ । ତେବେ ଲୋକଙ୍କ କଥାକୁ କିମ୍ୱା ଲୋକମୁଖକୁ କେହି କ'ଣ ବନ୍ଦ କରିପାରିବ ? ପୁଣି ଆପଣଙ୍କ ଶିଷ୍ୟମାନେ ଯେ କହୁଛନ୍ତି, ମଣ୍ଡନ ବୁଦ୍ଧିପୂର୍ବକ ସନ୍ନ୍ୟାସ ଗ୍ରହଣ କରି ନାହାନ୍ତି, ତା ଉତ୍ତରରେ ମୁଁ କହୁଛି, ମୁଁ ପୂର୍ବରୁ ପ୍ରସ୍ତୁତଥିଲି । ପରେ ତତ୍ତ୍ୱାଲୋଚନାରେ ଆତ୍ମତତ୍ତ୍ୱ ଲାଭକରି ସଂସାରରେ ବୈରାଗ୍ୟ ଉତ୍ପନ୍ନ ହେବାରୁ ସନ୍ନ୍ୟାସ ଗ୍ରହଣ କଲି । ମୁଁ ବାଦରେ ପରାସ୍ତ ହୋଇ ସନ୍ନ୍ୟାସ ଗ୍ରହଣ କରି ନାହିଁ । କାରଣ ତତ୍ତ୍ୱନିର୍ଣ୍ଣୟ କରିବା ବାଦର ପ୍ରୟୋଜନ, ତାର ଅନ୍ୟ କୌଣସି ପ୍ରୟୋଜନ ନାହିଁ । ବର୍ତ୍ତମାନ ମୋର ଗୁରୁସେବା ଭିନ୍ନ ଅନ୍ୟ ବାସନା ନାହିଁ । ମୁଁ ଆଉ ବାର୍ତ୍ତିକ ରଚନା କରିବି ନାହିଁ । ଯଦି ମୋର ଆପଣଙ୍କ ଚରଣତଳେ ଭକ୍ତି ଥାଏ, ତେବେ ଯେତେ ବଡ଼ ବିଦ୍ୱାନ୍ ହେଉ ପଛକେ, ଯେ ଆପଣଙ୍କ ଭାଷ୍ୟ ଉପରେ ଟୀକା ରଚନା କରିବ, ତାହା ସର୍ବଶ୍ରେଷ୍ଠ ବୋଲି ବିବେଚିତ ହୋଇପାରିବ ନାହିଁ ।'' ଏହା କହି ସୁରେଶ୍ୱର ସ୍ୱସ୍ଥାନକୁ ପ୍ରତ୍ୟାବର୍ତ୍ତନ କଲେ । ପଦ୍ମପାଦ ଓ ତାଙ୍କ ଶିଷ୍ୟମାନେ ଅତ୍ୟନ୍ତ ଲଜ୍ଜିତ ହେଲେ । ପଦ୍ମପାଦ କହିଲେ, ''ଭଗବନ୍ ! ଏ ଅପରାଧ ଯଦି କାହାର ହୋଇଥାଏ, ତେବେ ମୋର । ମୁଁ ବାର୍ତ୍ତିକ ରଚନାରେ ସନ୍ଦିହାନ ହୋଇ ଏପରି କରିଛି । ତେବେ ବର୍ତ୍ତମାନ କହନ୍ତୁ, ମୁଁ ଟୀକା ରଚନା କରିବ କି ନାହିଁ ? ସୁରେଶ୍ୱରଙ୍କ କଥା ଶୁଣି ମୋର ଆଉ ଉତ୍ସାହ ହେଉ ନାହିଁ ।'' ଆଚାର୍ଯ୍ୟ କହିଲେ, ''ପଦ୍ମପାଦ ! ମାନବର ସମସ୍ତ ଦୈବାୟତ୍ତ । ତୁମେ ଟୀକା ରଚନାରୁ, ବିରତ ହେବା ଅନୁଚିତ । ଏହା ପ୍ରଚାରିତ ହେଲେ ବେଦାନ୍ତର ବିଜୟ- ଡିଣ୍ଡିମ ବିଘୋଷିତ ହେବ । ଅବଶ୍ୟ ସୁରେଶ୍ୱରଙ୍କ କୀର୍ତ୍ତି ତୁମ କୀର୍ତ୍ତିକୁ ଅଭିଭୂତ କରିବ । ଫଳାକାଙ୍କ୍ଷାରହିତ ହୋଇ କର୍ମ କରିବା ପଣ୍ଡିତମାନଙ୍କର କର୍ତ୍ତବ୍ୟ ।''

ଏହିଭାବରେ କିଛିଦିନ ଅତିବାହିତ ହେଲା । ଏ ମଧ୍ୟରେ ଶିଷ୍ୟମାନଙ୍କର ବହୁ ଗ୍ରନ୍ଥ ପ୍ରଣୟନ ସମାପ୍ତ ହୋଇଗଲା । ପଦ୍ମପାଦଙ୍କ ସୂତ୍ରଭାଷ୍ୟର ଟୀକାର

ନାମ ରହିଲା ''ବିଜୟ-ଡିଣ୍ଡିମ'' । ସୁରେଶ୍ୱରଙ୍କର ମଧ୍ୟ ବହୁ ଗ୍ରନ୍ଥ ସମାପ୍ତ ହେଲା । ମୋଟ ଉପରେ ଶୃଙ୍ଗେରୀ ମଠରେ ଭାରତୀ ଦେବୀ ମୂର୍ତ୍ତିମତୀ ଭାବରେ ବିରାଜିତା ହୋଇ ଜଗତକୁ ବ୍ରହ୍ମବିଦ୍ୟା ବିତରଣ କରିବାକୁ ପ୍ରସ୍ତୁତ ହେଲେ । ଦିନେ ପଦ୍ମପାଦ ଆଚାର୍ଯ୍ୟଙ୍କୁ ପ୍ରଶ୍ନ କଲେ, ''ଭଗବନ୍ ! ମୋ ଟୀକା ବିଷୟ ଆପଣ ପ୍ରାୟ ସମସ୍ତ ଶୁଣିଛନ୍ତି । ଆପଣଙ୍କଠାରୁ ଏହା ଭବିଷ୍ୟତ ଶୁଣିବାକୁ ମୋର ଇଚ୍ଛା ହେଉଛି ।'' ଆଚାର୍ଯ୍ୟ କହିଲେ, ''ତୋର ଟୀକା ନିଶ୍ଚିତ ଭାବରେ ଅତି ସୁନ୍ଦର ହୋଇଛି ସତ, କିନ୍ତୁ ଏହାର ଭବିଷ୍ୟତ ଉଜ୍ଜ୍ୱଳ ନୁହେଁ । ଏହା ପ୍ରଚାରିତ ହେବାରେ ବିଘ୍ନ ଘଟିବାର ସମ୍ଭାବନା । ମାତ୍ର ଏଥିରେ ଦୁଃଖିତ ହେବାର କିଛି କାରଣ ନାହିଁ ।''

ପଦ୍ମପାଦ ଏତିକି ଶୁଣିବା କ୍ଷଣି ବିମର୍ଷ ଭାବ ଧାରଣ କଲେ ଏବଂ ଭାବିଲେ, ''ମୁଁ କାହିଁକି ବାର୍ତ୍ତିକ ରଚନା କରିବାରେ ଆପତ୍ତି କଲି ? ସୁରେଶ୍ୱରଙ୍କ ଦୋଷ ବା ଏଥିରେ କ'ଣ ଥିଲା ? ଏ କ୍ଷେତ୍ରରେ ସୁରେଶ୍ୱର ଯଦି ମନେକରନ୍ତି ଯେ, ମୁଁ ତାଙ୍କ ପ୍ରତି ଈର୍ଷାପ୍ରଣୋଦିତ ହୋଇ ଏପରି କରିଛି, ତେବେ କ'ଣ ଅନ୍ୟାୟ ହେବ ? ସୁତରାଂ ଏ ଦୋଷ ମୋର । ଏଥିରେ ମୋର ମହାପାପ ଘଟିଛି । ଏ ପାପର ପ୍ରାୟଶ୍ଚିତ୍ତ ମୋତେ କରିବାକୁ ହେବ । ଉପବାସ, ଦାନ ଓ ତୀର୍ଥଭ୍ରମଣଦ୍ୱାରା ପାପର ପ୍ରାୟଶ୍ଚିତ ହୁଏ । ମୁଁ ତୀର୍ଥଭ୍ରମଣଦ୍ୱାରା ଏ ପାପର ପ୍ରାୟଶ୍ଚିତ କରିବି । ଏହି ସଂକଳ୍ପ କରି ଦିନେ ପଦ୍ମପାଦ ଆଚାର୍ଯ୍ୟଙ୍କୁ କହିଲେ, ''ଗୁରୁଦେବ ! ଆପଣ ଯଦି ଅନୁମତି ପ୍ରଦାନ କରନ୍ତି, ତେବେ ମୁଁ ଥରେ ରାମେଶ୍ୱର ତୀର୍ଥ ଦର୍ଶନ କରି ଆସନ୍ତି । ମୁଁ ଏପର୍ଯ୍ୟନ୍ତ ରାମେଶ୍ୱର ତୀର୍ଥ ଦର୍ଶନ କରିପାରି ନାହିଁ । ସେଥି ନିମିତ୍ତ ମୋର ବିଶେଷ ବାସନା ଜାଗ୍ରତ ହୋଇଅଛି ।'' ଆଚାର୍ଯ୍ୟ ପଦ୍ମପାଦଙ୍କ ଅଭିପ୍ରାୟ ବୁଝିପାରି କହିଲେ, ''ପଦ୍ମପାଦ ! ତୁମର ହଠାତ୍ ଏପରି ବାସନା ଉଦୟ ହେବାର କାରଣ ବା କ'ଣ ? ତୁମେ ତ ମୋତେ ତ୍ୟାଗ କରି ମୁହୂର୍ତ୍ତେ ହେଲେ ରହିପାରନାହିଁ ?'' ପଦ୍ମପାଦ ତାଙ୍କର ମନୋଭାବ ସମୁଦାୟ ବ୍ୟକ୍ତ କରି କହିଲେ ଯେ, ଉପରୋକ୍ତ ପାପର ପ୍ରାୟଶ୍ଚିତ୍ତ ତୀର୍ଥଭ୍ରମଣଦ୍ୱାରା କରିବେ ବୋଲି ସେ ସ୍ଥିର କରିଛନ୍ତି । ଆଚାର୍ଯ୍ୟ ସବୁ କାର୍ଯ୍ୟରେ ଉଦାସୀନ ଥାଆନ୍ତି । ସେ କେବେ କାହାକୁ କେଉଁ କାର୍ଯ୍ୟରେ ପ୍ରବୃତ୍ତ ହେବାକୁ ବା କେଉଁ କାର୍ଯ୍ୟରୁ ନିବୃତ୍ତ ହେବାକୁ ଇଚ୍ଛା ପ୍ରକାଶ କରନ୍ତି ନାହିଁ । ତଥାପି ପଦ୍ମପାଦଙ୍କ

ଉପରେ ତାଙ୍କର ଅକୃତ୍ରିମ ସ୍ନେହ ମମତା ଥିବା ହେତୁ ବିଚଳିତ ହୋଇ ସେ କହିଲେ, ''ବତ୍ସ ପଦ୍ମପାଦ ! ଗୁରୁଦେବଙ୍କ ନିକଟରେ ବାସ କଲେ ତୀର୍ଥଦର୍ଶନର ଫଳଲାଭ ହୁଏ । ତୀର୍ଥ ପର୍ଯ୍ୟଟନର ଉଦ୍ଦେଶ୍ୟ ଚିତ୍ତଶୁଦ୍ଧି । ଗୁରୁଦେବଙ୍କର ଉପଦେଶପାଳନ ଓ ଗୁରୁସେବାଦ୍ୱାରା ମଧ୍ୟ ତାହା ଲାଭ ହୁଏ । ତୁମେମାନେ ବିବିଦିଷୁ ସନ୍ନ୍ୟାସୀ । ମହାବାକ୍ୟର ଅର୍ଥ ଚିନ୍ତା କରିବା ତୁମମାନଙ୍କର କର୍ତ୍ତବ୍ୟ । ତୀର୍ଥ ଭ୍ରମଣ କରିବାକୁ ଗଲେ ତୁମର ବିବିଦିଷା ସନ୍ନ୍ୟାସରେ ବ୍ୟାଘାତ ଘଟିବ । କାରଣ ଦେଶଭ୍ରମଣ ବହୁ କଷ୍ଟଦାୟକ । କେଉଁଠାରେ ଜଳ ମିଳେ ତ କେଉଁଠାରେ ଜଳ ମିଳେ ନାହିଁ । ଜଳ ନ ପାଇଲେ ପ୍ରଭାତରେ ସ୍ନାନ କରିହେବ ନାହିଁ । ଶାସ୍ତ୍ରାନୁସାରେ ଶୌଚାଚାରରେ ବ୍ୟତିକ୍ରମ ହେଲେ ସେଥିନିମିତ୍ତ ମନର ମଳିନତା ଘଟେ ଓ ସମାଧି ଅସମ୍ଭବ ହୋଇପଡ଼େ । କ୍ଷୁଧା ସମୟରେ କେଉଁଠାରେ ଉତ୍ତମ ଆହାର ମିଳେ, ପୁଣି କେଉଁଠାରେ ଆଦୌ ଶାକାନ୍ନ ପର୍ଯ୍ୟନ୍ତ ମିଳେ ନାହିଁ । ନାନା ଅନିୟମରେ ଜ୍ୱର, ଅତିସାରାଦି ରୋଗ ଆକ୍ରମଣ କରେ । ଏଥିରୁ ମୁକ୍ତ ହେବାର ସମ୍ଭାବନା ନ ଥାଏ । ଯେଉଁମାନେ ସହାୟକାରୀ ଥାଆନ୍ତି, ସେମାନେ ପୀଡ଼ିତ ସଙ୍ଗୀକୁ ତ୍ୟାଗ କରି ଚାଲିଯାଆନ୍ତି । ସୁତରାଂ ତୀର୍ଥଭ୍ରମଣର କ୍ଲେଶ କେହି ଇଚ୍ଛାକରି ବରଣ କରନ୍ତି ନାହିଁ । ତୁମେ ରାମେଶ୍ୱର ଯିବାକୁ ଇଚ୍ଛା କରୁଅଛ; କିନ୍ତୁ ଏଠାରୁ ରାମେଶ୍ୱର ଯିବା ପଥ ଅତୀବ ଦୁର୍ଗମ । ପଥ ମଧ୍ୟରେ କଦାଚାରସମ୍ପନ୍ନ ଶୂଦ୍ରବହୁଳ ବହୁ ଗ୍ରାମ ଅଛି । ସଦାଚାରୀ ସନ୍ନ୍ୟାସୀଙ୍କ ପକ୍ଷରେ ସେ ପଥ ଦେଇ ଯିବା ବଡ଼ ବିପଦସଙ୍କୁଳ । ସୁତରାଂ ଏ କାର୍ଯ୍ୟରୁ ନିବୃତ୍ତ ହେଲେ ବୋଧହୁଏ ଭଲହେବ । ଆଉ ଗୋଟିଏ କଥା, ଗୁରୁଦେବହିଁ ସକଳ ତୀର୍ଥସ୍ୱରୂପ । ଗୁରୁଦେବଙ୍କ ସନ୍ନିଧାନରେ ରହିବାର ସୁବିଧା ହେଲେ ଅନ୍ୟ ତୀର୍ଥର ଆବଶ୍ୟକତା କିଛି ନାହିଁ । ଅତଏବ ତୁମର ଏ ବାସନା ତ୍ୟାଗ କରିବା ଉଚିତ ବୋଲି ମୁଁ ମନେ କରୁଛି ।''

ଗୁରୁଙ୍କ କଥା ଶୁଣି ପଦ୍ମପାଦ ବିନୀତ ଭାବରେ କହିଲେ, ''ପ୍ରଭୋ ! ଗୁରୁବାକ୍ୟରେ ପ୍ରତିବାଦ କରିବା ଅନୁଚିତ । ତଥାପି ଆପଣଙ୍କ ବାକ୍ୟ ଶିରୋଧାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ନିବେଦନ କରୁଛି ଯେ, ଗୁରୁସେବା କଲେ ନିଶ୍ଚୟ ତୀର୍ଥଦର୍ଶନ ଫଳ ଲାଭ ହୁଏ । ଯେତେବେଳେ ମୁଁ ଆପଣଙ୍କ ନିକଟରେ ଥାଇ ମଧ୍ୟ ବୁଦ୍ଧିଦୋଷରୁ ମୋର ଏ ପାପ ଘଟିଲା, ସେତେବେଳେ ଥରେ କ୍ଲେଶ ଭୋଗ କରି ତାହା କ୍ଷୟ କରିବା ଉଚିତ । ଅନେକେ ତୀର୍ଥଦର୍ଶନ କରି ଚିତ୍ତଶୁଦ୍ଧି କରନ୍ତି ।

ଜନ୍ମଜନ୍ମାନ୍ତରର ପାପରାଶି ସଞ୍ଚିତଥିଲେ ତହିଁରୁ ତୁମେ ସ୍ୱଦେଶରେ ଥାଅ ଅଥବା ବିଦେଶରେ ଥାଅ, ରୋଗର ଉତ୍ପତ୍ତି ନିଶ୍ଚୟହେବ । କାରଣ ଅଭୁକ୍ତକର୍ମର ଫଳ ସର୍ବଦା ପ୍ରାଣୀମାନଙ୍କର ଅନୁଗମନ କରିଥାଏ । ଶାସ୍ତ୍ରରେ ଅଛି—ଦେଶ, କାଳ, ଆତ୍ମା, ଦ୍ରବ୍ୟ, ଦ୍ରବ୍ୟର ପ୍ରୟୋଜନ, ଯୁକ୍ତି, ଅବସ୍ଥା—ଏହିସବୁ ବିଷୟ ଜାଣି ଶୌଚର ବ୍ୟବସ୍ଥା କରିବାକୁ ହୁଏ । ସ୍ୱଦେଶରେ ଯେଉଁ ଆଚାର ପ୍ରଚଳିତ, ବିଦେଶରେ ତାହା ଭଙ୍ଗକଲେ ଦୋଷ ହୁଏ ନାହିଁ । ଚିତ୍ତର ଏକାଗ୍ରତା ଥିଲେ ଯେ କୌଣସି ସ୍ଥାନରେ ମଧ୍ୟ ଆନନ୍ଦ ମିଳେ । ମୁଁ ଏଠାରୁ ଚାଲିଗଲେ ଗୁରୁଦେବଙ୍କ ସହିତ ବିଚ୍ଛେଦ ଘଟିବ ସତ; କିନ୍ତୁ ପ୍ରଭୋ ! ଏ ବିଷୟରେ ମୋର ମତଭେଦ ଅଛି । ଯେଉଁ ବ୍ୟକ୍ତି ବିଦେଶ ଗମନ କରି ମଧ୍ୟ ଗୁରୁଦେବଙ୍କୁ ହୃଦୟରେ ଧାରଣ କରନ୍ତି, ସେ ଯଥାର୍ଥରେ ଗୁରୁଦେବ ସନ୍ନିଧାନରେ ବାସକରନ୍ତି । ପୁଣି ଯେଉଁମାନେ ଭକ୍ତିହୀନ, ଗୁରୁଙ୍କ ନିକଟରେ ଅବସ୍ଥାନ କରି ମଧ୍ୟ ସେମାନେ ଗୁରୁସମୀପବାସର ଫଳ ପାଇପାରନ୍ତି ନାହିଁ । ତୀର୍ଥଭ୍ରମଣରେ ନାନାବିଧ ସାଧୁଙ୍କ ସହିତ ମୈତ୍ରୀ ସ୍ଥାପିତ ହୁଏ ଓ ସେମାନଙ୍କ ସହିତ ପରମାର୍ଥବିଷୟକ ଆଳାପରେ ଚିତ୍ତଶୁଦ୍ଧି ଘଟେ ଏବଂ ବୁଦ୍ଧି ପରିପକ୍ୱ ହୁଏ, ହୃଦୟରେ ବିବେକ ଉତ୍ପନ୍ନ ହୁଏ । ବିବେକ ଉତ୍ପନ୍ନ ହେଲେ କ୍ରମେ ରଜୋଗୁଣ ଲୟପ୍ରାପ୍ତ ହୁଏ । ସୁତରାଂ ମୋତେ ତୀର୍ଥଦର୍ଶନକୁ ଯିବା ନିମିତ୍ତ ଅନୁମତି ଦିଅନ୍ତୁ ।''

ଅନନ୍ତର ପଦ୍ମପାଦଙ୍କର ଐକାନ୍ତିକ ଇଚ୍ଛା ଦର୍ଶନ କରି ଆଚାର୍ଯ୍ୟ ଆଉ ନିଷେଧ କରିବାକୁ ଉଚିତ ମନେକଲେ ନାହିଁ । ସେ ପଦ୍ମପାଦଙ୍କୁ କହିଲେ, ''ବତ୍ସ ପଦ୍ମପାଦ ! ଯଦି ତୁମର ତୀର୍ଥପର୍ଯ୍ୟଟନ କରିବାକୁ ଏକାନ୍ତ ବାସନା ହୋଇଅଛି, ତୁମେ ତୀର୍ଥଭ୍ରମଣରେ ଯାଇପାର; କିନ୍ତୁ ଅତି ସାବଧାନତା ସହକାରେ ତୀର୍ଥ ଭ୍ରମଣ କରିବ । ଯେଉଁଥିରେ ବିଶେଷ ଦୁଃଖ ହେବ, ସେପରି କାର୍ଯ୍ୟ ପରିତ୍ୟାଗ କରିବ । ଭ୍ରମଣ ସମୟରେ ନାନ ପଥ ତୁମର ଦୃଷ୍ଟିଗୋଚର ହେବ । ତନ୍ମଧ୍ୟରେ ଚୌରପଥ ପରିତ୍ୟାଗ କରି ଯେଉଁ ପଥରେ ସାଧୁମାନେ ଗମନ କରୁଛନ୍ତି, ସେ ପଥରେ ଗମନ କରିବ । ଯେଉଁ ସ୍ଥାନରେ ବ୍ରାହ୍ମଣମାନେ ଥିବେ ସେଠାରେ ବସତି ସ୍ଥାପନ କରିବ; କିନ୍ତୁ ସେଠାରେ ମଧ୍ୟ ଅଧିକ ସମୟ ରହିବ ନାହିଁ । ଗୋଟିଏ ସ୍ଥାନରେ ଅଧିକ ଦିନ ରହିଲେ ସଂସାର ବାସନା ଉଦୟ ହୁଏ । ପଥ ମଧ୍ୟରେ କାହାରିକୁ ଅତ୍ୟନ୍ତ ବିଶ୍ୱାସ କରିବ ନାହିଁ । ଅନେକ ଖଳ ଓ ତସ୍କର ଆଭାସ୍ୱରୂପ

ପ୍ରଚ୍ଛନ୍ନ ରଖି ପଥିକମାନଙ୍କ ସହିତ ଏକତ୍ର ବାସ କରନ୍ତି ଏବଂ ଅଲକ୍ଷ୍ୟରେ ସେମାନଙ୍କର ଦେବପ୍ରତିମା ଓ ବସ୍ତ୍ରାଦି ଘେନି ପଳାୟନ କରନ୍ତି । ପୂଜନୀୟ ବ୍ୟକ୍ତିମାନଙ୍କର ପୂଜା କରିବ, କେବେହେଲେ ଏହାର ଅନ୍ୟଥା କରିବ ନାହିଁ । ପୂଜ୍ୟ ବ୍ୟକ୍ତିମାନଙ୍କୁ ଅତିକ୍ରମ କଲେ ସମୁଦାୟ ଅଭୀଷ୍ଟ ନିଷ୍ଫଳ ହୁଏ । ସର୍ବଦା ପବିତ୍ର ଭାବରେ ରହିବ । ତାହାହେଲେ ବ୍ରହ୍ମାନନ୍ଦ ଅନୁଭୂତ ହେବ ।'' ପଦ୍ମପାଦ ଗୁରୁଦେବଙ୍କ ନିକଟରୁ ବିଦାୟ ନେଇ ତୀର୍ଥପର୍ଯ୍ୟଟନରେ ବହିର୍ଗତ ହେଲେ । ଶୃଙ୍ଗେରୀ ପରିତ୍ୟାଗପୂର୍ବକ ସେ ନାନା ତୀର୍ଥ ଦର୍ଶନ କରି ଶ୍ରୀରଙ୍ଗରେ ଉପସ୍ଥିତ ହେଲେ । ଶ୍ରୀରଙ୍ଗନାଥଦେବଙ୍କ ମୂର୍ତ୍ତି ଦର୍ଶନ କରି ରାମେଶ୍ୱର ଯିବା ପଥରେ ପଦ୍ମପାଦଙ୍କର ମାତୁଳାଳୟ ଅବସ୍ଥିତ । ତାଙ୍କ ମାତୁଳ ଜଣେ ପରମ ପଣ୍ଡିତ ଓ ସଦାଚାରୀ ବ୍ୟକ୍ତି । କର୍ମକାଣ୍ଡରେ ସେ କୁମାରିଲ ମତାବଲମ୍ବୀ ଏବଂ ଉପାସନା ବିଷୟରେ ଦ୍ୱୈତବାଦୀ । ଭାଗିନେୟଙ୍କର ସନ୍ନ୍ୟାସବେଶ ଦର୍ଶନ କରି ମାତୁଳ ଯୁଗପତ୍ ଆନନ୍ଦିତ ଓ ଦୁଃଖିତ ହେଲେ । ଦୁଃଖର କାରଣ, ଭାଗିନେୟ ସଂସାରୀ ନ ହୋଇ ସନ୍ନ୍ୟାସୀ ହୋଇଅଛି ଏବଂ ଆନନ୍ଦର କଥା ଯେ, ବହୁଦିନ ପରେ ଭାଗିନେୟଙ୍କ ଦର୍ଶନ । ମାତୁଳ କ୍ରମେ ପଦ୍ମପାଦଙ୍କ ଇତିବୃତ୍ତ ଜାଣିବା ନିମିତ୍ତ ବ୍ୟାକୁଳତା ପ୍ରକାଶ କଲେ । ପଦ୍ମପାଦ ନିଜ ଗୁରୁଦେବଙ୍କ ପରିଚୟ ପ୍ରଦାନପୂର୍ବକ ଶାସ୍ତ୍ରୀୟ ଆଳାପରେ ପ୍ରବୃତ୍ତ ହେଲେ । ତାଙ୍କର ବିଦ୍ୟା, ବୁଦ୍ଧି, ପ୍ରତିଭା ଦର୍ଶନ କରି ମାତୁଳ ଅପାର ଆନନ୍ଦ ଲାଭ କଲେ । ଗ୍ରାମସ୍ଥ ବ୍ୟକ୍ତିମାନେ ପଦ୍ମପାଦଙ୍କୁ ଅତିଶୟ ଶ୍ରଦ୍ଧାଚକ୍ଷୁରେ ଦର୍ଶନ କରିବାକୁ ଲାଗିଲେ । ସମସ୍ତେ ଆଗ୍ରହ ସହକାରେ ତାଙ୍କୁ ଭିକ୍ଷାଗ୍ରହଣ କରିବା ନିମିତ୍ତ ଅନୁରୋଧ କଲେ । ମାତୁଳ କିନ୍ତୁ ଅନ୍ୟ କାହାରି ଇଚ୍ଛା ପୂରଣ କରାଇ ନ ଦେଇ ପଦ୍ମପାଦଙ୍କସହିତ ସର୍ବଦା ଆଳାପ ଆଲୋଚନାରେ ପ୍ରବୃତ୍ତ ହୋଇରହିଲେ ।

ପଦ୍ମପାଦଙ୍କ ଅଦ୍ୱୈତ ସିଦ୍ଧାନ୍ତ ଶ୍ରବଣ କରି ମାତୁଳଙ୍କ ମନରେ ଦାରୁଣ ଦୁଃଖ ଉଦୟ ହେଲା । ସେ ତାଙ୍କ ସହିତ ଆଲୋଚନା କରି ଯାହା ବୁଝିଲେ, ସେଥିରେ ସେ ଭାବିଲେ, ଯଦି ଏହି ମତ ପ୍ରଚାରିତ ହୁଏ, ତେବେ ଆଉ ଦ୍ୱୈତମତର ସ୍ଥାନ ରହିବ ନାହିଁ । ଭାଗିନେୟର ମତପ୍ରଚାରରେ କିପରି ବାଧା ଜାତ କରାଇବେ, ସେ ବିଷୟରେ ସେ ଚିନ୍ତା କରିବାକୁ ଲାଗିଲେ । ଦିନେ ଆଲୋଚନା ପ୍ରସଙ୍ଗରେ ମାତୁଳ କହିଲେ, ''ସନନ୍ଦନ ! ବହୁ ଦିନ ପରେ ତୁମେ

ଦର୍ଶନ ଦାନ କରିଛ । ମୁଁ ତୁମକୁ ଦର୍ଶନ କରିବା ନିମିତ୍ତ ଅତ୍ୟନ୍ତ ଉତ୍କଣ୍ଠିତ ଥିଲି । ଯେ ସନ୍ନ୍ୟାସ ଗ୍ରହଣ କରନ୍ତି, ତାଙ୍କର ସଂସାରରେ କୌଣସି ବିପଦ ନ ଥାଏ । ଆମେମାନେ ସ୍ତ୍ରୀ-ପୁତ୍ରଙ୍କ ଭରଣପୋଷଣ ନିମିତ୍ତ ସର୍ବଦା ବ୍ୟାକୁଳ ଥାଉ । ତେଣୁ ଆମର ଈଶ୍ୱର-ଉପାସନା, ତୀର୍ଥାଟନ କିମ୍ବା ସାଧୁସଙ୍ଗ ଘଟିପାରେ ନାହିଁ । ସନ୍ୟାସୀମାନଙ୍କର ପ୍ରାର୍ଥନୀୟ କିଛି ନାହିଁ । ଦେହ ସେମାନଙ୍କର ଗୃହ, ଜ୍ଞାନ ହିଁ ସେମାନଙ୍କର ଗୃହିଣୀ, ଶିଷ୍ୟମାନେ ହିଁ ପୁତ୍ର, ବୈରାଗ୍ୟ ହିଁ ଧନ; କିନ୍ତୁ ସଂସାରୀ ଲୋକଙ୍କର କୌଣସିଥିରେ ଆଶାର ନିବୃତ୍ତି ହୁଏ ନାହିଁ । ଯୌବନର ପ୍ରାରମ୍ଭରେ ସେମାନେ ମନୋରମା ପତ୍ନୀ ଲାଭ କରିବା ନିମିତ୍ତ ବ୍ୟଗ୍ର ହୁଅନ୍ତି । ଯଦି ଆଶା ଅନୁଯାୟୀ ଗୁଣବତୀ ପତ୍ନୀ ଲାଭ ହୁଏ, ତେବେ ପତ୍ନୀ ନିକଟରୁ ସୁସନ୍ତାନ ପାଇବାର ଅଭିଳାଷ କରନ୍ତି । ସୌଭାଗ୍ୟକ୍ରମେ ଯଦି ଅଭୀଷ୍ଟ ପୁତ୍ର ଲାଭ ହୁଏ, ତେବେ ପୁଣି ତାହାର ମରଣରେ କ୍ଲେଶର ସୀମା ରହେ ନାହିଁ । ସୁତରାଂ ଯେଉଁମାନେ କାମନାର ବଶ, ସଂସାରରେ ସେମାନଙ୍କର ଦୁଃଖର ଅନ୍ତ ନାହିଁ; ତଣ୍ଠେ ଜ୍ଞାନୀ ବ୍ୟକ୍ତିମାନେ ବୈରାଗ୍ୟ ଅବଲମ୍ବନ କରନ୍ତି । ପଣ୍ଡିତମାନେ ଚିତ୍ତଶୁଦ୍ଧିକୁ ବୈରାଗ୍ୟର ମୂଳ ବୋଲି କହନ୍ତି; କିନ୍ତୁ ଆତ୍ମଜ୍ଞାନୀ ସାଧୁ ବ୍ୟକ୍ତିଙ୍କ ସହବାସ ବ୍ୟତୀତ ଚିତ୍ତଶୁଦ୍ଧି ହୁଏ ନାହିଁ । ସେଥିପାଇଁ ସଂସାରସନ୍ତପ୍ତ ଜୀବମାନଙ୍କ ପ୍ରତି କୃପା ପ୍ରଦର୍ଶନ କରିବା ନିମିତ୍ତ ଜ୍ଞାନୀମାନେ ସର୍ବଦା ପୃଥିବୀରେ ପର୍ଯ୍ୟଟନ କରନ୍ତି । ତେଣୁ ହେ ଜ୍ଞାନୀବର ! ତୁମେ କିଛି ଦିନ ଏଠାରେ ଅବସ୍ଥାନ କର । ମୋ ସହିତ ବାସ କଲେ ମୋର ଚିତ୍ତବୃତ୍ତି କଳୁଷମୁକ୍ତ ହୋଇ କିଞ୍ଚିତ୍ ବିମଳ ଭାବ ଧାରଣ କରିବ । ତୁମ ଆଗମନରେ ଆମ ଗୃହ ରମଣୀୟ ଓ ପବିତ୍ର ହୋଇଅଛି; ନଚେତ୍ ଗୃହ ସର୍ବଦା ମାଳିନ୍ୟର ନିକେତନ, ପରନିନ୍ଦାର ଆଧାର ଏବଂ ମିଥ୍ୟାଭାଷଣର ଆସ୍ପଦ । ଏଠାରେ ପ୍ରତିନିୟତ ହିଂସାକାର୍ଯ୍ୟ ଅନୁଷ୍ଠିତ ହେଉଥାଏ । ଏହି ଗୃହରେ ରହିଲେ ଖଳ ଓ ଦୁର୍ଜନଙ୍କ ସହିତ କାଳଯାପନ କରିବାକୁ ପଡ଼େ । ତଥାପି ଆମେମାନେ ଧନତୃଷ୍ଣାର ବଶୀଭୂତ ହୋଇ ଏହି ପରିହାର୍ଯ୍ୟ ଗୃହ ପରିତ୍ୟାଗ କରିପାରୁ ନାହିଁ ।'' ମାତୁଳଙ୍କ ଛଳୋକ୍ତି ପଦ୍ମପାଦ ବୁଝି ନ ପାରି କହିଲେ, ''ଆପଣ ଯାହା କହିଲେ, ତାହାସବୁ ସତ; କିନ୍ତୁ ସବୁ ବିଷୟ ଭାଗ୍ୟର ଅଧୀନ । ଯାହାଙ୍କ ଭାଗ୍ୟରେ ଥାଏ, ସେ ବ୍ରହ୍ମଜ୍ଞାନ ଲାଭ କରିପାରନ୍ତି । ଏହା ବୋଲି ଗୃହସ୍ଥାଶ୍ରମ ନିନ୍ଦନୀୟ ନୁହେଁ । 'କିଏ ମୋତେ ଅନ୍ନଦାନ କରିବ'—ଏହି କଥା

କହି ମଧ୍ୟାହ୍ନକାଳରେ କୌଣସି ଗୃହସ୍ଥ ଦ୍ୱାରରେ ଉପସ୍ଥିତ ହେଲେ ଯେଉଁ ବ୍ୟକ୍ତି ଉକ୍ତ ଅତିଥିର କ୍ଷୁଧା ଶାନ୍ତ କରନ୍ତି, ତାଙ୍କ ଅପେକ୍ଷା ପୁଣ୍ୟବାନ୍ ଆଉ କିଏ ଅଛି ? ବ୍ରହ୍ମଚାରୀ ହୁଅନ୍ତୁ, ବାନପ୍ରସ୍ଥି ହୁଅନ୍ତୁ ଅଥବା ଭିକ୍ଷୁ ହୁଅନ୍ତୁ, ଗୃହସ୍ଥମାନେ ଏହି ତିନି ଆଶ୍ରମକୁ ରକ୍ଷା କରିଛନ୍ତି । ବ୍ରହ୍ମଚାରୀ ସକାଳ ସନ୍ଧ୍ୟାରେ ଅବଗାହନପୂର୍ବକ ଅଗ୍ନିରେ ଆହୁତି ଦେବେ । ସମସ୍ତ ଦିନଧରି ବେଦପାଠରେ ନିରତ ରହି କ୍ଷୁଧାର ଉଦ୍ରେକ ହେଲେ ଗୃହସ୍ଥଙ୍କ ଗୃହରେ ପ୍ରବେଶ କରି କ୍ଷୁଧା ନିବୃତ୍ତ କରିବେ । ବାନପ୍ରସ୍ଥି ସନ୍ନ୍ୟାସୀମାନେ ଉଗ୍ରତପସ୍ୟା କରି ଯେଉଁ ପୁଣ୍ୟ ଅର୍ଜ୍ଜନ କରନ୍ତି, ସେଥିରୁ ମଧ୍ୟ ଅର୍ଦ୍ଧେକ ଏହି ଅନ୍ନଦାତା ଗୃହସ୍ଥମାନେ ପ୍ରାପ୍ତ ହୁଅନ୍ତି । ଯତି ଓ ସାଧୁ ସନ୍ନ୍ୟାସୀମାନେ ତପସ୍ୟା ଓ ଦେଶ ପର୍ଯ୍ୟଟନ ଏବଂ ନାନା ତୀର୍ଥ ଦର୍ଶନ କରି ପୁଣ୍ୟ ଲାଭ କରନ୍ତି ସତ; କିନ୍ତୁ ଗୃହସ୍ଥମାନେ ଘରେ ବସି ମଧ୍ୟ ଏହିସବୁ ସାଧୁ ମହାତ୍ମାଙ୍କ ସେବାର ବ୍ୟବସ୍ଥା କରି ସେହି ପୁଣ୍ୟଫଳ ପ୍ରାପ୍ତ ହୁଅନ୍ତି । ଗୃହୀର ଧନଦ୍ୱାରା ଯେ କେବଳ ଏହି ତିନି ଆଶ୍ରମ ରକ୍ଷା ହୁଏ, ତାହା ନୁହେଁ, ସମଗ୍ର ପ୍ରାଣୀଜଗତ ଏପରି କି ରାଜା ମଧ୍ୟ ଗୃହସ୍ଥମାନଙ୍କ ଧନରେ ପ୍ରତିପାଳିତ ହୁଅନ୍ତି । ବେଦଜ୍ଞ ବ୍ରାହ୍ମଣ, ଧର୍ମପରାୟଣ ବ୍ୟକ୍ତି, ଦେଶସେବକ କିମ୍ବା ପରୋପକାରୀ ବ୍ୟକ୍ତିମାନେ ଧନ ନିମିତ୍ତ ଗୃହସ୍ଥମାନଙ୍କର ଦ୍ୱାରସ୍ଥ ହୁଅନ୍ତି । କେହି ଚୌର୍ଯ୍ୟବୃତ୍ତିଦ୍ୱାରା, କେହି ଦାନ ଗ୍ରହଣଦ୍ୱାରା ବା କେହି ପ୍ରଣୟ ପ୍ରକାଶଦ୍ୱାରା ଗୃହସ୍ଥମାନଙ୍କଠାରୁ ଧନ ଆହରଣପୂର୍ବକ ଆହାରନିର୍ବାହ କରନ୍ତି । ମୂଷିକପ୍ରଭୃତି କ୍ଷୁଦ୍ରଜନ୍ତୁମାନେ ମଧ୍ୟ ଗୃହସ୍ଥଙ୍କ ଗୃହରେ ଲୁକ୍‌କାୟିତ ଭାବରେ ଥାଇ ଜୀବନଧାରଣ କରନ୍ତି । ଗୃହର ବହିର୍ଦ୍ଦେଶସ୍ଥ ଗୋ, ମୃଗ, ପଶୁ, ପକ୍ଷୀ ପ୍ରଭୃତି ପ୍ରାଣୀମାନେ ମଧ୍ୟ ଗୃହସ୍ଥଙ୍କ ଅନୁକମ୍ପାରେ ପ୍ରତିପାଳିତ ହୁଅନ୍ତି । ଶ୍ରୁତିରେ ଅଛି, ଅନ୍ନରୁ ଜୀବସକଳ ଜନ୍ମଗ୍ରହଣ କରନ୍ତି । ପ୍ରକୃତ ପକ୍ଷରେ ଅନ୍ନଦ୍ୱାରା ସମସ୍ତେ ପୁଷ୍ଟି ଲାଭ କରନ୍ତି । ସୁତରାଂ ଆମର ଅନ୍ନଦାତା ସେହି ଗୃହସ୍ଥମାନେ ହିଁ ସବୁଠାରୁ ଶ୍ରେଷ୍ଠ । ତେଣୁ ଗୃହସ୍ଥ ମାତ୍ରକେ ଦାତା ହେବା ସୁନିଶ୍ଚିତ । ଗୃହୀମାନେ ପଞ୍ଚଯଜ୍ଞଦ୍ୱାରା ଗୃହାଗତ ଆତୁର ଓ ଅତିଥିବୃନ୍ଦଙ୍କୁ ଯଥାଶକ୍ତି ପୂଜା କରିଥାନ୍ତି । ଯାହାଙ୍କ ଗୃହରେ ଆତୁର ଓ ଅତିଥି ପୂଜିତ ହୁଅନ୍ତି, ତାଙ୍କର କୁଳ ଉଦ୍ଧାର ହୋଇଥାଏ । ଅତିଥିମାନଙ୍କୁ ଅନ୍ନଦାନରୁ ବଞ୍ଚିତ କରି ତଡ଼ିଦେଲେ ଯେ କିପରି ପାପ ହୁଏ, ତାହା ଆଉ କହିହେବ ନାହିଁ । କୌଣସି କାମନା ନ ରଖି ବେଦୋକ୍ତ ପଞ୍ଚଯଜ୍ଞାଦି କାର୍ଯ୍ୟସମ୍ପନ୍ନ କରିବା ପ୍ରତ୍ୟେକ ଗୃହୀଙ୍କର ପରମକର୍ତ୍ତବ୍ୟ । ଏଥିତେ

ଈଶ୍ୱର ସନ୍ତୁଷ୍ଟ ହୁଅନ୍ତି । ନିଷ୍କାମ ହୃଦୟରେ ଭଗବତ୍‌ପ୍ରୀତିନିମିତ୍ତ କର୍ମ କଲେ ଗୃହସ୍ଥଙ୍କର ଚିତ୍ତ ଶୁଦ୍ଧି ହୁଏ ।

ଏହିପରି କଥାବାର୍ତ୍ତା ହେବା ପରେ ଭିକ୍ଷୁ ପଦ୍ମପାଦ ଶିଷ୍ୟମାନଙ୍କ ସହିତ ମାତୁଳଙ୍କ ଗୃହରେ ଅନ୍ନଭିକ୍ଷାଗ୍ରହଣ କଲେ । ଏହା ପରେ ମାତୁଳ ପଦ୍ମପାଦଙ୍କ ଜନୈକ ଶିଷ୍ୟ ନିକଟରେ ବସ୍ତ୍ରାବୃତ ଖଣ୍ଡିଏ ବୃହଦାକାର ପୁସ୍ତକ ଦେଖି ପ୍ରଶ୍ନ କଲେ, ''ବତ୍ସ ପଦ୍ମପାଦ ! ଏ ପୁସ୍ତକଟିର ନାମ କ'ଣ ?'' ପଦ୍ମପାଦ ଉତ୍ତର କଲେ, ''ଏହା ଗୁରୁଦେବଙ୍କ କୃତ ବ୍ରହ୍ମସୂତ୍ର ଭାଷ୍ୟ ଉପରେ ମୋଦ୍ୱାରା ଲିଖିତ, 'ବିଜୟ ଡିଣ୍ଡିମ' ନାମକ ଟୀକା ।'' ଏ କଥା ଶୁଣି ମାତୁଳ ପୁସ୍ତକ ଖଣ୍ଡିକ ଦେଖିବାନିମିତ୍ତ ଅତ୍ୟନ୍ତ କୌତୂହଳ ପ୍ରକାଶ କଲେ । ପଦ୍ମପାଦ ଆଗ୍ରହରସହିତ ପୁସ୍ତକଟିକୁ ମାତୁଳଙ୍କ ହସ୍ତରେ ଅର୍ପଣ କଲେ । ମାତୁଳ ଅତିଶୟ ସାବଧାନତା ସହିତ ଟୀକାଖଣ୍ଡିକ ମୂଳରୁ ଶେଷଯାଏ ପାଠକଲେ । ପାଠକରି ତାଙ୍କ ହୃଦୟ ଯୁଗପତ୍ ହର୍ଷ ଓ ବିଷାଦରେ ଅଭିଭୂତ ହୋଇଗଲା । ସେ ଭାଗିନେୟଙ୍କର ପ୍ରବନ୍ଧ-ରଚନାର ନୈପୁଣ୍ୟ ଓ ବୁଦ୍ଧିର ତୀକ୍ଷ୍ଣତା ଦର୍ଶନ କରି ପରିତୁଷ୍ଟ ହେଲେ । କିନ୍ତୁ ପ୍ରବନ୍ଧରେ ଯେଉଁସବୁ ଯୁକ୍ତିବଳରେ ପୂର୍ବମତ ଖଣ୍ଡନ କରାଯାଇଛି, ତାହାଦେଖି ସେ ଅତିଶୟ ଦୁଃଖିତ ହେଲେ । କାରଣ ସେ ଭଟ୍ଟ ପ୍ରଭାକରଙ୍କର ଶିଷ୍ୟ । ପଦ୍ମପାଦ ଏହି ଗ୍ରନ୍ଥରେ ସୁତୀକ୍ଷ୍ଣ ଯୁକ୍ତିଦ୍ୱାରା ତାଙ୍କ ଗୁରୁ ଭଟ୍ଟ ପ୍ରଭାକରଙ୍କ ମତକୁ ସମ୍ପୂର୍ଣ୍ଣଭାବରେ ଖଣ୍ଡନ କରିଥିବାର ଦେଖି ସେ ମନେ ମନେ ଅତିଶୟ ବିଷାଦଗ୍ରସ୍ତ ହେଲେ; କିନ୍ତୁ ବାହାରେ ଆନନ୍ଦ ପ୍ରକାଶ କରି କହିଲେ—''ବତ୍ସ ! ପ୍ରବନ୍ଧଟି ଅତି ଉତ୍ତମ ହୋଇଅଛି । ମୁଁ ତୋର ବୁଦ୍ଧିନୈପୁଣ୍ୟ ଦର୍ଶନ କରି ଅତିଶୟ ତୁଷ୍ଟ ହୋଇଅଛି ।'' ଅନନ୍ତର ମାତୁଳ କୃତ୍ରିମ ସ୍ନେହପ୍ରଦର୍ଶନପୂର୍ବକ ପଦ୍ମପାଦଙ୍କୁ ଶୀଘ୍ର ବିଦାୟ ଦେବାକୁ ଅସମ୍ମତି ପ୍ରକାଶ କରିବାରୁ ପଦ୍ମପାଦ ମାତୁଳଙ୍କ ଗୃହରେ ତିନି ଦିନ ଅବସ୍ଥାନ କରିବାକୁ ସ୍ୱୀକୃତ ହେଲେ । ଏହି ସୁଯୋଗରେ ପଦ୍ମପାଦଙ୍କର ଯେତେଦୂର ବିଶ୍ୱାସଭାଜନ ହେବା ଆବଶ୍ୟକ, ତାହାର ଉପାୟ ଉଦ୍ଭାବନ କରିବାକୁ ମାତୁଳ ପଶ୍ଚାତ୍‌ପଦ ହେଲେ ନାହିଁ ।

ଏହାପରେ ଅନନ୍ତର ପଦ୍ମପାଦ ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ବହିର୍ଗତ ହେଲେ । ଏହା ଦେଖି ମାତୁଳ କହିଲେ, ''ପଦ୍ମପାଦ ! ଏହି ବୃହଦାକାର ପୁସ୍ତକଖଣ୍ଡିକ କାହିଁକି ବହନ କରିଚାଲିଛ ? ଫେରିବା ବେଳେ ମୋଠାରୁ ନେଇଯିବ । ମୁଁ ଏ

ମଧ୍ୟରେ ଏ ପୁସ୍ତକଖଣ୍ଡିକ ଭଲଭାବରେ ପାଠ କରିବାର ସୁବିଧା ପାଇବି । ଏହା ପାଠକ କଲେ ମୋ ମନରୁ ସମସ୍ତ ସନ୍ଦେହ ଦୂର ହୋଇଯିବ ।'' ପଦ୍ମପାଦ ମାତୁଳଙ୍କର ଅଭିସନ୍ଧି ବୁଝି ନ ପାରି ଓ ପୁସ୍ତକର ଭବିଷ୍ୟତ ଚିନ୍ତା ନ କରି ମାତୁଳଙ୍କର ଆଦର ଓ ଯତ୍ନରେ ଏ ସମସ୍ତ ବିସ୍ମୃତ ହୋଇ ତାଙ୍କ ଆଦରର ପୁସ୍ତକଖଣ୍ଡିକ ମାତୁଳଙ୍କ ନିକଟରେ ରଖି ରାମେଶ୍ୱର ଅଭିମୁଖରେ ଯାତ୍ରାକଲେ । ମାସାଧିକ କାଳ ତୀର୍ଥପର୍ଯ୍ୟଟନ କରି ଶେଷର ପଦ୍ମପାଦ ମାତୁଳାଳୟକୁ ଫେରି ଆସିଲେ ।

ପଦ୍ମପାଦ ଗମନ କଲା ପରେ ମାତୁଳ ମନେମନେ ଚିନ୍ତା କଲେ, ଯଦି ଏହି ପୁସ୍ତକଖଣ୍ଡିକ ପ୍ରଚାରିତ ହେବ, ତାହାହେଲେ ମୋ ଗୁରୁଦେବ ଭଟ୍ଟପ୍ରଭାକରଙ୍କ ମତର ଯଥେଷ୍ଟ କ୍ଷତିଘଟିବ । ମୋର ଏଭଳି ବୁଦ୍ଧି ନାହିଁ ଯେ, ଭାଗିନେୟର ଯୁକ୍ତିମାନ ଖଣ୍ଡନପୂର୍ବକ ଗୁରୁଦେବଙ୍କ ମତ ପ୍ରତିଷ୍ଠା କରିପାରିବି । ଅତଏବ ଗୃହସହିତ ଏହି ପୁସ୍ତକଖଣ୍ଡିକ ଦଗ୍ଧ କରିପାରିଲେ ସବୁ କଥାର ମୀମାଂସା ହୋଇଯିବ । କାରଣ ଗୁରୁମତର ବିନାଶ ଅପେକ୍ଷା ବରଂ ଗୃହନାଶ ଶ୍ରେୟଃ । ଏହା ସ୍ଥିର କରି ସେ ଦିନେ ରାତ୍ରିକାଳରେ ନିଜ ଗୃହରେ ଅଗ୍ନିସଂଯୋଗ କରିଦେଲେ । ପଦ୍ମପାଦଙ୍କ ପୁସ୍ତକ ସହିତ ଗୃହର ସମସ୍ତ ଦ୍ରବ୍ୟ ଭସ୍ମୀଭୂତ ହୋଇଗଲା ।

କିଛି ଦିନ ପରେ ପଦ୍ମପାଦଙ୍କୁ ତୀର୍ଥାଟନରୁ ଫେରିଆସିବାର ଦେଖି ମାତୁଳ କୃତ୍ରିମକ୍ରନ୍ଦନ କରିବାକୁ ଲାଗିଲେ ଏବଂ କହିଲେ, ''ତୁମେ ମୋ ନିକଟରେ ଯେଉଁ ପୁସ୍ତକ ରଖିଥିଲ, ତାହା ମୋର ଅସାବଧାନତାରୁ ଗୃହଦାହ ହେବା ସଙ୍ଗେ ସଙ୍ଗେ ନଷ୍ଟ ହୋଇଯାଇଅଛି । ମୋର ଗୃହ ଦଗ୍ଧ ହେବାରେ ଯେତେ କଷ୍ଟ ନ ହୋଇଛି, ତୁମର ସେ ପୁସ୍ତକଖଣ୍ଡିକ ନଷ୍ଟ ହେବାରେ ତହିଁରୁ ବଳି ଅଧିକ କଷ୍ଟ ହୋଇଛି ।'' ପଦ୍ମପାଦ ମାତୁଳଙ୍କର ଦୂରଭିସନ୍ଧି ଆଦୌ ବୁଝିପାରିଲେ ନାହିଁ । ସେ କହିଲେ, ''ମାମୁଁ ! ଆଉ କ୍ରନ୍ଦନ କରନ୍ତୁ ନାହିଁ । ଯାହା ଘଟିଗଲାଣି, ସେଥିନିମିତ୍ତ ବୃଥା ଶୋକ କରିବା ଅନୁଚିତ । ଆପଣଙ୍କ ଆଶୀର୍ବାଦ ଥିଲେ ମୁଁ ଏହାଠାରୁ ବଳି ଆହୁରି ସୁଯୁକ୍ତିପୂର୍ଣ୍ଣ ଗ୍ରନ୍ଥ ରଚନା କରିପାରିବି । ମୋ ସହିତ ଏଥର ଆଲୋଚନା ବେଳେ ଆପଣ ଯେଉଁସବୁ ଅଭିନବ ପୂର୍ବପକ୍ଷ ଉତ୍‌ଥାପନ କରିଥିଲେ, ମୁଁ ସେସବୁ ମଧ୍ୟ ଉତ୍ତମଭାବରେ ଖଣ୍ଡନ କରି ଆଉ ଖଣ୍ଡିଏ ପୁସ୍ତକ ରଚନା କରିବି ।''

ପଦ୍ମପାଦଙ୍କର ଏ କଥା ଶୁଣି ମାତୁଳଙ୍କ ଶିରରେ ବଜ୍ରପାତ ହେଲା । ସେ ଭାବିଲେ, ପଦ୍ମପାଦ ଯଦି ଏହାଠାରୁ ବଳି ଉତ୍କୃଷ୍ଟଗ୍ରନ୍ଥ ରଚନା କରେ, ତେବେ ମୋର ସମସ୍ତ ଉଦ୍ଦେଶ୍ୟ ପଣ୍ଡ ହୋଇଯିବ । ଗୃହଦଗ୍ଧ ହୋଇଗଲା, ସେଥି ସଙ୍ଗେ ସଙ୍ଗେ ମୋର ଧର୍ମ ନଷ୍ଟ ହେଲା ।

ପଦ୍ମପାଦ ସେହିଦିନଠାରୁ ଟୀକା ରଚନାରେ ଲାଗିପଡ଼ିଲେ । ମାତୁଳ ଏହା ଆଦୌ ସହ୍ୟ କରିପାରିଲେ ନାହିଁ । ସେ ନିରୂପାୟ ହୋଇ ଭଣଜାକୁ ବିଷପ୍ରୟୋଗ କରି ପାଗଳ କରିଦେବାକୁ ସ୍ଥିର କଲେ । ଦୁରାତ୍ମା ମାତୁଳ ଦିନେ ରାତ୍ରିରେ ପଦ୍ମପାଦଙ୍କୁ ଅନ୍ନସହିତ ଉତ୍କଟ ବିଷ ପ୍ରଦାନ କଲେ । କିନ୍ତୁ କ'ଣ ଭାବି ତାଙ୍କସହିତ ଥିବା ଶିଷ୍ୟକୁ ବିଷ ପ୍ରଦାନ କଲେ ନାହିଁ । ରାତ୍ର ଶେଷରେ ପଦ୍ମପାଦଙ୍କର ଉନ୍ମାଦର ଲକ୍ଷଣ ପ୍ରକାଶ ପାଇଲା । ପଦ୍ମପାଦ ଆରକ୍ତନୟନରେ ଭୀଷଣ ମୁଖଭଙ୍ଗୀ କରିବାକୁ ଲାଗିଲେ ଏବଂ ଜଡ଼ ପରି ଉପବିଷ୍ଟ ରହିଲେ । କେତେବେଳେ ହାସ୍ୟ ଓ କେତେବେଳେ କ୍ରନ୍ଦନ କରିବାକୁ ଆରମ୍ଭ କଲେ । ପଦ୍ମପାଦଙ୍କର ଏହିପରି ଉତ୍କଟ ଶବ୍ଦ ଶୁଣି ତାଙ୍କ ଶିଷ୍ୟଙ୍କ ନିଦ୍ରାଭଙ୍ଗ ହେଲା । ସେ କିଂକର୍ତ୍ତବ୍ୟବିମୂଢ଼ ହୋଇ ମାତୁଳଙ୍କୁ ଏ ସମ୍ବାଦ ପ୍ରଦାନ କଲା ।

ମାତୁଳ ମନେ ମନେ ମହାସନ୍ତୁଷ୍ଟ ହେଲେ ସତ; କିନ୍ତୁ ଭଣଜାକୁ ପ୍ରକୃତିସ୍ଥ କରିବାନିମିତ୍ତ ବାହ୍ୟିକଭାବରେ ନାନା ଯତ୍ନ କରିବାକୁ ଲାଗିଲେ । ସମସ୍ତେ କହିଲେ, ଏହା ବିଷଭକ୍ଷଣର ଫଳ । ଚିକିତ୍ସକଙ୍କର ଯତ୍ନରେ ପଦ୍ମପାଦ ଶୀଘ୍ର ରୋଗମୁକ୍ତ ହେବାକୁ ଲାଗିଲେ; କିନ୍ତୁ ସମ୍ପୂର୍ଣ୍ଣ ପ୍ରକୃତିସ୍ଥ ହୋଇପାରିଲେ ନାହିଁ । ତତ୍ପରେ ମାତୁଳ ପଦ୍ମପାଦଙ୍କ ଶିଷ୍ୟଙ୍କୁ ଡାକି କହିଲେ, ''ବତ୍ସ ! ତୁମେ ତୁମ ଗୁରୁଦେବଙ୍କୁ ଆଚାର୍ଯ୍ୟଙ୍କ ସମୀପକୁ ଘେନିଯାଅ ।'' ପଦ୍ମପାଦ ମଧ୍ୟ ଗୁରୁଦର୍ଶନନିମିତ୍ତ ବ୍ୟାକୁଳ ହୋଇ କାଳାତିପାତ କରିବାକୁ ଲାଗିଲେ । ତାଙ୍କର ସମସ୍ତ ଅଭିମାନ ଚୂର୍ଣ୍ଣ ହୋଇଗଲା । ଗୁରୁଦେବଙ୍କ ବାକ୍ୟକୁ ଅବହେଳା କରିଥିବାରୁ ଯେ ଏପରି ଘଟିଲା, ତାହା ସେ ସ୍ପଷ୍ଟଭାବରେ ଅନୁଭବ କଲେ ଓ ମାତୁଳଙ୍କ ଦୂରଭିସନ୍ଧି ମଧ୍ୟ ବୁଝିପାରିଲେ । ତତ୍ପରେ ସେ ଜଣେ ପଥିକମୁଖରୁ ଶୁଣିଲେ ଯେ, ଗୁରୁଦେବ ସେତେବେଳେ ତାଙ୍କ ଜନ୍ମଭୂମି କେରଳ ଦେଶରେ ଅବସ୍ଥାନ କରୁଛନ୍ତି । ଏହା ଶୁଣି ପଦ୍ମପାଦ କେରଳ ଅଭିମୁଖରେ ଯାତ୍ରା କଲେ ।



# ଶଙ୍କରଙ୍କ ପ୍ରତିଜ୍ଞା ପାଳନ

ଆଚାର୍ଯ୍ୟ ପଦ୍ମପାଦଙ୍କୁ ବିଦାୟ ପ୍ରଦାନ କରି ପୂର୍ବପରି ଅଧ୍ୟାପନାରେ ନିରତ ରହିଲେ । ପଦ୍ମପାଦଙ୍କର ଏପରି ଭାବରେ ଆଶ୍ରମତ୍ୟାଗ ଅନେକଙ୍କର ଚିନ୍ତାର ବିଷୟ ହୋଇଉଠିଲା । ଯେ ଗୁରୁଗତପ୍ରାଣ, ଯେ ଛାୟାପରି ଆଚାର୍ଯ୍ୟଙ୍କ ଅନୁଗାମୀ, ସେ ଯେ ହଠାତ୍ ଏପରି ଭାବରେ ଦୂର ଦେଶକୁ ଚାଲିଯାଇପାରିବେ, ଏହା ଅନେକେ ବିଶ୍ୱାସ କରିପାରିଲେ ନାହିଁ । ସୁରେଶ୍ୱର ମଧ୍ୟ ମନେ ମନେ ଅନୁତପ୍ତ ହେଲେ । ପଦ୍ମପାଦଙ୍କର ଅଭାବ ସମସ୍ତେ ଅନୁଭବ କରିବାକୁ ଲାଗିଲେ ଏବଂ ପଦ୍ମପାଦଙ୍କ ପରି ଗୁରଭକ୍ତ ଶିଷ୍ୟଙ୍କ ବିଦାୟରେ ଶଙ୍କରଙ୍କ ଅବିଚଳିତ ଭାବଦେଖି ସମସ୍ତେ ଆହୁରି ଅଧିକ ଚମତ୍କୃତ ହେଲେ ।

ଦିନେ ଆଚାର୍ଯ୍ୟ ଅଧ୍ୟାପନା କରୁଛନ୍ତି, ଏପରି ସମୟରେ ଜିହ୍ୱାରେ ମାତୃସ୍ତନ୍ୟର ଆସ୍ୱାଦନ ଅନୁଭବ କଲେ । ସେ ଜାଣିପାରିଲେ ଯେ, ଜନନୀଙ୍କର ଅନ୍ତିମ ସମୟ ଉପସ୍ଥିତ ହୋଇଅଛି । ସନ୍ନ୍ୟାସ ଗ୍ରହଣ କରିବା ସମୟରେ ସେ ଜନନୀଙ୍କ ନିକଟରେ ଯେଉଁ ପ୍ରତିଜ୍ଞା କରିଥିଲେ, ତାହା ସଙ୍ଗେ ସଙ୍ଗେ ତାଙ୍କର ମନେପଡ଼ିଗଲା । ସେ କାଳବିଳମ୍ୱ ନ କରି ଶିଷ୍ୟମାନଙ୍କୁ କହିଲେ, ''ସୁରେଶ୍ୱର ! ବର୍ତ୍ତମାନ ମୋ ଜନନୀଙ୍କର ଅନ୍ତିମକାଳ ଉପସ୍ଥିତ । ମୁଁ ତାଙ୍କର ଅନ୍ତିମ ସମୟରେ ଉପସ୍ଥିତ ରହିବି ବୋଲି ପ୍ରତିଜ୍ଞା କରିଥିବାରୁ ସେ ମୋତେ ସନ୍ନ୍ୟାସୀ ହେବାକୁ ଅନୁମତି ଦେଇଥିଲେ; ସୁତରାଂ ମୁଁ ବର୍ତ୍ତମାନ ଆକଶପଥରେ ଜନନୀଙ୍କ ନିକଟକୁ ଯାଉଅଛି । ତୁମେମାନେ ସେଠାରେ ଉପସ୍ଥିତ ହେବ ।'' ତତ୍ପରେ ଆଚାର୍ଯ୍ୟ ଯୋଗବଳରେ ଆକାଶକୁ ଉଠି ଅଦୃଶ୍ୟ ହୋଇଗଲେ । ଯଥାସମୟରେ ଶଙ୍କର ଗୃହରେ ପ୍ରବେଶକରି ଦେଖିଲେ ଯେ, ଜନନୀ ରୋଗଶଯ୍ୟାରେ ଶାୟିତା । ପାର୍ଶ୍ୱରେ ବୃଦ୍ଧା ପରିଚାରିକା । ସମ୍ପତ୍ତିର ଅଧିକାରୀ ପୂର୍ବର ଜ୍ଞାତି ପରିବର୍ତ୍ତରେ ଆଉ ଜଣେ ଜ୍ଞାତି ଜନନୀଙ୍କର ନିକଟରେ ଉପବିଷ୍ଟ । ବିଶିଷ୍ଟା ଦେବୀ ପୁତ୍ରମୁଖ ଦର୍ଶନକରି ଅଶ୍ରୁ ସମ୍ୱରଣ କରିପାରିଲେ ନାହିଁ ଏବଂ କ୍ଷଣକାଳପରେ କ୍ଷୀଣକଣ୍ଠରେ କହିଲେ, ''ବାବା ! ଏତେ ବିଳମ୍ୱ କାହିଁକି ହେଲା ? ତୋର ବିଳମ୍ୱ ଦେଖି ଭାବିଥିଲି, ସମ୍ଭବତଃ ଏ ଜୀବନରେ ତୋର ଆଉ ସାକ୍ଷାତ ପାଇପାରିବି ନାହିଁ ।''

ଆଚାର୍ଯ୍ୟ ଜନନୀଙ୍କର ପଦଧୂଳି ଗ୍ରହଣ କରି ତାଙ୍କର ଆଗମନ ବୃତ୍ତାନ୍ତ ବର୍ଣ୍ଣନାକଲେ । ଜନନୀଙ୍କ ହୃଦୟ ବିସ୍ମୟ ଓ ଆନନ୍ଦରେ ପୂର୍ଣ୍ଣ ହୋଇଗଲା । ଆଚାର୍ଯ୍ୟ ତାଙ୍କପାର୍ଶ୍ୱରେ ବସି ମାତୃସେବାରେ ମନୋନିବେଶ କଲେ । ଯାହାଙ୍କ ନିକଟରେ ଚରାଚର ସମସ୍ତ ବ୍ରହ୍ମମୟ, ଯାହାଙ୍କଠାରେ ବ୍ରହ୍ମ ଭିନ୍ନ ଅନ୍ୟ କିଛି ପ୍ରତିଭାତ ହୁଏ ନାହିଁ, ସେ ଆଜି ମାତୃଭକ୍ତ ସନ୍ତାନ ପରି ଜନନୀଙ୍କ ସେବାରେ ନିଜକୁ ନିଯୁକ୍ତ କଲେ । ସନ୍ନ୍ୟାସୀ ହୋଇଥିଲେ ମଧ୍ୟ ମାତୃସେବା କରିବାରେ ଆଚାର୍ଯ୍ୟଙ୍କର କୌଣସି ପ୍ରକାର ସଂକୋଚ ରହିଲା ନାହିଁ । ଯେଉଁ ଜ୍ଞାତିଟିକୁ ବିଷୟସମ୍ପତ୍ତି ପ୍ରଦାନପୂର୍ବକ ଜନନୀଙ୍କର ରକ୍ଷଣାବେକ୍ଷଣର ଭାର ଦେଇ ଶଙ୍କର ସନ୍ନ୍ୟାସୀ ହୋଇଥିଲେ, ସେ ଜ୍ଞାତିଟି ତାଙ୍କ ଆଗମନ ସମ୍ବାଦ ପାଇ ତାଙ୍କ ନିକଟରେ ଉପସ୍ଥିତ ହୋଇ କୁଶଳବାର୍ତ୍ତା ପ୍ରଶ୍ନକରି କହିଲା, ‘‘ବିଶିଷ୍ଟା ବଡ଼ ଅସାବଧାନୀ, ସ୍ୱାସ୍ଥ୍ୟ ପ୍ରତି ତାଙ୍କର ଆଦୌ ନଜର ନଥାଏ’’ ଇତ୍ୟାଦି । ଏହା କହି ସେ ତାଙ୍କର ନାନାବିଧ ନିନ୍ଦା କରିବାକୁ ଲାଗିଲା । ଆଚାର୍ଯ୍ୟ ତାକୁ ମିଷ୍ଟବାକ୍ୟରେ ସାନ୍ତ୍ୱନା ଦେଇ ବିଦାୟଦେଲେ । ଜ୍ଞାତିଟି ଚାଲିଯିବା ପରେ ବିଶିଷ୍ଟା ଦେବୀ କହିଲେ, ‘‘ବାବା ଶଙ୍କର ! ତୋର ସମ୍ପତ୍ତି ଗ୍ରହଣକାରୀ ଜ୍ଞାତିଟି ମୋତେ ବଡ଼ ଅଯତ୍ନ କରିଛି । ହେଲେ ଏହି ଦରିଦ୍ର ଜ୍ଞାତିଟି ଯୋଗୁ ମୁଁ ପ୍ରାଣରେ ବଞ୍ଚିରହିଛି । ଯଦି ପାରିବୁ ତୋ ସମ୍ପତ୍ତି ଏହି ଜ୍ଞାତିକୁ ପ୍ରଦାନ କରିବୁ ।’’ ଆଚାର୍ଯ୍ୟ ସେଥିରେ ସ୍ୱୀକୃତ ହୋଇ ଜନନୀଙ୍କୁ ଇଷ୍ଟଚିନ୍ତା କରିବାକୁ ଅନୁରୋଧ କଲେ । ଜନନୀ କାତରକଣ୍ଠରେ କହିଲେ, ‘‘ଯେଉଁ ଆଶା କରି ମୁଁ ତୋତେ ସନ୍ନ୍ୟାସୀ ହେବାକୁ ଅନୁମତି ଦେଇଥିଲି, ବର୍ତ୍ତମାନ ମୋର ସେ ଆଶା ପୂର୍ଣ୍ଣ କର ।’’ ଶଙ୍କର ଜନନୀଙ୍କୁ ସାନ୍ତ୍ୱନା ଦେଇ କହିଲେ, ‘‘ମା ! ତୁ ସେ ବିଷୟରେ ନିଶ୍ଚିନ୍ତ ରହ । ଭଗବାନ ତୋର ମନୋବାସନା ନିଶ୍ଚୟ ପୂର୍ଣ୍ଣ କରିବେ । ତୋ ଆଶୀର୍ବାଦ ବ୍ୟର୍ଥ ହେବ ନାହିଁ ।’’

ତତ୍ପରେ ଜନନୀଙ୍କ ଆଦେଶରେ ଶଙ୍କର ନିତ୍ୟକୃତ୍ୟ ସମାପନକରି ଭିକ୍ଷା ଗ୍ରହଣକଲେ । ଶଙ୍କର ପୂର୍ବରୁ ଯେଉଁ ଜ୍ଞାତିକୁ ସମ୍ପତ୍ତି ଦେଇଥିଲେ, ତା’ ଗୃହରେ ଭିକ୍ଷା ଗ୍ରହଣ ନକରି ଜନନୀଙ୍କ ସେବାକାରୀ ସେହି ଦରିଦ୍ର ଜ୍ଞାତି ଗୃହରେ ଭିକ୍ଷା ଗ୍ରହଣପୂର୍ବକ ଯଥାବିଧି ମାତୃସେବାରେ ନିଯୁକ୍ତହେଲେ ଏବଂ ଅଳ୍ପସମୟ ପରେ ତନ୍ମୟ ହୋଇ ନିଜ ଇଷ୍ଟଦେବତା ଶଙ୍କରଙ୍କ ଉଦ୍ଦେଶ୍ୟରେ ସୁଲଳିତ ଛନ୍ଦରେ ଗୋଟିଏ ସ୍ତବ ଗାନ କରିବାକୁ ଲାଗିଲେ । କିଛିକ୍ଷଣ ପରେ ବିଶିଷ୍ଟା ଦେବୀଙ୍କ

ସମ୍ମୁଖରେ ଭଗବାନ ପଶୁପତି ଶିବ ଆବିର୍ଭୂତ ହେଲେ । ଉଭୟେ ଶିବଙ୍କୁ ପ୍ରଣାମ ଓ ମାନସିକ ପୂଜା କରିବା ପରେ ଶିବ ଆଶୀର୍ବାଦ କରି ଅନ୍ତର୍ଦ୍ଧାନ ହୋଇଗଲେ । ବିଶିଷ୍ଟାଦେବୀଙ୍କ ଇଷ୍ଟଦେବତା ଶ୍ରୀକୃଷ୍ଣ । ଉପାସକମାନେ ସେମାନଙ୍କ ଅଭୀଷ୍ଟ ଦେବତାଙ୍କ ମୂର୍ତ୍ତି ଦର୍ଶନ କଲେ ଯେପରି ତୃପ୍ତିଲାଭ କରନ୍ତି, ଅନ୍ୟ ଦେବତାମୂର୍ତ୍ତିର ଦର୍ଶନରେ ସେପରି ତୃପ୍ତିଲାଭ କରିପାରନ୍ତି ନାହିଁ । ବିଶିଷ୍ଟାଦେବୀ ଶ୍ରୀକୃଷ୍ଣ ଦର୍ଶନାଭିଳାଷିଣୀ ହୋଇକହିଲେ, ''ବତ୍ସ ! ଆମର କୁଳଦେବତା ଶ୍ରୀକୃଷ୍ଣଙ୍କୁ ମୁଁ ନାରାୟଣମୂର୍ତ୍ତିରେ ଦର୍ଶନ କରିବାକୁ ଇଚ୍ଛା କରୁଅଛି । ଅନ୍ତିମ ସମୟରେ ମୁଁ ସେହି ମୂର୍ତ୍ତି ଦର୍ଶନ କରି ପ୍ରାଣତ୍ୟାଗ କରିବି ।'' ତତ୍ପରେ ଶଙ୍କର ଚତୁର୍ଭୁଜ ନାରାୟଣଙ୍କୁ ପ୍ରାର୍ଥନା କଲେ ଏବଂ ଶଙ୍କରଙ୍କର ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ନାରାୟଣ ଜନନୀଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ । ବିଶିଷ୍ଟା ଦେବୀ ନିଜର ଇଷ୍ଟମୂର୍ତ୍ତି ଦର୍ଶନ କରୁକରୁ ପ୍ରାଣ ତ୍ୟାଗ କଲେ । ମୁହୂର୍ତ୍ତକ ମଧ୍ୟରେ ବିଶିଷ୍ଟା ଦେବୀଙ୍କ ମୃତ୍ୟୁ ସମ୍ବାଦ ଗ୍ରାମ ମଧ୍ୟରେ ପ୍ରଚାରିତ ହୋଇଗଲା । ସମସ୍ତେ ଦେବୀଙ୍କ ଶେଷକୃତ୍ୟ ଦେଖିବାକୁ ଆସିଲେ । ସମସ୍ତଙ୍କ ମୁଖରେ ଦେବୀଙ୍କ ଗୁଣକୀର୍ତ୍ତନ ଶୁଣାଗଲା ।

ଏଥିପୂର୍ବରୁ ସମ୍ପତ୍ତି ଗ୍ରହଣକାରୀଙ୍କ ଜ୍ଞାତି ଗୃହରେ ଶଙ୍କର ଭିକ୍ଷାଗ୍ରହଣ ନକରି ଦରିଦ୍ର ଜ୍ଞାତିଗୃହରେ ଭିକ୍ଷାଗ୍ରହଣ (ଭୋଜନ) କରିଥିବାରୁ ସେହି ଜ୍ଞାତିଟି ମନରେ ଶଙ୍କରଙ୍କ ପ୍ରତି ବିଶେଷ କ୍ରୋଧ ହୋଇଥିଲା । ସେ ବିଶିଷ୍ଟାଦେବୀଙ୍କ ମୃତ୍ୟୁ ସମ୍ବାଦ ଶୁଣି ଶଙ୍କରଙ୍କ ସମ୍ମୁଖରେ ଉପସ୍ଥିତ ହେଲା । ସେ ଉପସ୍ଥିତ ହୋଇ ତାଙ୍କୁ କହିଲା, ''ବାବା ! ଆଉ କାହିଁକି ଶବ ନିକଟରେ ବସିଅଛ ? ତୁମେ ସନ୍ନ୍ୟାସୀ, ଅନ୍ତ୍ୟେଷ୍ଟିକ୍ରିୟାରେ ତୁମର ଅଧିକାର ନାହିଁ । ତୁମେ ଯାଅ, ଆମେ ଶବସତ୍କାରର ସମସ୍ତ ବ୍ୟବସ୍ଥା କରିବୁ ।'' ଆଚାର୍ଯ୍ୟ ଉତ୍ତର କଲେ, ''ତାହା ଅତି ଉତ୍ତମ କଥା; କିନ୍ତୁ ଜନନୀଙ୍କ ମୁଖାଗ୍ନି ମୋତେ ଦେବାକୁ ହେବ । କାରଣ ମୁଁ ଏଥିପାଇଁ ତାଙ୍କ ନିକଟରେ ପ୍ରତିଜ୍ଞାବଦ୍ଧ ।''

ଜ୍ଞାତିର ଧୂମାୟିତ କ୍ରୋଧାଗ୍ନି ପ୍ରଜ୍ବଳିତ ହୋଇଉଠିଲା । ସେ କ୍ରୋଧଜର୍ଜ୍ଜରିତ ହୋଇ କହିଲା, ''ଏବେ ଜଣାଗଲା, ସନ୍ନ୍ୟାସ ଗ୍ରହଣ କରି କଷ୍ଟ ହେବାରୁ ପୁଣି ଗୃହୀ ହେବାକୁ ଇଚ୍ଛା ହେଉଅଛି । ତେଣୁ ମାଆର ମୁଖାଗ୍ନି ଦେଇ ସମ୍ପତ୍ତି ଭୋଗ କରିବାପାଇଁ ଲୋଭ ଜାତ ହୋଇଅଛି । କିନ୍ତୁ ଜାଣିରଖ, ମୁଁ ବଞ୍ଚିଥାଉଥାଉ ସେପରି କାର୍ଯ୍ୟ କେବେହେଲେ କରାଇଦେବି ନାହିଁ । କଳିକାଳରେ ସନ୍ନ୍ୟାସ-

ଗ୍ରହଣ ନିଷିଦ୍ଧ; ତୁମେ ସେହି ସନ୍ନ୍ୟାସ ଗ୍ରହଣ କରି ବେଦମାର୍ଗଚ୍ୟୁତ ହୋଇଅଛ । ଆହୁରି ମଧ୍ୟ ତୁମେ କେରଳ ତ୍ୟାଗ କରି ଅନ୍ୟ ଦେଶକୁ ଯାଇ ମ୍ଳେଚ୍ଛତ୍ୱ ପ୍ରାପ୍ତ ହୋଇଅଛ । କମ୍ବୁରିଜାତୀୟ ବ୍ରାହ୍ମଣମାନେ କେରଳ ତ୍ୟାଗକଲେ ପତିତହୁଅନ୍ତି । ତୁମେ ଏହି ଚିରନ୍ତନ ଦେଶାଚାର ପ୍ରଥା ପରିତ୍ୟାଗ କରି ଜାତିଭ୍ରଷ୍ଟ ହୋଇଅଛ; ତେଣୁ ଆମେ ତୁମକୁ କେବେହେଲେ ସମ୍ପତ୍ତିର ଅଧିକାରୀ କରାଇଦେବୁ ନାହିଁ । ତୁମ ପରି କଦାଚାରୀ ସମ୍ପତ୍ତିର ଅଧିକାରୀ ହେଲେ ସମାଜ କଳୁଷିତ ହୋଇଯିବ । ଆମେ ତୁମକୁ ମୁଖାଗ୍ନି ଦେବାକୁ କେବେହେଲେ ଛାଡ଼ିଦେବୁ ନାହିଁ ।'' ଆଚାର୍ଯ୍ୟ ଏହା ଶୁଣି ବିନୀତ ଭାବରେ ହସ ହସ ବଦନରେ ଉତ୍ତର ଦେଲେ, ''ମୁଁ ସନ୍ନ୍ୟାସୀ, ମୋର ସମ୍ପତ୍ତି ଗ୍ରହଣରେ ଆଦୌ ଅଭିଳାଷ ନାହିଁ । ଜନନୀଙ୍କ ନିକଟରେ ପ୍ରତିଜ୍ଞାବଦ୍ଧ ହୋଇଥିବାରୁ ମୁଁ ଏ କାର୍ଯ୍ୟ କରିବାକୁ କୃତସଂକଳ୍ପ । ଆପଣ ନିଶ୍ଚିନ୍ତ ରହନ୍ତୁ, ମୁଁ କେବେହେଲେ ସମ୍ପତ୍ତି ଗ୍ରହଣ କରିବି ନାହିଁ । କିନ୍ତୁ ଜନନୀଙ୍କ ଅନ୍ତିମ ଇଚ୍ଛାନୁସାରେ ଏହି ଦରିଦ୍ର ଜ୍ଞାତିଟି ମୋ ସମ୍ପତ୍ତିର ଉତ୍ତରାଧିକାରୀ ହେବ । ଆପଣ ତ ସମ୍ପତ୍ତି ନେବା ଦିନରୁ ଜନନୀଙ୍କର କୌଣସି ସେବାଶୁଶ୍ରୂଷା କରି ନାହାନ୍ତି । ଏହି ଦରିଦ୍ର ଜ୍ଞାତିଟି ସମସ୍ତ ସେବା କରିଅଛି । ଆପଣଙ୍କୁ ମୋ ପାଇଁ ଆଉ କିଛି କରିବାକୁ ପଡ଼ିବ ନାହିଁ । ଏହି ଜ୍ଞାତି ସାହାଯ୍ୟରେ ମୁଁ ନିଜେ ଜନନୀଙ୍କ ଶେଷକୃତ୍ୟ ସମ୍ପାଦନ କରିବି ।''

ଏ କଥା ଶୁଣି ଜ୍ଞାତିଟି ଅତିଶୟ କ୍ରୋଧାନ୍ୱିତ ହୋଇ କହିଲା, ''ଆଚ୍ଛା, ତାହାହେଲେ ଦେଖିବି, ମୁଁ ବଞ୍ଚି ଥାଉଥାଉ କିଏ ତୋତେ ସାହାଯ୍ୟ କରିବ । କେବେହେଲେ ତୁ ସେ ସମ୍ପତ୍ତି ଅନ୍ୟ ଜ୍ଞାତିକୁ ଦେଇପାରିବୁ ନାହିଁ । ତୁ ଭ୍ରଷ୍ଟାର ପୁତ୍ର । ତୁ ପିତାଙ୍କ ବୃଦ୍ଧାବସ୍ଥାରେ ଜନ୍ମଗ୍ରହଣ କରିଛୁ । ତୁ ମୁଖାଗ୍ନି ଦେଲେ ମଧ୍ୟ ସମ୍ପତ୍ତି ପାଇପାରିବୁ ନାହିଁ । ମୁଁ ବିଚାରାଳୟରେ ତୋତେ ଭ୍ରଷ୍ଟାର ସନ୍ତାନ ବୋଲି ପ୍ରମାଣ କରାଇବି । ଯେ ତୋତେ ସାହାଯ୍ୟ କରିବ, ସେ ଜାତିଭ୍ରଷ୍ଟ ହେବ । ଏହା ଦୃଢ଼ ନିଶ୍ଚୟ ବୋଲି ଜାଣିରଖ ।''

ଜ୍ଞାତିର ଏପରି ଦାରୁଣ ଦୁର୍ବାକ୍ୟ ଶ୍ରବଣ କରି ଶଙ୍କରଙ୍କର ଆପାଦମସ୍ତକ କ୍ରୋଧରେ ପ୍ରଜ୍ୱଳିତ ହୋଇଗଲା । କିନ୍ତୁ ସେ କ୍ରୋଧ ସମ୍ବରଣ କରି କିଛିକ୍ଷଣ ସ୍ତମ୍ଭିତ ହୋଇଗଲେ । ସେ କ'ଣ କରିବେ, କିଛି ସ୍ଥିର କରିପାରିଲେ ନାହିଁ । ଆଚାର୍ଯ୍ୟ ତାଙ୍କ ଜୀବଦ୍ଦଶାରେ ଏପରି ଦୁର୍ବାକ୍ୟ ଅନ୍ୟ କାହାରିଠାରୁ ଶୁଣି ନ

ଥିଲେ । ଏହାକୁ ନିଜର ପ୍ରାରବ୍ଧ ବୋଲି ମନେ କରି ସେ ଉଦାସୀନ ଭାବ ଧାରଣ କଲେ । ଯେଉଁମାନେ ବିଶିଷ୍ଟା ଦେବୀଙ୍କର ଶେଷକୃତ୍ୟ ଦର୍ଶନ କରିବାକୁ ଆସିଥିଲେ, ସେମାନେ ଜ୍ଞାତିଟିର ଏପରି ପ୍ରଚଣ୍ଡ ଭାବ ଲକ୍ଷ୍ୟ କରି କ୍ରମେ ସେ ସ୍ଥାନ ତ୍ୟାଗ କଲେ । ଦରିଦ୍ର ଜ୍ଞାତିଟି ମଧ ଅପମାନ ଭୟରେ ସେ ସ୍ଥାନ ତ୍ୟାଗକରି ପଳାୟନ କଲା । ଶଙ୍କର ଗ୍ରାମର ବୃଦ୍ଧା ପରିଚାରିକାଦ୍ୱାରା ଗ୍ରାମର ଅପରାପର ବ୍ୟକ୍ତିମାନଙ୍କୁ ଆହ୍ୱାନକଲେ; କିନ୍ତୁ ଜ୍ଞାତିର ଭୟରେ କେହି ଆଚାର୍ଯ୍ୟଙ୍କୁ ସାହାଯ୍ୟ କରିବାକୁ ଉଦ୍ୟତ ହେଲେ ନାହିଁ ।

ଏସବୁ ଦେଖି ଶଙ୍କରଙ୍କ ମନରେ ନାନା ପ୍ରକାର ଦ୍ୱନ୍ଦ୍ୱ-ଚିନ୍ତା ଉଦୟ ହେଲା । ସେ ଶେଷରେ ନିଜ ହାତରେ ଜ୍ଞାତିକୁ ଶାସନ କରିବାକୁ ସ୍ଥିର କଲେ । ସେ ଭାବିଲେ, ମୋତେ ପୁତ୍ର ଭାବରେ ମାତାଙ୍କ କର୍ତ୍ତବ୍ୟ କାର୍ଯ୍ୟ ଯେତେବେଳେ କରିବାକୁ ପଡୁଛି, ସେତେବେଳେ ଏହି ଦୁଷ୍ଟମାନେ ମୋରି ସମକ୍ଷରେ ମୋର ସ୍ୱର୍ଗତା ଜନନୀଙ୍କର ନିଷ୍କଳଙ୍କ ଚରିତ୍ରରେ ନାରୀଜାତିର ପ୍ରଣାନ୍ତକର କଳଙ୍କ ଆରୋପ କରିଯିବେ, ଆଉ ମୁଁ ଉଦାସୀନ ହୋଇ ରହିବି, ଏହା କଦାପି ସମ୍ଭବ ହେବ ନାହିଁ । ମୁଁ ଯଦି ଜନନୀଙ୍କର ଏହି ବୃଥା କଳଙ୍କର ପ୍ରତିକାର ନ କରେ, ତାହାହେଲେ ଭବିଷ୍ୟତରେ ସମସ୍ତେ ମୋ ଜନନୀଙ୍କୁ ଅସତୀ ବୋଲି ଜ୍ଞାନ କରିବେ । ଏହିପରି ନାନା ପ୍ରକାର ଭାବି ଶଙ୍କର ମହାରୁଦ୍ରମୂର୍ତ୍ତି ଧାରଣପୂର୍ବକ ଜ୍ଞାତିକୁ ସମ୍ବୋଧନ କରି କହିଲେ, "ଆପଣ ଜଣେ ମହାଦୁଷ୍ଟ ବ୍ୟକ୍ତି, ଯେତେ ଦିନଯାଏ ଆପଣଙ୍କର ସମ୍ପତ୍ତି ପାଇବାର ଆଶା ଥିଲା, ସେତେଦିନ ଯାଏ ଆପଣ ମୋ ଜନନୀଙ୍କ ଚରିତ୍ର ପ୍ରତି କୌଣସି ଦୋଷାରୋପ କରିନାହାନ୍ତି । ଯେତେବେଳେ ମୁଁ ପ୍ରକାଶ କଲି ଯେ ମୁଁ ମୁଖାଗ୍ନି ଦେବି ଓ ଅପର ବ୍ୟକ୍ତିକୁ ସମ୍ପତ୍ତି ଦାନ କରିବି, ଏ କଥା ନ ଶୁଣିଥିବା ପର୍ଯ୍ୟନ୍ତ ଆପଣ ଅସ୍ପୃଶ୍ୟା କଳଙ୍କିନୀର ଶବସତ୍କାର କରିବା ପାଇଁ ଉଦ୍ୟତ ଥିଲେ; କିନ୍ତୁ ଯେତେବେଳେ ସମ୍ପତ୍ତିର ଆଶା ନାହିଁ ବୋଲି ଜାଣିପାରିଲେ, ସଙ୍ଗେ ସଙ୍ଗେ ମୋ ଜନନୀ ଜାତିଭ୍ରଷ୍ଟା କଳଙ୍କିନୀ ହୋଇଗଲେ । ଆପଣଙ୍କ କପଟପୂର୍ଣ୍ଣ ଭ୍ରାନ୍ତ ବ୍ୟବହାରରେ ଭୁଲି ମୁଁ ମୋର ସମୁଦାୟ ସମ୍ପତ୍ତି ଆପଣଙ୍କ ଜିମାଦେଇ ଯାଇଥିଲି ଓ ମୋର ଆଶା ଥିଲା ଯେ ଆପଣ ମୋ ଜନନୀଙ୍କ ସେବାଶୁଶ୍ରୂଷା କରିବେ; କିନ୍ତୁ ଆପଣ ତାହା କଲେନାହିଁ । ଅଧିକନ୍ତୁ ମୁଁ ବେଦମାର୍ଗଭ୍ରଷ୍ଟ ଓ ମୋ ଜନନୀ କଳଙ୍କିନୀ ବୋଲି ଘୋଷଣା କରିବାକୁ ଟିକିଏ

ହେଲେ ଦ୍ୱିଧାବୋଧ କଲେ ନାହିଁ । ଦେଖୁଛି, ଜଗତରେ ଆପଣଙ୍କଦ୍ୱାରା ଅସାଧ୍ୟ ହୋଇ କିଛି ହେଲେ କୁକର୍ମ ନାହିଁ । ଆପଣ ଯେତେ ଘର ବ୍ରାହ୍ମଣ ଏ କୁକର୍ମରେ ଯୋଗ ଦେଇଛନ୍ତି, ସେମାନେ ଆଜିଠାରୁ ସମସ୍ତେ ବେଦହୀନ ହୁଅନ୍ତୁ; କୌଣସି ସନ୍ନ୍ୟାସୀ ଆପଣମାନଙ୍କର ଘରେ ଭିକ୍ଷା ଗ୍ରହଣ ନ କରନ୍ତୁ । ଆଉ ମୁଁ ଯେପରି ମୋ ଜନନୀଙ୍କୁ ଏହି ଗୃହସଂଲଗ୍ନ ଉଦ୍ୟାନମଧ୍ୟରେ ସତ୍କାର କରୁଛି, ଆପଣମାନେ ଏଣିକି ସେହିପରି ଗୃହ-ଉଦ୍ୟାନ ମଧ୍ୟରେ ଶବ ସତ୍କାର କରିବେ ।''

ଏହା କହି ଶଙ୍କର ବୃଦ୍ଧା ପରିଚାରିକା ସାହାଯ୍ୟରେ ସନ୍ନିକଟସ୍ଥିତ ଗୃହ-ଉଦ୍ୟାନମଧ୍ୟରେ ଜନନୀଙ୍କ ଶେଷକୃତ୍ୟ ସମାପନକଲେ । ଦୁର୍ବୃତ୍ତଜ୍ଞାତିଭୟରେ କେହି ତାଙ୍କୁ କୌଣସି ପ୍ରକାରେ ସାହାଯ୍ୟ ପ୍ରଦାନ କଲେ ନାହିଁ । ଜ୍ଞାତିଟି ମଧ୍ୟ ବଳପୂର୍ବକ ଗୃହ ଅଧିକାର କରିବ ବୋଲି ପ୍ରସ୍ତୁତ ହୋଇ ରହିଲା ।



# ପ୍ରତିବେଶୀମାନଙ୍କୁ ଶିକ୍ଷା ଓ ଆଚାର୍ଯ୍ୟଙ୍କ ସମାଜ-ସଂସ୍କାର

ରାଜା ରାଜଶେଖର ଶଙ୍କରଙ୍କ ପ୍ରତି ଜ୍ଞାତିମାନଙ୍କ ଦୁର୍ବ୍ୟବହାରର ବିଷୟ ଶ୍ରବଣ କରି କ୍ରୋଧରେ ଅଧୀର ହୋଇପଡ଼ିଲେ ଏବଂ ତତ୍‌କ୍ଷଣାତ୍ ଆଚାର୍ଯ୍ୟଙ୍କ ସ୍ୱାଚ୍ଛନ୍ଦ୍ୟତାନିମିତ୍ତ ରାଜପୁରୁଷ ପ୍ରେରଣ କଲେ । ପରଦିନ ସ୍ୱୟଂ ଆସି ଉପସ୍ଥିତ ହେବେ ବୋଲି ଆଚାର୍ଯ୍ୟଙ୍କ ନିକଟକୁ ସମ୍ବାଦ ମଧ ଦେଲେ । ପରଦିନ ପ୍ରତ୍ୟୁଷରୁ ରାଜା ସଦଳବଳେ ଶଙ୍କରଙ୍କ ସମୀପରେ ଉପସ୍ଥିତ ହେଲେ । ଦେଖିଲେ, ଦ୍ୱିତୀୟ ଶୁକଦେବ ଯେପରି ଧରାଧାମରେ ଅବତୀର୍ଣ୍ଣ ହୋଇଛନ୍ତ ! ଉଭୟେ ଉଭୟଙ୍କୁ ଯଥାବିହିତ ଅଭ୍ୟର୍ଥନା କରି ପରସ୍ପର କୁଶଳାଦି ପ୍ରଶ୍ନକଲେ । ରାଜାଙ୍କ ପ୍ରଶ୍ନରେ ଶଙ୍କର ଜ୍ଞାତିମାନଙ୍କର ସମୁଦାୟ ବ୍ୟବହାର ନିବେଦନ କଲେ ଏବଂ ସେ ସମ୍ବନ୍ଧରେ ଯାହା କର୍ତ୍ତବ୍ୟ କରନ୍ତୁ କହି ନୀରବ ହେଲେ । ଶଙ୍କରଙ୍କ ବାକ୍ୟ ଶୁଣି ଏ ଘଟଣାର ବିଚାରଭାର ସ୍ୱୟଂ ରାଜା ଗ୍ରହଣ କଲେ ଓ ମନ୍ତ୍ରୀଙ୍କ ହାତରେ ଜ୍ଞାତିମାନଙ୍କୁ ଯଥାସମୟରେ ଉପସ୍ଥିତ ହେବାକୁ ନିର୍ଦ୍ଦେଶ ଦେଲେ । ଦୁର୍ବୃତ୍ତ ଜ୍ଞାତିଟି ସମ୍ବାଦ ପାଇଁ ସାକ୍ଷ୍ୟ ସଂଗ୍ରହରେ ପ୍ରବୃତ୍ତ ହେଲା ଏବଂ ମନେମନେ ଭୟଭୀତ ହୋଇପଡ଼ିଲା । ଯଥାସମୟରେ ରାଜା ବିଚାର ଆରମ୍ଭ କଲେ । ଗ୍ରାମସ୍ଥ ପ୍ରବୀଣ ବ୍ରାହ୍ମଣ ପଣ୍ଡିତ ଏବଂ ବୃଦ୍ଧମାନଙ୍କୁ ଆମନ୍ତ୍ରଣ କରାଗଲା । ଜ୍ଞାତି ଶତ୍ରୁଟିକୁ ନିଜ ପକ୍ଷ ସମର୍ଥନ କରିବାନିମିତ୍ତ ସମସ୍ତ ପ୍ରକାର ସୁବିଧା ଦିଆଗଲା । ଶଙ୍କରଙ୍କପକ୍ଷରେ ସେହି ବୃଦ୍ଧା ପରିଚାରିକା, ଦରିଦ୍ର ଜ୍ଞାତି ଓ କେତେଜଣ ବୃଦ୍ଧ ପଣ୍ଡିତଙ୍କ ବ୍ୟତୀତ ଆଉ କେହି ସାକ୍ଷ୍ୟ ଦେଲେ ନାହିଁ । ସମସ୍ତ ଦିନ ଧରି ବିଚାର ଚାଲିଲା । ଅପବାଦ ମିଥ୍ୟା ବୋଲି ପ୍ରମାଣିତ ହେଲା । ତତ୍ପରେ ଦ୍ୱିତୀୟ ଅଭିଯୋଗର ବିଚାର ହେଲା ଯେ ମୁଖାଗ୍ନି ଦେବାରେ ଶଙ୍କରଙ୍କର ଅଧିକାର ଅଛି କି ନାହିଁ ? କେରଳ ତ୍ୟାଗ କରିଥିବାରୁ ସେ ଜାତିଭ୍ରଷ୍ଟ ହୋଇଛନ୍ତି କି ନାହିଁ ଏବଂ କଳିକାଳରେ ସନ୍ନ୍ୟାସର ଅଧିକାର ଅଛି କି ନାହିଁ ? ସୁତରାଂ ସମ୍ପତ୍ତି କାହାର ପ୍ରାପ୍ୟ ?

ଏଥର ଶାସ୍ତ୍ରୀୟ ବିଷୟର ବିଚାର ଆରମ୍ଭ ହେଲା । ରାଜଶେଖର ଏ ବିଷୟରେ ଆଚାର୍ଯ୍ୟଙ୍କ ଯୁକ୍ତି ଶ୍ରବଣ କରିବାକୁ ଇଚ୍ଛା ପ୍ରକାଶକଲେ । ଆଚାର୍ଯ୍ୟ

ଶାସ୍ତ୍ରୀୟ ଯୁକ୍ତିଦ୍ୱାରା ନିଜ ପକ୍ଷ ସମର୍ଥନ କଲେ ଏବଂ ଅପର ପକ୍ଷର ଯୁକ୍ତିକୁ ଖଣ୍ଡନ କଲେ । ବିପକ୍ଷ ଦଳରୁ କେତେ ଜଣ ପଣ୍ଡିତ ଶଙ୍କରଙ୍କ ସହିତ ଯୁକ୍ତିହୀନ ପ୍ରତିବାଦକରି ନିରସ୍ତ ହେଲେ । ଶେଷରେ ରାଜଶେଖର କହିଲେ, ''ମୋ ବିଚାରରେ ଏମାନଙ୍କୁ ନିର୍ବାସନ ଦଣ୍ଡଦେବା ଉଚିତ ।'' ଆଚାର୍ଯଙ୍କୁ ଲକ୍ଷ୍ୟ କରି କହିଲେ, ''ଆପଣଙ୍କର କୌଣସି ଆପତ୍ତି ନ ଥିଲେ ମୁଁ ଦୂରାଚାରୀମାନଙ୍କୁ ଉପରୋକ୍ତମତେ ନିର୍ବାସନ ଦଣ୍ଡପ୍ରଦାନ କରିବି ।'' ରାଜାଙ୍କ ଆଦେଶ ଶୁଣି ଜ୍ଞାତିମାନେ ବିଚଳିତ ହୋଇପଡ଼ିଲେ । ସେମାନେ ନିଜ ନିଜର ଦୋଷ ସ୍ୱୀକାର କରି ରାଜାଙ୍କ ନିକଟରେ କ୍ଷମାଭିକ୍ଷା କଲେ । ରାଜା କହିଲେ, ''ଆପଣମାନେ ଯାହାଙ୍କ ନିକଟରେ ଅପରାଧୀ, ତାଙ୍କ ନିକଟରେ କ୍ଷମାପ୍ରାର୍ଥନା କରନ୍ତୁ । ମୁଁ ଆପଣମାନଙ୍କୁ କୌଣସି ପ୍ରକାରେ ଦୟା ପ୍ରଦର୍ଶନ କରିବାକୁ ଅସମର୍ଥ । ଆଜିକାଲି ଦେଶରେ ଉପରୋକ୍ତ ପନ୍ଥା ଅନୁସରଣ କରି ଅନେକ ଲୋକଙ୍କର ସମ୍ପତ୍ତି ଅବୈଧଭାବରେ ଅପହରଣ କରୁଛନ୍ତି । ମୋ ବିବେଚନାରେ ଏ ଅପରାଧର କଠୋର ଶାସ୍ତି ହେବା ଆବଶ୍ୟକ ।

ଜ୍ଞାତିମାନେ ଆଚାର୍ଯ୍ୟଙ୍କ ପଦଯୁଗଳ ଧାରଣ କରି କ୍ରନ୍ଦନ କରିବାକୁ ଲାଗିଲେ । ଆଚାର୍ଯ୍ୟ ଶଙ୍କର କହିଲେ, ମୁଁ ତୁମମାନଙ୍କ ପ୍ରତି ଯେଉଁ ଶାସ୍ତି ବିଧାନ କରିବାର କଥା, ତାହା କରିସାରିଛି । ବର୍ତ୍ତମାନ ରାଜା ଯାହା ବିଚାର କରିବେ ।'' ପୂର୍ବରୁ ଆଚାର୍ଯ୍ୟ ଜ୍ଞାତିମାନଙ୍କୁ କହିଥିବା ସମସ୍ତ କଥା ଶୁଣି ରାଜା ତାଙ୍କ ବାକ୍ୟ ରକ୍ଷା କରି ଜ୍ଞାତିମାନଙ୍କ ପ୍ରତି ଦଣ୍ଡର ବ୍ୟବସ୍ଥା କଲେ । ରାଜା କହିଲେ, ''ବେଦଜ୍ଞାନରେ ଅଭିମାନ ଥିବା ହେତୁ ତୁମେମାନେ ବେଦହୀନ ହୁଅ । ଆଜିଠାରୁ କୌଣସି ସନ୍ନ୍ୟାସୀ ତୁମମାନଙ୍କ ଗୃହରେ ଭିକ୍ଷା ଗ୍ରହଣ କରିବେ ନାହିଁ ଏବଂ ନିଜ ଗୃହ ଉଦ୍ୟାନ ମଧ୍ୟରେ ତୁମେମାନେ ଏଣିକି ମୃତବ୍ୟକ୍ତିର ଶବ ସତ୍କାର କରିବ । କିନ୍ତୁ ଆଚାର୍ଯ୍ୟଙ୍କ ସମ୍ପତ୍ତି ଦରିଦ୍ର ଜ୍ଞାତିଟି ପ୍ରାପ୍ତ ହେବ ।'' ଏ କଥାରେ ଜ୍ଞାତିମାନେ ଉପସ୍ଥିତ ବିପଦରୁ ରକ୍ଷା ପାଇଲେ ସତ, ମାତ୍ର ବେଦହୀନ ହେବାଠାରୁ ବଳି ଗୁରୁତର ଶାସ୍ତି ଆଉ କିଛି ନାହିଁ ମନେକରି ପୁଣି ଶଙ୍କରଙ୍କ ଚରଣତଳେ ପତିତ ହୋଇ କ୍ଷମାଭିକ୍ଷା କରିବାକୁ ଲାଗିଲେ । ଶଙ୍କର ନିଜେ ରାଜାଙ୍କୁ ଅନୁରୋଧ କରିବାରୁ ଜ୍ଞାତିମାନେ ବେଦପାଠ ନିମିତ୍ତ ଅନୁମତି ପ୍ରାପ୍ତ ହେଲେ । ଦର୍ଶନାର୍ଥୀମାନେ ଉଭୟଙ୍କର ଜୟଧ୍ୱନି କରି ବିଶିଷ୍ଟା ଦେବୀଙ୍କୁ ଧନ୍ୟ ଧନ୍ୟ କରିବାକୁ ଲାଗିଲେ । ତଦନନ୍ତର ରାଜା ସେହି ରାତ୍ରିରେ ଅମାତ୍ୟମାନଙ୍କସହ ସ୍ୱସ୍ଥାନକୁ ଗମନ କଲେ ଓ

ଗ୍ରାମସ୍ଥ ବ୍ୟକ୍ତିମାନେ ପରମ ଶାନ୍ତିରେ କାଳାତିପାତ କରିବାକୁ ଲାଗିଲେ ।

ଏହା ପରେ ରାଜାଙ୍କ ମନରେ ଦେଶର ନୈତିକ ଅବନତି ନିମିତ୍ତ ବିଷମ ଚିନ୍ତା ଉପସ୍ଥିତ ହେଲା । ସେ ସମାଜ ସଂସ୍କାର କରିବାକୁ ଅନେକ ଦିନୁ ଇଚ୍ଛା କରୁଥିଲେ ସୁଦ୍ଧା କି ଉପାୟରେ, କାହା ସାହାଯ୍ୟରେ ଓ କେଉଁପ୍ରଣାଳୀରେ ଏହା କରିବାକୁ ହେବ, ସ୍ଥିର କରିପାରୁ ନ ଥିଲେ । ଯେଉଁ ବ୍ରାହ୍ମଣମାନେ ସଦାଚାରର ଆଦର୍ଶ, ଯେଉଁମାନଙ୍କୁ ଦର୍ଶନକରି ଅପରାପର ଜନସାଧାରଣ ସ୍ୱଧର୍ମନିଷ୍ଠ ହେବେ, ସେହି ବ୍ରାହ୍ମଣମାନେ ହିଁ ତ ଅଧଃପତିତ । ପୁଣି ଏହି ବ୍ରାହ୍ମଣ ସମାଜର ସଂସ୍କାର ବ୍ରାହ୍ମଣ ବ୍ୟତୀତ ଅନ୍ୟ କେହି କଲେ ତ ସେମାନେ ତାହା ସ୍ୱୀକାର କରିବେ ନାହିଁ । ରାଜଶକ୍ତିଦ୍ୱାରା ଦୁଷ୍ଟଦମନ ଓ ଶିଷ୍ଟପାଳନ ହୁଏ; କିନ୍ତୁ ସମାଜସଂସ୍କାର ଓ ଧର୍ମସଂସ୍କାର ରାଜଶକ୍ତି ଦ୍ୱାରା ସମ୍ଭବପର ହୁଏନାହିଁ । ସେଥିନିମିତ୍ତ ମହାପୁରୁଷ ଆବଶ୍ୟକ ଏବଂ ସର୍ବମାନ୍ୟ ଶକ୍ତିଶାଳୀ ମହାତ୍ମାଙ୍କର ସାହାଯ୍ୟ ପ୍ରୟୋଜନ । ଶଙ୍କରଙ୍କୁ ଦେଖି ରାଜାଙ୍କର ସମାଜ ସଂସ୍କାର କରିବା ବାସନା ବଳବତୀ ହେଲା । ଏ କାର୍ଯ୍ୟ କରିବାକୁ ସେ ଆଚାର୍ଯ୍ୟଙ୍କୁ ଅନୁରୋଧ କଲେ । ରାଜାଙ୍କ ଅନୁରୋଧ ଶ୍ରବଣ କରି ଶଙ୍କର କହିଲେ, ‘‘ମହାରାଜ ! ଆପଣଙ୍କର ସଂକଳ୍ପ ସାଧୁ । ମୋ ଦ୍ୱାରା ଯାହା ହୋଇପାରିବ ମୁଁ ତାହା କରିବାରେ କଦାପି ତ୍ରୁଟି କରିବି ନାହିଁ । ବର୍ତ୍ତମାନ ଆପଣ କ’ଣ କରିବାରୁ ଇଚ୍ଛା କରୁଛନ୍ତି କହନ୍ତୁ ।’’ ରାଜଶେଖର ନାନା କଥା ଭାବି ଶେଷରେ କହିଲେ, ‘‘ଭଗବନ୍ ! ଆମର ପ୍ରଥମେ ଗୋଟିଏ ସ୍ମୃତିସମନ୍ୱୟ ଗ୍ରନ୍ଥ ଆବଶ୍ୟକ । ଦେଶର ପଣ୍ଡିତମାନେ ନାନ ମତର ଦ୍ୱାହି ଦେଇ ନାନା ପ୍ରକାର ବ୍ୟବସ୍ଥା ଦେଉଅଛନ୍ତି । ତାହା ନାନା କ୍ଷେତ୍ରରେ ପରସ୍ପରବିରୋଧୀ ହୋଇ ଅଶାସ୍ତ୍ରୀୟ ମତବାଦରେ ପରିଣତ ହୋଇଯାଉଛି । ପ୍ରଥମେ ଗୋଟିଏ ସର୍ବମାନ୍ୟ ବ୍ୟବସ୍ଥା ନିରୂପଣ କରିବା ଉଚିତ । ତାହାହେଲେ ତଦନୁଯାୟୀ ସମସ୍ତେ ଚଳିପାରିବେ । ଆପଣ ପ୍ରଥମରୁ ସେତିକି କରି ଦିଅନ୍ତୁ । ଏହା ପରେ ଯାହା କର୍ତ୍ତବ୍ୟ, ସେସବୁ ଆମେ କରିପାରିବୁ ।’’

ସେଥିରେ ଆଚାର୍ଯ୍ୟ ସମ୍ମତ ହେଲେ । ରାଜାଙ୍କ ଆଦେଶକ୍ରମେ ଶଙ୍କରଙ୍କ ନିକଟରେ ଲେଖକ ଉପସ୍ଥିତ ହେଲେ । ଯାବତୀୟ ଶାସ୍ତ୍ର ଶଙ୍କରଙ୍କ କଣ୍ଠସ୍ଥ; ତେଣୁ ଅତି ଅଳ୍ପସମୟ ମଧ୍ୟରେ ସ୍ମୃତିସମନ୍ୱୟରେ ଗ୍ରନ୍ଥ ରଚିତ ହୋଇଗଲା । ରାଜା ଏ ଗ୍ରନ୍ଥର ନାମ ରଖିଲେ ‘ଶଙ୍କର-ସ୍ମୃତି’ । ଅନନ୍ତର ଆଚାର୍ଯ୍ୟଙ୍କସହିତ ପରାମର୍ଶକରି

ସମାଜର ପବିତ୍ରତା ରକ୍ଷା କରିବାନିମିତ୍ତ ରାଜା ଚଉଷଠି ପ୍ରକାର ବିଶେଷ ଆଚାର ନିର୍ଦ୍ଦେଶ କରି ଗ୍ରନ୍ଥର ନାମ ରଖିଲେ 'ଚତୁଃଷଷ୍ଟୀ ଅନାଚାରଂ' । ଏହି ସମୟରେ ଦୁଶ୍ଚରିତ୍ର ବ୍ୟକ୍ତିମାନେ ସମୟ ଓ ସୁଯୋଗ ପାଇଲାକ୍ଷଣି କୁଳଲଳନାଗଣଙ୍କର ଅପବାଦ ରଚନା କରି ନାବାଳକ ଉତ୍ତରାଧିକାରୀମାନଙ୍କୁ ବିଷୟାଧିକାରରୁ ବଞ୍ଚିତ କରୁଥିଲେ । ତେଣୁ ରାଜା ନାରୀଜାତିର ଏତାଦୃଶ ଅପବାଦ ନିର୍ଣ୍ଣୟନିମିତ୍ତ କେତେଗୁଡ଼ିଏ ବିଶେଷ ବିଚାରପଦ୍ଧତି ପ୍ରଣୟନ କଲେ ।

ଶଙ୍କର ଓ ରାଜାଙ୍କର ଏହି ସଂସ୍କାରକାର୍ଯ୍ୟରେ ଦେଶୀୟ ବ୍ରାହ୍ମଣ ପଣ୍ଡିତମାନେ ଆପତ୍ତି କଲେ । ବିଶେଷତଃ ଖଣ୍ଡିଏ ସିଦ୍ଧାନ୍ତଗ୍ରନ୍ଥ ମାନି ଚଳିଲେ ପଣ୍ଡିତମାନଙ୍କର ସ୍ୱେଚ୍ଛାଚାର ଓ ନିଜତ୍ୱ ରହିବ ନାହିଁ । ସେମାନେ ଦଳବଦ୍ଧ ହୋଇ ରାଜାଙ୍କୁ କହିଲେ, ''ମହାରାଜ୍ ! ଆପଣ ସନ୍ନ୍ୟାସୀ ଶଙ୍କରଙ୍କ ବିଦ୍‌ବତ୍ତାରେ ତୁଷ୍ଟ ହୋଇ ଯେଉଁ ସମାଜ ସଂସ୍କାର କରିବାକୁ ଉଦ୍ୟତ ହେଉଛନ୍ତି, ଆମେମାନେ ତାହା ଗ୍ରହଣ କରିପାରିବୁ ନାହିଁ । ଆମେ ଯେପର୍ଯ୍ୟନ୍ତ ନ ବୁଝିଛୁ ଯେ, ଏହା ନିର୍ଦ୍ଦୋଷ ଓ ଶାସ୍ତ୍ରସମ୍ମତ, ସେ ପର୍ଯ୍ୟନ୍ତ ଆମେ ତାହା ଗ୍ରହଣ କରିପାରିବୁ ନାହିଁ ।'' ରାଜା କହିଲେ, ''ହଁ, ଆପଣମାନେ ବିଚାର କରନ୍ତୁ । ଦେଖନ୍ତୁ, ଏହା ଉତ୍ତମ କି ନୁହେଁ । ବିଚାରରେ ସିଦ୍ଧାନ୍ତ ହେଲେ ଆପଣମାନେ ଗ୍ରହଣ କରିବେ ।'' ନାନା ସ୍ଥାନରୁ ବହୁ ପଣ୍ଡିତ ବିଚାରପ୍ରାର୍ଥୀ ହୋଇ ଆସିଲେ । କିନ୍ତୁ ଜଣ ଜଣ କରି ସମସ୍ତେ ପରାଜିତ ହୋଇ ପ୍ରସ୍ଥାନ କଲେ । ତଥାପି ସେମାନେ ଆଚାର୍ଯ୍ୟଙ୍କ ସିଦ୍ଧାନ୍ତ ଗ୍ରହଣ କରିବାକୁ ଅନିଚ୍ଛୁକ ହେଲେ । ସେମାନେ ଶଙ୍କରଙ୍କ ସମ୍ମୁଖରେ କିଛି କହିପାରନ୍ତି ନହିଁ; କିନ୍ତୁ ପରୋକ୍ଷରେ ଯଥେଷ୍ଟ ଆପତ୍ତି କରନ୍ତି । ମହାରାଜ୍ ପଣ୍ଡିତମାନଙ୍କୁ ନାନା ପ୍ରକାର ବୁଝାଇ ଫଳ ନ ହେବାରୁ ସାମାନ୍ୟ ଦଣ୍ଡର ବ୍ୟବସ୍ଥା କଲେ । ଏଥିରେ କେତେକ ପଣ୍ଡିତ ଏକତ୍ର ହୋଇ ଶଙ୍କରଙ୍କୁ କୌଶଳକ୍ରମେ ଅପଦସ୍ଥ କରିବାକୁ ମନସ୍ଥ କଲେ । ଏ ବିଷୟ ପରସ୍ପର ମନମଧ୍ୟରେ ବିଚାର କରି ଦୂରବର୍ତ୍ତୀ ସ୍ଥାନରେ ଏକ ସମୟରେ ଦୁଇଟି ବିଚାରସଭା ଆହ୍ୱାନ କରିବାକୁ ମନସ୍ଥ କଲେ । ଯେଉଁ ସଭାରେ ସେ ଉପସ୍ଥିତ ହୋଇ ନ ପାରିବେ, ସେହି ସଭାରୁ ଶଙ୍କରଙ୍କର ପରାଜୟ ଘୋଷଣା କରାଯିବାର ସ୍ଥିର ହେଲା । ସେମାନେ ଭାବିଲେ ଯେ ଏପରି ଗଣ୍ଡଗୋଳ ସୃଷ୍ଟି ନ କଲେ ରାଜାଙ୍କୁ ନିରସ୍ତ କରିହେବ ନାହିଁ ।

ପରାମର୍ଶ କାର୍ଯ୍ୟରେ ପରିଣତ ହେଲା । କେତେ ଜଣ ପଣ୍ଡିତ ଦଳବଦ୍ଧ ହୋଇ କହିଲେ, ''ଆମେମାନେ ଶଙ୍କରଙ୍କ ସହିତ ବିଚାର ପ୍ରାର୍ଥନା କରୁଅଛୁ । ଶଙ୍କର ଯଦି ଆମ ପ୍ରଶ୍ନର ସିଦ୍ଧାନ୍ତ ଦେଇପାରିବେ, ତାହାହେଲେ ଆମେ ତାଙ୍କର ସିଦ୍ଧାନ୍ତ ଗ୍ରହଣ କରିବୁ ।'' ରାଜା ସେଥିରେ ସମ୍ମତି ପ୍ରକାଶ କଲେ । ଆଚାର୍ଯ୍ୟ ମଧ୍ୟ ଆଗ୍ରହରେ ବିଚାର ନିମିତ୍ତ ପ୍ରସ୍ତୁତ ଅଛନ୍ତି ବୋଲି ଉତ୍ତର ଦେଲେ । ଦିନ ଓ ସ୍ଥାନ ନିର୍ଦ୍ଦିଷ୍ଟ ହେଲା । ବହୁ ପଣ୍ଡିତଙ୍କର ସମାବେଶ ହେଲା । ଏଣେ ପ୍ରାୟ ପଚାଶ କ୍ରୋଶ ଦୂରରେ ମାଳବାରଠାରେ ଆଉ ଗୋଟିଏ ସ୍ଥାନରେ ସଭାର ଆୟୋଜନ କରି ଆଉ କେତେକ ପଣ୍ଡିତ ନିର୍ଦ୍ଦିଷ୍ଟ ଦିବସର ପୂର୍ବଦିନ ରାଜାଙ୍କୁ ଏବଂ ଆଚାର୍ଯ୍ୟଙ୍କୁ ସମ୍ବାଦ ଦେଲେ । ଏକା ଦିନକେ ଦୁଇଟି ସ୍ଥାନରେ ସଭା ହେବା କଥା ଶୁଣି ରାଜା ଆପତ୍ତି କଲେ । ଦୂରବର୍ତ୍ତୀ ସଭାର ପଣ୍ଡିତମାନେ ସମୟ ପରିବର୍ତ୍ତନ କରିବାକୁ ସ୍ୱୀକୃତ ହେଲେ ନାହିଁ । ରାଜା ନିରୂପାୟ ହୋଇ ଆଚାର୍ଯ୍ୟଙ୍କ ନିକଟରେ ସମସ୍ତ ଜ୍ଞାପନ କରି ଉପାୟ ନିର୍ଦ୍ଧାରଣ ପାଇଁ ଅନୁରୋଧ କଲେ । ପ୍ରଥମ ସଭାର ଦିନ ଘୁଞ୍ଚାଇ ଦେବାକୁ ପ୍ରସ୍ତାବ କଲେ ମଧ୍ୟ ସେଥିରେ ନାନା ଅସୁବିଧା । କାରଣ ବହୁ ପଣ୍ଡିତ ପୁଣି ଏହି ସଭାରେ ଉପସ୍ଥିତ ହୋଇପାରିବେ ନାହିଁ । ଶଙ୍କର ସେମାନଙ୍କର ସମସ୍ତ ଅଭିସନ୍ଧି ବୁଝିପାରି କହିଲେ, ''ମହାରାଜ୍ ! ଆପଣ ଚିନ୍ତିତ ହୁଅନ୍ତୁ ନାହିଁ । ବିଚାର କରିବା ଏମାନଙ୍କର ଉଦ୍ଦେଶ୍ୟ ନୁହେଁ, ଶକ୍ତିପରୀକ୍ଷା ହିଁ ଏମାନଙ୍କର ଉଦ୍ଦେଶ୍ୟ । ସାଧାରଣ ଲୋକେ ଶକ୍ତି ଦେଖି ଶ୍ରେଷ୍ଠତା ନିର୍ଣ୍ଣୟ କରନ୍ତି । ଯାହାହେଉ, ଆପଣ ନିଶ୍ଚିନ୍ତ ରହନ୍ତୁ । ମୁଁ ଉଭୟ ସଭାରେ ଉପସ୍ଥିତ ହୋଇ ସମସ୍ତ ଉତ୍ତର ପ୍ରଦାନ କରିବି ।'' ରାଜା ଦୂରବର୍ତ୍ତୀ ବ୍ରାହ୍ମଣମାନଙ୍କୁ ଆଚାର୍ଯ୍ୟଙ୍କ ସମ୍ମତି ଜ୍ଞାପନ କରାଇ ବିଦାୟ ଦେଲେ । ବ୍ରାହ୍ମଣମାନେ ବୁଝିଲେ, ଏଥର ଆମର ଉଦ୍ଦେଶ୍ୟ ସିଦ୍ଧ ହେଲା ।

ଯଥା ସମୟରେ ସଭାର ଅଧିବେଶନ ଆରମ୍ଭ ହେଲା । କ୍ରମେ କ୍ରମେ ସହସ୍ରାଧିକ ପଣ୍ଡିତ ସଭାରେ ଉପସ୍ଥିତ ହେଲେ । ଅନନ୍ତର ମହାରାଜା ଅଚାର୍ଯ୍ୟଙ୍କୁ ଘେନି ସଭାମଣ୍ଡପରେ ପ୍ରବେଶ କଲେ । ସମସ୍ତେ ଆଚାର୍ଯ୍ୟଙ୍କ ଅପୂର୍ବ ସୌମ୍ୟମୂର୍ତ୍ତି ଦର୍ଶନ କରି ବିସ୍ମିତ ଓ ବିଗତ-ମତ୍ସର ହେଲେ । ଆଗନ୍ତୁକମାନେ ଆଚାର୍ଯ୍ୟଙ୍କୁ ଯଥାବିଧି ଅଭ୍ୟର୍ଥନା କଲେ । ଅନନ୍ତର ମହାରାଜ ଦେଶର ଦୁରବସ୍ଥା ଓ ଦୂରାଚାରର କଥା କହି ସମାଜ ସଂସ୍କାରର ପ୍ରୟୋଜନୀୟତା ପ୍ରତିପନ୍ନ କରି ଗୋଟିଏ ସୁଦୀର୍ଘ

ଅଭିଭାଷଣ ପ୍ରଦାନ କଲେ । ମହାରାଜାଙ୍କ ଯୁକ୍ତିପୂର୍ଣ୍ଣ କଥା ଶୁଣି ଅନେକେ ବିଚାରର ପକ୍ଷପାତୀ ହେଲେ ଏବଂ ସମଗ୍ର ପଣ୍ଡିତମଣ୍ଡଳୀଙ୍କ ସମ୍ମତରେ ଜଣେ ପ୍ରତିନିଧି ନିର୍ବାଚନ କରି ସ୍ଥିର କଲେ ଯେ ଏହି ପ୍ରତିନିଧିଙ୍କ ଜୟ ବା ପରାଜୟ ସମସ୍ତଙ୍କ ଜୟ ବା ପରାଜୟ ବୋଲି ବିବେଚିତ ହେବ । ବିଚାର ଆରମ୍ଭ ହେଲା । କିଛିକ୍ଷଣ ପରେ ପଣ୍ଡିତମାନଙ୍କ ପ୍ରତିନିଧି ପରାଜିତ ହେଲେ । ଅବଶେଷରେ ପ୍ରତିନିଧି ବ୍ୟକ୍ତ କଲେ, ''ଦେଶାଚାର ପ୍ରତି ଲକ୍ଷ୍ୟ ରଖି ଯେ କୌଣସି ଶାସ୍ତ୍ରୀୟ ସିଦ୍ଧାନ୍ତ ଗ୍ରହଣ କରିବାକୁ ହେଲେ ଆଚାର୍ଯ୍ୟଙ୍କ ସିଦ୍ଧାନ୍ତ ଗ୍ରହଣ କଲେ କିଛି କ୍ଷତି ହେବ ନାହିଁ ।'' କିନ୍ତୁ ଏଥିରେ ମଧ୍ୟ ଅନେକେ ସନ୍ତୁଷ୍ଟ ହେଲେ ନାହିଁ । ସେମାନେ ପୃଥକ୍ ପୃଥକ୍ ଭାବରେ ବିଚାର କରି ପରାଜିତ ହେଲେ । ଅପର ସଭାରେ ଶଙ୍କର ଯୋଗବଳରେ ଉପସ୍ଥିତ ହୋଇ ସମସ୍ତଙ୍କର ସବୁ ପ୍ରକାର ପ୍ରଶ୍ନର ଉତ୍ତର ପ୍ରଦାନ କଲେ । ସେମାନେ ମଧ୍ୟ ଆଚାର୍ଯ୍ୟଙ୍କ ନିକଟରେ ପରାଭବ ସ୍ୱୀକାର କରିବାକୁ ବାଧ୍ୟ ହେଲେ । ଉଭୟ ସଭାର ସମ୍ବାଦ ଉଭୟପକ୍ଷ ଶୁଣି ସମସ୍ତେ ଆଚାର୍ଯ୍ୟଙ୍କ ଦୈବୀଶକ୍ତିର ପରିଚୟ ପାଇଲେ ଏବଂ ଆଚାର୍ଯ୍ୟଙ୍କ ମତ ଗ୍ରହଣ କରିବାକୁ କୃତସଂକଳ୍ପ ହେଲେ । ଯେଉଁମାନଙ୍କ ଅନ୍ତରରେ ଯେତେ ଅଧିକ ବିରୋଧଭାବ ଥିଲା, ସେମାନେ ତାଙ୍କର ତତୋଽଧିକ ଭକ୍ତ ହୋଇଉଠିଲେ । ରାଜାଙ୍କ ଉଦ୍ଦେଶ୍ୟ ସିଦ୍ଧ ହେଲା; ଆଚାର୍ଯ୍ୟଙ୍କ ଶିଷ୍ୟ ସଂଖ୍ୟା ବୃଦ୍ଧି ପାଇବାକୁ ଲାଗିଲା ।



# ପଦ୍ମପାଦଙ୍କ ପ୍ରତ୍ୟାବର୍ତ୍ତନ

କିଛି ଦିନ ପରେ ଆଚାର୍ଯ୍ୟଙ୍କ ଅନ୍ୟାନ୍ୟ ଶିଷ୍ୟମାନେ ପଦବ୍ରଜରେ ଆସି କେରଳରେ ଉପସ୍ଥିତ ହେଲେ । ରାଜା ରାଜଶେଖର ଓ କେରଳବାସୀ ଆଚାର୍ଯ୍ୟଙ୍କର ଶିଷ୍ୟମାନଙ୍କୁ ଦେଖି ଅତିଶୟ ଆନନ୍ଦିତ ହେଲେ । ସେମାନଙ୍କ ବିଦ୍‌ବତ୍ତା, ଶାନ୍ତଭାବ, ବୁଦ୍ଧି, ଆଚାର, ନିୟମ ପ୍ରଭୃତି ଦେଖି ଦେଶବାସୀ ଅତିଶୟ ମୁଗ୍ଧ ହୋଇପଡ଼ିଲେ । କୋଶଳ ଦେଶବାସୀ ଏଥିପୂର୍ବରୁ କୁମାରିଲ-ମତାବଲମ୍ବୀ ଥିଲେ; କିନ୍ତୁ ସେମାନେ ମଣ୍ଡନ ମିଶ୍ରଙ୍କୁ ଆଚାର୍ଯ୍ୟଙ୍କ ଶିଷ୍ୟତ୍ୱ ସ୍ୱୀକାର କରିଥିବା ଦେଖି ଶଙ୍କରଙ୍କର ମହତ୍ତ୍ୱ ସ୍ୱୀକାର କରିବାକୁ ଲାଗିଲେ ।

ବହୁଦିନପରେ ପଦ୍ମପାଦ ଫେରିବାରୁ ଆଚାର୍ଯ୍ୟ ଆନନ୍ଦରେ ପ୍ରଶ୍ନକଲେ, ‘‘ପଦ୍ମପାଦ ! ତୁମର ସବୁ କୁଶଳ ତ ? ପଦ୍ମପାଦ ଅବିରଳ ଧାରାରେ ଅଶ୍ରୁବିସର୍ଜନ କରି ନିଜର ଦୁରବସ୍ଥା ବିଷୟ ଆମୂଳଚୂଳ ବର୍ଣ୍ଣନା କଲେ । ଅନ୍ୟମାନେ ମଧ୍ୟ ପଦ୍ମପାଦଙ୍କ ଶିଷ୍ୟମାନଙ୍କଠାରୁ ସମୁଦାୟ ବୃତ୍ତାନ୍ତ ଶୁଣି ପଦ୍ମପାଦଙ୍କପାଇଁ ବିଶେଷ ଦୁଃଖ ଅନୁଭବ କଲେ ଓ ତାଙ୍କୁ ପ୍ରକୃତିସ୍ଥ କରାଇବାନିମିତ୍ତ ଗୁରୁଦେବଙ୍କ ନିକଟରେ ପ୍ରାର୍ଥନା କଲେ ।

ଆଚାର୍ଯ୍ୟ ଧୀର-ଗମ୍ଭୀର ସ୍ୱରରେ କହିଲେ, ‘‘ପଦ୍ମପାଦ ! ଅଧୀର ହୁଅ ନାହିଁ, ତୁମେ ଶୀଘ୍ର ତୁମର ପୂର୍ବସ୍ମୃତି ଲାଭ କରିପାରିବ । ଏହା ତୁମ ନିଜ କର୍ମର ଦୋଷ । ମୋହ ଓ ଉନ୍ମାଦରୋଗରେ ମଧ୍ୟ ବ୍ରହ୍ମଜ୍ଞାନ ନଷ୍ଟହୁଏ ନାହିଁ । ପଦ୍ମପାଦ କହିଲେ, ‘‘ଗୁରୁଦେବ’’ ! ମୋ ଭାଷ୍ୟଟି ନଷ୍ଟ ହେବା ଦେଖି ମୋତେ ମୃତ୍ୟୁତୁଲ୍ୟ କଷ୍ଟଦାୟକ ହୋଇଛି । ମୁଁ କ’ଣ ଆଉ ଲେଖିପାରିବି ?’ ଏହା କହି ପୁନରାୟ ବ୍ୟାକୁଳ ହେବାକୁ ଲାଗିଲେ ।

ଆଚାର୍ଯ୍ୟ ଶିଷ୍ୟକୁ ଶାନ୍ତ କରି କହିଲେ, ‘‘ପଦ୍ମପାଦ ! ତୁମ ରଚିତ ‘ବିଜୟ-ଡିଣ୍ଡିମ’ ନଷ୍ଟ ହେଲା ବୋଲି ଦୁଃଖରେ ଅଧୀର ହେବା ଅନୁଚିତ । ବ୍ରହ୍ମ ଭିନ୍ନ ସମସ୍ତ ନଶ୍ୱର । ତୁମ କୃତ ଟୀକା କ’ଣ ଚିରଦିନ ରହିବ ? ଗ୍ରନ୍ଥ ପ୍ରତି ତୁମର ଆସକ୍ତି ହିଁ ତୁମ ଦୁଃଖର କାରଣ; ତଥାପି ତୁମେ ଯଦି ଗ୍ରନ୍ଥ ଲାଭପାଇଁ ଏକାନ୍ତ ଇଚ୍ଛୁକ, ତେବେ ତୁମେ ମୋତେ ସେ ଗ୍ରନ୍ଥ ଯେତିକି ଶୁଣାଇଥିଲ, ମୋର

ତାହା ସମସ୍ତ ସ୍ମରଣ ଅଛି; ତୁମେ କହିଲେ ମୁଁ ସେହି ଚାରିସୂତ୍ରର ଭାଷ୍ୟଟୀକା ଅବିକଳ ଆବୃତ୍ତିକରିବି । ତାହା ତୁମେ କାହାଦ୍ୱାରା ଲେଖାଇ ନେଇପାରିବ । ମୁଁ ଆଶୀର୍ବାଦ କରୁଛି, ଏହି ଚାରି ସୂତ୍ରର ଭାଷ୍ୟଟୀକା ହିଁ ତୁମକୁ ଅମର କରିବ ।''

ଆଚାର୍ଯ୍ୟ ପଦ୍ମପାଦଙ୍କୁ ଆଶୀର୍ବାଦ କରିବା ସମୟରେ ପଦ୍ମପାଦଙ୍କର ନବଜୀବନ ସଞ୍ଚାର ହେଲା । ପଦ୍ମପାଦ ଆଚାର୍ଯ୍ୟଙ୍କ ଚରଣତଳେ ପତିତହୋଇ ଅବିରଳ ପ୍ରେମାଶ୍ରୁ ବିସର୍ଜନ କଲେ । ସମସ୍ତେ ତାଙ୍କ ଶୁଶ୍ରୂଷାରେ ବ୍ୟସ୍ତ ହୋଇପଡ଼ିଲେ । ସେ ଶୀଘ୍ର ଆରୋଗ୍ୟ ଲାଭ କରି ଆଚାର୍ଯ୍ୟଙ୍କ ଠାରୁ ନିଜ ଟୀକାର ଚାରିସୂତ୍ର ଲେଖିନେଲେ ।

ଟୀକାଲେଖା ପରଠାରୁ ପଦ୍ମପାଦଙ୍କ ମନୋଭାବ ପରିବର୍ତ୍ତିତ ହୋଇଗଲା ଏବଂ ଗ୍ରନ୍ଥରଚନାସ୍ପୃହା ତାଙ୍କର ବିଲୁପ୍ତ ହେବାକୁ ଲାଗିଲା । ସେ ଆଚାର୍ଯ୍ୟଙ୍କୁ କହିଲେ, ''ଭଗବନ୍ ! ଆଶୀର୍ବାଦ କରନ୍ତୁ, ମୁଁ ଯେପରି ଅପରାବିଦ୍ୟାବନ୍ଧନରେ ଆବଦ୍ଧ ନ ହୁଏ ।

କିଛି ଦିନ ପରେ କର୍ଣ୍ଣାଟ ଉଜ୍ଜୟିନୀର ରାଜା ସୁଧନ୍ୱା ଶୃଙ୍ଗେରୀଠାରେ ମଠାଦି ନିର୍ମାଣ ଶେଷ କରି କେରଳ ଦେଶକୁ ଆସି ଆଚାର୍ଯ୍ୟଙ୍କ ନିକଟରେ ଉପସ୍ଥିତ ହେଲେ । ସେ ଆଚାର୍ଯ୍ୟଙ୍କ ନିକଟରୁ ପଦ୍ମପାଦଙ୍କର ଦୁର୍ଦ୍ଦଶା ଶ୍ରବଣ କଲେ ଏବଂ ଦେଶର ଦୁରବସ୍ଥା ସ୍ମରଣ କରି ଭାବିଲେ, ଆଚାର୍ଯ୍ୟଙ୍କ ଦ୍ୱାରା ଧର୍ମର ସଂସ୍କାରସାଧନ କରିବା ସମୀଚୀନ । ଯେଉଁ ଦେଶରେ ଧର୍ମ ନାମରେ ଏପରି ଦୁଷ୍କର୍ମ ଅନୁଷ୍ଠିତ ହେଉଅଛି, ସେ ଦେଶରେ ଧର୍ମ ସଂସ୍କାର କରିବା ଭିନ୍ନ ଆଉ କ'ଣ କରାଯାଇପାରେ ! ସମସ୍ତେ ବିଚାର କରି ଦିଗ୍‌ବିଜୟ ଦ୍ୱାରା ଧର୍ମାନ୍ଧମାନଙ୍କୁ ସତ୍‌ପଥକୁ ଆଣିବାପାଇଁ ସ୍ଥିର କରି ଦିଗ୍‌ବିଜୟ ଉଦ୍ଦେଶ୍ୟରେ ଯାତ୍ରା କଲେ ।



# ଶଙ୍କରଙ୍କ ଧର୍ମ ସଂସ୍କାର

ଦିନେ ଆଚାର୍ଯ୍ୟଙ୍କ ଶିଷ୍ୟମାନେ ସୁଧନ୍ୱା ରାଜାଙ୍କୁ ସଙ୍ଗରେ ଘେନି ତାଙ୍କ ନିକଟରେ ଦିଗ୍‌ବିଜୟର ପ୍ରସ୍ତାବ କଲେ । କାରଣ ସେ ସମୟରେ ଦେଶରେ ନାନା ସମ୍ପ୍ରଦାୟର ଆବିର୍ଭାବ ହୋଇଥିବାହେତୁ ସମସ୍ତେ ନିଜ ନିଜର ସାମ୍ପ୍ରଦାୟିକଭାବର ପ୍ରାଧାନ୍ୟ ବିସ୍ତାରନିମିତ୍ତ ଆଗ୍ରହାନ୍ୱିତ ହୋଇ ପଡ଼ିଥିଲେ, ଯାହା ଫଳରେ ପଦ୍ମପାଦଙ୍କ ପ୍ରାଣର ସଂଶୟ ପର୍ଯ୍ୟନ୍ତ ଘଟିଥିଲା । ଆଚାର୍ଯ୍ୟଦେବ ବ୍ୟାସଦେବଙ୍କ ଇଚ୍ଛା ସ୍ମରଣ କରି ଦିଗ୍‌ବିଜୟରେ ବହିର୍ଗତ ହେବାକୁ ସ୍ୱୀକୃତ ହେଲେ ।

ଆଚାର୍ଯ୍ୟ ଶିଷ୍ୟମାନଙ୍କସହ ସୁଧନ୍ୱା ରାଜାଙ୍କ ସଙ୍ଗରେ ରାମେଶ୍ୱର ଅଭିମୁଖରେ ଯାତ୍ରା କଲେ । ଏହା ଶୁଣି ବହୁ ଲୋକ ଆଚାର୍ଯ୍ୟଙ୍କ ଅନୁଗାମୀ ହେବାକୁ ଲାଗିଲେ । ପ୍ରଥମେ ଆଚାର୍ଯ୍ୟ ଓ ତାଙ୍କ ଶିଷ୍ୟ-ପ୍ରଶିଷ୍ୟମାନେ ଅଗ୍ରବର୍ତ୍ତୀ ହେଲେ । ପରେ ସୁଧନ୍ୱା ରାଜାଙ୍କ ସହ ଅପରାପର ଶିଷ୍ୟମାନେ ପଶ୍ଚାତ୍‌ବର୍ତ୍ତୀ ହୋଇ ତୀର୍ଥଯାତ୍ରା କଲେ । ଏମାନେ ଦଳବଦ୍ଧ ହୋଇ ଯିବାବେଳେ ଧ୍ୱଜା, ପତାକା ଓ ନାନାବିଧ ବାଦ୍ୟଧ୍ୱନିସହ ନାମକୀର୍ତ୍ତନ କରି ଚାଲୁଥାଆନ୍ତି । ଦିଗ୍‌ବିଜୟବାହିନୀ ଏପରି ଏକ ଅପୂର୍ବ ଶୋଭା ଧାରଣ କଲା ଯେ, ବହୁ ଲୋକ ଏ ଦୃଶ୍ୟ ଦେଖି ଧର୍ମ ବିଷୟରେ ଚିନ୍ତା କରିବାର ସୁଯୋଗ ଲାଭ କଲେ ।

କ୍ରମେ ଶଙ୍କର 'ମଧ୍ୟାର୍ଜ୍ଜୁନ' ନାମକ ଗୋଟିଏ ପ୍ରସିଦ୍ଧ ଶୈବତୀର୍ଥରେ ଉପନୀତ ହେଲେ । ଆଚାର୍ଯ୍ୟ ଦେବ ଉକ୍ତ ତୀର୍ଥରେ ଶିବପୂଜାଦି ଶେଷକରି ସେହି ମନ୍ଦିରରେ ଆସନ ଗ୍ରହଣ କଲେ । ମଧ୍ୟାର୍ଜ୍ଜୁନ ନଗରରେ ବହୁ ପଣ୍ଡିତ ବିଚାରପ୍ରାର୍ଥୀ ହୋଇ ଆଚାର୍ଯ୍ୟଙ୍କ ନିକଟରେ ଉପସ୍ଥିତ ହେଲେ । ମନ୍ଦିରର ପ୍ରାଙ୍ଗଣରେ ବିରାଟ ସଭାର ଆୟୋଜନ ହେଲା ।

ସମସ୍ତେ ଆଚାର୍ଯ୍ୟଙ୍କର ଯୁକ୍ତିଯୁକ୍ତ ବାକ୍ୟ ଶ୍ରବଣ କରି ମୁଗ୍ଧ ହୋଇଗଲେ; ଅନେକ ଆଚାର୍ଯ୍ୟଙ୍କ ମତ ଗ୍ରହଣ କରିବାକୁ ଉତ୍ସୁକ ହେଲେ; କେତେ ଜଣ ମଧ୍ୟ ଆଚାର୍ଯ୍ୟଙ୍କର ମତ ବିରୁଦ୍ଧରେ ଗଲେ । ଏହି ଭାବରେ ପଣ୍ଡିତମାନଙ୍କ ମଧ୍ୟରେ ଗୋଟିଏ ମତବିରୋଧ ଭାବ ଦେଖାଦେଲା । ଗୃହକୁ ଫେରି ସେମାନେ ଏକତ୍ର ହୋଇ ଗୋଟିଏ ସଭା କରି ସ୍ଥିରକଲେ ଯେ ପର ଦିନ ବିଚାରସଭାରେ ଶଙ୍କର

ଯଦି ମଧ୍ୟାର୍ଜ୍ଜୁନର ଶିବଙ୍କ ଦ୍ୱାରା ସର୍ବସମକ୍ଷରେ 'ଅଦ୍ୱୈତ ସତ୍ୟ' ବୋଲି କୁହାଯାଇପାରନ୍ତି, ତେବେ ତାହା ଗୃହୀତ ହେବ, ନଚେତ୍ ନୁହେଁ ।

ପରଦିନ ଶିବଙ୍କ ସମ୍ମୁଖରେ ପୁଣି ବିଚାରସଭାର ଆୟୋଜନ ହେଲା । ସହସ୍ର ସହସ୍ର ଲୋକ ସମବେତ ହେଲେ । ବହୁ ବିଚାର ପରେ ଜଣେ ପଣ୍ଡିତ କହିଲେ, ''ଯତିବର ! ସଭା କରି ବିଚାର କରିବାଦ୍ୱାରା ସତ୍ୟ ନିର୍ଣ୍ଣୟ ହୁଏ ନାହିଁ । ଯେ ବଡ଼ ତାର୍କିକ, ଯାହାଙ୍କର ବାକ୍‌ଚାତୁରୀ ବେଶୀ, ସେ ଜୟଲାଭ କରନ୍ତି । ଆପଣଙ୍କ ବାକ୍ୟ ଯୁକ୍ତିଯୁକ୍ତ ହେଲେ ମଧ୍ୟ ଆବହମାନକାଳରୁ ଚଳିଆସୁଥିବା ସଂସ୍କାର ଆମେ ଛାଡ଼ିପାରିବୁ ନାହିଁ । ଯଦି ଏହି ଶିବ 'ଅଦ୍ୱୈତ ସତ୍ୟ' ବୋଲି କହିବେ, ତେବେ ଆମେ ନିର୍ଦ୍ୱନ୍ଦ୍ୱରେ ଆପଣଙ୍କ ମତ ଗ୍ରହଣ କରିବୁ ।''

ଆଚାର୍ଯ୍ୟ ଟିକିଏ ସ୍ତମ୍ଭୀଭୂତ ଭାବ ଧାରଣ କଲେ । ଶିଷ୍ୟମାନେ ବିସ୍ମୟ ଓ ଉଦ୍‌ବିଗ୍ନ ହୋଇପଡ଼ିଲେ । ଆଚାର୍ଯ୍ୟ କାହାକୁ କିଛି ନ କହି ମନ୍ଦିରଦ୍ୱାରକୁ ଆସି ନତଜାନୁ ହୋଇ ଭଗବାନ ଶିବଙ୍କ ସ୍ତବପାଠପୂର୍ବକ କହିଲେ—''ଭଗବନ୍ ! ମୁଁ ଆପଣଙ୍କ ଆଦେଶ ପ୍ରତିପାଳନ କରୁଅଛି । ଯଦି ଆପଣ ସର୍ବସମକ୍ଷରେ 'ଅଦ୍ୱୈତ ସତ୍ୟ' ବୋଲି ଘୋଷଣା ନ କରନ୍ତି, ତେବେ ମୁଁ ଆଉ ପ୍ରଚାର କାର୍ଯ୍ୟ କରିପାରିବି ନାହିଁ ।''

ସହସା ମନ୍ଦିରର ଅଭ୍ୟନ୍ତରରୁ ସହସ୍ର ସୂର୍ଯ୍ୟର ଆଲୋକ ସମୁଦ୍ଭାସିତ ହୋଇଉଠିଲା । ବିରାଟ ଦର୍ଶକମଣ୍ଡଳୀଙ୍କ ବିସ୍ମୟ ଉତ୍ପାଦନ କରି ଭଗବାନ ଭବାନୀପତି ଜ୍ୟୋତିର୍ମୟ ମୂର୍ତ୍ତିରେ ସର୍ବସମକ୍ଷରେ ଆବିର୍ଭୂତ ହୋଇ ଜଳଦଗମ୍ଭୀର ସ୍ୱରରେ 'ଅଦ୍ୱୈତ ସତ୍ୟ' ବୋଲି ତିନି ଥର ଘୋଷଣା କରି ଅନ୍ତର୍ଦ୍ଧାନ ହୋଇଗଲେ । ଅସମ୍ଭବ ସମ୍ଭବ ହେଲା । ନିମିଷକମଧ୍ୟରେ ନଗରର ଆବାଳ-ବୃଦ୍ଧ-ବନିତା ଆଚାର୍ଯ୍ୟଙ୍କ ଦର୍ଶନ ନିମିତ୍ତ ସମବେତ ହେବାକୁ ଲାଗିଲେ । ସମସ୍ତେ ଶିଷ୍ୟତ୍ୱ ଗ୍ରହଣକରି ଆଚାର୍ଯ୍ୟଙ୍କ ଆଦେଶରେ ପଞ୍ଚମହାଯଜ୍ଞ ଓ ପଞ୍ଚଦେବତାଙ୍କ ଉପାସନାପରାୟଣ ହୋଇ ଅଦ୍ୱୈତ ବ୍ରହ୍ମନିଷ୍ଠହେଲେ । ଏ ଘଟଣାପରଠାରୁ ଆଚାର୍ଯ୍ୟଙ୍କୁ ପ୍ରାୟ ଅନ୍ୟ କାହାସହିତ ଶାସ୍ତ୍ରୀୟ ବିଚାର କରିବାକୁ ପଡ଼ିନାହିଁ ।

ମଧ୍ୟାର୍ଜ୍ଜୁନ ପରିତ୍ୟାଗ କରି ଆଚାର୍ଯ୍ୟ କ୍ରମେ 'ତୁଳାଭବାନୀ' ନାମକ ତୀଥରେ ଉପନୀତ ହେଲେ । ସେଠାରେ କେତେଗୁଡ଼ିଏ ଭବାନୀ ଉପାସକ ଆସି କହିଲେ, ''ମହାଶୟ ! ଆମର ମତ ଶୁଣନ୍ତୁ । ଆମ ମତାନୁସାରେ ଆଦ୍ୟାଶକ୍ତି ସମସ୍ତ

କାର୍ଯ୍ୟର କାରଣ । ତାଙ୍କଠାରୁ ସର୍ବ ଜୀବର ଉତ୍ପତ୍ତି । ସେ ବାକ୍ୟ ମନର ଅଗୋଚର । ତେଣୁ ତାଙ୍କର ସେବା ଅସମ୍ଭବ । ତାଙ୍କର ଅଂଶସ୍ୱରୂପା ଭବାନୀଙ୍କର ଆମେ ସେବା କରୁଛୁ । ପ୍ରକୃତି ଓ ଈଶ୍ୱର ଅଭିନ୍ନ । ତାଙ୍କର ଚିହ୍ନ ଧାରଣ କଲେ ମୁକ୍ତି ଲାଭ ହୁଏ ।'' ଆଚାର୍ଯ୍ୟ ସେମାନଙ୍କ କଥା ଶୁଣି କହିଲେ, ''ଆପଣଙ୍କ ମତ ସତ୍ୟ, ତଥାପି ପ୍ରକୃତିଠାରୁ ପୁରୁଷ ଶ୍ରେଷ୍ଠ ଓ ପୁରୁଷଜ୍ଞାନରେ ମୁକ୍ତି ହୋଇଥାଏ । ଭବାନୀଜ୍ଞାନରେ ଚିତ୍ତଶୁଦ୍ଧି ହୁଏ ଏବଂ ଅଦ୍ୱୈତ ଜ୍ଞାନରେ ମୁକ୍ତିଲାଭ ହୁଏ । ଆପଣମାନେ ଚିହ୍ନାଦି ପରିତ୍ୟାଗ କରି ଅଦ୍ୱୈତ ପଥର ଉପାସକ ହୁଅନ୍ତୁ, ନିଶ୍ଚୟ ମୁକ୍ତି ଲାଭ କରିବେ ।'' ଏ କଥା ଶୁଣି ସେମାନେ ଆଚାର୍ଯ୍ୟଙ୍କ ଉପଦିଷ୍ଟ ମାର୍ଗ ଗ୍ରହଣ କଲେ ।

ତଦନନ୍ତର ରାମେଶ୍ୱର ତୀର୍ଥରେ ଶୈବମତାବଲମ୍ବୀମାନଙ୍କସହ ବିଚାର କରି କ୍ରମେ ନାନାସ୍ଥାନ ଭ୍ରମଣପୂର୍ବକ ଆଚାର୍ଯ୍ୟ ସେହି ଦିଗ୍‌ବିଜୟବାହିନୀସହିତ ଅନନ୍ତଶୟନ ବା ଶ୍ରୀରଙ୍ଗମ୍‌ରେ ଉପସ୍ଥିତ ହେଲେ । ପଦ୍ମପାଦଙ୍କ ମାତୁଳ ଶ୍ରୀରଙ୍ଗମ ନିକଟରେ ବାସ କରୁଥିଲେ । ସେ ଦୂରରୁ ଆଚାର୍ଯ୍ୟଙ୍କର ବିପୁଳ ଦିଗ୍‌ବିଜୟବାହିନୀକୁ ଦର୍ଶନ କରି ଗୋପନରେ ଭାଗିନେୟ ପଦ୍ମପାଦଙ୍କର ସମ୍ବାଦ ସଂଗ୍ରହ କଲେ । ଜାଣିଲେ, ତାଙ୍କର ଉଦ୍ଦେଶ୍ୟ ସମ୍ପୂର୍ଣ୍ଣ ପଣ୍ଡ ହୋଇଅଛି ଏବଂ ତାଙ୍କର ଦୁଷ୍କୃତଫଳରେ ଶତ୍ରୁପକ୍ଷଙ୍କର ଏହି ଦିଗ୍‌ବିଜୟ ଅଭିଯାନର ପ୍ରଚେଷ୍ଟା । ସେ ଆଚାର୍ଯ୍ୟଙ୍କ ସମୀପକୁ ନଆସି ନିଜଗୃହରେ ରହି ଅନ୍ତର୍ଦ୍ଦାହ ଭୋଗ କରିବାକୁ ଲାଗିଲେ ।

ଏହି ସମୟରେ ଏଠାରେ ଭକ୍ତ, ଭଗବତ, ବୈଷ୍ଣବ, ପଞ୍ଚରାତ୍ର, ବୈଖାନସ ଓ କର୍ମହୀନ ନାମରେ ଛଅ ପ୍ରକାର ବୈଷ୍ଣବ ବାସ କରୁଥିଲେ । ଏମାନେ ଆଚାର୍ଯ୍ୟଙ୍କ ଆଗମନରେ ବିଚଳିତ ହୋଇଉଠିଲେ । ଏଠାକୁ ଆସି ଆଚାର୍ଯ୍ୟ ଦେବଦର୍ଶନାଦି ସମାପନ କରି ନିଜଭାବରେ ଉପବେଶନ କରିଛନ୍ତି, ଏପରି ସମୟରେ ଦୁଇ ଦଳ ବୈଷ୍ଣବ ଆଚାର୍ଯ୍ୟଙ୍କ ନିକଟରେ ଉପସ୍ଥିତ ହେଲେ । ଆଚାର୍ଯ୍ୟ ପ୍ରଶ୍ନ କଲେ, ''ଆପଣ କେଉଁ ସମ୍ପ୍ରଦାୟଭୁକ୍ତ ଓ ଆପଣମାନଙ୍କର ଲକ୍ଷଣ କ'ଣ ?''

ସେମାନେ କହିଲେ, ''ଆମେ ବସୁଦେବଙ୍କୁ ପୂଜାକରୁ । ଭଗବାନଙ୍କ ପଦକମଳ ହିଁ ପରମଶରଣ । ଏହି ବୁଦ୍ଧିରେ ମୌନ ରହିବାକୁ ଆମେ ଜ୍ଞାନ ବୋଲି କହୁଁ; କାରଣ ତାଙ୍କ ଆଜ୍ଞା ବ୍ୟତୀତ ତୃଣଖଣ୍ଡ ମଧ୍ୟ ସଞ୍ଚାଳିତ ହୁଏ

ନାହିଁ ।'' ଆଚାର୍ଯ୍ୟ ଦେଖିଲେ ଯେ ସେମାନେ ଭଗବାନଙ୍କ ନାମରେ କର୍ତ୍ତବ୍ୟକର୍ମ ମଧ୍ୟ ତ୍ୟାଗକରି ବସିଛନ୍ତି । ଶାସ୍ତ୍ରାନୁଯାୟୀ ଭଗବାନଙ୍କର ପୂଜା ମଧ୍ୟ ଏମାନେ କରନ୍ତି ନାହିଁ । ତେଣୁ ଆଚାର୍ଯ୍ୟ କହିଲେ, ''ଦେଖନ୍ତୁ, ଶାସ୍ତ୍ରରେ ଅଛି—ଜନ୍ମନା ଜାୟତେ ଶୂଦ୍ରଃ, କର୍ମଣା ଜାୟତେ ଦ୍ୱିଜଃ । ଅର୍ଥାତ୍ ଜନ୍ମ ହେବା ମାତ୍ରେ ମନୁଷ୍ୟ ଶୂଦ୍ର ହୁଏ ଏବଂ କର୍ମଦ୍ୱାରା ଦ୍ୱିଜତ୍ୱ ପ୍ରାପ୍ତ ହୋଇଥାଏ । ତେଣୁ ପ୍ରତ୍ୟହ ସନ୍ଧ୍ୟା-ବନ୍ଦନା ଇତ୍ୟାଦି କରିବା କର୍ତ୍ତବ୍ୟ । ଏହା ନ କଲେ ପ୍ରତ୍ୟବାୟଭାଗୀ ହେବାକୁ ପଡ଼େ । ସୁତରାଂ ଶ୍ରୁତିସମ୍ମତ କର୍ମ କରିବା ସମସ୍ତଙ୍କର ଉଚିତ । ମନୁ କହିଛନ୍ତି, 'ଜୀବିତ ରହି ଯେଉଁ ନର କର୍ମ ତ୍ୟାଗ କରେ, ସେ ନରାଧମ, ମୂଢ଼ । ସେ ପ୍ରଳୟକାଳପର୍ଯ୍ୟନ୍ତ ନରକରେ ବାସକରେ ।' ଯତିମାନଙ୍କର ମଧ୍ୟ ସ୍ନାନ ଓ ଅର୍ଚ୍ଚନାଦିରୂପ କର୍ମ ଅଛି, ନଚେତ୍ ବ୍ରାହ୍ମଣ୍ୟଭାବର ହାନି ହୁଏ । ସମସ୍ତଙ୍କୁ ଏହିଭାବରେ କର୍ମ କରିବାକୁ ହେବ ।''

ଏହା ଶୁଣି ସେମାନେ ଆଚାର୍ଯ୍ୟଙ୍କର ଶରଣ ଗ୍ରହଣ କରି କହିଲେ— ''ମହାଶୟ ! ଆମ ସପ୍ତପୁରୁଷ ମଧ୍ୟ ଆମ ଭଳି କର୍ମହୀନ ଥିଲେ । ବର୍ତ୍ତମାନ ଆମକୁ କ୍ଷମା କରନ୍ତୁ ।'' ଆଚାର୍ଯ୍ୟ ପଦ୍ମପାଦଙ୍କୁ କହିଲେ, ''ପଦ୍ମପାଦ ! ତୁମେ ଏମାନଙ୍କ ନିମିତ୍ତ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା କର । ପ୍ରାୟଶ୍ଚିତ୍ତ ବ୍ୟତୀତ ଏମାନଙ୍କୁ କୌଣସି ପ୍ରକାରେ ଉପଦେଶ ଦେବା ସମ୍ଭବପର ନୁହେଁ ।'' ପରେ ସେମାନେ ଯଥାବିଧି ପ୍ରାୟଶ୍ଚିତ୍ତ କରି ଉପଦେଶପ୍ରାର୍ଥୀ ହେବାରୁ ଆଚାର୍ଯ୍ୟ ସେମାନଙ୍କୁ ପଞ୍ଚମହାଯଜ୍ଞ ଏବଂ ପଞ୍ଚଦେବତାଙ୍କ ପୂଜା କରିବାକୁ କହି ଅଭେଦ ଜ୍ଞାନତତ୍ତ୍ୱ ଉପଦେଶ ଦେଲେ । ସେମାନେ ଆଚାର୍ଯ୍ୟଙ୍କ ଉପଦେଶରେ ନିତ୍ୟକର୍ମାନୁଷ୍ଠାରେ ରତ ରହିଲେ ।

ତତ୍ପରେ କର୍ମହୀନ ବୈଷ୍ଣବ ସମ୍ପ୍ରଦାୟଭୁକ୍ତ 'ନାମତୀର୍ଥ' ନାମକ ଜନୈକ ବୈଷ୍ଣବ ଆସି ଉପସ୍ଥିତ ହୋଇ କହିଲେ, ''ପ୍ରଭୋ ! ମୋର ମତ ଶ୍ରବଣ କରନ୍ତୁ । ଦେଖନ୍ତୁ, ଏ ସମସ୍ତ ଜଗତ୍ ବିଷ୍ଣୁମୟ । ଗୁରୁ ହିଁ କେବଳ ମୋକ୍ଷଦାତା; କାରଣ ଗୁରୁ ଶିଷ୍ୟ ନିମିତ୍ତ ଭଗବାନଙ୍କ ନିକଟରେ ମୋକ୍ଷ ପ୍ରାର୍ଥନା କଲେ ଭଗବାନ ମୋକ୍ଷଦାନ କରନ୍ତି । ଆପଣ ମଧ୍ୟ କର୍ମହୀନ; ସୁତରାଂ ମୋକ୍ଷାର୍ଥୀ ହୋଇ ବିଷ୍ଣୁଙ୍କୁ ଅବଲମ୍ବନ କଲେ ଯାଇ ଆପଣ ମୁକ୍ତ ହେବେ ।''

ଏହା ଶୁଣି ଆଚାର୍ଯ୍ୟ କହିଲେ, ''ଆପଣ ଯାହା କହିଲେ, ସବୁ ସତ୍ୟ । ଆପଣ କର୍ମହୀନ ହୋଇ ଯେ ଜୀବନ୍ମୁକ୍ତ ହେବେ, ଏଥିରେ ସନ୍ଦେହ ନାହିଁ; କିନ୍ତୁ

ନିନ୍ଦନୀୟ ହେଉ ଅଥବା ପ୍ରଶଂସନୀୟ ହେଉ, କୌଣସି କାର୍ଯ୍ୟ ନ କରି କ'ଣ ଆପଣ ପିଶାଚରେ ପରିଣତ ହେବେ ? ବେଦୋକ୍ତ କର୍ମସକଳ ଅନୁଷ୍ଠାନ କରି ପରେ କର୍ମଫଳ ଭଗବାନଙ୍କୁ ଅର୍ପଣ କରିବାକୁ ହୁଏ । ଏହା ହିଁ ଜ୍ଞାନମାର୍ଗ । ଆପଣ କର୍ମଭ୍ରଷ୍ଟ ସୁତରାଂ ଭକ୍ତ ମଧ୍ୟ ନୁହନ୍ତି । ଭଗବାନ କହିଛନ୍ତି, 'ଶ୍ରୁତି ଓ ସ୍ମୃତି' ଏହି ଦୁଇଟି ମୋର ଆଜ୍ଞା । ଯେଉଁ ବ୍ୟକ୍ତି ତାହା ଲଙ୍ଘନ କରେ, ସେ ମୋର ଦ୍ରୋହୀ । ସେ ମୋର ଭକ୍ତ ହେଲେ ମଧ୍ୟ ବୈଷ୍ଣବ ନୁହେଁ । ଅବଶେଷରେ ତାର ନରକବାସ ସୁନିଶ୍ଚିତ । ସୁତରାଂ କର୍ମତ୍ୟାଗ କରିବା କଦାପି ଉଚିତ ନୁହେଁ । ତ୍ରିସନ୍ଧ୍ୟାରେ ସନ୍ଧ୍ୟା ନ କଲେ ତିନୋଟି ଚାନ୍ଦ୍ରାୟଣ ବ୍ରତ କରିବା ଆବଶ୍ୟକ; ନଚେତ୍ ଦ୍ୱିଜତ୍ୱ ରହେ ନାହିଁ । କର୍ମଦ୍ୱାରା ମୋକ୍ଷଲାଭ ହୁଏ ନାହିଁ, ତ୍ୟାଗଦ୍ୱାରା ହୁଏ । କର୍ମ ଅନୁଷ୍ଠାନ ନ କଲେ କ'ଣ ବା ତ୍ୟାଗ କରିବ ? ସୁତରାଂ ତୁମେ କର୍ମପରାୟଣ ହୁଅ, ପରେ ସନ୍ନ୍ୟାସୀ ହୋଇ କର୍ମ ତ୍ୟାଗ କରିବ ।'' ଆଚାର୍ଯ୍ୟଙ୍କଠାରୁ ଏହା ଶୁଣି ନାମତୀର୍ଥଙ୍କ ମତ ପରିବର୍ତ୍ତନ ହୋଇଗଲା । ସେ ଆଚାର୍ଯ୍ୟଙ୍କର ଶିଷ୍ୟତ୍ୱ ସ୍ୱୀକାର କରି ବେଦୋକ୍ତ କର୍ମ ପରାୟଣ ହେଲେ ।

ଏହା ପରେ ଗଣପତି ସମ୍ପ୍ରଦାୟର ଜଣେ ମୁଖ୍ୟ ବ୍ୟକ୍ତି ଆଚାର୍ଯ୍ୟଙ୍କୁ କହିଲେ, ''ସ୍ୱାମୀଜି ! ସମୁଦାୟ ଜଗତ ଗଣପତିଙ୍କଠାରୁ ସମୁଦ୍ଭୁତ । ମୋକ୍ଷନିମିତ୍ତ ଆମେ ତାଙ୍କର ଧ୍ୟାନ କରୁଛୁ । ସମସ୍ତଙ୍କର ସେ ପୂଜ୍ୟ; ଆପଣ କିପରି ଆମ ମତକୁ ଦୋଷାରୋପ କରୁଛନ୍ତି ?'' ଏହା ଶୁଣି ଆଚାର୍ଯ୍ୟ କହିଲେ, ''ଦେଖନ୍ତୁ, ଆପଣମାନେ ନିତାନ୍ତ ନିର୍ବୋଧ । କାରଣ ଶାସ୍ତ୍ରର ଗୂଢ଼ରହସ୍ୟ ଆପଣମାନେ କିଛି ହେଲେ ଜାଣନ୍ତି ନାହିଁ । ଶୁଣନ୍ତୁ ପୁରୁଷାଧିଷ୍ଠିତ ପ୍ରକୃତିଙ୍କଠାରୁ ମହତତ୍ତ୍ୱର ଉତ୍ପତ୍ତି ଏବଂ ମହତତ୍ତ୍ୱଠାରୁ ଅହଂକାରର ଉତ୍ପତ୍ତି ହୁଏ । ସେହି ଅହଂକାର ସତ୍ତ୍ୱ, ରଜଃ ଓ ତମୋଗୁଣାତ୍ମକ । ଏହାଙ୍କୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର କହନ୍ତି । ରୁଦ୍ରଙ୍କର ପୁତ୍ର ଗଣେଶ, କାର୍ତ୍ତିକେୟ ଓ ଭୈରବ । ନିଜ ନିଜ ଅଧିକାର ନିର୍ବାହ କରୁଥିବାରୁ ଏମାନେ ପୂଜାର ପାତ୍ର । ସୁତରାଂ ବ୍ରାହ୍ମଣମାନେ ଯତ୍ନରସହିତ ମୂଳାଧାରାଦି ଚକ୍ରରେ ଅବସ୍ଥିତ ଗଣେଶାଦି ଦେବତାଙ୍କର ଧ୍ୟାନ କରିବା ବିଧେୟ । ଯଦି ସେଥିରେ ଅସମର୍ଥ ହୁଅ, ତେବେ ପଞ୍ଚଦେବତାଙ୍କର ପୂଜା କର ।'' ଏକଥା ଶୁଣି ଗଣପତି-ଉପାସକ ବ୍ରାହ୍ମଣମାନେ ଆଚାର୍ଯ୍ୟଙ୍କ ମତ ଗ୍ରହଣପୂର୍ବକ ଶିଷ୍ୟତ୍ୱ ସ୍ୱୀକାର କଲେ ।

ପ୍ରାୟ ଏକ ମାସ ମଧ୍ୟରେ ଉପରୋକ୍ତ ଅଞ୍ଚଳରେ ଅଦ୍ୱୈତ ମତ ପ୍ରତିଷ୍ଠିତ ହୋଇଗଲା । ପରେ ଆଚାର୍ଯ୍ୟ ଶିଷ୍ୟମାନଙ୍କ ସହିତ କାଞ୍ଚନଗରୀରେ ଉପସ୍ଥିତ ହେଲେ । ଆଚାର୍ଯ୍ୟ ଏଠାକୁ ଆସି ତାନ୍ତ୍ରିକମାନଙ୍କର ପ୍ରାଧାନ୍ୟ ଲକ୍ଷ୍ୟ କଲେ । ସେ ସେମାନଙ୍କ ସଂସ୍କାରକାମନାରେ ଭଗବତୀ କାମାକ୍ଷୀ ଦେବୀଙ୍କ ଯନ୍ତ୍ର ସ୍ଥାପନପୂର୍ବକ ଶ୍ରୁତିସମ୍ମତ ପୂଜାର ପ୍ରବର୍ତ୍ତନ କରାଇ କାଞ୍ଚିରାଜାଙ୍କୁ ସେହିଠାରେ ମନ୍ଦିର ନିର୍ମାଣ କରିବାକୁ ଆଦେଶ ଦେଲେ । ଅନନ୍ତର ବିଷ୍ଣୁ କାଞ୍ଚିରେ ବରାଜରାଜ ଅବସ୍ଥିତ ବିଷ୍ଣୁ ମନ୍ଦିରର ଦୁରବସ୍ଥା ଦର୍ଶନକରି ସେବା-ପୂଜାର ଭାର ଭକ୍ତ ବ୍ରାହ୍ମଣମାନଙ୍କ ହସ୍ତରେ ଅର୍ପଣ କଲେ ।

ଆଚାର୍ଯ୍ୟ ଅଦ୍ୱୈତବାଦୀ ହେଲେ ମଧ୍ୟ ଭଗବତ୍-ଉପାସନା ଓ ଦେବତାପୂଜାଦିର ଯେପରି ବ୍ୟବସ୍ଥା ଏହି କାଞ୍ଚିନଗରୀରେ ପ୍ରବର୍ତ୍ତନ କଲେ, ସେଥିରେ ଉପାସକମାନଙ୍କର ଅଦ୍ୱୈତଭାବ ସମ୍ବନ୍ଧରେ ଭ୍ରାନ୍ତି ବିଦୂରିତ ହେଲା । ସମସ୍ତେ ଅଦ୍ୱୈତବାଦ ଗ୍ରହଣ କରି ମଧ୍ୟ ଭଗବାନ ଓ ଭଗବତୀଙ୍କ ସେବାରେ ତତ୍ପର ହେଲେ । ବୌଦ୍ଧ ଓ ଜୈନମାନେ ନିସ୍ତ୍ରଭ ହୋଇପଡ଼ିଲେ ।

ଏହି ଭାବରେ କେତେ ଦିନ ଅତିବାହିତ ହେବା ପରେ ଆଚାର୍ଯ୍ୟ ଶୁଣିଲେ ଯେ, କର୍ଣ୍ଣାଟ ଦେଶରେ ଉଜ୍ଜୟିନୀନଗର ସମୀପରେ ବହୁ ଦୁଷ୍ଟ କାପାଳିକ ବାସ କରୁଅଛନ୍ତି । ସେଠାରେ ବେଦୋକ୍ତ ଧର୍ମର ଅସ୍ତିତ୍ୱ ପର୍ଯ୍ୟନ୍ତ ବିଲୁପ୍ତ । ସମଗ୍ର ଭାରତର କାପାଳିକ ସମ୍ପ୍ରଦାୟର ଏମାନେ ନେତା । ଏହା ଶୁଣି ପଦ୍ମପାଦ ଆଚାର୍ଯ୍ୟଙ୍କୁ ସେଠାକୁ ଯିବାକୁ ଅନୁରୋଧ କରିବାରେ ଆଚାର୍ଯ୍ୟ ଆପତ୍ତି କଲେ ନାହିଁ । ଆଚାର୍ଯ୍ୟଙ୍କର କର୍ଣ୍ଣାଟ ଯିବା କଥା ଶୁଣି ବିଦର୍ଭରାଜ କହିଲେ, ''ଭଗବନ୍ ! ଆପଣ ସେଠାକୁ ଯିବା ଉଚିତ ହେବ ନାହିଁ, ସେଠାକୁ ଗଲେ ଆପଣଙ୍କର ବିପଦ ଘଟିବାର ସମ୍ଭାବନା । ସେଠାରେ କାପାଳିକାମାନେ ବେଦଉପରେ ଭୀଷଣ ଈର୍ଷାନ୍ୱିତ । ସେମାନେ ସେ ଦେଶର ଏକପ୍ରକାର ରାଜା କହିଲେ ଚଳେ । ସହସ୍ର ସଶସ୍ତ୍ର କାପାଳିକ ସୈନ୍ୟ ସେମାନଙ୍କର ରକ୍ଷକ । ଆପଣମାନେ ସେଠାକୁ ଯିବା ଉଚିତ ହେବ ନାହିଁ ।

ସୁଧନ୍ୱାରାଜ ସେଠାରେ ଉପସ୍ଥିତ ଥିଲେ । ସେ ସେହି କର୍ଣ୍ଣାଟ ଉଜ୍ଜୟିନୀର ରାଜା; କିନ୍ତୁ ସେ ଏପର୍ଯ୍ୟନ୍ତ କାପାଳିକମାନଙ୍କୁ ଶାସନ କରିବାନିମିତ୍ତ ଚେଷ୍ଟା କରି ନ ଥିଲେ; କାରଣ ସେମାନେ ଯାହା କରନ୍ତି, ଧର୍ମ ନାମରେ କରନ୍ତି । ଧର୍ମ

ବିରୁଦ୍ଧରେ ରାଜଶକ୍ତି ପ୍ରୟୋଗ କରିବା ରାଜାମାନଙ୍କର ସ୍ୱଭାବ ନୁହେଁ । ତେଣୁ ସେମାନେ ସୁଧନ୍ୱାଙ୍କ ରାଜ୍ୟରେ ନିରାପଦରେ ବାସ କରି ଆସୁଥିଲେ । ବର୍ତ୍ତମାନ ବିଦର୍ଭରାଜଙ୍କ କଥା ଶୁଣି ସୁଧନ୍ୱାରାଜ ଆଚାର୍ଯ୍ୟଙ୍କୁ କହିଲେ, ''ଭଗବନ୍ ! ମୁଁ ଥିବା ପର୍ଯ୍ୟନ୍ତ ଆପଣଙ୍କର ଭୟର କାରଣ କିଛି ନାହିଁ । ମୁଁ ସୈନ୍ୟମାନଙ୍କ ସହିତ ଆପଣମାନଙ୍କର ଅନୁଗମନ କରିବି ।'' ଆଚାର୍ଯ୍ୟ କିଛି ନ କହି କର୍ଣ୍ଣାଟ ଯିବାକୁ ପ୍ରସ୍ତୁତ ହେଲେ । ସୁଧନ୍ୱାରାଜାଙ୍କ ରାଜଧାନୀ ନିକଟରେ କାପାଳିକମାନେ ଗୋଟିଏ କ୍ଷୁଦ୍ର ରାଜ୍ୟ ସ୍ଥାପନ କରି ବାସ କରୁଥିଲେ । ଆଚାର୍ଯ୍ୟ ଅନ୍ୟ କେଉଁଠାକୁ ଗମନ ନ କରି ସେମାନଙ୍କ ରାଜଧାନୀରେ ପ୍ରବେଶ କଲେ ।

କାପାଳିକମାନଙ୍କ ଗୁରୁ କ୍ରକଚ ଏମାନଙ୍କର ରାଜା । ସେ ପୂର୍ବରୁ ପ୍ରସ୍ତୁତ ଥିଲେ । ବର୍ତ୍ତମାନ ଆଚାର୍ଯ୍ୟଙ୍କ ଆଗମନ ବାର୍ତ୍ତା ଶୁଣି ସେ କେତେ ଜଣ ଅନୁଚରଙ୍କ ସହିତ ଆଚାର୍ଯ୍ୟଙ୍କ ସମୀପରେ ଉପସ୍ଥିତ ହେଲେ । କ୍ରକଚର ସର୍ବାଙ୍ଗ ଶ୍ମଶାନ ଭସ୍ମଦ୍ୱାରା ପରିଲିପ୍ତ; ଗୋଟିଏ ହାତରେ ନରକପାଳ ଓ ଅପର ହସ୍ତରେ ପରଶୁଯୁକ୍ତ ଶୂଳ; ପରିଧାନ କୌପୀନ ଓ ରକ୍ତବର୍ଣ୍ଣ ବହିର୍ବାସ—ଦେଖିଲେ ସହଜରେ ଭୀତି ସଞ୍ଚାର ହେବ । ଅନୁଚରବର୍ଗଙ୍କ ମୂର୍ତ୍ତି କ୍ରକଚର ଅନୁରୂପ । ଯେପରି ସାକ୍ଷାତ୍ ଯମକିଙ୍କର୍ ।

କ୍ରକଚର ପ୍ରକୃତି ଏପରି ଭୀଷଣ ଯେ ଶାନ୍ତିମୂର୍ତ୍ତି ଆଚାର୍ଯ୍ୟଙ୍କୁ ଦର୍ଶନ କରି ମଧ୍ୟ ତାହାର କିଛି ମାତ୍ର ପରିବର୍ତ୍ତନ ହେଲା ନାହିଁ । ସେ ନିଜ ସାଧନାରେ ସିଦ୍ଧ ଓ ନିଜ ଭାବରେ ପୂର୍ଣ୍ଣମନୋରଥ । ଗର୍ବର ସହିତ ସେ ଆଚାର୍ଯ୍ୟଙ୍କୁ କହିଲା, ''ଆହେ ! ତୁମେ ଭସ୍ମଧାରଣ କରିଛ, ଖୁବ୍ ଭଲ କଥା; କିନ୍ତୁ ପରମପବିତ୍ର ନରକପାଳ ତ୍ୟାଗ କରି ଅପବିତ୍ର ମୃଣ୍ମୟ ଖର୍ପର ବହନ କରୁଛ କାହିଁକି ? ରୁଧିରାକ୍ତ ନରମୁଣ୍ଡରୂପକ କମଳ ଓ ମଦ୍ୟଦ୍ୱାରା ଭୈରବ ଅର୍ଚ୍ଚିତ ନ ହେଲେ ଏବଂ ନିଜର ଅନୁରୂପା କମଳାକ୍ଷୀ ଉମାରୂପିଣୀ ରମଣୀକର୍ତ୍ତୃକ ଦେହି ଆଲିଙ୍ଗିତ ନ ହେଲେ କିପରି ବା ଭୈରବ ସନ୍ତୁଷ୍ଟ ହେବେ ?''

କ୍ରକଚର ଏପରି ବାକ୍ୟ ଶୁଣି ଆଚାର୍ଯ୍ୟ ଧୀର, ଗମ୍ଭୀର ଓ ନିଶ୍ଚଳ ହୋଇ ଅବସ୍ଥାନ କଲେ । ଏହା ଦେଖି ସୁଧନ୍ୱାରାଜ କୁପିତ ହୋଇ ନିଜ ଅନୁଚରବର୍ଗଙ୍କୁ କହିଲେ, ''ଏହି ଦୁରାଚାରୀମାନଙ୍କୁ ଏଠାରୁ ବିତାଡ଼ିତ କରିଦିଅ । କ୍ରକଚ ଏକଥା ଶୁଣି କ୍ରୋଧାନ୍ୱିତ ହୋଇ ଶାଣିତ ପରଶୁ ଉତ୍ତୋଳନପୂର୍ବକ କହିଲା, ''ମୁଁ ଯଦି

ଏହାଦ୍ୱାରା ତୁମର ମୁଣ୍ଡ ଛେଦନ ନ କରେ, ତେବେ ମୋ ନାମ କ୍ରଚକ ନୁହେଁ ।'' ଏହା କହି ସେ ଅନୁଚରବର୍ଗଙ୍କ ସହ ସେ ସ୍ଥାନ ପରିତ୍ୟାଗ କଲା ।

ଅନତିଦୂରରେ କ୍ରଚକର ବହୁ ଶିଷ୍ୟ ଉପସ୍ଥିତ ଥିଲେ । ସେମାନେ କ୍ରଚକର ଅପମାନ-ବାର୍ତ୍ତା ଶ୍ରବଣ କରି ଅତିଶୟ କ୍ରୁଦ୍ଧ ହୋଇ କାପାଳିକସୈନ୍ୟମାନଙ୍କୁ ଯୁଦ୍ଧନିମିତ୍ତ ଆଦେଶ କଲେ । କାପାଳିକ ସୈନ୍ୟ ଭୀଷଣ ଗର୍ଜନ କରିବାକୁ ଆରମ୍ଭ କଲେ । କ୍ରଚକ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ଆଚାର୍ଯ୍ୟଙ୍କ ଅଭିମୁଖରେ ଅଗ୍ରସରହେଲା । ସୁଧନ୍ୱା ରାଜାଙ୍କ ସହିତ ଏକସହସ୍ର ସୈନ୍ୟ ଥିଲେ ।

ଶିଷ୍ୟମାନେ ଯୁଦ୍ଧୋଦ୍ୟତ କାପାଳିକସୈନ୍ୟସହ କ୍ରଚକଙ୍କୁ ଆସିବା ଦେଖି ଭୀତ ଓ ବ୍ୟାକୁଳ ହୋଇଉଠିଲେ । ଆଚାର୍ଯ୍ୟ ପୂର୍ବବତ୍ ନୀରବ ଓ ନିଶ୍ଚଳ । ତାଙ୍କର କୌଣସି ଉଦ୍‌ବେଗ କିମ୍ବା ଉତ୍କଣ୍ଠା ପରିଲକ୍ଷିତ ହେଲା ନାହିଁ; କିନ୍ତୁ ଶିଷ୍ୟମାନଙ୍କ ବ୍ୟାକୁଳତା ଦର୍ଶନ କରି ସୁଧନ୍ୱାରାଜ କେତେ ଜଣ ସୈନ୍ୟଙ୍କୁ କାପାଳିକସୈନ୍ୟଙ୍କ ଗତିରୋଧ କରିବାନିମିତ୍ତ ଆଦେଶ ଦେଲେ ଏବଂ ଆଉ କେତେକ ସୈନ୍ୟ ସଙ୍ଗରେ ନେଇ ଅନ୍ୟ ଆଡୁ କାପାଳିକ ସୈନ୍ୟଙ୍କସହ ଯୁଦ୍ଧରେ ପ୍ରବୃତ୍ତ ହେଲେ । ସୁଧନ୍ୱାରାଜାଙ୍କ ସ୍ୱଦେଶ ପ୍ରତ୍ୟାବର୍ତ୍ତନ ବାର୍ତ୍ତା ଶ୍ରବଣ କରି ଅମାତ୍ୟବର୍ଗ ବହୁ ସୈନ୍ୟସହ ତାଙ୍କୁ ଅଭ୍ୟର୍ଥନା କରିବାକୁ ଆସିଥିଲେ । ତେଣୁ ରାଜାଙ୍କର ଯୁଦ୍ଧ ଆୟୋଜନ ନିମିତ୍ତ କାଳବିଳମ୍ବ ହେଲା ନାହିଁ । ମୁହୂର୍ତ୍ତକ ଭିତରେ ଉଭୟ ସୈନ୍ୟଙ୍କ ମଧ୍ୟରେ ସଂଘର୍ଷ ଘଟିଗଲା । ଉଭୟ ପକ୍ଷର ବହୁ ସୈନ୍ୟ ହତାହତ ହେଲେ । କ୍ରକଚ ଏହା ଦେଖି ନିଜ ସୈନ୍ୟମାନଙ୍କୁ ନିରସ୍ତ୍ର କରି ନିଜେ ଅସ୍ତ୍ରଶସ୍ତ୍ର ପରିତ୍ୟାଗପୂର୍ବକ ଆଚାର୍ଯ୍ୟଙ୍କ ସମ୍ମୁଖରେ ଉପସ୍ଥିତ ହେଲା । ଏହା ଦେଖି ରାଜାଙ୍କର ସୈନ୍ୟମାନେ କିଛି ବାଧା ପ୍ରଦାନ କଲେ ନାହିଁ । ଆଚାର୍ଯ୍ୟଙ୍କ ସମୀପରେ କ୍ରକଚ ଅବାଧରେ ଉପସ୍ଥିତ ହୋଇ ତାଙ୍କୁ ସମ୍ବୋଧନ କରି କହିଲା, ''ରେ ଦୁଷ୍ଟ ! ବର୍ତ୍ତମାନ ମୋ କ୍ଷମତା ଦର୍ଶନ କର । ମୁଁ ତୋତେ ବର୍ତ୍ତମାନ ସମୁଚିତ ଶାସ୍ତି ପ୍ରଦାନ କରୁଛି ।''

ଏହା କହି କ୍ରକଚ କରତଳରେ ନୃ-କପାଳ ରଖି ନେତ୍ରଦ୍ୱୟ ମୁଦ୍ରିତ କରି କ୍ଷଣକାଳ ଧ୍ୟାନମଗ୍ନ ହେଲା । ଦେଖୁ ଦେଖୁ ନରକପାଳଟି ମଦିରାପୂର୍ଣ୍ଣ ହୋଇଗଲା । କ୍ରକଚ ଅର୍ଦ୍ଧେକ ମଦିରା ପାନ କରି ସଂହାର ଭୈରବଙ୍କୁ ସ୍ମରଣ କଲା । ମୁହୂର୍ତ୍ତକ ମଧ୍ୟରେ ସଂହାରଭୈରବ ବିକଟହାସ୍ୟ କରି ଆବିର୍ଭୂତ ହେଲେ । ଗଳାରେ

ନରକପାଳର ମାଳା, ଅନଳଶିଖା ପରି ପ୍ରଦୀପ୍ତ ଜଟାଭାର ଲମ୍ବମାନ ଓ ହସ୍ତରେ ତ୍ରିଶୂଳ । କ୍ରକଚ ସଂହାର ଭୈରବଙ୍କୁ ପ୍ରଣାମ କରି ଆଚାର୍ଯ୍ୟଙ୍କୁ ଦେଖାଇ କହିଲା, ''ଭଗବନ୍ ! ଏ ବ୍ୟକ୍ତି ଆପଣଙ୍କ ଭକ୍ତମାନଙ୍କ ଉପରେ ହିଂସା କରୁଛି, ଆପଣ ଆମ ପ୍ରତି କୃପା କରି ଏହାକୁ ବଧ କରନ୍ତୁ ।'' ଆଚାର୍ଯ୍ୟ ଭୈରବଙ୍କୁ ଦେଖିବା ମାତ୍ରେ ତାଙ୍କର ସ୍ତବ କରିବାରେ ପ୍ରବୃତ୍ତ ହୋଇଯାଇଥିଲେ । ସ୍ତବ ଶେଷରେ ପ୍ରଣାମ କରି କ୍ରକଚ ସହିତ ସେପର୍ଯ୍ୟନ୍ତ ଘଟିଥିବା ସମସ୍ତ ଘଟଣା ଆମୂଳଚୂଳ ଭୈରବଙ୍କ ନିକଟରେ ନିବେଦନ କଲେ ।

ଆଚାର୍ଯ୍ୟଙ୍କ କଥା ଶୁଣି ସଂହାରଭୈରବ କ୍ରକଚକୁ କହିଲେ, ''ଆହେ କ୍ରକଚ ! ସ୍ୱୟଂ ଶଙ୍କର ଦୁଷ୍ଟ ବ୍ରାହ୍ମଣମାନଙ୍କୁ ଦଣ୍ଡଦେବା ନିମିତ୍ତ ଜଗତକୁ ଆଗମନ କରିଅଛନ୍ତି । ତୁମେ ସମସ୍ତେ ତାଙ୍କର ପୂଜା କର । ତଦନନ୍ତର ସେ ଶଙ୍କରଙ୍କୁ ଲକ୍ଷ୍ୟକରି କହିଲେ, ''ଶଙ୍କର ! ତୁମେ ଯାହାସବୁ କରୁଅଛ, ତାହା ମୋ କାର୍ଯ୍ୟ ବୋଲି ଜାଣିବ । କଳି ପ୍ରବଳ ହେବାରୁ ଏ ସବୁ ବ୍ରାହ୍ମଣମାନେ ସ୍ୱେଚ୍ଛାଚାରୀ ହୋଇଯାଇଛନ୍ତି । ବର୍ତ୍ତମାନ ଏମାନଙ୍କୁ ବ୍ରାହ୍ମଣାଚାର-ପରାୟଣ କର । ମୁଁ ମନ୍ତ୍ରବଦ୍ଧ ହୋଇ ଏମାନଙ୍କ ପ୍ରତ୍ୟକ୍ଷୀଭୂତ ହୋଇଅଛି, ଧର୍ମତଃ ହୋଇନାହିଁ ।'' ସଂହାରଭୈରବ ଏକଥା କହି ଅନ୍ତର୍ଦ୍ଧାନ ହୋଇଗଲେ । କ୍ରକଚ ପ୍ରମୁଖ କାପାଳିକମାନେ ଏହା ଶୁଣି ଭୟଭୀତ ହୋଇ କ୍ଷମାଭିକ୍ଷା କରି ଆଚାର୍ଯ୍ୟଙ୍କ ଶରଣ ଗ୍ରହଣ କଲେ । ଆଚାର୍ଯ୍ୟ ପଦ୍ମପାଦଙ୍କ ଦ୍ୱାରା କାପାଳିକମାନଙ୍କର ଶୁଦ୍ଧି କରାଇ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା କରିଦେଲେ । କାପାଳିକମାନେ ଆଚାର୍ଯ୍ୟଙ୍କ ସମ୍ପ୍ରଦାୟଭୁକ୍ତ ହୋଇଗଲେ ।

ଏହା ପରେ ଜଣେ ବୌଦ୍ଧ ଆଚାର୍ଯ୍ୟଙ୍କ ସହିତ ସାକ୍ଷାତ କରି କହିଲେ, ''ମହାଶୟ ! ମୋର ବିଶ୍ୱାସ ଯେ ଲୋକେ ମୂଢ଼ତାବଶତଃ କର୍ମର ଅନୁଶୀଳନ କରନ୍ତି । ଜୀବ ସଦା ନିର୍ମଳ । ଦେହର ପତନ ପରେ ଜୀବ ମୁକ୍ତ ହୁଏ । ଜୀବ ପଞ୍ଚରଣଗ୍ରସ୍ତ ହୋଇ ପୁନରାୟ ଜନ୍ମ ଗ୍ରହଣ କରେ—ଏହା ମୂର୍ଖମାନଙ୍କର କଳ୍ପନା । ତେଣୁ ଋଣ କରି ମଧ୍ୟ ଭୋଗ କରିଯିବା ଓ ଦେହର ପୁଷ୍ଟିସାଧନ କରିବା ବିଧେୟ । ଯେଉଁ ବ୍ୟକ୍ତି ସମସ୍ତ ପ୍ରକାର ଖାଦ୍ୟ ଭକ୍ଷଣ କରନ୍ତି, ସେ ସୁଖୀ ଓ ମୁକ୍ତ ।''

ଏହା ଶୁଣି ଆଚାର୍ଯ୍ୟ କହିଲେ, ''ଦେଖ, ସମସ୍ତ ଶାସ୍ତ୍ରରେ ପରଲୋକର କଥା ଅଛି । ଯେଉଁ ବ୍ୟକ୍ତି ଋଣ କରେ, ତାର ପୁନର୍ଜନ୍ମ ସୁନିଶ୍ଚିତ । ତୁମେ

ଅଜ୍ଞାନ ଓ ପାପବୁଦ୍ଧି ତ୍ୟାଗ କରି ସାଧୁଜନସେବିତ ପଥ ଅବଲମ୍ବନ କର । ବେଦୋକ୍ତ ଆଚାରବିହୀନ ବ୍ୟକ୍ତି ହିଁ ପାଷାଣ୍ଡ । ଯେଉଁମାନେ ବେଦ ନିନ୍ଦା କରନ୍ତି ଏବଂ ଯେଉଁମାନେ ବେଦବିବର୍ଜିତ, ସେମାନେ ବ୍ରାହ୍ମଣକୂଳରେ ଜାତ ହେଲେ ମଧ୍ୟ ନରକକୁ ଗମନ କରନ୍ତି । ତୁମେ ବେଦୋକ୍ତ ଆଚାର ଅବଲମ୍ବନ କଲେ ମୁକ୍ତ ହେବ ।''

ଆଚାର୍ଯ୍ୟଙ୍କ ଉପଦେଶରେ ଉକ୍ତ ବୌଦ୍ଧ ବ୍ରାହ୍ମଣଟି ସ୍ୱମତ ପରିବର୍ତ୍ତନ କରି ତାଙ୍କ ଶିଷ୍ୟତ୍ୱ ଗ୍ରହଣ କଲା । ଅନ୍ୟ ଜଣେ ବୌଦ୍ଧ ମତାବଲମ୍ବୀଙ୍କୁ ଆଚାର୍ଯ୍ୟ କହିଲେ, ''ଶୁଣ, ଦେହ ରକ୍ଷା ହେଲେ ମୃତ୍ୟୁ ହେବ ନାହିଁ । ପରଲୋକ ଅବଶ୍ୟ ସ୍ୱୀକାର୍ଯ୍ୟ । ଯେଉଁବ୍ୟକ୍ତି ସର୍ବତୋଭାବରେ ସର୍ବଭୂତରେ ଆତ୍ମଦର୍ଶନ କରେ ଏବଂ ଆତ୍ମାରେ ସର୍ବଭୂତକୁ ଦର୍ଶନ କରେ, ସେହି ବ୍ୟକ୍ତି ମୁକ୍ତ ହୁଏ । କଳ୍ପିତ ଜୀବଭାବ ତ୍ୟାଗ କରି ସଚ୍ଚିଦାନନ୍ଦ ରୂପରେ ସର୍ବଦା ଅବସ୍ଥିତିର ନାମ ମୁକ୍ତି ।'' ଏହି ଉପଦେଶ ଶୁଣିବା ପରେ ଶେଷୋକ୍ତ ବୌଦ୍ଧବ୍ରାହ୍ମଣ ମଧ୍ୟ ଆଚାର୍ଯ୍ୟଙ୍କ ମତ ଗ୍ରହଣ କଲେ ।

ଏହି ଭାବରେ କର୍ଣ୍ଣାଟ ଦେଶରେ ସର୍ବତ୍ର ଅଦ୍ୱୈତବାଦ ପ୍ରଚାର କରି ଅଦ୍ୱୈତ ବାଦର ବିଜୟ-ପତାକା ଉଡ୍‌ଡ୍ରୀୟାନ୍ କରାଇଲେ । କିଛିଦିନ ପରେ ଆଚାର୍ଯ୍ୟ କର୍ଣ୍ଣାଟ ତ୍ୟାଗକରି ଆନ୍ଧ୍ରଦେଶ ଅଭିମୁଖରେ ଗମନ କରିବାବେଳେ ମଳୟପୁର ନାମକ ସ୍ଥାନରେ ଉପସ୍ଥିତ ହେଲେ । ଆଚାର୍ଯ୍ୟଙ୍କ ଆଗମନ ସମ୍ବାଦ ପାଇ ସ୍ଥାନୀୟ ବହୁ ବ୍ରାହ୍ମଣ ଦର୍ଶନପ୍ରାର୍ଥୀ ହୋଇ ତାଙ୍କ ନିକଟରେ ଉପସ୍ଥିତ ହେଲେ । ସେ ଏମାନଙ୍କ ବେଶଭୂଷା ଦେଖି ବିସ୍ମିତ ହୋଇଗଲେ । ବିସ୍ମିତ ହେବାର କାରଣ ଏହି ଯେ ବହୁଦିନୁ ଭାରତରେ ଏକଛତ୍ର ନୃପତି ଅଭାବରେ ଭାରତର ନାନା ଦେଶରେ ନାନା ପ୍ରକାରର ଆଚାର ବ୍ୟବହାରର ଉତ୍ପତ୍ତି ହୋଇଅଛି । ଆଚାର୍ଯ୍ୟ ସେମାନଙ୍କୁ ପ୍ରଶ୍ନ କଲେ, ''ତୁମ୍ଭମାନଙ୍କର ଐହିକ କାର୍ଯ୍ୟକଳାପ କିପରି ?''

ବ୍ରାହ୍ମଣମାନେ କହିଲେ, ''ପ୍ରଭୋ ! ଆମେ ମଲ୍ଲାରୀ ଭଗବାନଙ୍କ ଉପାସକ ଏବଂ ତାଙ୍କ ବାହାନ କୁକୁରକୁ ଭକ୍ତି ସେବା କରୁ । ତେଣୁ ଆମେ କୁକୁର ବେଶଧାରଣ କରିଅଛୁ ଓ କୁକୁର ଭାଷାର ଅନୁକରଣ କରୁଅଛୁ । ପ୍ରାତଃକାଳ, ମଧ୍ୟାହ୍ନ ଓ ସନ୍ଧ୍ୟାକାଳରେ ନାଟ୍ୟ, ବାଦ୍ୟ ଓ ଗୀତ ଆଦିଦ୍ୱାରା ପ୍ରଭୁ ମଲ୍ଲାରିଙ୍କୁ

ଆମେ ପ୍ରସନ୍ନ କରାଉ । ଏପରି କରିବାର କାରଣ, ବେଦରେ ଅଛି ଯେ 'ଶୁଭ୍ୟୋଃ ନମଃ, ଶ୍ୱପତିଭ୍ୟୋ ନମଃ' । ସୁତରାଂ ଆପଣମାନେ ଆମ ଆଚାର ଗ୍ରହଣ କରନ୍ତୁ ।''

ଆଚାର୍ଯ୍ୟ ସେମାନଙ୍କୁ ନାନା ପ୍ରକାରେ ବୁଝାଇ ଶେଷର କହିଲେ, ''ଶୁଣନ୍ତୁ, ଯାହାକୁ ସ୍ପର୍ଶକଲେ ବ୍ରାହ୍ମଣମାନଙ୍କୁ ମୃତ୍ତିକା-ସ୍ନାନକରିବାକୁ ପଡ଼େ, ସେହି କୁକୁର ବେଶ ଓ ଚିହ୍ନାଦି ଧାରଣ କରିବାରେ ବହୁ ପ୍ରକାର ଦୋଷ ହୁଏ, ଏଥିରେ ଆଦୌ ସନ୍ଦେହ ନାହିଁ । ଆପଣମାନେ କୁକୁର ବେଶ ଧାରଣ କରି ନିତ୍ୟନୈମିତ୍ତିକ ସମସ୍ତ କର୍ମ ପରିତ୍ୟାଗପୂର୍ବକ ବ୍ରାହ୍ମଣତ୍ୱ ହରାଇଛନ୍ତି । ଫଳରେ ଆପଣମାନଙ୍କୁ ଦେଖି ପ୍ରାୟଶ୍ଚିତ୍ତ କରିବାକୁ ହେବ ଏବଂ ମୌନ ରହିବାକୁ ପଡ଼ିବ ।'' ମଲ୍ଲାରୀମାନଙ୍କୁ ଆଚାର୍ଯ୍ୟ ଏହିପରି ନାନା କଥା କହି ଉପଦେଶ ଦେଲେ । ବ୍ରାହ୍ମଣମାନେ ତାଙ୍କର ସମସ୍ତ ଯୁକ୍ତିପୂର୍ଣ୍ଣ ଉକ୍ତି ଶ୍ରବଣ କରି ନିଜର ଦୋଷ ବୁଝିପାରିଲେ ଏବଂ ଉଦ୍ଧାରପାଇଁ ତାଙ୍କର ଶରଣାପନ୍ନହେଲେ । ଆଚାର୍ଯ୍ୟ ପ୍ରାୟଶ୍ଚିତ୍ତର ବ୍ୟବସ୍ଥାକରି ସେମାନଙ୍କ ସଂସ୍କାର କରାଇଲେ ଓ ନିଜ ମତରେ ଦୀକ୍ଷିତକଲେ । ମଲ୍ଲାରପୁର ତ୍ୟାଗକରି ଆଚାର୍ଯ୍ୟ ଶିଷ୍ୟମାନଙ୍କ ସହିତ ପଶ୍ଚିମପଥରେ ଗମନ କଲେ । ନବାଗତ ବହୁଶିଷ୍ୟ ନାନା ବାଦ୍ୟଧ୍ୱନିସହକାରେ ଆଚାର୍ଯ୍ୟଙ୍କୁ ବନ୍ଦନା କରି ନିଜ ନିଜ ଗୁରୁଭକ୍ତିର ଆବେଗ ଶାନ୍ତ କରିବାକୁ ଲାଗିଲେ ।

ମରୁନ୍ଦନଗରର 'ବିଶ୍ୱକ୍‌ସେନ' ମନ୍ଦିର ଅତି ପ୍ରସିଦ୍ଧ । ବିଶ୍ୱକ୍‌ସେନ ବୈକୁଣ୍ଠରେ ନାରାୟଣଙ୍କର ସେନାପତି ଏବଂ ପରମଭକ୍ତ । ତାଙ୍କର ଭକ୍ତମାନେ ଆଚାର୍ଯ୍ୟଙ୍କୁ କହିଲେ, ''ପ୍ରଭୋ ! ବିଶ୍ୱକ୍‌ସେନ୍ ଆମମାନଙ୍କର ଦେବତା । ସେ ଅତି ପୁଣ୍ୟପ୍ରଦ । ଆମେ ତାଙ୍କର ଭକ୍ତ ବୋଲି ଆମର ଯମଭୟ ନାହିଁ । ଆମର କାହାର ଦେହାନ୍ତ ହେଲେ ତାଙ୍କର ସୈନ୍ୟମାନେ ଆସି ଆମକୁ ବୈକୁଣ୍ଠକୁ ଘେନିଯିବେ ।'' ଆଚାର୍ଯ୍ୟ କହିଲେ, ''ଆପଣମାନେ ଏପରି କଥା କହି ଭୁଲ୍ କରୁଛନ୍ତି । ବିଶ୍ୱକ୍‌ସେନ୍ ନାରାୟଣଙ୍କର ଜଣେ ଭକ୍ତ । ବୈକୁଣ୍ଠରେ ନାରାୟଣଙ୍କର ଏହିପରି ବହୁ ଭକ୍ତ ଅଛନ୍ତି । କେବଳ ଭକ୍ତର ପୂଜା ହେଲେ ଭଗବାନଙ୍କର ପୂଜା ହେବ, କେତେବେଳେ ଜାଣନ୍ତି ? ଯେଉଁମାନେ ବୈକୁଣ୍ଠକୁ ଯିବାକୁ ଇଚ୍ଛା କରିବେ, ସେମାନେ ସଗୁଣ ଈଶ୍ୱରଙ୍କ ଉପାସନା କରିବା ଉଚିତ୍ । ଯଦି ସାକ୍ଷାତ୍‌ଭାବରେ

ମୁକ୍ତି ଚାହଁ, ତେବେ ଗୁରୁ ଓ ଶାସ୍ତ୍ରବାକ୍ୟ ଅନୁସାରେ ଅଖଣ୍ଡ, ଅଦ୍ୱିତୀୟ ବ୍ରହ୍ମଙ୍କ ସହିତ ନିଜ ଆତ୍ମାର ଅଭେଦ ଧ୍ୟାନ କରିବା ଆବଶ୍ୟକ ।

ବ୍ରାହ୍ମଣମାନେ ଶଙ୍କରଙ୍କର ଏହିପରି ନାନା ଯୁକ୍ତିପୂର୍ଣ୍ଣ କଥା ଶୁଣି ନିଜ ନିଜ ମତ ପରିତ୍ୟାଗପୂର୍ବକ ଶାସ୍ତ୍ରବିହିତ କର୍ମରେ ଅନୁରକ୍ତ ହେଲେ ।

ଅନନ୍ତର ଆଚାର୍ଯ୍ୟ ଆନ୍ଧ୍ର ଦେଶ ଭ୍ରମଣ ସମାପ୍ତ କରି ପୁରୁଷୋତ୍ତମ ଧାମ ପଥଦେଇ ପରମରମଣୀୟ ମଗଧ ଦେଶରେ ଉପସ୍ଥିତ ହେଲେ । ଏଠାରେ ବହୁତ କୁବେର-ଉପାସକମାନଙ୍କର ବାସସ୍ଥାନ । ଆଚାର୍ଯ୍ୟଙ୍କ ଆଗମନବାର୍ତ୍ତା ଶ୍ରବଣ କରି କୁବେର ନାମକ ଜଣେ ପ୍ରଧାନ ବ୍ୟକ୍ତିଙ୍କୁ ସଙ୍ଗରେ ନେଇ ନବରତ୍ନଖଚିତ ସୁବର୍ଣ୍ଣପଦକଧାରୀ କେତେକ କୁବେର ଉପାସକ ଆଚାର୍ଯ୍ୟଙ୍କ ନିକଟରେ ଉପସ୍ଥିତ ହେଲେ । କୁବେର କହିଲେ ‘‘ପ୍ରଭୋ ! କୁବେର ସର୍ବବିଧ ଧନର ଅଧିପତି; ସୁତରାଂ ସେ ହେଉଛନ୍ତି ସମସ୍ତଙ୍କର ସ୍ୱାମୀ । ଆମେ ତାଙ୍କର ଭକ୍ତ । ତେଣୁ ଆମର ଦାରିଦ୍ର୍ୟ ଦୁଃଖ ହେବ ନାହିଁ । ଜଗତର ସମସ୍ତ କର୍ମ ଅର୍ଥମୂଳକ । ଆମର ପ୍ରଭୁ ଅର୍ଥଦ୍ୱାରା ବ୍ରହ୍ମାଦି ଦେବତାମାନଙ୍କୁ ପାଳନ କରନ୍ତି । ଯେଉଁମାନେ ଅନ୍ୟ ଦେବତାଙ୍କର ପୂଜା କରନ୍ତି, ସେମାନେ ମୂଢ଼ମତି ।’’

ଆଚାର୍ଯ୍ୟ ଏମାନଙ୍କ କଥା ଶୁଣି କହିଲେ, ‘‘କୁବେର ଧନାଧିପତି ହେଲେ ମଧ୍ୟ ଅର୍ଥଦ୍ୱାରା କେହି କେବେ ତୃପ୍ତ ହୋଇପାରନ୍ତି ନାହିଁ । ଯେଉଁ ବ୍ୟକ୍ତି ଲୋଭୀ, ତାର ଧର୍ମଲାଭ କରିବାର ସମ୍ଭାବନା ନାହିଁ । ଅର୍ଥ ହିଁ ଅନର୍ଥର ମୂଳ; ତେଣୁ ତାହା ତ୍ୟାଗ କରିବା ସର୍ବଥା ବିଧେୟ । ଯେଉଁ ବସ୍ତୁ ପ୍ରାପ୍ତ ହେଲେ ଆଉ ତାହାର ବିୟୋଗ ହୁଏ ନାହିଁ, ମୋକ୍ଷାର୍ଥୀମାନେ ତାହାର ସେବା କରନ୍ତି । ପୂର୍ବଜନ୍ମର ସୁକୃତିଫଳରେ ଲୋକେ ଧନୀ ହୁଅନ୍ତି । ପୂର୍ବ ସୁକୃତିହେତୁ ବ୍ରହ୍ମା ହିରଣ୍ୟଗର୍ଭ, ବିଷ୍ଣୁ ଲକ୍ଷ୍ମୀପତି, ଶିବ ହିରଣ୍ୟବୀର୍ଯ୍ୟ ଏବଂ ଇନ୍ଦ୍ର ସୁବର୍ଣ୍ଣାଚଳସ୍ଥିତ ହୋଇଅଛନ୍ତି । ତେଣୁ ଆପଣମାନେ ଚିହ୍ନସବୁ ପରିତ୍ୟାଗ କରି ନିୟମିତ ସନ୍ଧ୍ୟା-ବନ୍ଦନାଦି ଓ ସର୍ବଦା ଅଦ୍ୱୈତ ବୁଦ୍ଧିରେ ପଞ୍ଚଦେବତାଙ୍କର ପୂଜା କରନ୍ତୁ । ଏହା ଶୁଣି ସେମାନେ ତୃପ୍ତ ହୋଇ ଆଚାର୍ଯ୍ୟଙ୍କର ଶିଷ୍ୟତ୍ୱ ସ୍ୱୀକାର କଲେ ।

ଏହା ପରେ କେତେ ଜଣ ଇନ୍ଦ୍ର ଉପାସକ ଆସି ଆଚାର୍ଯ୍ୟଙ୍କ ସମୀପରେ ଉପସ୍ଥିତ ହେଲେ ଏବଂ କହିଲେ, ପ୍ରଭୋ ! ଆମ୍ଭେମାନେ ଇନ୍ଦ୍ରଙ୍କର ଉପାସକ ।

କାରଣ ଇନ୍ଦ୍ରହିଁ ସମସ୍ତଙ୍କର ଈଶ୍ୱର ଓ ଲୋକପାଳ । ଦେବତା, ଯକ୍ଷ ଓ ଗନ୍ଧର୍ବମାନେ ତାଙ୍କର ଉପାସନା କରନ୍ତି । ବେଦରେ ଏହାଙ୍କର ବହୁ ସ୍ତୁତି ଅଛି । ଏ ଯତିମାନଙ୍କର ଶିକ୍ଷକ । ତେଣୁ ସମସ୍ତେ ଏହାଙ୍କର ଉପାସନା କରିବା ଉଚିତ । ଇନ୍ଦ୍ର ହିଁ ବ୍ରହ୍ମ ଓ ଜଗତର କାରଣ ।''

ଆଚାର୍ଯ୍ୟ କହିଲେ, ''ନା, ଆପଣ ଏପରି କଥା କହିବା ଠିକ୍ ନୁହେଁ । ଇନ୍ଦ୍ର ଶବ୍ଦ ଯେତେବେଳେ ପୂର୍ଣ୍ଣ ସଚ୍ଚିଦାନନ୍ଦଙ୍କୁ ବୁଝାଏ, ସେତେବେଳେ ସେ ବଜ୍ରହସ୍ତ ଇନ୍ଦ୍ର ନୁହନ୍ତି । ବ୍ରହ୍ମାଙ୍କଠାରୁ ଇନ୍ଦ୍ର ଓ ଦେବମାନଙ୍କର ଉତ୍ପତ୍ତି । ଇନ୍ଦ୍ର ଜଗତର କାରଣ ହେଲେ ମଧ୍ୟ ଲୋକପାଳମାନେ ମଧ୍ୟ ଜଗତର କାରଣ ନ ହେବେ କାହିଁକି ? ବ୍ରହ୍ମାଙ୍କର ଏକ ଦିନ ଦୈବ ସହସ୍ର ଯୁଗ ସଙ୍ଗେ ସମାନ । ବ୍ରହ୍ମାଙ୍କ ଦିନକର ଚତୁର୍ଦ୍ଦଶ ଭାଗରୁ ଭାଗେମାତ୍ର ଇନ୍ଦ୍ର ଜୀବିତ ରହନ୍ତି । ସୁତରାଂ ଆପଣ ଅଦ୍ୱୈତବ୍ରହ୍ମଙ୍କ ଉପାସନା କରନ୍ତୁ ।'' ଏ କଥା ଶୁଣି ଇନ୍ଦ୍ରୋପାସକମାନେ ଆଚାର୍ଯ୍ୟଙ୍କ ଶିଷ୍ୟତ୍ୱ ସ୍ୱୀକାର କଲେ ।

ମାଗଧପୁର ପରିତ୍ୟାଗ କରି ଆଚାର୍ଯ୍ୟ ଶିଷ୍ୟମାନଙ୍କ ସହିତ କ୍ରମେ ଯମପ୍ରସ୍ଥପୁର ନାମକ ସ୍ଥାନରେ ଆସି ଉପସ୍ଥିତ ହେଲେ । ଏଠାରେ ବହୁ ଯମ ଉପାସକ ବାସ କରୁଥିଲେ । ଆଚାର୍ଯ୍ୟଙ୍କ ଆଗମନ ବାର୍ତ୍ତା ଶ୍ରବଣ କରି କେତେଜଣ ଯମ ଉପାସକ ଆଚାର୍ଯ୍ୟଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ, ''ଯତିବର ! ଆମେ ଯମଙ୍କର ଉପାସକ । ଆମ ମତରେ ଯମହିଁ ସୃଷ୍ଟି, ସ୍ଥିତ ଓ ଲୟର କର୍ତ୍ତା । ଯେଉଁମାନେ ଯମଙ୍କର ଉପାସନା କରନ୍ତି, ସେମାନଙ୍କର ମୁକ୍ତି ସୁନିଶ୍ଚିତ । 'ଯମାୟ ସୋମମ୍' ଇତ୍ୟାଦି ବେଦ-ବାକ୍ୟରେ ଯମଙ୍କୁ ଯଜ୍ଞଭୋକ୍ତା ବୋଲି କୁହାଯାଇଅଛି । ସୁତରାଂ ଯମ ହିଁ ପରଂବ୍ରହ୍ମ । ଯତ୍ ଶୁକ୍ଳଂ ତତ୍ ପରଂବ୍ରହ୍ମ—ଏହିପରି ଶ୍ରୁତିବାକ୍ୟ ହିଁ ଏହାର ପ୍ରମାଣ । ଏହାଙ୍କୁ ନିର୍ଗୁଣବ୍ରହ୍ମ ମଧ୍ୟ କୁହାଯାଏ । ଏହାଙ୍କଠାରୁ ମହତତ୍ତ୍ୱ ପ୍ରଭୃତି ଐଶ୍ୱର୍ଯ୍ୟ ସହିତ ରୁଦ୍ରାବତାର ଉତ୍ପନ୍ନ ହୋଇଅଛନ୍ତି । ଏହି ରୁଦ୍ରଙ୍କଠାରୁ ବିଷ୍ଣୁ ନାମଧେୟ କୃଷ୍ଣବର୍ଣ୍ଣ ଯମ ଉତ୍ପନ୍ନ ହେଲେ । ସେହି ବ୍ରହ୍ମଙ୍କଠାରୁ ଅଷ୍ଟଦିଗପାଳ, ସୂର୍ଯ୍ୟାଦିଙ୍କ ସହିତ ସମୁଦାୟ ଚରାଚର ଜଗତ୍ ଉତ୍ପନ୍ନ ହୋଇଅଛି । ଏହି ନାମ ହିଁ ସତ୍ୟସ୍ୱରୂପ; ଶୁଦ୍ଧ-ବୁଦ୍ଧ-ନିତ୍ୟ ମୁକ୍ତସ୍ୱଭାବ । ଏହାଙ୍କର ଅଂଶହିଁ ସଗୁଣ । ନିର୍ଗୁଣର ଉପାସନା ହୋଇପାରେ ନାହିଁବୋଲି ଆମେ ସର୍ବଦା କୃଷ୍ଣବର୍ଣ୍ଣ ଯମଙ୍କର ଉପାସନା କରିଥାଉଁ । ଏହି ସଗୁଣ ଯମଙ୍କର ଉପାସନା କଲେ ମୂଳ ଅଜ୍ଞାନ ନଷ୍ଟ

ହୁଏ । ଅଜ୍ଞାନ ନଷ୍ଟ ହେଲେ ଶୁକ୍ଳବର୍ଣ୍ଣ ଯମଙ୍କର ଯେଉଁ ରୂପାତୀତ ଆକୃତି ଓ ଯେଉଁ ମୋକ୍ଷ, ତାହା ଲାଭ ହୁଏ; ସୁତରାଂ ଆପଣମାନେ ଯମଙ୍କର ଉପାସନା କରନ୍ତୁ ।''

ଆଚାର୍ଯ୍ୟ କହିଲେ, ''ଆପଣମାନେ ଆମମାନଙ୍କୁ ଏପରି ସ୍ମୃତିବିରୋଧୀ କଥା କହିବା ଉଚିତ ହେଉ ନାହିଁ । ଆପଣମାନେ କଠୋପନିଷଦ୍ କଥା ସ୍ମରଣ କରନ୍ତୁ । ସେଥିରେ ଦେଖିବେ, ଯମ ବ୍ରହ୍ମ ନୁହନ୍ତି । ମାର୍କଣ୍ଡେୟ ପୁରାଣରେ ଭକ୍ତବତ୍ସଳ ମହାଦେବ ଯମଙ୍କୁ ପୀଡ଼ନ କରି ଭକ୍ତଙ୍କୁ ରକ୍ଷା କରିଥିଲେ । ଶିବରାତ୍ରି ଜାଗରଣର ପୁଣ୍ୟଫଳସ୍ୱରୂପ ସୁନ୍ଦର ନାମକ ବ୍ୟକ୍ତିକୁ ଯମଦୂତମାନେ ନେଇପାରି ନାହାନ୍ତି । ଅଜାମିଳ ନାରାୟଣ ନାମ ନେବାରୁ ଯମଦୂତମାନେ ବିଷ୍ଣୁଦୂତଙ୍କ ଦ୍ୱାରା ପରାସ୍ତ ହୋଇଛନ୍ତି । ତେଣୁ ଯମ ବ୍ରହ୍ମ ନୁହନ୍ତି । ଚିହ୍ନାଦି ଧାରଣ ମୁକ୍ତିର ହେତୁ ନୁହେଁ, ଜ୍ଞାନ ହିଁ ମୁକ୍ତିର ହେତୁ । ଚିତ୍ତଶୁଦ୍ଧି ବ୍ୟତୀତ ଜ୍ଞାନ ଦୃଢ଼ ହୁଏ ନାହିଁ । ସେଥିପାଇଁ ବେଦୋକ୍ତ କର୍ମାନୁଷ୍ଠାନ କରିବା ବିଧେୟ । ଚିତ୍ତଶୁଦ୍ଧି ସମ୍ପାଦନ ନିମିତ୍ତ ବ୍ରହ୍ମଜ୍ଞାନ ଦୃଢ଼ ହେଲେ ମୁକ୍ତି ସୁନିଶ୍ଚିତ ।'' ଏହିପରି ଯୁକ୍ତିପୂର୍ଣ୍ଣ ଆଲୋଚନା ପରେ ଯମ-ଉପାସକମାନେ ଅଦ୍ୱୈତ ନିଷ୍ଠାସହକାରେ ପଞ୍ଚଦେବତା ପୂଜା ଓ ପଞ୍ଚମହାଯଜ୍ଞପରାୟଣ ହେଲେ ।

ଯମପ୍ରସ୍ଥପୁର ପରିତ୍ୟାଗ କରି ଆଚାର୍ଯ୍ୟ ଶଙ୍କର ପ୍ରୟାଗରେ ଉପସ୍ଥିତ ହେଲେ । ସଙ୍ଗରେ ସହସ୍ରାଧିକ ଶିଷ୍ୟ । ଏମାନେ ତ୍ରିବେଣୀସଙ୍ଗମସ୍ଥ ଉନ୍ମୁକ୍ତ ସ୍ଥାନରେ ଅବସ୍ଥାନ କଲେ । ନଗରବାସୀମାନଙ୍କ ଦୃଷ୍ଟି ତାଙ୍କ ଉପରେ ପତିତ ହେବାରୁ ଦଳ ଦଳ ହୋଇ ବିଚାରପ୍ରାର୍ଥୀ ଆଚାର୍ଯ୍ୟଙ୍କ ସମୀପରେ ଉପସ୍ଥିତ ହେଲେ ।

ଦିନେ ନିରାଲମ୍ବ ନାମକ ଜଣେ ଶୂନ୍ୟବାଦୀ ତାଙ୍କୁ ପରୀକ୍ଷା କରିବା ନିମିତ୍ତ ତାଙ୍କ ସମୀପରେ ଉପସ୍ଥିତ ହେଲେ । ସେ ଆଚାର୍ଯ୍ୟଙ୍କୁ ଉପହାସ କରି କହିଲେ, ''ଯତିଶ୍ରେଷ୍ଠ ! ମୁଁ ଏହି ବାଟେ ଯିବାବେଳେ ଗୋଟିଏ ବନ୍ଧ୍ୟାପୁତ୍ର ମୃଗତୃଷ୍ଣା ଜଳରେ ସ୍ନାନ କରି ଆକାଶ-କୁସୁମର ମାଲ୍ୟ ପରିଧାନପୂର୍ବକ ଶଶଶୃଙ୍ଗର ଧନୁଧାରଣ କରି ଗମନ କରୁଥିବାର ଦେଖିଲି । ତାଙ୍କୁ ପ୍ରଣାମ କରି ମୁଁ ଆପଣଙ୍କ ନିକଟକୁ ଆସିଅଛି ।''

ଆଚାର୍ଯ୍ୟ କହିଲେ, ''ପଣ୍ଡିତପ୍ରବର ! ଆପଣଙ୍କ ନାମ ?'' ନିରାଲମ୍ବ ଦେଖିଲେ ଆଚାର୍ଯ୍ୟ ଉପହାସରେ ବିରକ୍ତ ହୋଇନାହାନ୍ତି । ତେଣୁ ସେ

ବିନୟସହକାରେ କହିଲେ, ''ପ୍ରଭୋ ! ମୋର ନାମ ନରାଲମ୍ବ, ମୋ ପିତାଙ୍କ ନାମ କୃପ୍ତ । ସେ ଆମ ମତର ବକ୍ତା ।''

ଆଚାର୍ଯ୍ୟ କହିଲେ, ''ବୁଝୁଛି, ଆପଣ ପ୍ରମାଣ କରିବାକୁ ଚାହାନ୍ତି ଯେ ସମସ୍ତଙ୍କ ମୂଳରେ ଶୂନ୍ୟ । ଶୂନ୍ୟହି ସମସ୍ତଙ୍କ ସ୍ୱରୂପ । ଶୂନ୍ୟ ପଦାର୍ଥରେ ବ୍ରହ୍ମଭାବ କେବେହେଲେ ରହିପାରେ ନାହିଁ । 'ତମେବ ଭାନ୍ତମ୍ ଅନୁଭାତି ସର୍ବମ୍' ଅର୍ଥାତ୍ ତାଙ୍କରି ଜ୍ୟୋତିଃରେ ସମସ୍ତ ପ୍ରକାଶମୟ । ଏହି ବେଦବଚନଦ୍ୱାରା ସମସ୍ତ ମୂଳରେ ଏକ ସ୍ୱପ୍ରକାଶ ବସ୍ତୁ ବିଦ୍ୟମାନ ବୋଲି ପ୍ରମାଣିତ ହେଉଅଛି । ତାହା କେବେ ଶୂନ୍ୟ ହୋଇ ନ ପାରେ । ତେଣୁ ଆପଣମାନେ ଦୁର୍ବୁଦ୍ଧି ତ୍ୟାଗକରି ଅଦ୍ୱୈତ ମତ ଗ୍ରହଣ କରନ୍ତୁ ।''

ନିରାଲମ୍ବ କହିଲେ, ''ମହାତ୍ମନ୍ ! ବେଦରେ ଅଛି 'ଖଂ ବ୍ରହ୍ମ' ଅର୍ଥାତ୍ ଆକାଶ ହିଁ ବ୍ରହ୍ମ । ଆକାଶ ହିଁ ସର୍ବଭୂତ ଅପେକ୍ଷା ପ୍ରଧାନ । ଆକାଶ ସମସ୍ତଙ୍କର ଆଶ୍ରୟ । ସମସ୍ତ ବସ୍ତୁ ଆକାଶରେ ଲୟପ୍ରାପ୍ତ ହୁଏ । ବ୍ରହ୍ମସୂତ୍ରରେ ଅଛି 'ଆକାଶସ୍ତୁ ଲିଙ୍ଗାତ୍; ଅର୍ଥାତ୍ ତାଙ୍କର ଲିଙ୍ଗ ଆକାଶ । ଅତଏବ ଆକାଶ ହିଁ ବ୍ରହ୍ମ । ସୁତରାଂ ଆପଣଙ୍କ ଅଭିପ୍ରେତ ବ୍ରହ୍ମ, ବେଦର ଅଭିପ୍ରେତ ବ୍ରହ୍ମ ନୁହଁନ୍ତି ।''

ଆଚାର୍ଯ୍ୟ କହିଲେ, ''ଶୁଣନ୍ତୁ, ଆକାଶ ସଗୁଣ ବସ୍ତୁ । ଶବ୍ଦ ଏହାର ଗୁଣ । ତେଣୁ ଆକାଶ ବ୍ରହ୍ମ ନୁହନ୍ତି । କାରଣ ବ୍ରହ୍ମ ନିର୍ଗୁଣ, ପବନକୁ ମଧ୍ୟ ବ୍ରହ୍ମ କୁହାଯିବ ନାହିଁ । କାରଣ ବ୍ରହ୍ମ ଆକାଶ ଅପେକ୍ଷା ପ୍ରଧାନ । ବ୍ରହ୍ମରୁ ଆକାଶର ଉତ୍ପତ୍ତି । ବ୍ରହ୍ମସୂତ୍ରରେ ଆକାଶକୁ ବ୍ରହ୍ମ କୁହାଯାଇନାହିଁ । ଆକାଶ ଶବ୍ଦରେ ବ୍ରହ୍ମଙ୍କୁ ବୁଝାଏ ବୋଲି ଉକ୍ତ ହୋଇଅଛି । ବ୍ରହ୍ମ ଏକ ଏବଂ ଅଦ୍ୱୈତ । ବେଦରେ ଯେ ଆକାଶକୁ ବ୍ରହ୍ମ ବୋଲି କୁହାଯାଇଛି, ତାହାର ତାତ୍ପର୍ଯ୍ୟ ହେଉଛି, 'ବ୍ରହ୍ମଙ୍କୁ ଆକାଶ ପରି ଅନନ୍ତ ଜ୍ଞାନ କରି ଉପାସନା କରିବା ବିଧେୟ । ତେଣୁ ହୃଦୟରେ ଏହି ଆକାଶରୂପୀ ବ୍ରହ୍ମଙ୍କ ଉପାସନା କରିବାକୁ ହିଁ ଉପଦେଶ ଦିଆଯାଇଅଛ ।'' ଏକଥା ଶୁଣି ଶୂନ୍ୟବାଦୀମାନେ ନିଜର ଭୁଲ ବୁଝିପାର ଆଚାର୍ଯ୍ୟଙ୍କର ଶିଷ୍ୟତ୍ୱ ସ୍ୱୀକାର କଲେ ।

ଆଉ ଦିନେ କାମକର୍ମା ନାମକ ଏକ ବ୍ୟକ୍ତି ଆଚାର୍ଯ୍ୟଙ୍କ ନିକଟକୁ ଆସି ପ୍ରଶ୍ନ କଲେ, ''ମହାତ୍ମନ୍ ! ଏହି ଜଗତରେ ଯେଉଁ ଲୋକସମୂହ ଅଛନ୍ତି ସେମାନଙ୍କର ସମଷ୍ଟିହିଁ ପରମେଶ୍ୱର । ମୁମୁକ୍ଷୁ ବ୍ୟକ୍ତିମାନେ ତାଙ୍କର ଉପାସନା କରିବା ଆବଶ୍ୟକ । ଚତୁର୍ଦ୍ଦଶ ଲୋକ ମଧ୍ୟରେ ସତ୍ୟଲୋକର ନାମ ମୁକ୍ତି । ସେହି ମୁକ୍ତିଲାଭ କରିବାକୁ

ଇଚ୍ଛା କଲେ ପରମେଶ୍ୱଙ୍କ ସେବା କରିବା କର୍ତ୍ତବ୍ୟ । ଆପଣମାନେ ତାଙ୍କର ସେବା କରନ୍ତି ।

ଆଚାର୍ଯ୍ୟ କହିଲେ—ଯେଉଁ ବସ୍ତୁ ମିଥ୍ୟା, ତାହା ଅନିତ୍ୟ । ତାହାର ସେବା କଲେ ସତ୍ୟସ୍ୱରୂପ ମୁକ୍ତିଲାଭ ହେବନାହିଁ । ଏହାପରେ କାମକର୍ମା ଆଚାର୍ଯ୍ୟଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ ।

ତତ୍ପରେ ସାଂଖ୍ୟମତାବଲମ୍ବୀ ପ୍ରକୃତିବାଦୀ ପଣ୍ଡିତ ଆଚାର୍ଯ୍ୟଙ୍କ ଦର୍ଶନାଭିଳାଷୀ ହୋଇ ପ୍ରଣାମପୂର୍ବକ କହିଲେ, ‘‘ଯତିରାଜ ! ଆମେ ପ୍ରକୃତିବାଦୀ ସାଂଖ୍ୟମତାବଲମ୍ବୀ । ଆମ ମତରେ ପ୍ରଧାନ ବା ପ୍ରକୃତି ହି ଜଗତର କାରଣ । ମନୁସଂହିତା ପ୍ରଭୃତିରେ ଆମ ଏହି ମତର ପ୍ରମାଣ ଅଛି । ଗୁଣର ସାମ୍ୟାବସ୍ଥା ହିଁ ଏହି ପ୍ରଧାନ ବା ପ୍ରକୃତି । ଏହାଙ୍କଠାରୁ ମହତତ୍ତ୍ୱାଦିର ଉତ୍ପତ୍ତି ହୋଇଅଛି । ସେ ଅବ୍ୟକ୍ତ ହୋଇ ମଧ ବ୍ୟକ୍ତ ହୁଅନ୍ତି । ଏହି ଜଗତ୍ ତାଙ୍କରି ବ୍ୟକ୍ତାବସ୍ଥା; ତେଣୁ ଏ ଜଗତରେ ପ୍ରକୃତି ହିଁ ଏକମାତ୍ର ପରାତ୍ପର । ଏହା ହିଁ ସ୍ମୃତିସମ୍ମତ; ତେଣୁ ସମସ୍ତଙ୍କର ଏହି ମତ ଗ୍ରହଣ କରିବା ଉଚିତ୍ ।’’

ଏହା ଶୁଣି ଆଚାର୍ଯ୍ୟ କହିଲେ, ‘‘ଏପରି କଥା ବେଦବିରୋଧୀ । କୌଣସି କଥା ବେଦବିରୋଧୀ ହେଲେ ତାହା ସପକ୍ଷରେ ସ୍ମୃତି ପ୍ରମାଣସ୍ୱରୂପ ଗ୍ରହଣୀୟ ନୁହେଁ । ବେଦରେ ଯେଉଁ ଜଗତ ସୃଷ୍ଟିର କଥା ଉଲ୍ଲେଖ ଅଛି, ସେଥିରେ ଈକ୍ଷଣପୂର୍ବକ ଜଗତ୍ ସୃଷ୍ଟି ହୋଇଛି ବୋଲି ବର୍ଣ୍ଣିତ ହୋଇଅଛି । ପ୍ରଧାନ ବା ପ୍ରକୃତି ଜଡ଼ସ୍ୱରୂପା । ଏହାଙ୍କର ଈକ୍ଷଣ ସମ୍ଭବପର ନୁହେଁ । ଈକ୍ଷଣକାର୍ଯ୍ୟ ଚେତନାଦ୍ୱାରା ସମ୍ଭବ । ସେହି ଚେତନ ହିଁ ସତ୍‌ସ୍ୱରୂପ ବ୍ରହ୍ମ । ସୁତରାଂ ବ୍ରହ୍ମହିଁ ଜଗତର କାରଣ, ପ୍ରକୃତି ନୁହେଁ । ଅତଏବ ଦୁର୍ବୁଦ୍ଧି ପରିତ୍ୟାଗ କରି ଆପଣମାନେ ବ୍ରହ୍ମନିଷ୍ଠ ହୁଅନ୍ତୁ ।’’ ଏହା ପରେ ସାଂଖ୍ୟମତାବଲମ୍ବୀମାନେ ଆଚାର୍ଯ୍ୟଙ୍କ ଶିଷ୍ୟତ୍ୱ ସ୍ୱୀକାର କଲେ ।

ଅନନ୍ତର କପିଳ ନାମକ ଜଣେ ଯୋଗୀ ଉପସ୍ଥିତ ହୋଇ କହିଲେ, ‘‘ମହାଶୟ ! ଆପଣ ଆମ ମତ ଗ୍ରହଣ କରନ୍ତୁ । ଦେଖନ୍ତୁ, ଏହା କିପରି ଯୁକ୍ତିଯୁକ୍ତ ଓ ପ୍ରମାଣିତ । ଆମ ମତରେ ଯୋଗରୁ ମୁକ୍ତି ଲାଭ ହୁଏ । ସେହି ଯୋଗାଭ୍ୟାସ ନିମିତ୍ତ ନିର୍ଜ୍ଜନ ସ୍ଥାନରେ ପବିତ୍ରଭାବରେ ସୁଖାସନରେ ଉପବେଶନ କରିବାକୁ ପଡ଼େ । ତେଣୁ ସନ୍ନ୍ୟାସ ଆଶ୍ରମ ଗ୍ରହଣ କରିବା ବିଧେୟ ଏବଂ ଇନ୍ଦ୍ରିୟମାନଙ୍କୁ

ନିରୋଧ କରିବା ପ୍ରୟୋଜନ । ଭକ୍ତିସହିତ ଗୁରୁଦେବଙ୍କୁ ପ୍ରଣାମ କରି ହୃଦୟପଦ୍ମକୁ ବିଶୁଦ୍ଧ ଚିନ୍ତାଦ୍ୱାରା ବିରଜ କରି ତନ୍ମଧ୍ୟରେ ଉମାସହାୟ ତ୍ରିଲୋଚନଙ୍କୁ ଧ୍ୟାନ କରିବାକୁ ହୁଏ । ଆଗମ ମଧ୍ୟରେ ଯଥାବିଧି ଜପବିଦ୍ୟା ଓ ଷଟ୍‌ଚକ୍ରଭେଦର ଉପଦେଶ ଅଛି । ଯେଉଁମାନେ ମୁକ୍ତିକାମୀ, ସେମାନେ ଏ ବିଷୟରେ ଯତ୍ନ କରିବା ବିଧେୟ ।''

ଆଚାର୍ଯ୍ୟ କହିଲେ, ''ହେ ଯୋଗବିତ୍ ପଣ୍ଡିତ ! ବେଦ ମଧ୍ୟରେ 'ଦହର' ନାମକ ବିଦ୍ୟାକୁ ମୋକ୍ଷର ହେତୁ ବୋଲି ନିର୍ଦ୍ଦେଶ କରାଯାଇଅଛି । ଆପଣଙ୍କ ଯୋଗ ମୋକ୍ଷର ହେତୁ ହୋଇପାରେ ନାହିଁ । ଅଜପା ବିଦ୍ୟାର ମୂଳମନ୍ତ୍ର ସୋଽହମ୍' ଏହି ଅର୍ଥ ଉଦ୍ଭବ ହୋଇଥାଏ । ଆପଣଙ୍କ ଯୋଗରେ ଜୀବ ଓ ଈଶ୍ୱରଭେଦ ବିଦ୍ୟମାନ । ସୁତରାଂ ଏତାଦୃଶ ଭେଦଜ୍ଞାନରେ ମୋକ୍ଷ ହୁଏ ନାହିଁ । ଯେଉଁ ବ୍ୟକ୍ତି ଆତ୍ମାକୁ ସର୍ବଭୂତରେ ଓ ସମସ୍ତ ବସ୍ତୁକୁ ଆତ୍ମା ମଧ୍ୟରେ ଦର୍ଶନ କରନ୍ତି, ସେ ମୋକ୍ଷ ଲାଭ କରନ୍ତି । ଅନ୍ୟ ଉପାୟରେ ବ୍ରହ୍ମ ଲାଭ ହୁଏ ନାହିଁ । ଅତଏବ ଜ୍ଞାନ ହିଁ ମୋକ୍ଷର ହେତୁ । ଏହି ଜ୍ଞାନ ବେଦାନ୍ତାର୍ଥ ଶ୍ରବଣ, ମନନ ଓ ନିଦିଧ୍ୟାସନର ସହାୟତାରେ ଲାଭ ହୁଏ । ଷଟ୍‌ଚକ୍ରାଦି ସାଧକ ଚିତ୍ତରେ ଏକାଗ୍ରତା ଆନୟନରେ ସହାୟକ ହୋଇଥାଏ ମାତ୍ର ।'' ଏହାଶୁଣି କପିଳ ଯୋଗୀ କହିଲେ, ''ଯତିରାଜ ! ଆପଣ ଅଜ୍ଞାନତାବଶତଃ ଏପରି କହୁଛନ୍ତି । ଶାସ୍ତ୍ରରେ ଅଛି, ଯେଉଁ ବ୍ରାହ୍ମଣ ଖେଚରୀ ମୁଦ୍ରା ନ ଜାଣି 'ମୁଁ ବ୍ରହ୍ମଜ୍ଞାନୀ' ବୋଲି କହନ୍ତି, ତାଙ୍କ ଜିହ୍ୱା ଛେଦନ କରିବା ଉଚିତ । ନଦୀତ୍ରୟର ସଂଯୋଗରୂପ ତ୍ରିକୂଟ, ଶୃଙ୍ଗାଟକ, ମନ୍ନୋନନି ଓ ଅଙ୍ଗୁଷ୍ଠ ମାତ୍ର ପୁରୁଷଙ୍କ ସ୍ଥାନ ଇତ୍ୟାଦି ନ ଜାଣି ଯେ 'ମୁଁ ବ୍ରହ୍ମ' ବୋଲି କହନ୍ତି ତାଙ୍କର ଜିହ୍ୱାଚ୍ଛେଦନରୂପ ଶାସ୍ତିର ବ୍ୟବସ୍ଥା ଶାସ୍ତ୍ରରେ ଉଲ୍ଲେଖ ଅଛି । ଯେ ଲୟବିତ୍ ଓ ଯେ ହଠବିତ୍ ସେ ସନାତନ ବ୍ରହ୍ମ ପ୍ରାପ୍ତହୁଅନ୍ତି । ଅନ୍ୟ ଲୋକେ କେବେହେଲେ ମୁକ୍ତିଲାଭକରି ପାରନ୍ତି ନାହିଁ । ଏହା ହିଁ ଶାସ୍ତ୍ରର ନିର୍ଦ୍ଦେଶ । ଅତଏବ ଆପଣ ଯଦି ପ୍ରକୃତ ମୋକ୍ଷାକାଙ୍‌କ୍ଷୀ, ତେବେ ଯୋଗର ଅନୁଷ୍ଠାନ କରନ୍ତୁ । ଆଚାର୍ଯ୍ୟ କହିଲେ, ''ଆପଣଙ୍କର ଏ ଜ୍ଞାନ ଭ୍ରାନ୍ତ । ଅଷ୍ଟାଙ୍ଗଯୋଗରେ ମୁକ୍ତି ହୁଏ ନାହିଁ; ତେବେ ସେଥିରେ ଚିତ୍ତଶୁଦ୍ଧି ଓ ଚିତ୍ତର ଏକାଗ୍ରତା ସାଧିତ ହୋଇଥାଏ ମାତ୍ର । ବେଦାନ୍ତର ଅଧିକାରୀ ହେଲେ ଅର୍ଥାତ୍ ସାଧନଚତୁଷ୍ଟୟସମ୍ପନ୍ନ ହୋଇ 'ତତ୍ତ୍ୱମସି' ବାକ୍ୟର ଅର୍ଥ ଶ୍ରବଣ, ମନନ ଓ ନିଦିଧ୍ୟାସନ କଲେ ମାନବ ମୁକ୍ତି ଲାଭ କରେ । ତେଣୁ ଆପଣ

ବୃଥା ବିପଥରେ ଘୂରି ବୁଲନ୍ତୁ ନାହିଁ ।'' ଅନନ୍ତର କପିଳ ଯୋଗୀ ଆଚାର୍ଯ୍ୟଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ ।

ଏହା ପରେ ଧୀରଶିବ ନାମକ ଜଣେ ପଣ୍ଡିତ ଆସି ଆଚାର୍ଯ୍ୟଙ୍କୁ କହିଲେ, ''ଯତିବର ! ଶାସ୍ତ୍ରରେ ପରମେଶ୍ୱରଙ୍କୁ ଜଗତ୍‌କର୍ତ୍ତା ବୋଲି କୁହାଯାଇଛି । ସେହି ପରମେଶ୍ୱର ସୃଷ୍ଟିକାଳରେ ନିତ୍ୟ କ୍ଷିତିଆଦି ଚତୁର୍ବିଧ ପରମାଣୁର ସଂଯୋଗ କରନ୍ତି ଓ ପ୍ରଳୟ-କାଳରେ ଉକ୍ତ ପରମାଣୁର ବିଭାଗ କରନ୍ତି । ସେଥିରେ ଜଗତର ସୃଷ୍ଟି-ସ୍ଥିତି-ଲୟ ସାଧିତ ହୁଏ । ଏହିପରି ଭାବରେ ପରମେଶ୍ୱର ଜଗତ୍ ସୃଷ୍ଟି କରି ନିତ୍ୟ-ପୂର୍ଣ୍ଣସ୍ୱରୂପରେ ଅବସ୍ଥାନ କରନ୍ତି । ସେହି ପରମେଶ୍ୱରଙ୍କ ଉପାସନା କଲେ ତାଙ୍କ କୃପାରୁ ଜ୍ଞାନର ଉଦୟ ହେବ । ଜ୍ଞାନ ଉଦୟ ହେଲେ ମୁକ୍ତିଲାଭ ସୁନିଶ୍ଚିତ ।''

ଏହା ଶୁଣି ଆଚାର୍ଯ୍ୟ କହିଲେ, ''ଆପଣ ଏପରି ବେଦବିରୋଧୀ କଥା କହିବା ଉଚିତ ନୁହେଁ । ଦେଖନ୍ତୁ, ବେଦ କହନ୍ତି ଯେ, ପରମେଶ୍ୱରଙ୍କ ଠାରୁ ଆକାଶାଦି ଭୂତପଞ୍ଚକର ଉତ୍ପତ୍ତି ହୋଇଅଛି । ତେଣୁ ପରମାଣୁନିଚୟ କିପରି ବା ନିତ୍ୟ ହେବେ ? ଏ ମତର ନିନ୍ଦା ମଧ୍ୟ ଯଥେଷ୍ଟ ଅଛି । ଗୌତମୀୟ ବିଦ୍ୟା ଅଧ୍ୟୟନ କଲେ ଶୃଗାଳଯୋନି ଲାଭହୁଏ । ତେଣୁ ଆପଣ ଏ ମତ ତ୍ୟାଗ କରି ଅଦ୍ୱୈତ ମତ ଗ୍ରହଣ କରନ୍ତୁ । ଏହି ପଥରେ କ୍ରମେ ଗୁରୁଭକ୍ତି ଯେତେ ପରିମାଣରେ ବୃଦ୍ଧି ପାଇବ, ଶୁଦ୍ଧ ଆତ୍ମଜ୍ଞାନ ସେତିକି ପରିମାଣରେ ଦୃଢ଼ ହେବ ଏବଂ ତାହା ଫଳରେ ଅଚିରେ ମୁକ୍ତିଲାଭ ହେବ ।'' ଏହାଶୁଣି ପରମାଣୁବାଦୀ ମତ ପରିବର୍ତ୍ତନ କରି ଆଚାର୍ଯ୍ୟଙ୍କ ଶିଷ୍ୟତ୍ୱ ସ୍ୱୀକାର କଲେ । ପ୍ରୟାଗରେ ପ୍ରଚାର କାର୍ଯ୍ୟ ଶେଷ କରି ଆଚାର୍ଯ୍ୟ କାଶୀଧାମରେ ଉପସ୍ଥିତ ହୋଇ ଯଥାବିଧି ବିଶ୍ୱେଶ୍ୱରଙ୍କ ପୂଜାର୍ଚ୍ଚନାଦି ସମାପନ କଲେ । ଏଠାରେ କେତେଜଣ କର୍ମବାଦୀ ଆସି ଆଚାର୍ଯ୍ୟଙ୍କୁ କହିଲେ, ''ପ୍ରଭୋ ! ଆପଣଙ୍କ ଅଦ୍ଭୁତ କୀର୍ତ୍ତି କଥା ଶ୍ରବଣ କରି ଆମେ ଆପଣଙ୍କୁ ଦର୍ଶନ କରିବାକୁ ଆସିଅଛୁ । ଆମେ କର୍ମବାଦୀ । ଏହି ସଂସାରର ସୃଷ୍ଟି-ସ୍ଥିତି-ଲୟ କେବଳ କର୍ମରୁ ହୋଇଅଛି । ଉତ୍ତମ କର୍ମ କଲେ ବ୍ରାହ୍ମଣାଦି ଉତ୍ତମ କୂଳରେ ଜନ୍ମ ହୁଅନ୍ତି ଓ ପାପକର୍ମ କଲେ ପାପଯୋନିରେ ଜନ୍ମ ହେବାକୁ ପଡ଼ିଥାଏ । ଜନକାଦି ମହାତ୍ମାଗଣ କେବଳ କର୍ମଦ୍ୱାରା ସିଦ୍ଧି ଲାଭ କରିଛନ୍ତି । ତେଣୁ ଯତ୍ନସହିତ କର୍ମାନୁଷ୍ଠାନ କରିବା କର୍ତ୍ତବ୍ୟ ।''

ଆଚାର୍ଯ୍ୟ କହିଲେ, ''ନା, ଏପରି କଥା କହିବା ଆପଣମାନଙ୍କର ଉଚିତ ହୋଇ ନାହିଁ । 'ଯସ୍ୟ ଏତତ୍ କର୍ମ' ଅର୍ଥାତ୍ ଯାହାଙ୍କର ଏହି କର୍ମ—ସୃଷ୍ଟିର ଏହି

ବାକ୍ୟଦ୍ୱାରା ଜଗତ୍ ବ୍ରହ୍ମଙ୍କର କାର୍ଯ୍ୟ ବୋଲି ସ୍ଥିର ହୋଇଅଛି । ତେଣୁ ସର୍ବଜ୍ଞ ଈଶ୍ୱର ହିଁ ଜଗତର କାରଣ; କର୍ମ କେବେହେଲେ ଜଗତର କାରଣ ହୋଇ ନ ପାରେ ।'' କର୍ମବାଦୀମାନେ ନିରୁତ୍ତର ହୋଇ ଆଚାର୍ଯ୍ୟଙ୍କର ଶିଷ୍ୟତ୍ୱ ସ୍ୱୀକାର କଲେ ।

ଏହା ପରେ କେବଳ ଗ୍ରହ-ଉପାସକମାନେ ଆଚାର୍ଯ୍ୟଙ୍କୁ ପ୍ରଶ୍ନ କରିବାରୁ ସେ କହିଲେ, ''ହଁ, ଗ୍ରହପୀଡ଼ା ଶାନ୍ତିନିମିତ୍ତ ଗ୍ରହସେବା ଆବଶ୍ୟକ ହୋଇପାରେ; କିନ୍ତୁ ମୁକ୍ତିନିମିତ୍ତ ଗ୍ରହପୂଜା ଆବଶ୍ୟକ ନୁହେଁ ।'' ଚୈତନ୍ୟବୋଧରେ ସତ୍‌ସ୍ୱରୂପ ବ୍ରହ୍ମଙ୍କ ଉପାସନା ବ୍ୟତୀତ ମୁକ୍ତି ସମ୍ଭବ ନୁହେଁ ।''

ତତ୍ପରେ ସମୟ ନାମକ ଜଣେ କାଳଜ୍ଞ କ୍ଷଣପକ ଆଚାର୍ଯ୍ୟଙ୍କୁ ପ୍ରଶ୍ନ କଲେ, ''ମହାଶୟ ! ଆମ ମତରେ କାଳ ହିଁ ବ୍ରହ୍ମ । ସେ ସମସ୍ତଙ୍କର କାରଣ । ମୁକ୍ତିନିମିତ୍ତ ତାଙ୍କୁ ଉପାସନା କରିବା କର୍ତ୍ତବ୍ୟ ।'' ଆଚାର୍ଯ୍ୟ କହିଲେ, ''ଦେଖନ୍ତୁ, କାଳ ବ୍ରହ୍ମ ନୁହେଁ; କାଳର ଜନ୍ମ ଅଛି । ଯାହାର ଉତ୍ପତ୍ତି ଅଛି, ସେ ଅନିତ୍ୟ; କେବଳ ବ୍ରହ୍ମ ହିଁ ନିତ୍ୟ ।'' ଏହା ଶୁଣି କାଳବାଦୀ ଆଚାର୍ଯ୍ୟଙ୍କର ଶିଷ୍ୟତ୍ୱ ସ୍ୱୀକାର କଲେ ।

କାଶୀଧାମ ପରିତ୍ୟାଗ କରି ଆଚାର୍ଯ୍ୟ ସୌରାଷ୍ଟ୍ର ଅଭିମୁଖରେ ଯାତ୍ରା କଲେ । କାଶୀଠାରୁ ସୌରାଷ୍ଟ୍ର ଯିବାକୁ ହେଲେ ପଥମଧ୍ୟରେ ମାଳବ ରାଜ୍ୟ ପଡ଼େ । ସେ ଅବନ୍ତୀ ରାଜ୍ୟର ରାଜଧାନୀ ଉଜ୍ଜୟିନୀରେ ଉପସ୍ଥିତ ହେଲେ । ଉଜ୍ଜୟିନୀ ପରେ ସେ ସୌରାଷ୍ଟ୍ରରେ ପଦାର୍ପଣ କଲେ । ଏହା ପରେ ସେ ସୋମନାଥତୀର୍ଥରେ ଉପନୀତ ହୋଇ ଶ୍ରୀକୃଷ୍ଣଙ୍କର ଦେହତ୍ୟାଗ ସ୍ଥାନ ଦର୍ଶନ କଲେ । ତତ୍ରତ୍ୟ ଅଧିବାସୀମାନଙ୍କ ମଧ୍ୟରେ ଅଦ୍ୱୈତ ମତ ପ୍ରଚାର କରି ସେ କ୍ରମେ ପ୍ରଭାସତୀର୍ଥରେ ଉପନୀତ ହେଲେ । ସେମାନେ ଅଦ୍ୱୈତ ସିଦ୍ଧାନ୍ତ ଅନୁସାରେ ଶ୍ରୀକୃଷ୍ଣଙ୍କ ପୂଜା ବିଧିରେ ସମ୍ମତ ହେଲେ । ଏଠାରୁ ଶଙ୍କର ପୁଷ୍କରତୀର୍ଥ, ସିନ୍ଧୁଦେଶ ଓ ଗାନ୍ଧାର ଦେଶକୁ ଯାତ୍ରାକଲେ । ତତ୍ପରେ ସେ ସିନ୍ଧୁନଦୀ ତୀରରେ ତୀର୍ଥଗ୍ରାମ ନଗରୀ ମଧ୍ୟଦେଇ ଉତ୍ତରାଭିମୁଖରେ ଗମନ କଲେ । ରାଜକୀୟ ବିପ୍ଳବହେତୁ ଯବନ, ପାରସିକ ଓ ଶକାଦି ବିଭିନ୍ନ ଜାତିର ନୃପତି ଏହି ସିନ୍ଧୁଦେଶକୁ ଅଭିଯାନ କରିଥିବା ଫଳରେ ସେ ଦେଶବାସୀ ଆତ୍ମରକ୍ଷାନିମିତ୍ତ ସର୍ବଦା ବିବ୍ରତ ଥିଲେ । ତଥାପି ସେମାନଙ୍କ ମଧ୍ୟରେ ଅଦ୍ୱୈତ ମତ ପ୍ରଚାର କରି ଆଚାର୍ଯ୍ୟ ଆଧୁନିକ ପେଶବାରରେ

ଉପସ୍ଥିତ ହେଲେ । ଏଠାରେ ବୌଦ୍ଧ ପ୍ରଭାବ ବିଶେଷ ପ୍ରବଳ ଥିବାର ସେ ଦର୍ଶନ କଲେ । କୌଣସି ବ୍ୟକ୍ତି ଆଚାର୍ଯ୍ୟଙ୍କ ନିକଟରେ ବିଚାର ନିମିତ୍ତ ଉପସ୍ଥିତ ହେଲେ ନାହିଁ । ତତ୍ପରେ ବାହ୍ଲିକବାସୀମାନେ ଆଚାର୍ଯ୍ୟଙ୍କୁ ନିମନ୍ତ୍ରଣ କଲେ । ସେଠାରେ ଅଦ୍ୱୈତ ମତପ୍ରଚାର କରିବା ଦେଖି ଜୈନମାନେ ଆଚାର୍ଯ୍ୟଙ୍କ ସହିତ ବିଚାରପ୍ରାର୍ଥୀ ହେଲେ । ସେ ଜୈନମତର ନାନାବିଧ ଦୋଷ ପ୍ରଦର୍ଶନପୂର୍ବକ ଶେଷରେ କହିଲେ, "ଜ୍ଞାନସ୍ୱରୂପ ବ୍ରହ୍ମଙ୍କଠାରେ ଅନାଦି ଅଜ୍ଞାନ ଆଶ୍ରିତଭାବରେ ଅବସ୍ଥାନ କରେ । ଅଜ୍ଞାନରୁ ଉତ୍ପନ୍ନ ଅନ୍ତଃକରଣର ବ୍ରହ୍ମାକାରାନୁବୃତ୍ତି ହେଲେ ଅଜ୍ଞାନ ବିନଷ୍ଟ ହୁଏ । ବ୍ରହ୍ମ ଅଜ୍ଞାନର ବିରୋଧୀ ନୁହେଁ । 'ମୁଁ ବ୍ରହ୍ମ' ଏହି ଜ୍ଞାନ ଅଜ୍ଞାନର ବିରୋଧୀ । ଏହା ହିଁ ଅଜ୍ଞାନର ସ୍ୱଭାବ । ସ୍ୱଭାବ ଉପରେ ଆଉ ପ୍ରଶ୍ନ ହୁଏ ନାହିଁ ।"

ଜୈନ ପଣ୍ଡିତମାନେ ମ୍ରିୟମାଣ ହୋଇପଡ଼ିଲେ ଓ ବିମର୍ଷ ହୋଇ ବିଦାୟ ଗ୍ରହଣ କଲେ । ବାହ୍ଲିକ ଦେଶରେ ଜୈନ ଓ ବୌଦ୍ଧମାନଙ୍କ ମଧ୍ୟରେ ପ୍ରବଳ ବିରୋଧ ଥିଲା । ସେମାନେ ଜୈନମାନଙ୍କ ପରାଜୟ ବାର୍ତ୍ତା ଶୁଣି ଆଚାର୍ଯ୍ୟଙ୍କ ସହିତ ବିଚାର ନିମିତ୍ତ ପ୍ରାର୍ଥୀ ହେଲେ, କାରଣ ଆଚାର୍ଯ୍ୟଙ୍କୁ ଜୟ କରିପାରିଲେ ସେମାନଙ୍କ ପ୍ରଭାବ ସୁପ୍ରତିଷ୍ଠିତ ହେବ ।

ବୌଦ୍ଧ ପଣ୍ଡିତ କହିଲେ, "ଯତିବର ! ଆପଣ ଯେଉଁ ମତପ୍ରଚାର କରୁଛନ୍ତି, ତାହା ଆମ ମତର ଛାୟାବିଶେଷ । ଆପଣଙ୍କ ପ୍ରତିପାଦିତ ବ୍ରହ୍ମ ଓ ଆମର ଶୂନ୍ୟବାଦ ମଧ୍ୟରେ ତ କୌଣସି ପ୍ରଭେଦ ନାହିଁ ! ଆପଣଙ୍କ ବ୍ରହ୍ମ ଯେପରି ନିର୍ଗୁଣ-ନିର୍ବିଶେଷ, ବାକ୍ୟମନାତୀତ ଅଥଚ ସମସ୍ତଙ୍କର ମୂଳ, ଆମମାନଙ୍କର ଶୂନ୍ୟବାଦ ମଧ୍ୟ ତାହା । ଆପଣଙ୍କ ମତରେ ସମସ୍ତ ବସ୍ତୁର ସତ୍ତା ହିଁ ବ୍ରହ୍ମ । ଆମ ମତରେ ସମସ୍ତ ବସ୍ତୁର ଯାହା ସ୍ୱରୂପ ତାହା ଶୂନ୍ୟ । ଆପଣ ଯେପରି ବ୍ରହ୍ମଙ୍କର ସତ୍ତା ସ୍ୱୀକାର କରନ୍ତି ନାହିଁ, ଆମେ ମଧ୍ୟ ସେହପରି ଶୂନ୍ୟର ସତ୍ତା ସ୍ୱୀକାର କରୁନାହିଁ । ସୁତରାଂ ଆପଣ ଯେ କେବଳ ଆମରି ମତ ପ୍ରଚାର କରୁଛନ୍ତି, ଏହା ହିଁ ସ୍ୱୀକାର କରିବାକୁ ହେବ ।"

ଆଚାର୍ଯ୍ୟ କହିଲେ, "ଆପଣମାନଙ୍କ ଶୂନ୍ୟବାଦ ଆମର ବ୍ରହ୍ମବାଦ ନୁହେଁ । କାରଣ ଆପଣମାନେ ନିରଧିଷ୍ଠାନ ଭ୍ରମ ସ୍ୱୀକାର କରନ୍ତି । ରଜ୍ଜୁ ନାହିଁ, ସର୍ପ ନାହିଁ, ତଥାପି ଭ୍ରମ କିପରି ହେବ ? ଆମେ କହୁ ଯେ, ସର୍ପ ନ ଥିଲେ ମଧ୍ୟ କେବଳ ରଜ୍ଜୁଥିଲେ ଓ ସର୍ପଜ୍ଞାନ ଥିଲେ ସର୍ପ ଭ୍ରମ ହୁଏ । କିନ୍ତୁ ଅଧିଷ୍ଠାନସ୍ୱରୂପ ରଜ୍ଜୁ ନ

ଥିଲେ ସର୍ପ ଭ୍ରମ ହୁଏ ନାହିଁ । ଆମ ବ୍ରହ୍ମର ସତ୍ତା ନାହିଁ ସତ, କିନ୍ତୁ ତାହା ତ ସତ୍‌ସ୍ୱରୂପ । ଆପଣମାନେ ତ ଶୂନ୍ୟକୁ ସତ୍‌ସ୍ୱରୂପ କହନ୍ତି ନାହିଁ; ସୁତରାଂ ଆପଣଙ୍କ ମତସହିତ ଆମ ମତର ସାମଞ୍ଜସ୍ୟ କେଉଁଠି ?'' ବୌଦ୍ଧ ପଣ୍ଡିତ କହିଲେ, ''ଶୂନ୍ୟକୁ କେବେହେଲେ ସତ୍‌ସ୍ୱରୂପ କୁହାଯାଇ ପାରିବ ନାହିଁ; କାରଣ ଏହା କିଛି ନୁହେଁ । ଏହି ଯେଉଁ ଘଟ ଦେଖାଯାଉଛି, ଏହାର ଉତ୍ପତ୍ତି ପୂର୍ବରେ ନ ଥିଲା । ତେଣୁ ଉତ୍ପତ୍ତି ପୂର୍ବରୁ ଅସତ୍ ଅର୍ଥାତ୍ ଶୂନ୍ୟ ସ୍ୱରୂପ ବିଦ୍ୟମାନଥିଲା; ଭାଙ୍ଗିଗଲେ ଏହା ରହିବ ନାହିଁ; ଶୂନ୍ୟରେ ବା ଅସତ୍‌ରେ ପରିଣତ ହୋଇଯିବ । ବର୍ତ୍ତମାନ ଯେ ରହିଛି ଏହା ମଧ୍ୟ ନୁହେଁ । କାରଣ ବର୍ତ୍ତମାନ ବୋଲି ତ କିଛି ନାହିଁ । ଯାହାକୁ ବର୍ତ୍ତମାନ ବୋଲି ଆପଣ କହୁଛନ୍ତି, କହିଲା ପରେ ତାହା ତ ଅତୀତ ଘଟଣା ହୋଇଗଲା । ସୁତରାଂ ବର୍ତ୍ତମାନ ନ ଥିବାରୁ ଘଟ ମଧ୍ୟ ଶୂନ୍ୟ ବା ଅସତ୍‌ସ୍ୱରୂପ । ସୁତରାଂ ଶୂନ୍ୟକୁ ସତ୍‌ସ୍ୱରୂପ କୁହାଯାଇ ପାରିବ ନାହିଁ । ସତ୍ କହିଲେ ବର୍ତ୍ତମାନ କାଳକୁ ହିଁ ବୁଝାଏ । ଅତଏବ ନିରଧିଷ୍ଠାନ ଭ୍ରମ ହିଁ ସ୍ୱୀକାର୍ଯ୍ୟ ଅର୍ଥାତ୍ ସମସ୍ତ ଶୂନ୍ୟ ଓ ଅସତ୍ ଏହି ମତ ହିଁ ସମୀଚୀନ ।''

ଆଚାର୍ଯ୍ୟ କହିଲେ, ''ନା, ଏପରି ମତ କେବେହେଲେ ଠିକ୍ ହୋଇ ନ ପାରେ । ଆପଣ ଯାହାକୁ ଅତୀତ ଓ ଭବିଷ୍ୟତ ବୋଲି କହୁଛନ୍ତି, ତାକୁ ବର୍ତ୍ତମାନ ସହିତ ତୁଳନା କରି କହୁଛନ୍ତି । ବର୍ତ୍ତମାନ ବୋଲି କିଛି ନ ଥିଲେ ତାହାର ଅତୀତ ବା ଭବିଷ୍ୟତ ଆସିବ କିପରି ? ତେଣୁ ବର୍ତ୍ତମାନକୁ ସ୍ୱୀକାର କରି ପୁଣି ସେହି ବର୍ତ୍ତମାନକୁ ଶୂନ୍ୟ ବୋଲି କହିବାଦ୍ୱାରା ଆପଣମାନେ ବିରୁଦ୍ଧ କଥା କହୁଛନ୍ତି; ସୁତରାଂ ଏ ଯୁକ୍ତି ଅଗ୍ରାହ୍ୟ । ଯାହାର ଉତ୍ପତ୍ତି ଓ ନାଶ ଅଛି, ତାହା ମୂଳରେ ଗୋଟିଏ ସ୍ଥିର ବସ୍ତୁ ଥିବା ଆବଶ୍ୟକ । ଘଟର ଉତ୍ପତ୍ତି ପୂର୍ବରୁ ଓ ଘଟର ବିନାଶ ପରେ ମୃତ୍ତିକାରୂପକ ସ୍ଥିର ବସ୍ତୁ ବିଦ୍ୟମାନ ଥାଏ । ଅତଏବ ଯେଉଁ ବିଜ୍ଞାନର ଉତ୍ପତ୍ତି ଓ ବିନାଶ ହେଉଅଛି, ତାହାର ମୂଳସ୍ୱରୂପ ଗୋଟିଏ ସ୍ଥିର ବିଜ୍ଞାନବସ୍ତୁକୁ ମଧ୍ୟ ସ୍ୱୀକାର କରିବାକୁ ହେବ; ନଚେତ୍ ଏ ଧାରାର ସାକ୍ଷୀ ବା ଦ୍ରଷ୍ଟା କିଏ ହେବ ? ବ୍ୟକ୍ତ ବିଜ୍ଞାନର ମୂଳ ଯଦି ଅବ୍ୟକ୍ତ ବିଜ୍ଞାନଧାରା ହୁଏ, ତେବେ ତାହାର ଜଣେ ସାକ୍ଷ ସ୍ଥିର-ବିଜ୍ଞାନ ଆବଶ୍ୟକ । ତେଣୁ କ୍ଷଣିକ ବିଜ୍ଞାନବାଦ ମୂଳରେ ସ୍ଥିର ବିଜ୍ଞାନବାଦ ଅବଶ୍ୟ ସ୍ୱୀକାର୍ଯ୍ୟ । ଏଥିପାଇଁ ଆପଣମାନେ ବ୍ରହ୍ମବାଦକୁ ବିକୃତ କରି ପ୍ରଚାର କରୁଛନ୍ତି । ଆଉ ମଧ୍ୟ ଆପଣମାନେ ଯାହାକୁ କ୍ଷଣିକ କହୁଛନ୍ତି, ତାହାର

ସ୍ଥିତିକ୍ଷଣକୁ ମଧ୍ୟ ସ୍ୱୀକାର କରି କହୁଛନ୍ତି । ସ୍ଥିତିକ୍ଷଣ ନ ଥିଲେ କାହାର କ୍ଷଣିକତ୍ୱ କୁହାଯିବ ? ଉତ୍ପତ୍ତି ପରେ ଯଦି ନାଶ ସ୍ୱୀକାର କରାଯାଏ, ତାହାହେଲେ ଉତ୍ପତ୍ତିକ୍ଷଣ ଓ ନାଶକ୍ଷଣ ମଧ୍ୟବର୍ତ୍ତୀ ଉତ୍ପତ୍ତି ନାଶଶୂନ୍ୟ ଗୋଟିଏ କ୍ଷଣର ସ୍ୱୀକାର କରିବା ଆବଶ୍ୟକ । ଏହାକୁ ସ୍ଥିତିକ୍ଷଣ କହନ୍ତି । ଏହା ସ୍ୱୀକାର ନ କଲେ ଉତ୍ପତ୍ତି ଓ ନାଶ ଏକତ୍ର ରହିଯିବ । ତେଣୁ ଉତ୍ପତ୍ତି ସମ୍ଭବ ନୁହେଁ । ଉଭୟ କ୍ଷଣର ଜଣେ ସାକ୍ଷୀ ଥିବା ଆବଶ୍ୟକ । ସୁତରାଂ ଯାବତୀୟ ବସ୍ତୁ ନିୟତ ପରିବର୍ତ୍ତନଶୀଳ ବୋଲି ଏବଂ ସେଥିରେ ଉତ୍ପତ୍ତି, ସ୍ଥିତି ଓ ନାଶଧର୍ମର ସମାବେଶ ଘଟୁଥିବାରୁ ଏହାକୁ ସତ୍ ବା ଅସତ୍ ବା ସଦସତ୍ ନ କହି ଅନିର୍ବଚନୀୟ କହିବା ହିଁ ଯୁକ୍ତିସଙ୍ଗତ ? ଏହାକୁ ଭ୍ରମ କହନ୍ତି । ଏହି ଭ୍ରମ ମୂଳରେ ସତ୍‌ସ୍ୱରୂପ ଅପରିବର୍ତ୍ତନଶୀଳ ବ୍ରହ୍ମ ବିଦ୍ୟାମାନ । ଏହା ହିଁ ବେଦାନ୍ତର ସିଦ୍ଧାନ୍ତ । ସୁତରାଂ ଆପଣଙ୍କ ମତ ସହିତ ଆମ ମତରେ ଅଭେଦ କିପରି ହେବ ?

''ତା'ପରେ ବିଜ୍ଞାନର କ୍ଷଣିକତ୍ୱ ବା ସର୍ବବସ୍ତୁର ଶୂନ୍ୟସ୍ୱରୂପ ଅଥବା ଆପଣଙ୍କ ନିର୍ବାଣସ୍ୱରୂପ ଏହା ଆପଣ କିପରି ଅନୁଭବ କଲେ ? ଏହା ତ ଅଲୌକିକ ବିଷୟ । ଅଲୌକିକ ବିଷୟରେ ନିତ୍ୟସିଦ୍ଧ ସର୍ବଜ୍ଞଙ୍କର ବାକ୍ୟ ହିଁ ପ୍ରମାଣ ହୁଏ । ଅଜ୍ଞ କେବେହେଲେ ତାଦୃଶ ସର୍ବଜ୍ଞକଥିତ ଉପଦେଶ ଭିନ୍ନ ସର୍ବଜ୍ଞ ହୁଅନ୍ତି ନାହିଁ । ସେହି ସର୍ବଜ୍ଞଙ୍କର ଉପଦେଶ ହିଁ ବେଦ । ଆପଣମାନେ ବେଦବିରୋଧୀ ମତ ପ୍ରଚାର କରୁଛନ୍ତି ବୋଲି ଆପଣଙ୍କ ମତ ଅପ୍ରାମାଣ୍ୟ । ଭଗବାନ୍ ବୁଦ୍ଧ ଏହି ବେଦ ଜ୍ଞାନ ସହାୟତାରେ ଜ୍ଞାନ ଲାଭ କରିଛନ୍ତି । ଆପଣମାନେ ତାଙ୍କର କଥା ବୁଝି ନ ପାରି ବିରୋଧ କରୁଛନ୍ତି ।'' ଏ କଥା ଶୁଣି ସେମାନେ ପରାଜୟ ସ୍ୱୀକାର କଲେ । ବାହ୍ଲିକ ଦେଶରେ ବେଦାନ୍ତ ମତ ପ୍ରଚାରିତ ହେଲା । ବୌଦ୍ଧମାନେ ସମ୍ପ୍ରଦାୟ ଅନୁସାରେ ବୌଦ୍ଧ ଥିଲେ ମଧ୍ୟ ଅନ୍ତରରେ ବେଦାନ୍ତବାଦୀ ହୋଇ ଉଠିଲେ ।

ବାହ୍ଲିକ ଦେଶ ଅତିକ୍ରମ କରି ଆଚାର୍ଯ୍ୟ ତିବ୍ବତର ପଶ୍ଚିମପ୍ରାନ୍ତରେ ଥିବା କମ୍ବୋଜ ଦେଶରେ ଆସି ଉପସ୍ଥିତ ହେଲେ । ଏଠାରେ ବୌଦ୍ଧତାନ୍ତ୍ରିକମାନଙ୍କ ପ୍ରତାପ ଅତିଶୟ ପ୍ରବଳ ଥିଲା । କେହି ଆଚାର୍ଯ୍ୟଙ୍କ ସହିତ ବିଚାରପ୍ରାର୍ଥୀ ହେଲେ ନାହିଁ । ଏହାପରେ ଆଚାର୍ଯ୍ୟ କାଶ୍ମୀରର ଉତ୍ତର-ପଶ୍ଚିମପ୍ରାନ୍ତରେ ଅବସ୍ଥିତ ଦରଦ ଦେଶରେ ଉପନୀତ ହେଲେ । ସେଠାରେ ବେଦାନ୍ତ ମତ ପ୍ରଚାର କରି ସେ

କାଶ୍ମୀରର ଶାରଦାପୀଠରେ ଉପସ୍ଥିତ ହେଲେ ।

ଦିନେ ଆଚାର୍ଯ୍ୟ କୃଷ୍ଣଗଙ୍ଗା ନଦୀତୀରରେ ଉପବିଷ୍ଟ ହୋଇଛନ୍ତି । ଏହିପରି ସମୟରେ ତାଙ୍କର କେତେଜଣ ଶିଷ୍ୟ ଗୋଟିଏ କୋଳାହଳ ଶୁଣି ସେଠାକୁ ଗଲେ । ସେମାନେ ସେଠାକୁ ଯାଇ ଶୁଣିଲେ ଯେ, କେତେକ ଲୋକ କହୁଛନ୍ତି— ‘‘ଆମେମାନେ ଆଚାର୍ଯ୍ୟଙ୍କ ମତ ଗ୍ରହଣ କରିପାରିବୁ ନାହିଁ । କାରଣ ସେ ତ ଏ ପର୍ଯ୍ୟନ୍ତ କାଶ୍ମୀର ଶାରଦାପୀଠର ପଣ୍ଡିତମଣ୍ଡଳୀଙ୍କୁ ପରାଜିତ କରିପାରିନାହାନ୍ତି । ସରସ୍ୱତୀ ଦେବୀ ତ ତାଙ୍କ ମତକୁ ନିର୍ଦ୍ଦୋଷ ବୋଲି ଘୋଷଣା କରି ନାହାନ୍ତି ? ଏହା ନ ହେଲେ ତାଙ୍କର ମତ କିପରି ଗ୍ରହଣ କରାଯିବ ?’’

ଶିଷ୍ୟମାନେ ଏ କଥା ଶୁଣି ଆଚାର୍ଯ୍ୟଙ୍କୁ ଶାରଦାପୀଠକୁ ଯିବାପାଇଁ ଅନୁରୋଧ କଲେ । ପରେଚ୍ଛାଜନିତ ପ୍ରାରବ୍ଧଭୋଗରେ ପ୍ରବୃତ୍ତ ହୋଇ ଆଚାର୍ଯ୍ୟ କହିଲେ, ‘‘ତୁମମାନଙ୍କର ଯେତେବେଳେ ଇଚ୍ଛା ହେଲାଣି ତେବେ ଚାଲ ଯିବା ।’’ ଆଚାର୍ଯ୍ୟ ସମ୍ମତ ହେବାରୁ ଶିଷ୍ୟମାନେ ଶାରଦାପୀଠକୁ ଯିବାର ଆୟୋଜନ କଲେ ଏବଂ କୃଷ୍ଣଗଙ୍ଗା ନଦୀର ତୀର ଅବଲମ୍ବନ କରି ଶାରଦାପୀଠରେ ଉପନୀତ ହେଲେ ।



# ଶାରଦାପୀଠରେ ଆଚାର୍ଯ୍ୟ

ଶାରଦାକ୍ଷେତ୍ରରେ ସ୍ୱଭାବତଃ ସୌନ୍ଦର୍ଯ୍ୟ ଓ ଶୈତ୍ୟ ଉଭୟ ସମଭାବରେ ବିରାଜିତ । ଚିରତୁଷାରାବୃତ ସାତ ଗୋଟି ଶୈଳଶୃଙ୍ଗ ଶାରଦାକ୍ଷେତ୍ରକୁ ବେଷ୍ଟନ କରି ରହିଛନ୍ତି । ମନ୍ଦିରର ପଶ୍ଚିମ ଦିଗରେ କୃଷ୍ଣଗଙ୍ଗା ସରଳଗତିରେ ଦକ୍ଷିଣାଭିମୁଖରେ ପ୍ରବାହିତା । ପୂର୍ବଦିଗରୁ ମଧୁବତୀ ନଦୀ ଆସି କୃଷ୍ଣଗଙ୍ଗା ସହିତ ମିଳିତ ହୋଇଅଛି । ଏହି ସଙ୍ଗମସ୍ଥଳର ପୂର୍ବୋତ୍ତର ଭାଗରେ କ୍ରମୋଚ୍ଚ ବିଶାଳ ସମତଳକ୍ଷେତ୍ରରେ ଶାରଦାକ୍ଷେତ୍ର ଅବସ୍ଥିତ । ଏହି ସମତଳକ୍ଷେତ୍ରର ବହୁ ସ୍ଥାନରେ ଅତି ନିର୍ମଳ ପବିତ୍ର ସଲିଳପୂର୍ଣ୍ଣ କ୍ଷୁଦ୍ର କ୍ଷୁଦ୍ର ଜଳକୁଣ୍ଡ ବା ପ୍ରସ୍ରବଣ ବିଦ୍ୟମାନ । ଏହି ସବୁ ଜଳକୁଣ୍ଡ ମଧ୍ୟରୁ ଗୋଟିଏ କୁଣ୍ଡରେ ଶାରଦାଦେବୀ ଅଧିଷ୍ଠିତା । ଏଠାରେ ଶାରଦାଦେବୀଙ୍କର ଏପରି ପ୍ରକଟଭାବ ବା ଦୟା ଯେ ସେ ପ୍ରାୟତଃ ଭକ୍ତବିଶେଷଙ୍କ ନିକଟରେ ସାକ୍ଷାତ୍ ଦର୍ଶନଦାନ କରିଥାଆନ୍ତି । ଅନେକ ସମୟରେ ତାଙ୍କର ଅଶରୀରୀ ବାଣୀ ମଧ୍ୟ ଆପାମର ସାଧାରଣ ଶ୍ରବଣ କରିଥାନ୍ତି । ଏ କୁଣ୍ଡର ଜଳ ପାନ କଲେ ଲୋକଙ୍କର ସର୍ବାଭୀଷ୍ଟ ସିଦ୍ଧ ହୁଏ । କଥିତ ଅଛି, ପ୍ରାଚୀନକାଳରେ ମହାମୁନି ବଶିଷ୍ଠଦେବଙ୍କ ଔରସରେ ଗୋଟିଏ ଚର୍ମାକୃତି କନ୍ୟାଗର୍ଭରେ ଶାଣ୍ଡିଲ୍ୟ ମୁନି ଜାତ ହୋଇଥିଲେ । ଏହିଠାରେ ତପସ୍ୟା କରି ସେ ସ୍ୱର୍ଣ୍ଣମୟ ଦେହ ଲାଭ କଲେ ଏବଂ ସେହି ଦିନଠାରୁ ବ୍ରାହ୍ମଣ ବୋଲି ପରିଗଣିତ ହେଲେ ।

ଏ ଘଟଣାର ବହୁକାଳ ପରେ ଶାରଦାକ୍ଷେତ୍ରରେ ମହୀଷକର୍ଣ୍ଣ ନାମକ ଜଣେ ରାଜାଙ୍କର ରାଜଧାନୀ ଥିଲା । ଏହି ରାଜା ଦକ୍ଷିଣଦେଶରେ କୋହ୍ଲାପୁର ନିକଟବର୍ତ୍ତୀ କୌଣସି ଏକ ସ୍ଥାନରେ ରାଜତ୍ୱ କରୁଥିଲେ । ତାଙ୍କର କର୍ଣ୍ଣ ମହିଷସଦୃଶ ଥିବାରୁ ସେ ମନେ ମନେ ଅତ୍ୟନ୍ତ ଦୁଃଖାନୁଭବ କରୁଥିଲେ । ଅବଶେଷରେ ଶାରଦାଦେବୀଙ୍କ ମାହାତ୍ମ୍ୟ ଶୁଣି ରାଜା ଏହି ପୀଠର ଜଳ ସ୍ପର୍ଶ କରିବାମାନସରେ କାଶ୍ମୀର ଆଗମନ କଲେ ।

ପ୍ରବାଦ ଅଛି ଯେ, କାଶ୍ମୀର ରାଜା ଏହାଙ୍କୁ ଶାରଦାଦେବୀଙ୍କ ଦର୍ଶନ ପାଇଁ ଅନୁମତି ପ୍ରଦାନ କରିଥିଲେ ମଧ୍ୟ ଏହାଙ୍କ ଉପରେ କାଶ୍ମୀର ରାଜକୁମାରୀଙ୍କର କୌଣସି କାରଣରୁ କ୍ରୋଧ ଜାତ ହେଲା । ତାହା ଫଳରେ କାଶ୍ମୀରରାଜ ମହିଷକର୍ଣ୍ଣଙ୍କ ଅନୁଚରବର୍ଗଙ୍କୁ ନିହତ କଲେ ଏବଂ ରାଜାଙ୍କୁ ମଧ୍ୟ ଖଣ୍ଡ ଖଣ୍ଡ କରି କାଟି

ପକାଇବାପାଇଁ ଆଦେଶ ଦେଲେ । ରାଜାଙ୍କ ଆଦେଶରେ ଭାଗ୍ୟକ୍ରମେ ମହିଷକର୍ଣ୍ଣଙ୍କ ଦେହ ଏପରିଭାବରେ ଖଣ୍ଡ ଖଣ୍ଡ କରାଗଲା ଯେ, ସେଥିରେ ତାଙ୍କର ପ୍ରାଣ ଗଲା ନାହିଁ । ସେ କାଶ୍ମୀର ରାଜାଙ୍କ ନିକଟରେ କାତର ହୋଇ ପ୍ରାର୍ଥନା କଲେ ଯେ, ସେ ଶାରଦାକୁଣ୍ଡର ଜଳ ସ୍ପର୍ଶକରି ଯେପରି ପ୍ରାଣତ୍ୟାଗ କରନ୍ତି । ମୁମୂର୍ଷର କରୁଣ ପ୍ରାର୍ଥନାରେ ରାଜାଙ୍କ ହୃଦୟରେ କରୁଣାର ସଞ୍ଚାର ହେଲା । ରାଜାଙ୍କ ଅନୁମତିରେ ମହିଷକର୍ଣ୍ଣଙ୍କର ଅବଶିଷ୍ଟ ଏକମାତ୍ର ଅନୁଚର ତାଙ୍କୁ ଗୋଟିଏ ଟୋକେଇରେ ପୂରାଇ ତାହା ମୁଣ୍ଡାଇ ଧୀରେ ଧୀରେ ଶାରଦାକ୍ଷେତ୍ରରେ ଉପସ୍ଥିତ ହେଲା । ଶାରଦାକୁଣ୍ଡ ନିକଟକୁ ଆସି ମହିଷକର୍ଣ୍ଣଙ୍କ ଅନୁଚରଟି ପଥଶ୍ରାନ୍ତ ହେତୁ ଟୋକେଇଟିକୁ ତଳେ ରଖିବାକୁ ସମର୍ଥ ନ ହୋଇ ଅସାବଧାନତାବଶତଃ କୁଣ୍ଡତୀରରେ ପ୍ରସ୍ତରମୟ ପ୍ରାଚୀର ଉପରେ ରଖିଦେଲା । ଏପରି ସମୟରେ ଗୋଟିଏ କାକ ମହିଷକର୍ଣ୍ଣଙ୍କର ଖଣ୍ଡିତ ଦେହର ରକ୍ତ ପାନ କରିବା ଉଦ୍ଦେଶ୍ୟରେ ଆସି ଟୋକେଇ ଉପରେ ବସିବାମାତ୍ରେ ରାଜା ଟୋକେଇ ସହିତ କୁଣ୍ଡମଧରେ ପଡ଼ିଗଲେ । ଦେବୀଙ୍କ ଅପାର ମହିମାରୁ ରାଜା ସେହି ଜଳ ସ୍ପର୍ଶ କଲାମାତ୍ରେ ତାଙ୍କର ଖଣ୍ଡବିଖଣ୍ଡିତ ଶରୀର କମନୀୟ ରୂପ ଧାରଣ କଲା । କିଛି ଦିନ ପରେ ସେହି ମହିଷକର୍ଣ୍ଣ ସେଠାରେ ରାଜା ହେଲେ । ତାଙ୍କର ଯତ୍ନରେ ଶାରଦାକ୍ଷେତ୍ରରେ ଗୋଟିଏ ଶ୍ରେଷ୍ଠ ବିଦ୍ୟାପୀଠ ସ୍ଥାପିତ ହେଲା । କାଶୀଧାମ ଯେପରି ବିଦ୍ୟାନିମିତ୍ତ ବିଖ୍ୟାତ, ଶାରଦାପୀଠ ମଧ ସେହିପରି ବିଦ୍ୟାନିମିତ୍ତ ଖ୍ୟାତି ଲାଭ କଲା । କ୍ରମେ ଭାରତର ସର୍ବଶ୍ରେଷ୍ଠ ପଣ୍ଡିତମାନଙ୍କର ଏହା ଆବାସସ୍ଥଳୀରେ ପରିଣତ ହେଲା ।

କେବଳ ସେତିକି ନୁହେଁ, ସବୁ ଦେଶରୁ ପଣ୍ଡିତମାନେ ଏଠାକୁ ଆସି ବିଦ୍ୟାର ପରୀକ୍ଷା ଦେଇ ଶାରଦାଦେବୀଙ୍କ ନିକଟରୁ ନାନାବିଧ ଉପାଧି ଲାଭ କରିବାକୁ ଲାଗିଲେ । ସେହିସବୁ ଉପାଧି ମଧରେ 'ସର୍ବଜ୍ଞ' ଉପାଧି ହିଁ ସର୍ବଶ୍ରେଷ୍ଠ ବିବେଚିତ ହେଲା ।

ଏହି ସର୍ବଜ୍ଞ ଉପାଧିଦାନର ରୀତି ବଡ଼ ଅପୂର୍ବ ଅନୁଷ୍ଠାନ । ଏହି ଉପାଧି ଲାଭ କରିବାକୁ ହେଲେ ମନ୍ଦିରଦ୍ୱାରରେ ଅବସ୍ଥିତ ଚାରିଶ୍ରେଣୀରେ ବିଭକ୍ତ ସର୍ବସମ୍ପ୍ରଦାୟର ପଣ୍ଡିତବର୍ଗଙ୍କ ଯଥେଚ୍ଛା ପ୍ରଶ୍ନର ଉତ୍ତର ଦେବାକୁ ହୁଏ । ପଣ୍ଡିତମାନଙ୍କ ସମ୍ମତି ପ୍ରାପ୍ତ ହେଲେ ମନ୍ଦିର ମଧକୁ ପ୍ରବେଶ କରିବାର ଅଧିକାର ଲାଭ ହୁଏ । ମନ୍ଦିର ମଧରେ ସରସ୍ୱତୀ ଦେବୀ ଅଲକ୍ଷ୍ୟରେ ରହି ତାଙ୍କୁ ସ୍ୱୟଂ ପ୍ରଶ୍ନ କରନ୍ତି ।

ସେହି ପ୍ରଶ୍ନର ଉତ୍ତର ଯଦି ସନ୍ତୋଷଜନକ ହୁଏ, ତେବେ ସରସ୍ୱତୀ ଦେବୀ ତାଙ୍କୁ ସର୍ବଜ୍ଞ ଉପାଧି ପ୍ରଦାନ କରନ୍ତି । ସେତେବେଳେ ତାଙ୍କୁ କୁଣ୍ଡର ଜଳ ସ୍ପର୍ଶ କରିବାକୁ ଅନୁମତି ଦିଆଯାଏ । ନଚେତ୍ ପୂଜକମାନଙ୍କ କର୍ତ୍ତୃକ ଆନୀତ ଜଳ ପାନକ କରି ଓ ଦୂରରୁ ଦର୍ଶନ କରି ସମସ୍ତେ ତୃପ୍ତି ଲାଭ କରନ୍ତି ।

ଆଚାର୍ଯ୍ୟ ଶଙ୍କର ଦିଗ୍‌ବିଜୟ କରି ଶିଷ୍ୟମାନଙ୍କସହିତ ଏଠାକୁ ଆସିଛନ୍ତି ଏବଂ ଶାରଦାଦେବୀଙ୍କ ସର୍ବୋଚ୍ଚ ଉପାଧି ଗ୍ରହଣପାଇଁ ଅଭିଳାଷୀ ହୋଇଛନ୍ତି । ଏହାଶୁଣି ଶାରଦାକ୍ଷେତ୍ରର ଯାବତୀୟ ପଣ୍ଡିତମଣ୍ଡଳୀ ମନ୍ଦିରରେ ସମବେତ ହେଲେ । ବିଚାର ଦିନ ନିର୍ଦ୍ଧାରିତ ହେଲା । ପଣ୍ଡିତମାନେ ମନ୍ଦିରର ଦ୍ୱାରଦେଶରେ ଉତ୍ତରୋତ୍ତର ଚାରିଗୋଟି ମଣ୍ଡପ ମଧ୍ୟରେ ଚାରିଗୋଟି ସଭା କରି ଉପବିଷ୍ଟ ହେଲେ ।

ଯଥା ସମୟରେ ଆଚାର୍ଯ୍ୟ ଶଙ୍କର ନିଜର ଦିଗବିଜୟ ବାହିନୀର ପଣ୍ଡିତମାନଙ୍କୁ ମନ୍ଦିରର ସମ୍ମୁଖରେ ଅବସ୍ଥାନ କରିବାକୁ ଇଙ୍ଗିତ ଦେଇ ପଦ୍ମପାଦ, ସୁରେଶ୍ୱର, ହସ୍ତାମଳକ ଏବଂ ଆନନ୍ଦଗିରି ପ୍ରମୁଖ କେତେଜଣ ପ୍ରଧାନ ଶିଷ୍ୟଙ୍କସହିତ ମନ୍ଦିରଦ୍ୱାରରେ ଉପନୀତ ହେଲେ । ମନ୍ଦିର ମଧ୍ୟକୁ ପ୍ରବେଶ କରିବାକୁ ଉଦ୍ୟତ ହେବାମାତ୍ରକେ ଭିତରୁ କେତେ ଜଣ ପଣ୍ଡିତ ଆସି ଆଚାର୍ଯ୍ୟଙ୍କୁ ସନ୍ନ୍ୟାସୀଗଣୋଚିତ ଯୋଗ୍ୟ ସମ୍ମାନ ପ୍ରଦର୍ଶନପୂର୍ବକ ପୁରୋବର୍ତ୍ତୀ ନ୍ୟାୟ ଓ ବୈଶେଷିକ ମତାବଲମ୍ବୀ ପଣ୍ଡିତମାନଙ୍କ ସଭାକୁ ଆହ୍ୱାନ କଲେ ।

ଆଚାର୍ଯ୍ୟ ଓ ତାଙ୍କ ଶିଷ୍ୟମାନଙ୍କର ମୁଣ୍ଡିତ ମସ୍ତକ, ଦଣ୍ଡ-କମଣ୍ଡଳୁ ଧାରଣ, ଗୈରିକ ବସନ ପରିଧାନ, ଜ୍ୟୋତିଃସ୍ନାନ, ଶାନ୍ତ-ଗମ୍ଭୀର-ପ୍ରସନ୍ନ ମୂର୍ତ୍ତି ଦେଖି ଉପସ୍ଥିତ ସୁଧିମଣ୍ଡଳୀଙ୍କ ମସ୍ତକ ସ୍ୱତଃ ଅବନତ ହୋଇଗଲା । ସେମାନଙ୍କର ଜିଗୀଷା ପ୍ରକୃତି କେଉଁଆଡ଼େ ପଳାୟନ କଲା । ସେମାନେ ମନେ ମନେ ଆଚାର୍ଯ୍ୟଙ୍କୁ ପ୍ରଣାମ କଲେ ।

ଆଚାର୍ଯ୍ୟ ଏହି ପଣ୍ଡିତମାନଙ୍କ ସଭାରେ ଶିଷ୍ୟମାନଙ୍କ ସହିତ ଆସନ ଗ୍ରହଣ କଲେ । 'କଣାଦ' ମତାବଲମ୍ବୀ ଜଣେ ପଣ୍ଡିତ କହିଲେ, ''ଯତିବର ! ଆପଣ ଯଦି ସର୍ବଜ୍ଞ, ତେବେ କହନ୍ତୁ, ବୈଶେଷିକ ମତରେ ପଦାର୍ଥତତ୍ତ୍ୱ କିପରି ?''

ଆଚାର୍ଯ୍ୟ ହସି ହସି କହିଲେ, ''ଦ୍ୱିତ୍ୱ ସଂଖ୍ୟା ହିଁ ଦ୍ୱ୍ୟଣୁର କାରଣ ।'' ଏହି ପଦାର୍ଥବିଭାଗର ଉଦ୍ଦେଶ୍ୟ ଆତ୍ମବିଷୟକ ମନନ; ଆତ୍ମଜ୍ଞାନରେ ହିଁ ମୁକ୍ତି—ଏହା ହେଉଛି କଣାଦମୁନିଙ୍କର ମତ ।'' ଏତିକିରେ ପଣ୍ଡିତମଣ୍ଡଳୀ ସନ୍ତୁଷ୍ଟ ହୋଇ ପ୍ରସନ୍ନମନରେ ମନ୍ଦିର ଭିତରେ ପ୍ରବେଶ କରିବାକୁ ଅନୁମତି ଦେଲେ ।

ତତ୍ପରେ ଗୌତମମତାବଲମ୍ବୀ ଜନୈକ ନୈୟାୟିକ ପଣ୍ଡିତ କହିଲେ, "ମହାତ୍ମନ୍ ! ମୋର ଗୋଟିଏ ପ୍ରଶ୍ନ ଅଛି । କହନ୍ତୁ, କଣାଦସମ୍ମତ ମୁକ୍ତି ସହିତ ଗୌତମସମ୍ମତ ମୁକ୍ତିର ପାର୍ଥକ୍ୟ କ'ଣ ଏବଂ ଆମମାନଙ୍କର ମଧ୍ୟରେ ପଦାର୍ଥତତ୍ତ୍ୱ ବା କିପରି ବିଦ୍ୟମାନ ?"

ଆଚାର୍ଯ୍ୟ କହିଲେ, "ପଣ୍ଡିତପ୍ରବର ! ନ୍ୟାୟ ମତରେ ଷୋଳ ଗୋଟି ପଦାର୍ଥ । ଏମାନଙ୍କ ସହିତ କଣାଦଙ୍କର ସପ୍ତ ପଦାର୍ଥର କୌଣସି ପ୍ରଭେଦ ନାହିଁ । ଏମାନଙ୍କ ମତରେ ମଧ୍ୟର ତତ୍ତ୍ୱଜ୍ଞାନରେ ମୁକ୍ତି ହୁଏ । ଗୋଟିଏ ଉଦ୍ଦେଶ୍ୟରେ ବିଭିନ୍ନ ରୁଚିସମ୍ପନ୍ନ ବ୍ୟକ୍ତିଙ୍କ ନିମିତ୍ତ ବିଭିନ୍ନ ପଥ ଉଦ୍ଦିଷ୍ଟ ମାତ୍ର । କଣାଦଙ୍କ ମୁକ୍ତିରେ ଆତ୍ମରୂପ ପଦାର୍ଥଟି ସମ୍ପୂର୍ଣ୍ଣଭାବରେ ବିଶେଷ ଗୁଣଶୂନ୍ୟ ହୁଏ ଏବଂ ପୁନରୁତ୍ପତ୍ତିର ସମ୍ଭାବନାରହିତ ହୋଇ ଆକାଶ ପରି ନିଷ୍କ୍ରିୟ ଓ ଅସଙ୍ଗଭାବରେ ଅବସ୍ଥାନ କରେ; କିନ୍ତୁ ଗୌତମଙ୍କ ମତରେ ମୁକ୍ତି ଜ୍ଞାନ ଓ ଆନନ୍ଦଶୂନ୍ୟ ହୁଏ ନାହିଁ ।"

ଏହା ଶୁଣି ଏହି ନୈୟାୟିକ ପଣ୍ଡିତ ଆଚାର୍ଯ୍ୟଙ୍କୁ ପ୍ରଣାମ କରି କହିଲେ, "ଯତିରାଜ ! ଯାଆନ୍ତୁ, ମନ୍ଦିର ମଧ୍ୟରେ ପ୍ରବେଶ କରନ୍ତୁ । ଆପଣ ଯେ ଯଥାର୍ଥରେ ଶାସ୍ତ୍ରର ରହସ୍ୟ ଅବଗତ, ଏଥିରେ ଆଉ ସନ୍ଦେହର ଅବକାଶ ନାହିଁ ।"

ଅନନ୍ତର ଆଚାର୍ଯ୍ୟ ଦ୍ୱିତୀୟ ଦ୍ୱାରରେ ପ୍ରବେଶ କଲେ । ଦ୍ୱିତୀୟ ଦ୍ୱାରରେ ସାଂଖ୍ୟ ଓ ପାତଞ୍ଜଳି ମତାବଲମ୍ବୀ ପଣ୍ଡିତମାନଙ୍କର ସଭା । ଆଚାର୍ଯ୍ୟ ଆସନ ଗ୍ରହଣ କରିବା ମାତ୍ରେ ଏମାନଙ୍କ ମଧ୍ୟରୁ ଜଣେ କହିଲେ, "ମହାତ୍ମନ୍ ! କହନ୍ତୁ, ମୂଳାପ୍ରକୃତି ସ୍ୱାଧୀନଭାବରେ ଜଗତର କାରଣ ନା ଚୈତନ୍ୟାଧିଷ୍ଠିତ ହୋଇ ଜଗତର କାରଣ ?"

ଆଚାର୍ଯ୍ୟ ହସି ହସି କହିଲେ, "ପଣ୍ଡିତପ୍ରବର ! ଏ ମତରେ ସ୍ୱାଧୀନା ମୂଳାପ୍ରକୃତି ହିଁ ଜଗତର କାରଣ ।" ଏହାପରେ ଉଭୟ ପକ୍ଷ ନାନା ପ୍ରଶ୍ନୋତ୍ତରରେ ପ୍ରବୃତ୍ତ ହେବା ପରେ ପଣ୍ଡିତମାନେ ସନ୍ତୁଷ୍ଟ ହୋଇ ଆଚାର୍ଯ୍ୟଙ୍କୁ ଭିତରେ ପ୍ରବେଶ କରିବାକୁ ଅନୁମତି ଦେଲେ ।

ତୃତୀୟ ଦ୍ୱାରରେ ଜୈନ ଓ ବୌଦ୍ଧମାନଙ୍କର ସଭା । ବୌଦ୍ଧମାନଙ୍କ ମଧ୍ୟରେ ମାଧ୍ୟମିକ, ଯୋଗାଚାର, ସୌତ୍ରାନ୍ତିକ ଓ ବୈଭାଷିକ—ଏହି ଚାରି ସମ୍ପ୍ରଦାୟ ବର୍ତ୍ତମାନ । ଜୈନମାନଙ୍କ ମଧ୍ୟରେ ଦିଗମ୍ବର ଓ ଶ୍ୱେତାମ୍ବର ଏ ଉଭୟ ସମ୍ପ୍ରଦାୟ ବିଦ୍ୟମାନ । ଆଚାର୍ଯ୍ୟଙ୍କୁ ଏମାନେ ଅଭ୍ୟର୍ଥନା ସହକାରେ ଆସନ ଦାନ କରି

କହିଲେ ''ଯତିବର ! କହନ୍ତୁ, ଆମର ଚାରି ସମ୍ପ୍ରଦାୟ ବୌଦ୍ଧମାନଙ୍କ ମଧ୍ୟରେ କେଉଁଠାରେ କି ବିଶେଷତ୍ୱ ଏବଂ ବେଦାନ୍ତ ମତସହିତ ଏହାର ସାମଞ୍ଜସ୍ୟ କେଉଁଠାରେ ?''

ଆଚାର୍ଯ୍ୟ ସ୍ୱଭାବସୁଲଭ ସହାସ୍ୟବଦନରେ କହିଲେ, ''ପଣ୍ଡିତପ୍ରବର ! ସୌତ୍ରାନ୍ତିକମାନଙ୍କ ମତରେ ସମୁଦାୟ ଜ୍ଞେୟବସ୍ତୁ ଅନୁମାନଗମନ୍ୟ । ବୈଭାଷିକମାନେ କହନ୍ତି ଯେ, ତାହା ପ୍ରତ୍ୟକ୍ଷଗ୍ରାହ୍ୟ । ତେବେ ଉଭୟ ମତରେ ସମସ୍ତ ପଦାର୍ଥ କ୍ଷଣଭଙ୍ଗୁର ଅର୍ଥାତ୍ କ୍ଷଣିକ । ବିଜ୍ଞାନବାଦୀ ଓ ଯୋଗାଚାର ସମ୍ପ୍ରଦାୟଙ୍କ ମତରେ ସମସ୍ତ ବସ୍ତୁ କେବଳ ବିଜ୍ଞାନ ମାତ୍ର । ତାହା ମଧ୍ୟ କ୍ଷଣିକ ଓ ବହୁ । ଶୂନ୍ୟବାଦୀ ମାଧ୍ୟମିକମାନଙ୍କ ମତରେ ସ୍ୱରୂପରେ ସମସ୍ତ ଶୂନ୍ୟ । ତଦ୍‌ଭିନ୍ନ ଅନ୍ୟ କିଛି ନାହିଁ । ବିଷୟ ସହିତ କ୍ଷଣିକ ବିଜ୍ଞାନଧାରାହେତୁ ଜଗତ୍ ପ୍ରତୀତ ହେଉଅଛି । ନିର୍ବାଣରେ ଏହା ମଧ୍ୟ ନାଶ ହୁଏ; ସୁତରାଂ ସମସ୍ତ ଶୂନ୍ୟ । ବେଦାନ୍ତ ମଧ୍ୟରେ ଏକ ନିତ୍ୟ ବିଜ୍ଞାନ ହିଁ ସତ୍ୟ, ଅନ୍ୟ ସମସ୍ତ ମିଥ୍ୟା । ଶୂନ୍ୟବାଦୀମାନେ ଯଦି ଶୂନ୍ୟକୁ ସତ୍‌ସ୍ୱରୂପ ଓ ବିଜ୍ଞାନବାଦୀମାନେ ଯଦି ବିଜ୍ଞାନକୁ ସ୍ଥିରବୋଲି ସ୍ୱୀକାର କରନ୍ତି, ତାହାହେଲେ ଆଉ ସେମାନଙ୍କ ମତସହିତ ବେଦାନ୍ତର କୌଣସି ପାର୍ଥକ୍ୟ ରହିବ ନାହିଁ । ବିଜ୍ଞାନବାଦୀ ପ୍ରଭୃତିଙ୍କ ମତରେ ଭ୍ରମରେ ଆତ୍ମଖ୍ୟାତି ହୁଏ, ଅର୍ଥାତ୍ ବୁଦ୍ଧିରୂପ ଆତ୍ମାର ଅନ୍ତରରେ ବାହ୍ୟଭ୍ରମ ଜାତ ହୁଏ । ଶୂନ୍ୟବାଦୀଙ୍କ ମତରେ ଭ୍ରମରେ ଅସତ୍ ଖାତି ହୁଏ; ଅର୍ଥାତ୍ ଅସତ୍‌କୁ ସତ୍ ବୋଲି ଜ୍ଞାନ ହୁଏ । କିନ୍ତୁ ବେଦାନ୍ତ ମତରେ ଅନିର୍ବଚନୀୟ ଖ୍ୟାତି ସ୍ୱୀକାର କରାଯାଇଥାଏ; ଅର୍ଥାତ୍ ଭ୍ରମକାଳରେ ଅଜ୍ଞାନୋତ୍ପନ୍ନ ପଦାର୍ଥର ଛଳନା ହୁଏ, ଜ୍ଞାନ ହେବାମାତ୍ରେ ତାହାର ବିଲୋପ ଘଟେ ।''

ଏହିପରି ନାନା ଆଲୋଚନା ହେବା ପରେ ବୌଦ୍ଧ ପଣ୍ଡିତମାନେ କହିଲେ, ''ବ୍ରହ୍ମନ୍ ! ଆପଣଙ୍କୁ ପରୀକ୍ଷା କରିବାକୁ ଯିବା ଆମର ଧୃଷ୍ଟତା । ଆପଣ ଆନନ୍ଦଚିତ୍ତରେ ମନ୍ଦିର ମଧ୍ୟରେ ପ୍ରବେଶ କରନ୍ତୁ ।'' ଏହା ପରେ ଜୈନ ପଣ୍ଡିତମାନେ କେବଳ ସ୍ଥାନୀୟ ବିଧି ରକ୍ଷା କରି ପ୍ରଶ୍ନକଲେ, ''ଆଚ୍ଛା କହନ୍ତୁ, ଜୈନମତରେ 'ଅସ୍ତିକାୟ' ଶବ୍ଦର ପ୍ରକୃତ ରହସ୍ୟ କ'ଣ ?'' ଆଚାର୍ଯ୍ୟ କହିଲେ, ''ଜୈନମତରେ ଜୀବନ୍ତିକାୟ, ପୁଦ୍‌ଗଲାନ୍ତିକାୟ, ଧର୍ମାନ୍ତିକାୟ, ଅଧର୍ମାନ୍ତିକାୟ, ଆକାନ୍ତିକାୟ ପଦବାଚ୍ୟ ଜୀବାଦି ପାଞ୍ଚ ଗୋଟିଏ ପଦାର୍ଥ ସ୍ୱୀକୃତ ହୋଇଅଛି ।'' ଏହା ଶୁଣି ଜୈନପଣ୍ଡିତମାନେ ଆଚାର୍ଯ୍ୟଙ୍କୁ ଭିତରକୁ ପ୍ରବେଶ କରିବାକୁ ଅନୁମତି ଦେଲେ ।

ଚତୁର୍ଥ ଦ୍ୱାରରେ ଜୈମିନୀୟ ମତାବଲମ୍ବୀ ମୀମାଂକମାନେ ଅବସ୍ଥାନ କରୁଥିଲେ; ସେମାନେ ଯଥାବିହିତ ସମ୍ମାନ ପ୍ରଦର୍ଶନପୂର୍ବକ କହିଲେ, ''ଯତିରାଜ ! ଜୈମିନୀଙ୍କ ମତରେ ଶବ୍ଦ କି ପ୍ରକାର ? ଏହା ଦ୍ରବ୍ୟ ନା ଗୁଣ ? ଏହାର ସ୍ୱରୂପ ବା କ'ଣ ?''

ଆଚାର୍ଯ୍ୟ କହିଲେ, ''ହେ ସୁଧୀବର୍ଗ ! ଜୈମିନିଙ୍କ ମତରେ ବର୍ଣ୍ଣ ସକଳ ନିତ୍ୟ ଓ ବ୍ୟାପକ । କେବଳ ଶ୍ରବଣେନ୍ଦ୍ରିୟଦ୍ୱାରା ତାହାର ଯେତେବେଳେ ଅନୁଭୂତି ହୁଏ, ସେତେବେଳେ ତାହାର ଉତ୍ପତ୍ତି ପ୍ରଭୃତି ବ୍ୟବହାର କରାଯାଏ । ଏହା ଜୈମିନୀଙ୍କ ମତରେ ଦ୍ରବ୍ୟଗୁଣ ନୁହେଁ ।''

ଏକଥା ଶୁଣି ମୀମାଂସକମାନେ ପ୍ରଣାମ କରି କହିଲେ, ''ଯତିରାଜ ! ଚିରନ୍ତନ ପ୍ରଥାନୁସାରେ ଆମେ ଏ ପ୍ରଶ୍ନ କରିଅଛୁ । ସ୍ୱୟଂ ମଣ୍ଡନ ମିଶ୍ର ଯେତେବେଳେ ଆପଣଙ୍କ ଅନୁଗାମୀ, ସେତେବେଳେ ଆମର ପ୍ରଶ୍ନ କରିବାର ଆଉ କ'ଣ ଅଛି ? ଏହା କହି ପଣ୍ଡିତମାନେ ମଣ୍ଡନ ମିଶ୍ରଙ୍କୁ ପ୍ରଣାମ କରି କୁଶଳାଦି ପ୍ରଶ୍ନ କଲେ ଏବଂ ସମସ୍ତଙ୍କୁ ଆଦର ଓ ସମ୍ମାନରସହିତ ଶାରଦାଦେବୀଙ୍କ ନିକଟକୁ ଘେନିଗଲେ ।

ଆଚାର୍ଯ୍ୟ ଏହା ଦେଖି ହସ ହସ ବଦନରେ ମନ୍ଦିର ମଧ୍ୟରେ ପ୍ରବେଶ କଲେ । ଚାରିଆଡ଼ୁ ନାନା ବାଦ୍ୟ ବାଜିଉଠିଲା । ମନ୍ଦିର-ପ୍ରାଙ୍ଗଣରେ ଜନତା ''ଶଙ୍କରାଚାର୍ଯ୍ୟଙ୍କ ଜୟ'' ଧ୍ୱନି କରିଉଠିଲେ ଏବଂ କହିଲେ ଆଜି ଦକ୍ଷିଣ-ଦେଶବାସୀ ଜଣେ ପଣ୍ଡିତ ସର୍ବଜ୍ଞ ଉପାଧିରେ ଭୂଷିତ ହେଲେ । ଆମର ଭାଗ୍ୟବଳରୁ ଜଣେ ସର୍ବଜ୍ଞ ମହାପୁରୁଷଙ୍କର ଦର୍ଶନ ଲାଭ କଲୁ । ଆଚାର୍ଯ୍ୟ କୁଣ୍ଡ ନିକଟକୁ ଯାଇ ସେଠାରେ ବସି ଶାରଦାଦେବୀଙ୍କର ଗୋଟିଏ ସ୍ତୋତ୍ର ରଚନା କରି ତାହା ପାଠପୂର୍ବକ ଭକ୍ତିର ସହିତ ଭଗବତୀଙ୍କର ଅର୍ଚ୍ଚନା କଲେ । ଅନନ୍ତର ସେ କୁଣ୍ଡସ୍ଥିତ ଜଳ ସ୍ପର୍ଶ କରିବାକୁ ଉଦ୍ୟତ ହେଲାମାତ୍ରେ ଭଗବତୀ ଶାରଦାଦେବୀ ଅଲକ୍ଷିତ ଭାବରେ କହିବାକୁ ଲାଗିଲେ, ''ଶଙ୍କର ! ମୋର ଅଧିଷ୍ଠାନ ଏହି କୁଣ୍ଡର ଜଳ ତୁମେ ସ୍ପର୍ଶ କରି ଅପବିତ୍ର କର ନାହିଁ । ତୁମେ ସର୍ବଜ୍ଞ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । କିନ୍ତୁ ତୁମେ ଯେ ବିଶୁଦ୍ଧଚିତ୍ତ ଏହା କହି ହେବ ନାହିଁ । କାରଣ ତୁମେ ମଣ୍ଡନ ପତ୍ନୀଙ୍କର କାମଶାସ୍ତ୍ରୀୟ ପ୍ରଶ୍ନର ଉତ୍ତର ପ୍ରଦାନ କରିବା ନିମିତ୍ତ ଅମରୁକ ରାଜଶରୀରରେ ପ୍ରବେଶ କରିଥିଲ ଓ ରାଜମହିଷୀମାନଙ୍କ ଦ୍ୱାରା ପରିବୃତ୍ତ ରହି କାମଶାସ୍ତ୍ରୀୟ ଗ୍ରନ୍ଥ ଲେଖିଥିଲ । ତୁମର ସ୍ଥୂଳଶରୀର ଅପବିତ୍ର ନ ହେଲେ ମଧ୍ୟ

କାମଚିନ୍ତାହେତୁ ତୁମର ଚିତ୍ତ କଲୁଷିତ ହୋଇ ଅଛି । ତୁମର ସୂକ୍ଷ୍ମଶରୀର ଅପବିତ୍ର ହୋଇଅଛି; ସୁତରାଂ ତୁମେ କୁଣ୍ଡର ବାରି ସ୍ପର୍ଶ କଲେ ମୋ ଆସନ ଅପବିତ୍ର ହେବ ।''

ଶାରଦାଦେବୀଙ୍କ ଅଶରୀରୀ ବାଣୀ ଶ୍ରବଣ କରି ସମସ୍ତେ ସ୍ତମ୍ଭୀଭୂତ ହୋଇଗଲେ । ଶଙ୍କର କ୍ଷଣକାଳନିମିତ୍ତ ନିସ୍ତବ୍‌ଧ ରହି କହିଲେ, ''ମାତଃ ! ଆପଣ ସର୍ବାନ୍ତର୍ଯାମିନୀ; ଆପଣ ତ ସମସ୍ତ ଅବଗତ ଅଛନ୍ତି । ଆଚ୍ଛା ଜନନି ! କହନ୍ତୁ ଦେଖି, ଅସଙ୍ଗ ଆତ୍ମସ୍ୱରୂପ ବୋଧ ପରେ ପ୍ରାରବ୍‌ଧବଶରୁ ଯେଉଁସବୁ ମନୋବୃତ୍ତି ଉଦିତ ହୋଇଥାଏ, ସେଥିରେ କ'ଣ ସଂସ୍କାର ଉତ୍ପନ୍ନ ହୁଏ ? ସେଥିରେ କ'ଣ ଜ୍ଞାନୀବ୍ୟକ୍ତି ଆବଦ୍ଧ ହୁଅନ୍ତି ? ଭଗବାନ୍ ଶ୍ରୀକୃଷ୍ଣ ଗୋପ ରମଣୀମାନଙ୍କ ସହିତ ଯେଉଁ ଲୀଳା କରିଥିଲେ, କୁରୁକ୍ଷେତ୍ର ଯୁଦ୍ଧରେ ପାଣ୍ଡବବାହିନୀର ଅଧିନାୟକ ହୋଇ ଯାହାକଲେ, ସେଥିରେ କ'ଣ ସେ ସଂଶ୍ଳିଷ୍ଟ ଥିଲେ ? ମୁଁ ଯତିଧର୍ମର ମର୍ଯ୍ୟାଦା ରକ୍ଷା କରିବାପାଇଁ ଓ ବାଦର ନିୟମାନୁରୋଧରେ ରାଜଶରୀରରେ ପ୍ରବେଶ କରି ଏ କାର୍ଯ୍ୟ ସମ୍ପାଦନ କରିଥିଲି, ଅନ୍ୟଥା ଆପଣଙ୍କ କୃପାରୁ ଯୋଗବଳରେ ସଙ୍ଗେ ସଙ୍ଗେ ମୁଁ ମଣ୍ଡନ ପତ୍ନୀଙ୍କର ପ୍ରଶ୍ନର ଉତ୍ତର ପ୍ରଦାନ କରିପାରି ଥାଆନ୍ତି ! ମାତଃ ! ଏ ବିଷୟରେ ତ ଆପଣ ନିଜେ ସାକ୍ଷୀ । ଆପଣ ତ ନିଜେ ମଣ୍ଡନ-ଗୃହିଣୀରୂପରେ ଏପରି ଲୀଳା କରିଥିଲେ ?'' ଶାରଦାଦେବୀ ଆଚାର୍ଯ୍ୟଙ୍କ ମୁଖରୁ ଏହି ଉତ୍ତର ଶୁଣିବାପାଇଁ ଏବଂ ଶଙ୍କର ବ୍ରହ୍ମଜ୍ଞ ହୋଇ ମଧ୍ୟ ବ୍ରହ୍ମଙ୍କ ପରି ନିର୍ଲିପ୍ତ-ସ୍ୱଭାବ ହୋଇଛନ୍ତି, ଏହା ଲୋକରେ ପ୍ରଚାରିତ ହେବା ଉଦ୍ଦେଶ୍ୟରେ ଦେବୀ ଶଙ୍କରଙ୍କଦ୍ୱାରା ଏହା କୁହାଇଥିଲେ । ବର୍ତ୍ତମାନ ଉପରୋକ୍ତ ଉତ୍ତର ଶୁଣି ଦେବୀ କହିଲେ, ''ବତ୍ସ ଶଙ୍କର ! ମୁଁ ସନ୍ତୁଷ୍ଟ ହୋଇଅଛି, ତୁମେ ଆନନ୍ଦରେ ମୋ କୁଣ୍ଡବାରି ପାନ କର । ମୁଁ ଆଶୀର୍ବାଦ କରୁଛି, ତୁମର ଚରିତ୍ର ନିଷ୍କଳଙ୍କ ପୂର୍ଣ୍ଣଶଶିସଦୃଶ ଚିରକାଳ ବିରାଜିତ ହୋଇ ରହିବ । ତୁମର ଚରିତ୍ର ଯତିମାନଙ୍କର ଆଦର୍ଶ ହେବ । ଯେଉଁମାନେ ତୁମର ପୂତଚରିତ ଅନୁଧ୍ୟାନ କରିବେ, ସେମାନେ ମଧ୍ୟ ତୁମ ପରି ଜ୍ଞାନୀ ହେବେ । ତୁମେ ମତ୍ପ୍ରଦତ୍ତ ସର୍ବଜ୍ଞ ଉପାଧିରେ ଭୂଷିତ ହୋଇ ଜଗତରେ ଆଉ କିଛିଦିନ ବିଚରଣ କର । ତୁମର କାର୍ଯ୍ୟ ପ୍ରାୟ ଶେଷ ହୋଇ ଆସୁଅଛି ।'' ଏହା କହି ଦେବୀ ନୀରବ ରହିଲେ । ଆଚାର୍ଯ୍ୟ ଭୂମିଷ୍ଠ ହୋଇ ଦେବୀଙ୍କୁ ପ୍ରଣାମ କଲେ ଓ ପଦ୍ମପାଦ ପ୍ରଭୃତି ଶିଷ୍ୟମାନେ ଆଚାର୍ଯ୍ୟଙ୍କୁ ଅନୁକରଣ କଲେ । ସମବେତ ହୋଇଥିବା ସ୍ଥାନୀୟ ପଣ୍ଡିତବର୍ଗ

ବିହ୍ୱଳଭାବରେ ଭକ୍ତିପୂର୍ବକ ଅଶ୍ରୁସଜଳ-ନୟନରେ ଆଚାର୍ଯ୍ୟଙ୍କ ପଦ ସ୍ପର୍ଶ କରି ପ୍ରଣାମ କଲେ । 'ଶଙ୍କରାଚାର୍ଯ୍ୟଙ୍କର ଜୟ' ଧ୍ୱନିରେ ଶାରଦା-ମନ୍ଦିର ମୁଖରିତ ହେଲା । ଅନନ୍ତର ଶିଷ୍ୟମାନଙ୍କ ସହିତ ଆଚାର୍ଯ୍ୟ କୁଣ୍ଡବାରି ପାନକଲେ । ଭଗବତୀଙ୍କ ସ୍ୱରୂପ ଓ ମାହାତ୍ମ୍ୟ କୀର୍ତ୍ତନ କରି ସେଠାରେ କିଛିକାଳ ଅବସ୍ଥାନ କଲାପରେ ସମସ୍ତେ ସେଠାରୁ ପ୍ରସ୍ଥାନକଲେ ।

ଶାରଦାକ୍ଷେତ୍ର ପରିତ୍ୟାଗ କରି ଆଚାର୍ଯ୍ୟ ଶ୍ରୀନଗରରେ ପ୍ରବେଶ କଲେ । କାଶ୍ମୀରର ଅନନ୍ତ ସୌନ୍ଦର୍ଯ୍ୟ ଦର୍ଶନ କରି ଶିଷ୍ୟମାନେ ମୁଗ୍ଧ ହୋଇଗଲେ । ଶ୍ରୀନଗରରେ ଶୈବ ଓ ଶାକ୍ତମାନଙ୍କର ପ୍ରାଧାନ୍ୟ ଥିଲା । ବୌଦ୍ଧମାନେ ବୁଦ୍ଧଦେବଙ୍କ ଉଚ୍ଚ ଆଦର୍ଶ ଭୁଲିଯାଇ ତାନ୍ତ୍ରିକ ସିଦ୍ଧିପାଇଁ ଲାଳାୟିତ ହେଉଥିଲେ । ସେମାନଙ୍କ ଅତ୍ୟାଚାରରେ ବୈଦିକ ଯାଗଯଜ୍ଞାଦି ଏକପ୍ରକାର ବିଲୁପ୍ତ ହୋଇଯାଇଥିଲା । ରାଜା ଚନ୍ଦ୍ରପୀଡ଼ ରାଜ୍ୟ ସଙ୍ଗଠନରେ ବ୍ୟସ୍ତ ଥିଲେ । ସେ ଆଚାର୍ଯ୍ୟ ଏବଂ ତାଙ୍କ ଦିଗ୍‌ବିଜୟବାହିନୀର ସୁବ୍ୟବସ୍ଥା କରିଦେଲେ । ଆଚାର୍ଯ୍ୟ ଏଠାରେ ଶୈଳଶୃଙ୍ଗ ଉପରେ ଗୋଟିଏ ଶିବଲିଙ୍ଗ ଦର୍ଶନ କରି ସେଠାରେ ଆସନ ସ୍ଥାପନ କଲେ । ଏହି ଶୈଳର ନିମ୍ନଦେଶରେ ଗୋଟିଏ କୁଣ୍ଡ ଅବସ୍ଥିତ ଏବଂ ତାହା 'ଭଗବତୀ ସ୍ଥାନ' ନାମରେ ପ୍ରସିଦ୍ଧ । ସ୍ଥାନଟି ଯେପରି ସୁନ୍ଦର, ଭଗବତୀଙ୍କର କୃପାଲାଭ ମଧ୍ୟ ଏଠାରେ ସେହିପରି ସୁଲଭ । ଏଥିପାଇଁ କୁଣ୍ଡର ତୀରଦେଶର ସନ୍ନିକଟରେ ବହୁ ସାଧୁ ଓ ମନୀଷୀ ଭଗବତୀଙ୍କର ଉପାସନା କରିବା ଅଭିପ୍ରାୟରେ ବାସ କରନ୍ତି ।

ଆଚାର୍ଯ୍ୟ ଏଠାରେ ଭଗବତୀଙ୍କ ମହିମା କୀର୍ତ୍ତନପୂର୍ବକ ଗୋଟିଏ ଅପୂର୍ବ ସ୍ତବ ରଚନା କରି ଦେବୀଙ୍କର ପୂଜା କଲେ । ପରେ ଏହା 'ସୌନ୍ଦର୍ଯ୍ୟ-ଲହରୀ' ବା 'ଆନନ୍ଦ-ଲହରୀ' ନାମରେ ପ୍ରସିଦ୍ଧ ହେଲା । ଅଳ୍ପ କେତେ ଦିନ ମଧ୍ୟରେ ଆଚାର୍ଯ୍ୟଙ୍କ ପ୍ରତି ସ୍ଥାନୀୟ ଲୋକଙ୍କର ଶ୍ରଦ୍ଧା-ଭକ୍ତି ଏପରି ବୃଦ୍ଧିପାଇଲା ଯେ, ଏହି ଶୈଳଶୃଙ୍ଗଟି 'ଶଙ୍କରାଚାର୍ଯ୍ୟ ପର୍ବତ' ନାମରେ ଅଭିହିତ ହେଲା ।



# ଶଙ୍କରଙ୍କ କ୍ଷମାଶୀଳତା

ଶଙ୍କର ନାନା ସ୍ଥାନ ଭ୍ରମଣ କରି ସବୁଠାରେ ଅଦ୍ୱୈତ ମତ ସ୍ଥାନପୂର୍ବକ କାମରୂପରେ ଉପସ୍ଥିତ ହେଲେ । ସେ କାମାକ୍ଷା ଦେବୀଙ୍କ ଦର୍ଶନ ଓ ଭଗବତୀଙ୍କ ଅର୍ଚ୍ଚନା ଶେଷ କରି ଉପବେଶନ କରିଛନ୍ତି, ଏହି ସମୟରେ କାମରୂପର ଜନସାଧାରଣ ଆଚାର୍ଯ୍ୟଙ୍କ ଦର୍ଶନ ଲାଭନିମିତ୍ତ ଆଗମନ କଲେ । କେତେଦିନ ପରେ କାମରୂପର କେତେ ଜଣ ପ୍ରଧାନ ସାଧକ ଆଚାର୍ଯ୍ୟଙ୍କ ସହିତ ବିଚାରପ୍ରାର୍ଥୀ ହେବାରୁ ସେ ସେମାନଙ୍କୁ ପରାସ୍ତ କଲେ । ସେମାନେ ଯୁକ୍ତିରେ ପରାସ୍ତ ହେଲେ ମଧ୍ୟ ଆଚାର୍ଯ୍ୟଙ୍କ ଉଚ୍ଚ ଆଦର୍ଶ ଗ୍ରହଣ କରିପାରିଲେ ନାହିଁ । କିନ୍ତୁ ଜନସାଧାରଣ ବୈଦିକ ଧର୍ମସମ୍ମତ ପଞ୍ଚଦେବତା ପୂଜା ଓ ପଞ୍ଚମହାଯଜ୍ଞର ଅନୁଷ୍ଠାନ ଏବଂ ଋଷିସମ୍ମତ ଆଚାର ପାଳନ କରିବାକୁ ଆଗ୍ରହ ପ୍ରକାଶ କଲେ । ତାନ୍ତ୍ରିକ ସାଧନାରେ ଅନେକଙ୍କର ଅନାସ୍ଥା ଉଦୟ ହେଲା ।

ଉକ୍ତ ବିଚାରପ୍ରାର୍ଥୀ ସାଧକମାନଙ୍କ ମଧ୍ୟରେ ଅଭିନବ ଗୁପ୍ତ ନାମକ ଜଣେ ବ୍ୟକ୍ତି ଥିଲେ । ପାଣ୍ଡିତ୍ୟନିମିତ୍ତ ଏହାଙ୍କର ଖ୍ୟାତି ଯଥେଷ୍ଟ ଥିଲା । ଏ ବ୍ରହ୍ମସୂତ୍ରର ଶାକ୍ତଭାଷ୍ୟ ରଚନା କରିଥିଲେ । ଆଚାର୍ଯ୍ୟଙ୍କ ତାନ୍ତ୍ରିକ ସମ୍ପ୍ରଦାୟର ପରାଜୟରେ ଅଭିନବ ଗୁପ୍ତ ଅତିଶୟ ମର୍ମାହତ ହୋଇ ଭାବିବାକୁ ଲାଗିଲେ, କିପରି ଭାବରେ ଆଚାର୍ଯ୍ୟଙ୍କ ପ୍ରତିପତ୍ତି ନଷ୍ଟ କରିବି ? କ୍ରମେ ସେ ଶୁଣିଲେ ଯେ ଆଚାର୍ଯ୍ୟ ଉଗ୍ରଭୈରବଙ୍କୁ ବିନାଶ କରିଛନ୍ତି, କ୍ରକଚଙ୍କୁ ପରାଜିତ କରିଛନ୍ତି ଓ ତାନ୍ତ୍ରିକ ସମାଜଙ୍କୁ ଆତ୍ମସାତ୍ କରି ନିଜେ ସେମାନଙ୍କ ପଥପ୍ରଦର୍ଶକ ହୋଇଛନ୍ତି । ସେମାନଙ୍କ ନିମିତ୍ତ 'ପ୍ରପଞ୍ଚସାର' ନାମକ ତନ୍ତ୍ରଶାସ୍ତ୍ର ମଧ୍ୟ ରଚନା କରି ସାରିଛନ୍ତି । ଏଥିରେ ଅଭିନବ ଗୁପ୍ତଙ୍କର କ୍ରୋଧର ଅବଧି ରହିଲା ନାହିଁ । ସେ ଭାବିଲେ, ମନ୍ତ୍ରଶକ୍ତି ପ୍ରୟୋଗ କରି ଆଚାର୍ଯ୍ୟଙ୍କ ପ୍ରାଣସଂହାର କରିବାକୁ ହେବ ।

କିନ୍ତୁ କିପରି ସେ କାର୍ଯ୍ୟ ହେବ ! ଅଭିନବ ଗୁପ୍ତ ପ୍ରତିହିଂସାପରାୟଣ, ଭୀରୁ, କାପୁରୁଷର ପଥ ଅନୁସରଣକଲେ । ସମ୍ପ୍ରଦାୟର ହିତ କାମନରେ ସେ ଅନ୍ଧ ହୋଇ ଆଚାର୍ଯ୍ୟଙ୍କ ଶିଷ୍ୟତ୍ୱ ସ୍ୱୀକାର କଲେ ଏବଂ ଛଳନାର ବଶବର୍ତ୍ତୀ ହୋଇ ଆଚାର୍ଯ୍ୟଙ୍କ ସେବାରେ ମନୋନିବେଶପୂର୍ବକ ଗୋପନରେ ଅଭିଚାର-କ୍ରିୟାର ପ୍ରୟୋଗ ଆରମ୍ଭ କରିଦେଲେ ।

ଦେଖୁ ଦେଖୁ ଆଚାର୍ଯ୍ୟଙ୍କ ଗୁହ୍ୟଦ୍ୱାର ସମ୍ମୁଖରେ ଗୋଟିଏ ସ୍ଫୋଟକ ଦେଖାଗଲା । ଦିନେ ଦୁଇ ଦିନ ମଧ୍ୟରେ ତାହା ବିଦୀର୍ଣ୍ଣ ହୋଇ ପ୍ରଭୂତ ପରିମାଣରେ ପୂଜ-ରକ୍ତ ନିର୍ଗତ ହେବାକୁ ଲାଗିଲା । ଆଚାର୍ଯ୍ୟ କିନ୍ତୁ ଅଚଳ ଓ ଅଟଳ । ଶିଷ୍ୟମାନେ ଏହା ଦେଖି ଭୀତ ହୋଇପଡ଼ିଲେ । ତ୍ରୋଟକାଚାର୍ଯ୍ୟ ଆଚାର୍ଯ୍ୟଙ୍କ କଷ୍ଟ ନିବାରଣ ମାନସରେ ସ୍ୱୟଂ ନିର୍ବିକାର ଚିତ୍ତରେ ସେହି ପୂଜ-ରକ୍ତ ପରିଷ୍କାର କରିବାକୁ ଲାଗିଲେ । କିନ୍ତୁ ରୋଗ ଦିନକୁ ଦିନ ବୃଦ୍ଧିପ୍ରାପ୍ତ ହେଲା । ଆଚାର୍ଯ୍ୟଙ୍କ ଶରୀର କ୍ରମେ ମ୍ଳାନ ହୋଇପଡ଼ିଲା ଓ ସେ ଉତ୍‌ଥାନଶକ୍ତିରହିତ ହୋଇଗଲେ । ଶିଷ୍ୟମାନେ ଚିକିତ୍ସାନିମିତ୍ତ ବୈଦ୍ୟ ଆଣିବାକୁ ଆଚାର୍ଯ୍ୟଙ୍କ ଅନୁମତି ପ୍ରାର୍ଥନା କଲେ । କିନ୍ତୁ ପ୍ରଥମେ ଶଙ୍କର ଏହା ଉପେକ୍ଷା କରିଦେଲେ । ପରେ ଶିଷ୍ୟମାନଙ୍କର ବହୁ ଅନୁନୟ ବିନୟ ଓ ଅନୁରୋଧଫଳରେ ଚିକିତ୍ସକ ଆଣିବାକୁ ଅନୁମତି ଦେଲେ । ନିୟମିତଭାବରେ ଚିକିତ୍ସା କରାଗଲେ ମଧ୍ୟ କୌଣସି ଫଳ ହେଲା ନାହିଁ । ଚିକିତ୍ସକମାନେ ବିଫଳମନୋରଥ ହୋଇ ପ୍ରତ୍ୟାବର୍ତ୍ତନ କଲେ । ଶିଷ୍ୟମାନଙ୍କ ମଧ୍ୟରେ ବିଷମ ଚାଞ୍ଚଲ୍ୟ ଉପସ୍ଥିତ ହେଲା । ଦ୍ୱାତ୍ରିଂଶ ବର୍ଷ ପ୍ରାୟ ସମାଗତ । ପଦ୍ମପାଦ ବ୍ୟାସଙ୍କର ବାକ୍ୟ ସ୍ମରଣ କରି ବ୍ୟାକୁଳ ହୋଇଉଠିଲେ । ଆଚାର୍ଯ୍ୟ ଶିଷ୍ୟଗଣଙ୍କୁ ଅନ୍ତିମ ଉପଦେଶ ଦେବାକୁ ଉଦ୍ୟତ ହେଲେ । ସମସ୍ତେ ବୁଝିଲେ ଆଚାର୍ଯ୍ୟ ଏଥର ଦେହରକ୍ଷା କରିବେ ।

ଗୁରୁଗତପ୍ରାଣ ପଦ୍ମପାଦ କିନ୍ତୁ ଏଥିରେ ସମ୍ମତ ହୋଇପାରିଲେ ନାହିଁ । ସେ ଗୁରୁଦେବଙ୍କୁ ବିଦାୟ ଦେବାକୁ ପ୍ରସ୍ତୁତ ନ ଥିଲେ । ଗୁରୁଦେବଙ୍କର ସମଗ୍ର ବିଦ୍ୟା ସେ ପର୍ଯ୍ୟନ୍ତ ସୁଦ୍ଧା ସେମାନେ ଅଧିକାର କରିପାରି ନ ଥିଲେ । ସେ କାତରପ୍ରାଣରେ ଭଗବାନ ନୃସିଂହଦେବଙ୍କୁ ସ୍ମରଣ କଲେ । ନିଜ ବରଦ୍ୱାରା ଆବଦ୍ଧ ଥିବାରୁ ନୃସିଂହଦେବ ସ୍ୱପ୍ନରେ ଦର୍ଶନ ଦାନ କରି ଅଶ୍ୱିନୀକୁମାରଙ୍କୁ ସ୍ମରଣ କରିବାକୁ କହିଲେ । ପଦ୍ମପାଦ ଅଶ୍ୱିନକୁମାରଙ୍କୁ ସ୍ମରଣ କରିବାରୁ ସେ କହିଲେ, 'ବତ୍ସ' ! ତୁମ ଗୁରୁଦେବଙ୍କ ଶରୀରରେ କୌଣସି ରୋଗ ହୋଇନାହିଁ । ଏହା କୌଣସି ଦୁଷ୍ଟବ୍ୟକ୍ତିର ମନ୍ତ୍ରଶକ୍ତିର ପ୍ରଭାବ । ତୁମେ ଯଦି ପ୍ରତ୍ୟଭିଚାର କରିପାର, ତେବେ ତୁମର ଗୁରୁଦେବଙ୍କର ରୋଗ ନିରାମୟ ହେବ; ଅନ୍ୟଥା ଏତିକିରେ ତାଙ୍କର ଜୀବନାନ୍ତ ସୁନିଶ୍ଚିତ ।'' ପଦ୍ମପାଦ ଏହା ଶୁଣି କ୍ରୋଧରେ ଅଧୀର ହୋଇପଡ଼ିଲେ ଓ ପ୍ରଭାତ ହେଲାକ୍ଷଣି ଆଚାର୍ଯ୍ୟଙ୍କ ସମୀପରେ ଉପସ୍ଥିତ ହୋଇ କହିଲେ,

''ଭଗବନ୍ ! ଏହା ଆପଣଙ୍କର ରୋଗ ନୁହେଁ; କୌଣସି ଦୁଷ୍ଟଲୋକର ଅଭିଚାରର ଫଳ । ଏହାର ପ୍ରତିକାରନିମିତ୍ତ ଯଦି ପ୍ରତ୍ୟଭିଚାର କରିବାକୁ ହୁଏ, ତେବେ ଆପଣ ନିରୋଗ ହେବେ, ନଚେତ୍ ଏଥିରେ ଆପଣଙ୍କର ଦେହାବସାନ ସୁନିଶ୍ଚିତ । ମୁଁ ଗତ ରାତ୍ରରେ ସ୍ୱପ୍ନଯୋଗେ ଅଶ୍ୱିନୀକୁମାରଙ୍କ ଠାରୁ ଏହା ଜାଣିପାରିଛି । ଭଗବନ୍ ! ବର୍ତ୍ତମାନ ମୁଁ ଏହାର ପ୍ରତିକାର କରୁଛି ।''

ଆଚାର୍ଯ୍ୟ କିଛି ସମୟ ମୌନ ରହି କହିଲେ, ''କ'ଣ ହେଲା ? ଯଦି ଏହି କ୍ଷଣଭଙ୍ଗୁର ଶରୀରଦ୍ୱାରା କାହାର କୌଣସି ଅଭୀଷ୍ଟ ସିଦ୍ଧ ହୁଏ, ସେଥିରେ ଆପତ୍ତି କରିବାର ବା କ'ଣ ଅଛି ? ପଦ୍ମପାଦ ! ଏପରି କର୍ମ କରିବା ତୁମର ଉଚିତ ନୁହେଁ । ସନ୍ନ୍ୟାସୀମାନେ କ'ଣ ପ୍ରତ୍ୟଭିଚାର କରନ୍ତି ? ପ୍ରାରବ୍ଧ କ୍ଷୟନିମିତ୍ତ ସୁଖ-ଦୁଃଖ ଯାହା ଉପସ୍ଥିତ ହୁଏ, ତାହା ହିଁ ସେମାନେ ଆନନ୍ଦଚିତ୍ତରେ ଭୋଗ କରନ୍ତି । ଏ କାର୍ଯ୍ୟ କରିବା ତୁମ ପକ୍ଷରେ କ'ଣ ଶୋଭନୀୟ ହେବ ? ପୁଣି ମୋର କ'ଣ ସେଥିରେ ସମ୍ମତ ପ୍ରଦାନ କରିବା ଉଚିତ୍ ?''

ପଦ୍ମପାଦ କହିଲେ, ''ଆପଣଙ୍କ ଶରୀରକୁ ରକ୍ଷା କରିବାନିମିତ୍ତ ଯାହା କରିବା ଆବଶ୍ୟକ, ସେ କାର୍ଯ୍ୟ କରିବାରେ ଆପଣ କିଛି କଥା କହିପାରିବେ ନାହିଁ । କାରଣ ଆପଣଙ୍କ ଶରୀରରେ ଆପଣଙ୍କର କୌଣସି ପ୍ରୟୋଜନ ନାହିଁ ସତ, କିନ୍ତୁ ଆମମାନଙ୍କର ତ ପ୍ରୟୋଜନ ଅଛି ! ଆପଣ ଏ ବିଷୟରେ ଆମକୁ ବାଧା ଦିଅନ୍ତୁ ନାହିଁ । ମୁଁ ନିଶ୍ଚୟ ଏହାର ପ୍ରତିକାର କରିବି ।''

ଆଚାର୍ଯ୍ୟ ପଦ୍ମପାଦଙ୍କ ଦୃଢ଼ତା ଦେଖି କହିଲେ, ''ପଦ୍ମପାଦ ! ଏପରି କର୍ମ କେବେହେଲେ କର ନାହିଁ । ମୋ ବାକ୍ୟ ପାଳନ କରିବା ତୁମର କର୍ତ୍ତବ୍ୟ । ଶୁଣ, ତୁମେ ଏପରି କାର୍ଯ୍ୟ କଲେ ନରହତ୍ୟା ପାପ ତୁମକୁ ସ୍ପର୍ଶ କରିବ । ପାପ ଥିଲେ ଜ୍ଞାନର ସ୍ଥିରତା ରହେନାହିଁ । ପୁଣି ତୁମେ ପାପକଲେ ଲୋକେ ତୋ ଗୁରୁଙ୍କୁ ନିନ୍ଦା କରିବେ । ଜଗତରେ ବ୍ରହ୍ମଜ୍ଞଙ୍କର ଆଦର୍ଶ କ୍ଷୁଣ୍ଣ ହେବ । ସମସ୍ତେ କହିବେ, ନିଜ ଶରୀରକୁ ରକ୍ଷା କରିବାନିମିତ୍ତ ବ୍ରହ୍ମଜ୍ଞ ବ୍ୟକ୍ତି ମଧ୍ୟ ନରହତ୍ୟାର ଅନୁମୋଦନ କରନ୍ତି । ଯେଉଁ ବ୍ରହ୍ମଜ୍ଞାନ ବିଚାର କରିବାପାଇଁ ତୁମେମାନେ ଏତେ ପରିଶ୍ରମ ସ୍ୱୀକାର କଲ, ତାହା ନିଷ୍ଫଳ ହୋଇଯିବ । ଅତଏବ ଏ କାର୍ଯ୍ୟରୁ ବିରତ ହେବା ଉଚିତ୍ ।''

ପଦ୍ମପାଦ କହିଲେ, ''ଭଗବନ୍ ! ଆପଣଙ୍କ ଦେହ ଅଭିଚାରଦ୍ୱାରା ନଷ୍ଟ ହେବ—ଏହା ମୁଁ କଦାପି ସହ୍ୟ କରିପାରିବି ନାହିଁ । ଆପଣ ସ୍ୱେଚ୍ଛାରେ ଯୋଗବଳରେ ଦେହ ତ୍ୟାଗ କରିବାରେ ଆମର କୌଣସି ଆପତ୍ତି ନାହିଁ । କିନ୍ତୁ ଏପରିଭାବରେ ଜଣେ ଦୁଷ୍ଟଲୋକର ଦୁରଭିସନ୍ଧି ସିଦ୍ଧ କରିବାପାଇଁ ଆମେ ଛାଡ଼ିଦେବୁ ନାହିଁ । ଏ ବିଷୟରେ ଆପଣ ମୋତେ ନିଷେଧ କରନ୍ତୁ ନାହିଁ । ଆପଣଙ୍କ ଦେହକୁ ରକ୍ଷା କରିବାକୁ ଯାଇ ମୋର ଯଦି ଅନନ୍ତ ନରକଗତି ହୁଏ, ତାହା ମୁଁ ଅତି ଆନନ୍ଦଚିତ୍ତରେ ବରଣ କରିନେବି । ଆପଣ ଇଚ୍ଛାକଲେ ତ ରୋଗମୁକ୍ତ ହୋଇପାରନ୍ତେ ! ତା ଯେତେବେଳେ କରୁନାହାନ୍ତି, ମୋତେ ଏହା କରିବାକୁ ପଡ଼ିବ । ଆତ୍ମରକ୍ଷା କରିବାନିମିତ୍ତ ଶତ୍ରୁକୁ ନାଶକଲେ ସେଥିରେ ପାପ ହୁଏ ନାହିଁ । ଏପରିଭାବରେ ନରହତ୍ୟା ପାପରେ ମୋ ଜ୍ଞାନ ଆବୃତ ହୋଇଯିବ ବୋଲି ବିଶ୍ୱାସ ହେଉନାହିଁ । ମୁଁ ନିଶ୍ଚୟ ପ୍ରତ୍ୟଭିଚାର କରିବି ।''

ସୁରେଶ୍ୱର ପ୍ରଭୃତି ଅପର ଶିଷ୍ୟମାନେ କହିଲେ, ''ଧନ୍ୟ ପଦ୍ମପାଦ ! ଧନ୍ୟ ତୁମର ଗୁରୁଭକ୍ତି ! ଆମେ କାୟମନୋବାକ୍ୟରେ ପ୍ରାର୍ଥନା କରୁଛୁ, ତୁମେ ସଫଳକାମ ହୁଅ ।'' ଆଚାର୍ଯ୍ୟ ଟିକିଏ ହସିଦେଇ ମୌନ ରହିଲେ । ଅଭିନବ ଗୁପ୍ତ ଏ ସମସ୍ତ ଦେଖି ମନେ ମନେ ପ୍ରମାଦ ଗଣିବାକୁ ଲାଗିଲା । କିନ୍ତୁ ନଜ ଆତ୍ମରକ୍ଷାନିମିତ୍ତ ସେ ଯଥାସାଧ୍ୟ ଚେଷ୍ଟା କରିବାରେ ତ୍ରୁଟି କଲା ନାହିଁ ।

ପଦ୍ମପାଦ ଓ ଅଭିନବ ଗୁପ୍ତ ଉଭୟଙ୍କ ମନ୍ତ୍ରଶକ୍ତି ମଧ୍ୟରେ ତୁମୁଳ ସଂଗ୍ରାମ ଆରମ୍ଭ ହେଲା । ଶେଷରେ ଗୁରୁଭକ୍ତପ୍ରାଣ ପଦ୍ମପାଦ ହିଁ ଜୟୀ ହେଲେ । ତିନିଦିନ ମଧ୍ୟରେ ଅଭିନବ ଗୁପ୍ତ ଭଗନ୍ଦର ରୋଗର ସୂଚନା ପାଇ ଗୋପନରେ ସ୍ୱଗୃହକୁ ପଳାୟନ କଲା । ଅଭିନବ ଗୁପ୍ତର ରୋଗ ଯେତିକି ପରିମାଣରେ ବୃଦ୍ଧି ପାଇଲା, ଆଚାର୍ଯ୍ୟଙ୍କ ପୀଡ଼ା ସେତିକି ପରିମାଣରେ ହ୍ରାସ ଲାଭକଲା । କ୍ରମେ ଆଚାର୍ଯ୍ୟ ସୁସ୍ଥ ହୋଇ ଉଠିଲେ ଓ ଅଭିନବ ଗୁପ୍ତ ଇହଧାମ ତ୍ୟାଗକଲା । ସମସ୍ତେ ପଦ୍ମପାଦଙ୍କୁ ଧନ୍ୟ ଧନ୍ୟ କରିବାକୁ ଲାଗିଲେ । କେବଳ ଆଚାର୍ଯ୍ୟ ଏଥିରେ ଆନନ୍ଦ ଅନୁଭବ କଲେ ନାହିଁ ।

କାମାକ୍ଷାବାସୀ ଏ ଘଟଣାରେ ଅତ୍ୟନ୍ତ ବିସ୍ମିତ ଓ ଭୀତ ହୋଇପଡ଼ିଲେ । ସମସ୍ତେ ବେଦମାର୍ଗ ପ୍ରତି ଶ୍ରଦ୍ଧାସମ୍ପନ୍ନ ହେଲେ । ଭାରତର ତାନ୍ତ୍ରିକ ସମ୍ପ୍ରଦାୟ ଆଚାର୍ଯ୍ୟଙ୍କ ଅଧିନାୟକତ୍ୱ ସ୍ୱୀକାର କଲା । ଆଚାର୍ଯ୍ୟ ଟିକିଏ ସୁସ୍ଥ ହେବାରୁ ସମସ୍ତେ ପଶ୍ଚିମାଭିମୁଖରେ ପ୍ରସ୍ଥାନ କଲେ ।



# ବିଗ୍ରହ ପ୍ରତିଷ୍ଠା ଓ ଦେବ ସମ୍ମାନ

ଆଚାର୍ଯ୍ୟ ଭାଷ୍ୟ ରଚନାନିମିତ୍ତ ଯେତେବେଳେ ବଦରିକାଶ୍ରମକୁ ଗମନ କରୁଥିଲେ, ସେତେବେଳେ ସେ ହୃଷୀକେଶଠାରେ ପୂର୍ବ ପ୍ରତିଷ୍ଠିତ ବିଷ୍ଣୁବିଗ୍ରହଙ୍କୁ ଦର୍ଶନ ନକରି ଅତିଶୟ ବ୍ୟଥିତ ହୋଇପଡ଼ିଲେ । ମନ୍ଦିର ମଧ୍ୟରେ କୌଣସି ବିଗ୍ରହ ନ ଥିବାର ଦେଖି ସେ ବିଶେଷ ଦୁଃଖ ଅନୁଭବ କଲେ । ଶୁଣିଲେ— କିଛିଦିନ ପୂର୍ବ ଚୀନ୍‌ଦେଶର ଲୁଣ୍ଠନକାରୀମାନଙ୍କ ଭୟରେ ପୂଜକମାନେ ବିଷ୍ଣୁବିଗ୍ରହଙ୍କୁ ଗଙ୍ଗାଗର୍ଭରେ ଲୁଚାଇ ରଖିଥିଲେ; କିନ୍ତୁ ପରେ ବହୁ ଅନ୍ୱେଷଣ କରି ମଧ୍ୟ ବିଗ୍ରହଙ୍କୁ ଆଉ ପାଇପାରିଲେ ନାହିଁ ।

ଆଚାର୍ଯ୍ୟ ଏହା ଦେଖି ବ୍ୟଥିତ ହୃଦୟରେ ଧ୍ୟାନସ୍ଥ ହେଲେ । ଧ୍ୟାନରୁ ଉଠି ପୂଜକମାନଙ୍କୁ କହିଲେ, "ମୁଁ ଯଦି ବିଗ୍ରହଙ୍କର ସନ୍ଧାନ ଦେଇପାରିବି, ତେବେ ତୁମେମାନେ କ'ଣ ମନ୍ଦିରରେ ବିଗ୍ରହଙ୍କୁ ପ୍ରତିଷ୍ଠା କରି ସେବାପୂଜାର ବ୍ୟବସ୍ଥା କରିପାରିବ ?" ସେମାନେ ଏଥିରେ ସ୍ୱୀକୃତି ପ୍ରଦାନ କରିବାରୁ ଆଚାର୍ଯ୍ୟ ଗଙ୍ଗାଗର୍ଭରୁ ମୂର୍ତ୍ତି ଉଦ୍ଧାର କରି ବିଗ୍ରହଟି ସେବକମାନଙ୍କୁ ପ୍ରଦାନ କଲେ । ସେମାନେ ଆନନ୍ଦରେ ବିଗ୍ରହର ସେବାପୂଜାରେ ଆତ୍ମନିୟୋଗ କଲେ । ଆଚାର୍ଯ୍ୟ ମଧ୍ୟ ନିଜେ ଭଗବାନଙ୍କୁ ପୂଜା କରି ସେଠାରୁ ଉତ୍ତରାଭିମୁଖରେ ପ୍ରସ୍ଥାନ କଲେ ।

## ବଦରିକାଶ୍ରମରେ ବିଗ୍ରହ ପ୍ରତିଷ୍ଠା

ବଦରିକାଶ୍ରମରେ ଆଚାର୍ଯ୍ୟ ଉପସ୍ଥିତ ହୋଇ ଅସଂଖ୍ୟ ଦେବ-ଦେବୀଙ୍କ ମହତ୍ତ୍ୱ ଶ୍ରବଣ କରି ମୁଗ୍ଧ ହୋଇପଡ଼ିଲେ । ସେ ନାରାୟଣ ମନ୍ଦିରକୁ ଯାଇ ଦେଖିଲେ ଯେ ସେଠାରେ କୌଣସି ବିଗ୍ରହ ନାହାନ୍ତି, କେବଳ ଶାଳଗ୍ରାମଶିଳାରେ ନାରାୟଣଙ୍କର ଅର୍ଚ୍ଚନା କରାଯାଉଅଛି । ଆଚାର୍ଯ୍ୟ ସେଠାରେ ଯଥାବିଧି ପୂଜାର୍ଚ୍ଚନା ସମାପନ କରି ଧ୍ୟାନମଗ୍ନ ହୋଇପଡ଼ିଲେ । ତାଙ୍କର ଭାବାନ୍ତର ଉପସ୍ଥିତ ହେଲା । ତପ୍ରରେ ସେ ନାରଦକୁଣ୍ଡ ମଧ୍ୟରୁ କିପରି ଶ୍ରୀ ବିଗ୍ରହଙ୍କୁ ଯେପରି ଉଦ୍ଧାର କରି ପୁନଃ ପ୍ରତିଷ୍ଠା କରାଇ ପୂଜାଦିର ବ୍ୟବସ୍ଥା କଲେ, ତାହା ଯଥାସ୍ଥାନରେ ବର୍ଣ୍ଣିତ ହୋଇଅଛି ।

## ଗଙ୍ଗୋତ୍ରୀରେ ଶିବଲିଙ୍ଗ ପ୍ରତିଷ୍ଠା

ବଦରିକାଶ୍ରମ ତ୍ୟାଗ କରି ଆଚାର୍ଯ୍ୟ କେଦାରକ୍ଷେତ୍ର ଦର୍ଶନ କଲେ । ସେଠାରୁ ଭାଗୀରଥୀ ଗଙ୍ଗାର ଉତ୍ପତ୍ତିସ୍ଥଳ ଗୋମୁଖୀ ଦର୍ଶନ-ମାନସରେ ପୁନରାୟ ଗୋମୁଖୀକୁ ପ୍ରତ୍ୟାବର୍ତ୍ତନ କରି ବୁଦ୍ଧକେଦାର ପ୍ରଭୃତି କେତେଗୁଡ଼ିଏ ଦୁର୍ଗମ ସ୍ଥାନ ଅତିକ୍ରମପୂର୍ବକ ଗଙ୍ଗାତୀର ଦେଇ ଗଙ୍ଗୋତ୍ରୀ ନାମକ ସ୍ଥାନରେ ଉପସ୍ଥିତ ହେଲେ । ଗୋମୁଖୀ ଯିବା ପଥରେ ଏହି ଗଙ୍ଗୋତ୍ରୀ ପର୍ଯ୍ୟନ୍ତ ଲୋକବସତି ଦୃଷ୍ଟ ହୁଏ । ଗୋମୁଖୀ-ପଥରେ ସଶିଷ୍ୟ ଆଚାର୍ଯ୍ୟ ଅଗ୍ରସର ହେଲେ । ଏ ପଥ ଅତି ସଙ୍କଟପୂର୍ଣ୍ଣ ଓ ଦୁର୍ଗମ । ଟିକିଏ ଶବ୍ଦ ହେଲେ ପର୍ବତଗାତ୍ରରୁ ତୁଷାରଖଣ୍ଡ ନିପତିତ ହୋଇ ତୀର୍ଥଯାତ୍ରୀମାନଙ୍କର ପ୍ରାଣହାନିର ସମ୍ଭାବନା । ସେଥିପାଇଁ ଏ ପଥ ଦେଇ ପ୍ରାୟ କେହି ଅଗ୍ରସର ହୁଅନ୍ତି ନାହିଁ । ଗୋମୁଖୀକୁ ଆସି ଆଚାର୍ଯ୍ୟ ଦେଖିଲେ ଚିରତୁଷାରାବୃତ ପର୍ବତଗାତ୍ର ଭେଦ କରି ବହୁ ଉଚ୍ଚରୁ ଗୋମୁଖାକୃତି ଗୋଟିଏ ସ୍ଥାନରେ ଗଙ୍ଗାର ନିର୍ମଳ ବାରିଧାରା ନିର୍ଗତ ହେଉଅଛି । ଏହି ପର୍ବତଶିଖରରେ ଅତି ବୃହତ୍ ଚିରତୁଷାରାବୃତ ବିନ୍ଦୁ ସରୋବର ଅବସ୍ଥିତ । ପୁରାଣରେ ବର୍ଣ୍ଣିତ ହୋଇଅଛି ଯେ, ଏହିଠାରେ ସ୍ୱର୍ଗରୁ ଗଙ୍ଗା ଭୂପୃଷ୍ଠରେ ନିପତିତା ହୋଇଛନ୍ତି । ଗୋମୁଖୀରେ ଯଥାରୀତି ତୀର୍ଥକୃତ୍ୟାଦି ସମାପନ କରି ଆଚାର୍ଯ୍ୟ ଗଙ୍ଗୋତ୍ରୀ ଅଭିମୁଖରେ ପ୍ରତ୍ୟାବର୍ତ୍ତନ କଲେ, କାରଣ ଗୋମୁଖୀରେ ବାସ କରିବା ଅସମ୍ଭବ । ଫେରିବା ପଥ ମଧ୍ୟ ଅତିଶୟ ବିପଦସଙ୍କୁଳ । ପଥ ମଧ୍ୟରେ ତୁଷାରପାତହେତୁ ବହୁ ଯାତ୍ରୀଙ୍କର ପ୍ରାଣହାନି ହୋଇଥାଏ । ଗଙ୍ଗୋତ୍ରୀ ଆସି ଆଚାର୍ଯ୍ୟଙ୍କର ଭାବାନ୍ତର ଉପସ୍ଥିତ ହେଲା । ସେ ସେଠାରେ ଗୋଟିଏ ଶିବଲିଙ୍ଗ ଓ ଗଙ୍ଗାଦେବୀଙ୍କର ମୂର୍ତ୍ତି ସ୍ଥାପନ କରି ଯାତ୍ରୀମାନଙ୍କୁ କହିଲେ ଯେ ଯାତ୍ରୀମାନେ ଏ ପର୍ଯ୍ୟନ୍ତ ଆସି ଏହି ଶିବଲିଙ୍ଗ ଓ ଗଙ୍ଗାଦେବୀଙ୍କ ଦର୍ଶନ କଲେ ଗୋମୁଖୀ ଦର୍ଶନର ଫଳ ଲାଭ କରିବେ ।



# ଜଗନ୍ନାଥମୂର୍ତ୍ତିଙ୍କ ପୁନଃ ପ୍ରତିଷ୍ଠା

ଶଙ୍କର ଧର୍ମସଂସ୍କାର ନିମିତ୍ତ ଭ୍ରମଣ କରୁଥିବା ସମୟରେ କତିପୟ କଳିଙ୍ଗ ଦେଶବାସୀଙ୍କ ଅନୁରୋଧରେ ପୁରୀଧାମରେ ଆସି ଉପସ୍ଥିତ ହେଲେ । ସେତେବେଳେ କଳିଙ୍ଗରେ କେଶରୀବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । ଆଚାର୍ଯ୍ୟ ସେଠାରେ ବୌଦ୍ଧମାନଙ୍କର ଅଧିକ ପ୍ରଭାବ ଥିବାର ଲକ୍ଷ୍ୟ କଲେ । ସେ ଦେଖିଲେ ଯେ, ମନ୍ଦିରରେ ପୂଜାଦି ହେଉଅଛି ସତ, ମାତ୍ର କୌଣସି ବିଗ୍ରହ ନାହାନ୍ତି । ଅନୁସନ୍ଧାନ କରି ଜାଣିଲେ ଯେ ବିଧର୍ମୀମାନଙ୍କ ଲୁଣ୍ଠନ ଭୟରେ ପୂଜକମାନେ ଜଗନ୍ନାଥଦେବଙ୍କସହ ରତ୍ନପେଟିକା ଭୁଗର୍ଭରେ ପ୍ରୋଥିତ କରି ରଖିଥିଲେ । କାଳକ୍ରମେ ପ୍ରକୃତ ସ୍ଥାନ ବିସ୍ମୃତ ହେବାରୁ ତାହା ଆଉ ପୁନରୁଦ୍ଧାର ହୋଇପାରୁ ନାହିଁ । ଶାଳଗ୍ରାମ ଶିଳାରେ ଭଗବାନଙ୍କ ସେବା-ପୂଜା ଚାଲୁଅଛି । ଆଚାର୍ଯ୍ୟ ଜଗନ୍ନାଥଦେବଙ୍କୁ ମାନସିକ ପୂଜାଦି କରି ନିଜଭାବରେ ଉପବିଷ୍ଟ ଅଛନ୍ତି । ଏହି ସମୟରେ ପୁରୀବାସୀମାନେ ଆଚାର୍ଯ୍ୟଙ୍କ ସମୀପକୁ ଆସି କହିଲେ, ''ଭଗବନ୍ ! ଆପଣଙ୍କ କୀର୍ତ୍ତିକଳାପ ଯାହା ଶୁଣିଅଛୁ, ସେଥିରେ ଆମର ବିଶ୍ୱାସ ଯେ ସୌଭାଗ୍ୟବଶରୁ ଆପଣଙ୍କର ଦର୍ଶନ ଲାଭ କରି ଆମେମାନେ ଧନ୍ୟ ହୋଇଅଛୁ । ଆପଣ ଯୋଗବଳରେ ଜଗନ୍ନାଥଦେବଙ୍କ ଶ୍ରୀବିଗ୍ରହ ସହିତ ରତ୍ନପେଟିକା କେଉଁଠାରେ ଅଛି, ତାହା ଯଦି ଅନୁଗ୍ରହ କରି କହି ଦିଅନ୍ତେ, ତେବେ ଆମେମାନେ ତାଙ୍କୁ ଆଣି ପୂଜା କରି ଧନ୍ୟ ହୁଅନ୍ତୁ !'' ପୁରୀବାସୀମାନଙ୍କର ଏପରି ସାଧୁସଂକଳ୍ପ ଶୁଣି ଆଚାର୍ଯ୍ୟ ଆନନ୍ଦିତ ହୋଇ ଧ୍ୟାନମଗ୍ନ ହେଲେ ଏବଂ ଜଗନ୍ନାଥଦେବଙ୍କୁ ପ୍ରାର୍ଥନା କରି ଦର୍ଶନ ଦେବାପାଇଁ କାତର ମିନତି କଲେ । ଅବିଳମ୍ବେ ଆଚାର୍ଯ୍ୟଙ୍କ ମାନସପଟରେ ରତ୍ନପେଟିକାସ୍ଥ ଜଗନ୍ନାଥଦେବଙ୍କର ମୂର୍ତ୍ତି ଚିଲିକା ହ୍ରଦକୂଳରେ ଗୋଟିଏ ବୃହତ୍ ବଟବୃକ୍ଷର ନିମ୍ନରେ ଭୂଗର୍ଭରେ ପ୍ରତିଭାତ ହେଲା । ଆଚାର୍ଯ୍ୟ ଧ୍ୟାନରୁ ଉଠି ଲୋକଙ୍କୁ କହିଲେ, ''ଯାଆନ୍ତୁ, ଆପଣମାନେ ଚିଲିକା ହ୍ରଦକୂଳରେ ଯେଉଁ ସର୍ବାପେକ୍ଷା ବୃହତ୍ ବଟବୃକ୍ଷଦେଖିବେ, ତାହା ନିମ୍ନରେ ମୃତ୍ତିକାମଧ୍ୟରେ ଶ୍ରୀଜଗନ୍ନାଥଙ୍କ ବିଗ୍ରହସହିତ ରତ୍ନପେଟିକାଟି ପ୍ରୋଥିତ ହୋଇଅଛି । ଆପଣମାନେ ଖନନ କଲେ ତାହା ପାଇପାରିବେ ।''

ଆଚାର୍ଯ୍ୟଙ୍କ ବାକ୍ୟ ଅନୁସାରେ ରାଜପୁରୁଷମାନଙ୍କସହ ବହୁ ଲୋକ ଚିଲିକାହ୍ରଦର ସମୀପସ୍ଥ ବୃହତ୍ ବଟବୃକ୍ଷ ନିର୍ଣ୍ଣୟ କରି ଖନନ କରିବାରେ ରତ୍ନପେଟିକାଟି ପୁନରାୟ ଲାଭ କଲେ । ଏଥିରେ ପୁରୀବାସୀଙ୍କର ଆନନ୍ଦର ସୀମା ରହିଲା ନାହିଁ ।

ଯଥା ବିଧାନରେ ଜଗନ୍ନାଥଦେବଙ୍କ ପ୍ରତିଷ୍ଠାଦି କାର୍ଯ୍ୟ ସମ୍ପନ୍ନ ହୋଇଗଲା । ପୁରୀବାସୀ ଜନସାଧାରଣ ଓ ତତ୍ରସ୍ଥ ହିନ୍ଦୁଗଣ ସେହି ଦିନଠାରୁ ଶଙ୍କରଙ୍କ କୃପାରୁ ଶ୍ରୀଜଗନ୍ନାଥଦେବଙ୍କ ସେବା କରିବାର ସୁଯୋଗ ପୁନର୍ବାର ପ୍ରାପ୍ତ ହୋଇ ଧନ୍ୟ ହେଲେ । ପୁରୀର ବୌଦ୍ଧପ୍ରଭାବ କାଳକ୍ରମେ ଲୋପ ପାଇଲା । ଅନନ୍ତର ଆଚାର୍ଯ୍ୟ ପୁରୀବାସୀମାନଙ୍କ ମଧ୍ୟରେ ପଞ୍ଚଦେବତାଙ୍କ ପୂଜା ଓ ପଞ୍ଚମହାଯଜ୍ଞର ପୁନଃ ପ୍ରବର୍ତ୍ତନ କଲେ ।

ଶଙ୍କରାଚାର୍ଯ୍ୟ ଅଦ୍ୱୈତ ଜ୍ଞାନୀ ହୋଇ ମଧ୍ୟ ଉପାସନାଦ୍ୱାରା ଯେ ଚିତ୍ତ ଶୁଦ୍ଧ ହୋଇ ସ୍ୱରୂପଜ୍ଞାନ ଲାଭ ହେବ, ସେଥିନିମିତ୍ତ ସମସ୍ତ ତୀର୍ଥାଟନ କରି ସବୁ କ୍ଷେତ୍ରରେ ଦେବ-ଦେବୀଙ୍କ ଦର୍ଶନ ଓ ଯଥାବିଧି ଅର୍ଚ୍ଚନାଦି କରୁଥିଲେ । କୌଣସି ଦେବତାଙ୍କୁ ଉପେକ୍ଷା କରିବାର ପ୍ରବୃତ୍ତି ତାଙ୍କର ନ ଥିଲା । ସେ ନିଜକୁ କେବଳ ଭଗବାନ ସୃଷ୍ଟି ବୋଲି ମନେ ନ କରି ଭଗବାନଙ୍କ ସହିତ ତାଙ୍କର ଅଭେଦ ଜ୍ଞାନକୁ ସତ୍ୟ ବୋଲି ବୁଝିଥିଲେ ।



# ଶଙ୍କରଙ୍କ ଅନ୍ତିମକାଳ

ଦିଗ୍‌ବିଜୟ ଶେଷରେ ଗୌଡ଼ନଗରୀ ପରିତ୍ୟାଗ କରି ଶଙ୍କର ଗୌଡ଼ଦେଶରେ ନାନା ସ୍ଥାନରେ ପରିଭ୍ରମଣ କଲା ପରେ ଗଙ୍ଗାତୀରସ୍ଥ ଗୋଟିଏ ପ୍ରଶସ୍ତ ବାଲୁକାମୟ ଉନ୍ମୁକ୍ତ ପ୍ରାନ୍ତରରେ ଉପସ୍ଥିତ ହେଲେ ଓ ତତ୍ରସ୍ଥ ପ୍ରାକୃତିକ ଶୋଭାରେ ମୁଗ୍ଧ ହୋଇ ସମସ୍ତେ ସେଠାରେ ପଥଶ୍ରାନ୍ତି ଦୂର କରିବା ଉଦ୍ଦେଶ୍ୟରେ ବିଶ୍ରାମ କଲେ । ସନ୍ଧ୍ୟା ସମୟରେ ସାୟଂକୃତ୍ୟାଦି ସମାପନ କରି ଆଚାର୍ଯ୍ୟ ଗଙ୍ଗାକୂଳରେ ଏକାକୀ ବସିଛନ୍ତି, ଅଦୂରରେ ଶିଷ୍ୟମାନେ ନିଜ ନିଜ ଭାବରେ ଉପବିଷ୍ଟ ଅଛନ୍ତି— ଆଚାର୍ଯ୍ୟ ଦେଖିଲେ, ଗୋଟିଏ ତେଜଃପୁଞ୍ଜ ସହସା ତାଙ୍କ ସମ୍ମୁଖରେ ଆବିର୍ଭୂତ ହେଲା । ସେ କ୍ରମେ ଦେଖିଲେ ଯେ ଜଣେ ଯୋଗୀ ତାଙ୍କ ଆଡ଼କୁ ଅଗ୍ରସର ହେଉଛନ୍ତି । ଆଉ ଟିକିଏ ନିକଟବର୍ତ୍ତୀ ହେବାରୁ ଦେଖିଲେ—ଯୋଗୀଙ୍କର ବାମ ହସ୍ତରେ କମଣ୍ଡଳୁ, ଦକ୍ଷିଣ ହସ୍ତରେ ରୁଦ୍ରାକ୍ଷମାଳା, ମସ୍ତକ ମୁଣ୍ଡିତ, ପରିଧାନ ଗୈରିକ ବସନ, ଗଳାରେ ରୁଦ୍ରାକ୍ଷମାଳା, ମୁଖରେ ଅପୂର୍ବ ଜ୍ୟୋତିଃ, ଚରଣଯୁଗଳ ପସ୍ଫୁଟିତ ପଦ୍ମରାଗରେ ରଞ୍ଜିତ । ଏହା ଦେଖି ଆଚାର୍ଯ୍ୟ ମନେ କଲେ, 'ଏ ତ ଜଣେ ସାଧାରଣ ମନୁଷ୍ୟ ନୁହନ୍ତି । ତତ୍ପରେ ଧ୍ୟାନବଳରେ ଜାଣିଲେ ସେ ତାଙ୍କର ଦୀକ୍ଷାଗୁରୁ ଭଗବାନ ଗୋବିନ୍ଦପାଦଙ୍କ ଗୁରୁ ସିଦ୍ଧଯୋଗୀ ଗୌଡ଼ପାଦାଚାର୍ଯ୍ୟ ।'' ଆଚାର୍ଯ୍ୟ ଗୁରୁଦେବଙ୍କ ଚରଣତଳେ ଭୂମିଷ୍ଠ ହୋଇ ପ୍ରଣାମ କଲେ ଏବଂ କୃତାଞ୍ଜଳିପୁଟରେ ଆସନ ଗ୍ରହଣ କରିବାକୁ ଅନୁରୋଧ କଲେ ।

ଆଚାର୍ଯ୍ୟ ଗୌଡ଼ପାଦ ପ୍ରସନ୍ନ ବଦନରେ ଆସନ ଗ୍ରହଣ କଲେ । ଅନନ୍ତର ପଦ୍ମପାଦ ପ୍ରଭୃତି ଶିଷ୍ୟମାନେ ଉଭୟଙ୍କୁ ପ୍ରଣାମ କରି ନିକଟରେ ଦଣ୍ଡାୟମାନ ହେଲେ । ଗୌଡ଼ପାଦ ସେମାନଙ୍କୁ ଦେଖି ଅତିଶୟ ପ୍ରୀତ ହୋଇ ସମସ୍ତଙ୍କୁ ଆଶୀର୍ବାଦ କଲେ । ସେ କହିଲେ, ''ବତ୍ସ ଶଙ୍କର ! ମୁଁ ତୁମର କାର୍ଯ୍ୟକଳାପ ଦର୍ଶନ କରି ସନ୍ତୁଷ୍ଟ ହୋଇଅଛି । ତୁମେ ଗୋବିନ୍ଦପାଦଙ୍କର ସମୁଦାୟ ବିଦ୍ୟା ଲାଭ କରିସାରିଅଛ ତ ? ତୁମର ସର୍ବାଭୀଷ୍ଟ ପୂର୍ଣ୍ଣ ହୋଇଅଛି ତ ?''

ଆଚାର୍ଯ୍ୟ କହିଲେ, ''ଭଗବାନ୍ ! ଆପଣଙ୍କ ଆଶୀର୍ବାଦରୁ ଏ ଶିଷ୍ୟାନୁଶିଷ୍ୟର ଅପୂର୍ଣ୍ଣ ହୋଇ କିଛି ନାହିଁ । ଯାହା ଉପରେ ଆପଣଙ୍କ କୃପାକଟାକ୍ଷପାତ ହୋଇଛି, ତା'ର କ'ଣ ଆଉ କିଛି ଅଭାବ ଅଛି ?'' ଆଚାର୍ଯ୍ୟ ଗୌଡ଼ପାଦ କହିଲେ, ''ମୁଁ

ଗୋବିନ୍ଦପାଦଙ୍କଠାରୁ ଶୁଣିଥିଲି ଯେ ତୁମେ ତାଙ୍କ ନିକଟରେ ଅବସ୍ଥାନ କରୁଥିବା ବେଳେ ମୋର 'ମାଣ୍ଡୁକ୍ୟ କାରିକା'ର ଅପୂର୍ବ ବ୍ୟାଖ୍ୟା କରି ମଝେ ମଝେ ତାଙ୍କୁ ଶୁଣାଉଥିଲ ଏବଂ ସେଥିରେ ମୋର ମେନାଗତଭାବ ଉତ୍ତମଭାବରେ ବ୍ୟକ୍ତ ହେଉଥିଲା । ତୁମେ କ'ଣ ମୋର୍ ସେହି କାରିକାର ଭାଷ୍ୟ ରଚନା କରିଛ ?''

ଆଚାର୍ଯ୍ୟ କହିଲେ, ''ହଁ, ମୁଁ ଆପଣଙ୍କର କାରିକାର ଭାଷ୍ୟ ରଚନା କରିଅଛି, ଅନୁମତି ହେଲେ ଏହା ବର୍ତ୍ତମାନ ଆବୃତ୍ତି କରି ଶୁଣାଇବି ।'' ଗୌଡ଼ପାଦ କହିଲେ, ''ହିଁ, ଏହା ଶୁଣିବାକୁ ମୋର ଏକାନ୍ତ ଇଚ୍ଛା ।''

ଆଚାର୍ଯ୍ୟ କାରିକାର ଭାଷ୍ୟକୁ ଆଦ୍ୟପ୍ରାନ୍ତ ଆବୃତ୍ତି କରିଗଲେ । ଗୌଡ଼ପାଦ ଆନନ୍ଦିତ ହୋଇ କହିଲେ, ''ବତ୍ସ ! ବର ପ୍ରାର୍ଥନା କର, ମୁଁ ଅତିଶୟ ପ୍ରୀତ ହୋଇଅଛି । ଆମମାନଙ୍କ ଦର୍ଶନ ବ୍ୟର୍ଥ ହୁଏ ନାହଁ ।'' ଶଙ୍କର କହିଲେ, ''ଭଗବାନ୍ ! ଆପଣଙ୍କ କୃପାରୁ ମୋର ତ ଅପ୍ରାପ୍ୟ ହୋଇ କିଛି ନାହିଁ । ତଥାପି ଆପଣ ଯେତେବେଳେ ବର ଦେବାକୁ ଇଚ୍ଛା କରିଛନ୍ତି, ମୋତେ ଏହି ବର ଦିଅନ୍ତୁ ଯେପରି ମୋର ଚିତ୍ତ ନିରନ୍ତର ଚିନ୍ମୟ ତତ୍ତ୍ୱରେ ବିଲୀନ ରହେ ।''

ଆଚାର୍ଯ୍ୟ ଗୌଡ଼ପାଦ ବୁଝିଲେ ଯେ ଶଙ୍କର ଆଉ ବେଶୀ ଦିନ ଦେହ ଧାରଣ କରିବେ ନାହିଁ । ସେ କହିଲେ ବତ୍ସ ! ତୁମର କାର୍ଯ୍ୟ ଶେଷ ହୋଇଅଛି । ମୁଁ ଏଥିପାଇଁ ତୁମକୁ ଥରେ ଦେଖିବାକୁ ଆସିଲି । ମୋର ଆଶୀର୍ବାଦରୁ ତୁମର ଏହି ଇଚ୍ଛା ପୂର୍ଣ୍ଣ ହେବ ।'' ଏହା କହି ଗୌଡ଼ପାଦ ଅନ୍ତର୍ଦ୍ଧାନ ହୋଇଗଲେ । ସେହି ଜ୍ୟୋତିଃପୂର୍ଣ୍ଣ ଶରୀର ଯେପରି କି ଅନନ୍ତ ଆକାଶରେ ବିଲୀନ ହୋଇଗଲା । ଆଚାର୍ଯ୍ୟ ମଧ ସମାଧିମଗ୍ନ ହୋଇପଡ଼ିଲେ । କିଛିକ୍ଷିଣ ପରେ ଆଚାର୍ଯ୍ୟଙ୍କର ସମାଧି ଭଗ୍ନ ହେଲା । ସେ ଶିଷ୍ୟମାନଙ୍କ ସମକ୍ଷରେ ସିଦ୍ଧଯୋଗୀ ନିଜ ପରମଗୁରୁଦେବଙ୍କ ଅଦ୍ଭୁତ ଶକ୍ତି ଓ ସିଦ୍ଧିର କଥା କହିବାକୁ ଲାଗିଲେ । ଶିଷ୍ୟମାନେ ଏହା ଶ୍ରବଣ କରି ନିଜକୁ ଧନ୍ୟ ମନେ କଲେ ।

ଏହା ପରେ ଆଚାର୍ଯ୍ୟ ନେପାଳ ଅଭିମୁଖରେ ପଶୁପତିନାଥ ମନ୍ଦିର ସଂସ୍କାର ନିମିତ୍ତ ଗମନ କଲେ । ସେ ପଶୁପତିନାଥଙ୍କୁ ଦର୍ଶନ କରି ଜାଣିଲେ ସେ ମନ୍ଦିରରେ ଆଉ ପୂଜାଦି ପ୍ରାୟ ହେଉ ନାହିଁ । ଭୋଜନ ଶେଷରେ ବୌଦ୍ଧମାନେ ସେଠାରେ ଉଚ୍ଛିଷ୍ଟ ଫିଙ୍ଗି ଦିଅନ୍ତି, ଫଳରେ ମନ୍ଦିର ଆବର୍ଜନାରେ ପରିପୂର୍ଣ୍ଣ । ସେଠାରେ ଜନସାଧାରଣ ବୌଦ୍ଧ । ସେମାନେ କଦର୍ଯ୍ୟ ତାନ୍ତ୍ରିକ ଆଚାର ଅବଲମ୍ବନ କରି

କେବଳ ଅନାଚାରକୁ ପ୍ରଶ୍ରୟ ଦେଉଛନ୍ତି । ବୈଦିକ ଧର୍ମ ଏକାବେଳକେ ବିସ୍ମୃତ ହୋଇଛନ୍ତି । ବର୍ଣ୍ଣାଶ୍ରମ ଧର୍ମ ଆଉ ପ୍ରତିପାଳିତ ହେଉ ନାହିଁ । କେହି ଶାସ୍ତ୍ର ଚର୍ଚ୍ଚା କରୁ ନାହାନ୍ତି । ସେ ସ୍ଥାନର ରାଜା ଆଚାର୍ଯ୍ୟ ଓ ତାଙ୍କ ଶିଷ୍ୟମାନଙ୍କ ଆଚାର ବ୍ୟବହାର ଦେଖି ଚମତ୍କୃତ ହୋଇଗଲେ । ରାଜା ନରେନ୍ଦ୍ରଦେବ ଆଚାର୍ଯ୍ୟଙ୍କ ଶିଷ୍ୟତ୍ୱ ସ୍ୱୀକାର କଲେ । ପଶୁପତିନାଥଙ୍କ ପୂଜାନିମିତ୍ତ ସଦାଚାରୀ ଦକ୍ଷିଣଦେଶୀୟ ବ୍ରାହ୍ମଣ ନିଯୁକ୍ତ ହେଲେ । ବୌଦ୍ଧମାନେ ଦୂରଦେଶକୁ ପଳାୟନକଲେ ।

ନେପାଳରୁ ଶଙ୍କର କ୍ରମେ ବଦରିକା ଅଭିମୁଖରେ ଯାତ୍ରା କରି ଜ୍ୟୋତିର୍ଧାମରେ ଉପନୀତ ହେଲେ । ସେଠାରେ ରାଜା ଆଚାର୍ଯ୍ୟଙ୍କର ଯଥୋଚିତ ଅଭ୍ୟର୍ଥନା କଲେ ଓ ତାଙ୍କ ସେବାର ସତ୍କାର କରି ନିଜକୁ ଧନ୍ୟ ମନେ କରିବାକୁ ଲାଗିଲେ । କ୍ରମେ ଆଚାର୍ଯ୍ୟ ବଦରୀକ୍ଷେତ୍ରରେ ଉପନୀତ ହେଲେ । ସେଠାରେ ପୂଜାଦି ବ୍ୟବସ୍ଥା ଦର୍ଶନ କରି ସେ ପରମପ୍ରୀତ ହେଲେ ଏବଂ ମନ୍ଦିରରେ ଅବସ୍ଥାନ କରିବାକୁ ଲାଗିଲେ । ଏହା ପରେ ଶିଷ୍ୟମାନଙ୍କ ଅନୁରୋଧରେ ଆଚାର୍ଯ୍ୟ କେଦାରକ୍ଷେତ୍ର ଅଭିମୁଖରେ ଯାତ୍ରା କଲେ । କେଦାରକ୍ଷେତ୍ରରେ ଉପନୀତ ହୋଇ ସେ ଯଥାବିଧି ପୂଜା ଶେଷ କରି ମନ୍ଦିର ନିକଟରେ ଉପବେଶନ କରିବାକୁ ଲାଗିଲେ । ହଠାତ୍ ତାଙ୍କ ମନରେ ଭାବାନ୍ତର ଉପସ୍ଥିତ ହେଲା ଓ ତାଙ୍କ ଅନ୍ତରରେ ଦେହତ୍ୟାଗର ପ୍ରବୃତ୍ତି ଜାତ ହେଲା । ସ୍ଥୁଳତଃ ଆଉ ଦେହଧାରଣ କରିବାର କୌଣସ ପ୍ରୟୋଜନ ନାହିଁ ବୋଲି ସେ ହୃଦୟଙ୍ଗମ କଲେ । ସେତେବେଳକୁ ବେଦବିରୋଧୀମାନେ ସମସ୍ତେ ଅଦ୍ୱୈତ ମତ ସ୍ୱୀକାର କରି ସାରିଥିଲେ । ଶିଷ୍ୟମାନେ ମଧ୍ୟ ଉପଯୁକ୍ତ ହୋଇ ପାରିଥିଲେ । ସେମାନଙ୍କର ଅପୂର୍ଣ୍ଣ ହୋଇ କିଛି ନ ଥିଲା । ସୁତରାଂ ବୃଥାରେ ଦେହାଭିମାନ ସୃଷ୍ଟି କରି ସେହି ଦେହପ୍ରତି ଦୃଷ୍ଟି ରଖିବାର ଆବଶ୍ୟକତା ବା ଆଉ କ'ଣ ଅଛି ? ଏତିକିବେଳକୁ ତାଙ୍କର ଦ୍ୱାତ୍ରିଂଶ ବର୍ଷ ପରମାୟୁ ଶେଷ ହୋଇ ଆସିଲା । ସେ ଶିଷ୍ୟମାନଙ୍କୁ ଉପଦେଶ ଦେବା କାର୍ଯ୍ୟ ଶେଷ କରି ଦିନେ ସମସ୍ତଙ୍କୁ ସମ୍ବୋଧନପୂର୍ବକ କହିଲେ, ''ଶୁଣ ! ବର୍ତ୍ତମାନ ମୋର ଏ ଦେହର ପ୍ରାରବ୍ଧ ଶେଷ ହୋଇଅଛି । ତୁମେମାନେ ନିଜ ନିଜର କର୍ତ୍ତବ୍ୟ ନିର୍ଣ୍ଣୟ କରିନିଅ । ମୋ ଠାରୁ ଆଉ ଯଦି କିଛି ଜ୍ଞାତବ୍ୟ ବିଷୟ ଅଛି ତେବେ ପ୍ରଶ୍ନ କରି ବୁଝି ନିଅ ।''

''ଆଚାର୍ଯ୍ୟଙ୍କ କଥା ଶୁଣି ଶିଷ୍ୟମାନେ ସ୍ତମ୍ଭୀଭୂତ ହୋଇଗଲେ । ସେମାନଙ୍କ ବାକ୍‌ଶକ୍ତି ବିଲୁପ୍ତ ହୋଇଗଲା । ସେମାନଙ୍କର ତ ପ୍ରଶ୍ନ କରିବାର କିଛି ବାକୀ ନଥିଲା ! ଯେଉଁ ପଦ୍ମପାଦ ଆଚାର୍ଯ୍ୟଙ୍କ ଶରୀର ରକ୍ଷାନିମିତ୍ତ ଅନେକ ଥର ଅସାଧ୍ୟସାଧନ କରିଛନ୍ତି, ସେ ମଧ୍ୟ ଆଜି ନୀରବ ରହିଲେ । ଆଚାର୍ଯ୍ୟଙ୍କୁ କିଛି ଦିନ ଇହଲୋକରେ ରକ୍ଷା କରିବାକୁ କେହିହେଲେ ପ୍ରାର୍ଥନା କଲେ ନାହିଁ ।

କାଳପୂର୍ଣ୍ଣ ବେଳେ କାଳର ଅନୁରୂପ ଅବସ୍ଥା ପୂର୍ଣ୍ଣମାତ୍ରାରେ ସଂଘଟିତ ହୁଏ । ସୁତରାଂ ପଦ୍ମପାଦଙ୍କ ମନରେ ପୂର୍ବପରି ଆଚାର୍ଯ୍ୟଙ୍କ ଦେହରକ୍ଷା କରିବାର ପ୍ରବୃତ୍ତି ଜାତ ହେଲା ନାହିଁ । ଅନେକ ସମୟ ପରେ ପଦ୍ମପାଦ ଅଶ୍ରୁପୂର୍ଣ୍ଣ ନୟନରେ କହିଲେ, ''ଭଗବନ୍ ! ଆମର ଆଉ ଜ୍ଞାତବ୍ୟ ବିଷୟ କିଛି ନାହିଁ । ଆପଣଙ୍କ କୃପାରୁ ଆମେ ସମସ୍ତେ ପୂର୍ଣ୍ଣମନୋରଥ । ବର୍ତ୍ତମାନ କହନ୍ତୁ, ଆମକୁ କ'ଣ କରବାକୁ ହେବ ? ଆମଦ୍ୱାରା ଯଦି କିଛି ବିଶେଷ କାର୍ଯ୍ୟ କରିବାର ଥାଏ, ତେବେ କହନ୍ତୁ, ଆମେ ତାହା ପ୍ରତିପାଳନ କରିବୁ । ଆପଣ ଯେପରି ବ୍ୟାସଦେବଙ୍କ ଆଦେଶରେ ଆସମୁଦ୍ର-ହିମାଚଳ ଭ୍ରମଣ କଲେ, ସେହିପରି କ'ଣ ଆମକୁ କିଛି କରିବାକୁ ହେବ ?'' ଏହା କହୁ କହୁ ପଦ୍ମପାଦଙ୍କ କଣ୍ଠରୋଧ ହୋଇଗଲା । ସୁରେଶ୍ୱର ପ୍ରଭୃତି ଶିଷ୍ୟମାନେ ମସ୍ତକ ଅବନତପୂର୍ବକ ମୌନ ରହି ପଦ୍ମପାଦଙ୍କ କଥାର ସମର୍ଥନ କଲେ ।

ଆଚାର୍ଯ୍ୟ କହିଲେ, ''ମୋର କହିବାର କିଛି ନାହିଁ । ଯେଉଁମାନେ ଜଗତର ବ୍ୟବସ୍ଥାନିମିତ୍ତ ବିଦ୍ୟମାନ ଅଛନ୍ତି, ସେହି ଦେବତା ଓ ଋଷିମାନେ ତୁମମାନଙ୍କୁ ଯେଭଳି ପ୍ରବୃତ୍ତି ଦେବେ, ତାହା ହିଁ ତୁମର କର୍ତ୍ତବ୍ୟ । ସୁତରାଂ ମୋର କିଛି କହିବାର ନାହିଁ ।''

ଶିଷ୍ୟମାନେ ନୀରବ ରହିବା ଦେଖି ସୁଧନ୍ୱାରାଜ କହିଲେ, ''ଭଗବନ୍ ! ଆପଣ ଯାହା କହିଲେ ତାହା ଯଥାର୍ଥ ସତ୍ୟ । ତେବେ ଆପଣଙ୍କ କୀର୍ତ୍ତିକୁ ଚିରସ୍ଥାୟୀ କରିବାନିମିତ୍ତ ଆମେ ଏହି ଚାରିଜଣ ଶିଷ୍ୟଙ୍କଦ୍ୱାରା ଦେଶଭେଦରେ ମଠ ସ୍ଥାପନପୂର୍ବକ ଶିଷ୍ୟ ଓ ସମ୍ପ୍ରଦାୟ ଭେଦରେ ବ୍ରହ୍ମବିଦ୍ୟାର ପ୍ରଚାର କରିବାକୁ ଇଚ୍ଛା କରୁଅଛୁ । ବିଦ୍ୟା ସମ୍ପ୍ରଦାୟାନୁଗତ ନ ହେଲେ ଫଳବତୀ ହୁଏ ନାହିଁ । ଅତଏବ ଏ ବିଷୟରେ ଆପଣ ଯେପରି ନିର୍ଦ୍ଦେଶ ଦେବେ ତାହାହିଁ ଆମର ଅବଲମ୍ବନୀୟ ହେବା ବାଞ୍ଛନୀୟ ।''

ଆଚାର୍ଯ୍ୟ କିଛି ସମୟ ମୌନ ରହି କହିଲେ, ''ପଦ୍ମପାଦ, ସୁରେଶ୍ୱର, ହସ୍ତାମଳକ ଓ ତ୍ରୋଟକ ! ତୁମେମାନେ ଭାରତର ଚାରିପ୍ରାନ୍ତରେ ବିଷ୍ଣୁଙ୍କର ଚାରି ଧାମରେ ଚାରିଗୋଟି ମଠ ସ୍ଥାପନ କର । ଦ୍ୱାରକାରେ ବିଶ୍ୱରୂପ ସୁରେଶ୍ୱର, ପୁରୀଧାମରେ ପଦ୍ମପାଦ, ଜ୍ୟୋତିଃଧାମରେ ତ୍ରୋଟକ ଓ ଶୃଙ୍ଗଗିରିରେ ପୃଥ୍ୱୀଧର (ହସ୍ତାମଳକ) ଆଚାର୍ଯ୍ୟ ମଠ ସ୍ଥାପନ କରନ୍ତୁ । ଦ୍ୱାରକାରେ ଯେଉଁ ମଠ ସ୍ଥାପିତ ହେବ, ତାହାର ନାମ ହେବ ଶାରଦା ମଠ; ପୁରୀରେ ଯେଉଁ ମଠ ସ୍ଥାପିତ ହେବ, ତାହାର ନାମ ହେବ ଗୋବର୍ଦ୍ଧନ ମଠ; ଜ୍ୟୋତିଃ ଧାମରେ ଯେଉଁ ମଠ ସ୍ଥାପିତ ହେବ, ତାହା ଜ୍ୟୋତିଃ ମଠ ଓ ରାମେଶ୍ୱରରେ ଯେଉଁ ମଠ ସ୍ଥାପିତ ହେବ ତାହା ଶୃଙ୍ଗେରୀ ମଠ ନାମରେ ଖ୍ୟାତ ହେବ । ଦ୍ୱାରକାର ଶାରଦା ମଠ ଅଧୀନରେ ତୀର୍ଥ ଓ ଆଶ୍ରମ ସମ୍ପ୍ରଦାୟ; ପୁରୀଧାମ ଗୋବର୍ଦ୍ଧନ ମଠ ଅଧୀନରେ ବଣ୍ୟ ଓ ଅରଣ୍ୟ ସମ୍ପ୍ରଦାୟ; ଜ୍ୟୋତିଃଧାମର ଜ୍ୟୋତି ମଠ ଅଧୀନରେ ଗିରି, ପର୍ବତ ଓ ସାଗର ସମ୍ପ୍ରଦାୟ; ଏବଂ ଶୃଙ୍ଗେରୀ ମଠ ଅଧୀନରେ ଭାରତୀ, ସରସ୍ୱତୀ ଓ ପୁରୀ ସମ୍ପ୍ରଦାୟଭୁକ୍ତ ସନ୍ନ୍ୟାସୀମାନେ ଅବସ୍ଥାନ କରିବେ ।

ଶାରଦା ମଠରେ ସାମବେଦର, ଗୋବର୍ଦ୍ଧନ ମଠରେ ଋଗ୍‌ବେଦର, ଜ୍ୟୋତିଃ ମଠରେ ଅଥର୍ବବେଦର ଓ ଶୃଙ୍ଗେରୀ ମଠରେ ଯଜୁର୍ବେଦର ପ୍ରାଧାନ୍ୟ ବିଦ୍ୟମାନ ରହିବ; ସୁତରାଂ 'ତତ୍ତ୍ୱମସୀ' ମହାବାକ୍ୟ ଶାରଦା ମଠର ଅବଲମ୍ବନୀୟ, 'ପ୍ରଜ୍ଞାନାଂ ବ୍ରହ୍ମ' ମହାବାକ୍ୟ ଗୋବର୍ଦ୍ଧନ ମଠର ଅବଲମ୍ବନୀୟ, 'ଅୟମାତ୍ମା ବ୍ରହ୍ମ' ଜ୍ୟୋତି ମଠର ଅବଲମ୍ବନୀୟ ଏବଂ 'ଅହଂ ବ୍ରହ୍ମାସ୍ମି' ମହାବାକ୍ୟ ଶୃଙ୍ଗେରୀ ମଠର ଅବଲମ୍ବନୀୟ ହୋଇ ରହୁ । ଶାରଦା ମଠରେ ସନ୍ନ୍ୟାସୀମାନଙ୍କର ଉପାଧି 'ସ୍ୱରୂପ', ଗୋବର୍ଦ୍ଧନ ମଠର 'ପ୍ରକାଶ', ଜ୍ୟୋତିଃ ମଠର 'ଆନନ୍ଦ' ଓ ଶୃଙ୍ଗେରୀ ମଠର 'ଚୈତନ୍ୟ' ରହୁ । ଆଚାର୍ଯ୍ୟଙ୍କ ଆଦେଶରେ ସୁଧନ୍ୱାରାଜ ମଠ ବିଷୟକ ସମସ୍ତ ବ୍ୟବସ୍ଥା, ଶିଷ୍ୟ ନିର୍ବାଚନ, ମଠାଧୀଶଙ୍କର ଗୁଣଗ୍ରାମ ପ୍ରଭୃତି ସମସ୍ତ ଲେଖି ରଖିଲେ । ଉକ୍ତ ପୁସ୍ତକର ନାମ ଆଚାର୍ଯ୍ୟଙ୍କ ଇଚ୍ଛା ଅନୁସାରେ 'ମଠାମ୍ନାୟ' ରଖାଗଲା । ଆମ୍ନାୟ ଅର୍ଥ ବେଦ । ବେଦ ଯେପରି ସମସ୍ତଙ୍କର ଅବଲମ୍ବନୀୟ, ମଠାଦିର ବିଧି ବ୍ୟବସ୍ଥା ବିଷୟରେ ମଠାମ୍ନାୟ ସେହିପରି ସମସ୍ତଙ୍କର ଅବଲମ୍ବନୀୟ ।

ଏହାପରେ ଆଉ କିଛି ସମୟ ନୀରବ ରହି ରାଜସ୍ୱଭାବସୁଲଭ ଦୂରଦର୍ଶିତାବଳରେ ସୁଧନ୍ୱାରାଜ କହିଲେ, ''ଭଗବନ୍ ! ଆପଣଙ୍କର ଏହି

ଅନୁଶାସନଗୁଡ଼ିକ ମଧ୍ୟରେ ଅନୁଶାସନ କର୍ତ୍ତାଙ୍କର ସ୍ୱରୂପ ବା ଯୋଗ୍ୟତା କୀର୍ତ୍ତିତ ହେବା ଆବଶ୍ୟକ । ବେଦ ଯେ ନିତ୍ୟ ଓ ସ୍ୱତଃ ପ୍ରମାଣିତ, ତାହା ସେହି ବେଦରେ ହିଁ ଉଲ୍ଲେଖ ଅଛି । ବେଦକର୍ତ୍ତା ବ୍ରହ୍ମା ସ୍ୱୟଂ ନିଜ ମୁଖରେ ଏହା ବ୍ୟକ୍ତ କରିଛନ୍ତି । ସେହିପରି ଅନୁଶାସନ କର୍ତ୍ତା ଏହା ନିଜେ କହିବା ଉଚିତ । ଆଚାର୍ଯ୍ୟ ଟିକିଏ ହସି କହିଲେ, ''ସୁଧନ୍ୱା ! ତୁମେ ଶ୍ରେଷ୍ଠ ରାଜବୁଦ୍ଧିର ପରିଚୟ ପ୍ରଦାନ କଲ । ଆଚ୍ଛା ସର୍ବଶେଷରେ ଲେଖ—

କୃତେ ବିଶ୍ୱଗୁରୁ ର୍ବ୍ରହ୍ମା ତ୍ରେତୟାଂ ଋଷିସତ୍ତମଃ ।
ଦ୍ୱାପରେ ବ୍ୟାସ ଏବ ସ୍ୟାତ୍ କଳାବତ୍ର ଭବାବ୍ୟହମ୍ ॥

ବ୍ରହ୍ମା ସତ୍ୟଯୁଗରେ ବିଶ୍ୱଗୁରୁ, ବଶିଷ୍ଠଦେବ ତ୍ରେତାଯୁଗରେ ବିଶ୍ୱଗୁରୁ, ବ୍ୟାସଦେବ ଦ୍ୱାପରଯୁଗରେ ବିଶ୍ୱଗୁରୁ ଏବଂ ମୁଁ ହେଉଛି ଏହି କଳିଯୁଗରେ ବିଶ୍ୱଗୁରୁ ।

ଯାହାଙ୍କଠାରେ ବ୍ରହ୍ମଭାବ ପୂର୍ଣ୍ଣମାତ୍ରାରେ ପ୍ରକଟିତ, ଆବଶ୍ୟକ ହେଲେ ତାଙ୍କଠାରେ ଈଶ୍ୱରଭାବ କ'ଣ ଉଦୟ ହୋଇପାରିବ ନାହିଁ ? ପୂର୍ଣ୍ଣରୁ ପୂର୍ଣ୍ଣ ବିୟୋଗ କଲେ ପୂର୍ଣ୍ଣହିଁ ରହେ—'ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ'— ଆଚାର୍ଯ୍ୟଙ୍କ ମୁଖରୁ ଏହି କଥା ଶ୍ରବଣ ଶିଷ୍ୟମାନେ ସମସ୍ତେ ବିସ୍ମୟ ଓ ଭକ୍ତିରେ ବିହ୍ୱଳ ହୋଇପଡ଼ିଲେ । ସମସ୍ତେ ନୀରବ ନିଷ୍ପନ୍ଦ । ଶିଷ୍ୟମାନେ ସମସ୍ତେ ଭାବିବାକୁ ଲାଗିଲେ, 'ଆମେ ଆଉ ତ କାହାଠାରୁ ଉପଦେଶ-ବାଣୀ ଶୁଣିବାକୁ ପାଇବା ନାହିଁ । ଆମ ମନରେ କୌଣସି ପ୍ରଶ୍ନର ଉଦୟ ହେଲେ ଆଚାର୍ଯ୍ୟଙ୍କ ମୁଖପ୍ରତି ନିରୀକ୍ଷଣ କଲାମାତ୍ରେ ତାହାର ମୀମାଂସା ହୋଇଯାଉଥିଲା । ଏଣିକି ଆଉ ତାହା ହୋଇପାରିବ ନାହିଁ ।'

ତତ୍ପରେ ସୁଧନ୍ୱାରାଜାଙ୍କ ପ୍ରଶ୍ନରେ ବେଦାନ୍ତସିଦ୍ଧ ବ୍ରହ୍ମଙ୍କର ସ୍ୱରୂପ ସମ୍ବନ୍ଧରେ ଶଙ୍କର ନିର୍ବାଣଦଶକ ସ୍ତୋତ୍ରଟି ପାଠ କରି ଶୁଣାଇ କହିଲେ, ''ମହାରାଜ ! ସ୍ୱରୂପ ସମ୍ବନ୍ଧରେ ମୋର ଗୁରୁଦେବ ତାଙ୍କ ଦେହରକ୍ଷା ପୂର୍ବରୁ ମୋତେ ଏହି ପ୍ରଶ୍ନ ପ୍ରଚାରିଥିଲେ । ତାହାର ଉତ୍ତରରେ ମୁଁ ତାଙ୍କ ନିକଟରେ ଯେଉଁ ସ୍ତୋତ୍ର ପାଠ କରି ଶୁଣାଇଥିଲି, ତାହା ତୁମମାନଙ୍କୁ ଶୁଣାଇଲି ।'' ସ୍ତୋତ୍ରଟି ଶେଷ ହେଲାମାତ୍ରେ ଆଚାର୍ଯ୍ୟ ନୀରବ ହେଲେ । ସୁଧନ୍ୱା ଧନ୍ୟ ହେଲେ । କିଛିକ୍ଷଣ ପରେ ଆଚାର୍ଯ୍ୟ ଯୋଗବଳରେ ଦେହରକ୍ଷା କଲେ । ଦେହତ୍ୟାଗର ସମୟ ୬୪୭ ଖ୍ରୀଷ୍ଟାବ୍ଦ ।

ଆଚାର୍ଯ୍ୟଙ୍କ ତିରୋଧାନରେ ଶିଷ୍ୟମାନଙ୍କ ହୃଦୟରେ ମହା ବୈରାଗ୍ୟର ଉଦୟ ହେଲା । ସେମାନେ ନିରନ୍ତର ସମାଧିରେ କାଳଯାପନ କରିବାକୁ ଲାଗିଲେ ।

ଏହା ଦେଖି ସୁଧନ୍ୱାରାଜା ଭାବିଲେ, 'ଶିଷ୍ୟମାନେ ଯଦି ଏପରି ଅନ୍ତର୍ମୁଖୀ ହୋଇ ଅବସ୍ଥାନ କରନ୍ତି, ତେବେ ଆଚାର୍ଯ୍ୟଙ୍କ ପ୍ରଚାରିତ ବ୍ରହ୍ମବିଦ୍ୟା ରକ୍ଷିତ ହୋଇପାରିବ ନାହିଁ । ସମ୍ପ୍ରଦାୟ ରକ୍ଷିତ ନ ହେଲେ ବିଦ୍ୟା ବିଚ୍ଛିନ୍ନ ହୋଇପଡ଼ିବ । ପୁଣି ଘୋର ଅଜ୍ଞାନତମସା ମାନବସମାଜକୁ ସମାଚ୍ଛନ୍ନ କରିଦେବ । ତେଣୁ ସେ ଶିଷ୍ୟମାନଙ୍କୁ ଧର୍ମରକ୍ଷା କରିବା ନିମିତ୍ତ ଅନୁରୋଧ କରିବାକୁ ଲାଗିଲେ । ଅନନ୍ତର ସୁଧନ୍ୱାରାଜାଙ୍କ ଅନୁରୋଧରେ ସେମାନେ ଆଚାର୍ଯ୍ୟଙ୍କ ନିର୍ଦ୍ଦେଶିତ ଦେଶାଭିମୁଖରେ ଯାତ୍ରା କଲେ । ଶଙ୍କରଙ୍କର କାର୍ଯ୍ୟ ଏଥର ତାଙ୍କ ସେବକମାନେ ଗ୍ରହଣ କଲେ ।



# ଆଧୁନିକ ହିନ୍ଦୁଧର୍ମର ମତ

ଏକମାତ୍ର ବେଦ ବା ଶ୍ରୁତି ହିଁ ଆର୍ଯ୍ୟ ସନାତନ ହିନ୍ଦୁ ଧର୍ମର ମୂଳଭିତ୍ତି । ଏହି ବେଦ ବା ଶ୍ରୁତିରୁ ହିନ୍ଦୁ ସାଧନାର ବିଭିନ୍ନ ମତ ଓ ପଥର ସୃଷ୍ଟି । ବେଦର ଯଜ୍ଞାଦିରୂପ କର୍ମକାଣ୍ଡାଦିଦ୍ୱାରା ଯେଉଁ ସାଧନପଥ ପ୍ରଦର୍ଶିତ ହୋଇଛି, ତହିଁରେ ଦେଶକାଳପାତ୍ର ଭେଦରେ କିଛି ପରିବର୍ତ୍ତନ କରାଯାଇଥାଏ । କିନ୍ତୁ ବେଦର ଅପର ବିଭାଗର ନାମ ଜ୍ଞାନକାଣ୍ଡ । ତାହା ନିତ୍ୟ, ସାର୍ବଭୌମ ଓ ଅଭ୍ରାନ୍ତ । ପୁରାକାଳରେ ଋଷିମାନେ କେବଳ ଏହି ଜ୍ଞାନକାଣ୍ଡକୁ ଅବଲମ୍ବନ କରି ବହୁ ଉପନିଷଦ ପ୍ରଣୟନ କରିଯାଇଛନ୍ତି । ବେଦ ଓ ଉପନିଷଦର ମର୍ମ ଲୋକେ ଭୁଲିଗଲେ ବୋଲି ତାହାକୁ କେତେକ ପରିମାଣରେ ସରଳ କରି ବ୍ୟାସଦେବ 'ବେଦାନ୍ତଦର୍ଶନ' ପ୍ରଣୟନପୂର୍ବକ ସୂତ୍ରାକାରରେ ତାହା ଲିପିବଦ୍ଧ କରିଥିଲେ । ତତ୍ପରେ ବେଦ, ଉପନିଷଦ ଏବଂ ବେଦାନ୍ତ ମଧ୍ୟରୁ ପରବର୍ତ୍ତୀ ମହାପୁରୁଷମାନେ ସାଧନପଥ ନିର୍ଣ୍ଣୟ କରି ସାଧାରଣଙ୍କନିମିତ୍ତ ତାହା ପ୍ରଚାର କରିଯାଇଛନ୍ତି ଏବଂ ନିଜେ ମଧ୍ୟ ତାହା ଆଚରଣ କରି ସିଦ୍ଧିଲାଭ କରିଛନ୍ତି । ସେହିସବୁ ମହାପୁରୁଷଙ୍କୁ ଈଶ୍ୱରଙ୍କ ଅବତାର ଓ ଜଗଦ୍‌ଗୁରୁ ବୋଲି ଗ୍ରହଣ କରାଯାଇଅଛି । ଏହିସବୁ ମହାପୁରୁଷଙ୍କ ଯେଉଁସବୁ ମତ ଓ ପଥ ବର୍ତ୍ତମାନ ସମୟରେ ପ୍ରଚଳିତ ଅଛି, ତନ୍ମଧ୍ୟରେ ଦୁଇଟି ମତ ପ୍ରଧାନ । ମହାତ୍ମା ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତ ମତ ଓ

ମହାପ୍ରଭୁ ଶ୍ରୀଚୈତନ୍ୟଦେବଙ୍କ ପ୍ରଦର୍ଶିତ ବିଶିଷ୍ଟାଦ୍ୱୈତବାଦ ପ୍ରଧାନ । ଶ୍ରୀରାମକୃଷ୍ଣଦେବ ପ୍ରଭୃତି ମହାପୁରୁଷମାନେ ଜଗତର ଯାବତୀୟ ଧର୍ମମତ ଓ ପଥସମୂହର ସାମଞ୍ଜସ୍ୟ ବିଧାନ କରି ସେ ସମ୍ବନ୍ଧରେ ଉପଦେଶ ଦେଇଯାଇଛନ୍ତି । ସୁତରାଂ ବର୍ତ୍ତମାନ ଯୁଗର ସାଧକମାନଙ୍କର ଶଙ୍କରଙ୍କ ମତ ଓ ପଥ ଏବଂ ଗୌରାଙ୍ଗଦେବଙ୍କ ମତ ଓ ପଥ ସମ୍ବନ୍ଧରେ ସୁସ୍ପଷ୍ଟ ଜ୍ଞାନ ଥିବା ଆବଶ୍ୟକ । ଉଭୟ ମତର ବିଶେଷତ୍ୱଗୁଡ଼ିକ ବୁଝି ଧର୍ମପଥରେ ଅଗ୍ରସର ହେଲେ ସାଧକମାନଙ୍କର ପଥ ସୁଗମ ହେବ; ଅନ୍ୟଥା ଅନ୍ଧକାରରେ ପଡ଼ି ସାଧନଚ୍ୟୁତି ଘଟିବାର ବିଶେଷ ସମ୍ଭାବନା ।

ମହାତ୍ମା ଶଙ୍କରାଚାର୍ଯ୍ୟଙ୍କ ମତକୁ ଅଦ୍ୱୈତବାଦ, ମାୟାବାଦ ବା ବିବର୍ତ୍ତବାଦ କୁହାଯାଏ । ଶ୍ରୀମନ୍‌ଗୌରାଙ୍ଗଙ୍କ ମତକୁ ସ୍ୱଗତଭେଦବାଦ ବା ଅଚିନ୍ତ୍ୟଭେଦାଭେଦବାଦ ମଧ୍ୟ କୁହାଯାଏ । ଉଭୟ ମତରେ ବ୍ରହ୍ମ ନିରାକାର ଓ ସଚ୍ଚିଦାନନ୍ଦସ୍ୱରୂପ ବୋଲି ସ୍ୱୀକୃତ ହୋଇଅଛି । ବ୍ରହ୍ମ ସ୍ୱୟଂ ସ୍ୱରୂପରେ ନିରାକାର । ଅଦ୍ୱୈତ ମତରେ ଏହି ନିରାକାର ବ୍ରହ୍ମଙ୍କୁ ସତ୍ୟ ଜ୍ଞାନରେ ଉପଲବ୍ଧି କଲେ ମୁକ୍ତି ହୁଏ । ଦ୍ୱିତୀୟ ମତରେ ଜୀବ ତାଙ୍କୁ ଜାଣିବାର ସାଧ ନାହିଁ; କେବଳ ନିଷ୍କାମ ଭକ୍ତି ଓ ପ୍ରେମଦ୍ୱାରା ତାଙ୍କର ସାକାର ଭାବକୁ ଉପାସନା କରିପାରିଲେ ସେ ମାନବ-ହୃଦୟରେ ଇଷ୍ଟଦେବ ଶ୍ରୀକୃଷ୍ଣ ମୂର୍ତ୍ତିରେ ଆବିର୍ଭୂତ ହୋଇ ଅନନ୍ତକାଳନିମିତ୍ତ ନିରବଚ୍ଛିନ୍ନ ଆନନ୍ଦରସରେ ପରିପ୍ଲୁତ କରନ୍ତି । ଉଭୟ ମତରେ ସଂସାର ଅନିତ୍ୟ ଓ ସୁଖ-ଦୁଃଖ ମିଶ୍ରିତ ଅବସ୍ଥା ମାତ୍ର । ଏଠାରେ ନିରବଚ୍ଛିନ୍ନ ଆନନ୍ଦ ନାହିଁ । ଏହି ନିରବଚ୍ଛିନ୍ନ ଆନନ୍ଦର ଅଧିକାରୀ ହେବା ହିଁ ମାନବର ଉଦ୍ଦେଶ୍ୟ । ତେବେ ବର୍ତ୍ତମାନ କେବଳ ଶଙ୍କରଙ୍କ ମତ ଓ ପଥ ସମ୍ବନ୍ଧରେ ଆଲୋଚନା କରାଯାଉଅଛି ।



# ଭଗବାନ ଶଙ୍କରଙ୍କ ମତ

ମୁକ୍ତି ମୁଖ୍ୟଫଳଜ୍ଞାସ୍ୟ ଭକ୍ତିସ୍ତତ୍‌ସାଧନନ୍ତତଃ
ଭକ୍ତସ୍ୟ ଭକ୍ତିର୍ମୁଖ୍ୟାସ୍ୟାନ୍ମୁକ୍ତିଃ ସ୍ୟାଦାନୁଷଙ୍ଗିକୀ ॥

—ବୋଧସାର

ଅର୍ଥାତ୍ ଜ୍ଞାନୀର ମୁଖ୍ୟଫଳ ମୁକ୍ତି, ଭକ୍ତି ତାହାର ସାଧନ ଏବଂ ଭକ୍ତଙ୍କର ମୁଖ୍ୟଫଳ ଭକ୍ତି, ମୁକ୍ତି ତାହାର ଅନୁସଙ୍ଗିନୀ ।

ବର୍ତ୍ତମାନ ଦେଖାଯାଉ, ଶଙ୍କରଙ୍କ ମିଶିଯିବା ଭାବର ସୀମା କେଉଁଠାରେ ? ସେଥିପାଇଁ ସେ କିପରି ସାଧନାର ବ୍ୟବସ୍ଥା କରିଛନ୍ତି । ପ୍ରଥମେ ମୁକ୍ତି ସମ୍ବନ୍ଧରେ ଯେତେଗୁଡ଼ିଏ ଅବସ୍ଥାର କଳ୍ପନା କରାଯାଉଛି, ତନ୍ମଧ୍ୟରେ ନିମ୍ନଲିଖିତ ତିନୋଟି ଅବସ୍ଥା ପ୍ରଧାନ । (୧) ଜୀବ ସ୍ୱରୂପରେ ଲୟ ପାଏ ଓ ନାମ-ରୂପ ବିଦ୍ୟମାନ ଥାଏ । (୨) ସ୍ୱରୂପରେ ନାମ-ରୂପ ପ୍ରଭୃତି କାରଣ ରୂପରେ ଥାଏ; ହେତୁ ଉପସ୍ଥିତ ହେଲେ ଆବିର୍ଭୂତ ହେବାକୁ ବାଧ ହୁଏ । (୩) ସ୍ୱରୂପରେ ମିଶିଗଲେ ନାମ-ରୂପ ପ୍ରଭୃତି ଯାବତୀୟ ଉପାଧି ଲୟ ପ୍ରାପ୍ତ ହୁଏ । ଏ ଅବସ୍ଥାରୁ ଆଉ ପୁନରାବୃତ୍ତି ହୁଏ ନାହିଁ ।

ପ୍ରଥମାବସ୍ଥାରେ ଭକ୍ତଙ୍କର ଭାବ ହୁଏ ଯେ 'ମୁଁ ତୁମର; ଦ୍ୱିତୀୟ ଅବସ୍ଥାରେ 'ତୁମେ ମୋର' ଏବଂ ତୃତୀୟ ଅବସ୍ଥାରେ 'ତୁମେ ମୁଁ ଅଭିନ୍ନ ବା ଏକ' ବୋଲି ପ୍ରତୀୟମାନ ହୁଏ । ସୁତରାଂ ଅଦ୍ୱୈତବାଦ ମତରେ ଏହି ତୃତୀୟ ଅବସ୍ଥା ହିଁ କାମ୍ୟ । ଉପନିଷଦ ଭାଷାରେ କହିଲେ ବିଶୁଦ୍ଧ ଜଳ ଯେପରି ବିଶୁଦ୍ଧ ଜଳରେ ମିଶି ଏକ ହୋଇଯାଏ, ସେହିପରି ଜ୍ଞାନୀମାନଙ୍କର ଆତ୍ମା ପରମାତ୍ମାଙ୍କଠାରେ ମିଶି ଏକତ୍ୱ ପ୍ରାପ୍ତ ହୁଏ । ଜୀବ ଓ ଶିବଙ୍କ ମଧ୍ୟରେ ଅଭେଦ ଭାବ ହିଁ ଯେ ଶଙ୍କରଙ୍କ ମତ, ତାହା ଉପରୋକ୍ତ ଉକ୍ତିରୁ ସ୍ପଷ୍ଟ ପ୍ରତୀୟମାନ ହେଉଅଛି । ଶଙ୍କରଙ୍କ ମତରେ ବ୍ରହ୍ମତତ୍ତ୍ୱ ଏକ ଏବଂ ଅଦ୍ୱିତୀୟ । ବ୍ରହ୍ମ ଏକଭାବରେ, ଏକ ସ୍ୱରୂପରେ ଏବଂ ଏକ ଅବସ୍ଥାରେ ସ୍ଥିରଭାବରେ ବିରାଜିତ । ଜୀବ ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତିସ୍ୱରୂପ ମାୟିକ ଅସତ୍ୟ ଅବସ୍ଥାକୁ ଅତିକ୍ରମ କରି ନିତ୍ୟ, ଶାଶ୍ୱତ ଓ ସମଭାବରେ ବିଦ୍ୟମାନ ଶିବ, ଶାନ୍ତ ଓ ସ୍ଥିର ବ୍ରହ୍ମଭାବ ପ୍ରାପ୍ତ ହେଲେ ସତ୍ୟଜ୍ଞାନର ବିକାଶ ହୁଏ, ଏହା ହିଁ ମୁକ୍ତି । ଜୀବର ଏହି ଅବସ୍ଥାର ନାମ ତୁରୀୟ ଅବସ୍ଥା ଓ ଏହି ଭାବରେ

ଅବସ୍ଥାନ କରିବାର ନାମ ନିର୍ବିକଳ୍ପ ସମାଧିଭାବ । ଅବିଦ୍ୟା ମାୟାନିମିତ୍ତ ଜଗତ, ଜୀବ ଓ ବ୍ରହ୍ମ ଭେଦବୁଦ୍ଧିର ଉଦୟ ହୋଇଅଛି । ତେଣୁ ଏହି ବାଦକୁ ବିବର୍ତ୍ତବାଦ କୁହାଯାଏ । ମାୟା ଥିବାହେତୁ ଯେଉଁ ବସ୍ତୁ ଯାହା ନୁହେଁ, ତାକୁ ସେହି ଭାବରେ ଦର୍ଶନ କରାଯାଇଥାଏ । ଜୀବ ଅବିଦ୍ୟାପ୍ରଭାବରେ ଜଗତକୁ ସତ୍ୟ ବୋଲି ଅନୁମାନ କରେ । ବିଚାରଦ୍ୱାରା କ୍ରମେ ଜଗତର ଅସ୍ତିତ୍ୱ ସମ୍ବନ୍ଧରେ ସନ୍ଦେହ ଉତ୍ପନ୍ନ ହୁଏ ଏବଂଶେଷରେ ଜ୍ଞାନଲାଭ ହେଲେ ତାହା ଅଳୀକ ପ୍ରତିପନ୍ନ ହୁଏ । ତତ୍ପରେ ବ୍ରହ୍ମଦର୍ଶନ ଘଟେ । ଜୀବାତ୍ମା, ମାୟା ଓ ଚତୁର୍ବିଂଶତି ତତ୍ତ୍ୱର ଆବରଣ ଖୋଲିଯାଏ । ଏହା ହିଁ ମୁକ୍ତି । ଏହାପରେ ସାଧକ ଶ୍ରବଣ, ମନନ ଓ ନିଦିଧ୍ୟାସନ ସାହାଯ୍ୟରେ ବ୍ରହ୍ମବିଚାର କରିବା ଆବଶ୍ୟକ । ଏହି ସାଧନାର ଶେଷ ଅବସ୍ଥାରେ ସମାଧି ଉତ୍ପନ୍ନ ହେବ । କିନ୍ତୁ ଏହି ସମାଧିଲାଭରେ ନାନାବିଧ ବିଘ୍ନ ଉପସ୍ଥିତ ହୁଏ । ଏହି ବିଘ୍ନମାନଙ୍କର ସଂଖ୍ୟା ଚାରିଗୋଟି । ଏମାନଙ୍କ ନାମ—(୧) ଲୟ, (୨) ଚିତ୍ତବିକ୍ଷେପ, (୩) କଷାୟ ଓ (୪) ରସାସ୍ୱାଦ । ସମାଧି ସମୟରେ ଯଦି ଚିତ୍ତବୃତ୍ତିର ନିଦ୍ରା ଉପସ୍ଥିତ ହୁଏ, ତେବେ ତାହା ଲୟ ନାମକ ପ୍ରଥମ ବିଘ୍ନ । ଏହି ସମୟରେ ନାନାବିଧ ଉପାୟରେ ଚିତ୍ତକୁ ଉତ୍ସାହ ପ୍ରଦାନ କରିବାକୁ ହୁଏ । ସାଧୁସଙ୍ଗ, ଭଗବତଶରଣାଗତି ଏବଂ ଗୁରୁପଦାଶ୍ରୟରେ ଯତ୍‌ପରୋନାସ୍ତି ଦୃଢ଼ତା ଇତ୍ୟାଦି ଏହି ସମୟରେ ଏକାନ୍ତ ପ୍ରୟୋଜନ । ସମାଧିର ଦ୍ୱିତୀୟ ବିଘ୍ନ ଚିତ୍ତବିକ୍ଷେପ । ଏହି ସମୟରେ ଚିତ୍ତ ଅନ୍ୟନିଷ୍ଠ ହେବାର ବିଶେଷ ସମ୍ଭାବନା ଥାଏ । ଏହା ନିବାରଣ କରିବାନିମିତ୍ତ ଧୈର୍ଯ୍ୟ ଅବଲମ୍ବନ କରିବା ବିଧେୟ; ଅର୍ଥାତ୍ ଭଗବତ୍‌କୃପା ପ୍ରତି ଆଶାୟୀ ହୋଇ ରହିବାକୁ ହୁଏ । ଧ୍ୟେୟବସ୍ତୁରେ ଚିତ୍ତକୁ ନିବିଷ୍ଟ ରଖିବାକୁ ପଡ଼େ । ତୃତୀୟ ବିଘ୍ନ କଷାୟ । ଏହି ସମୟରେ ସାଧକଙ୍କ ହୃଦୟରେ ନାନାବିଧ ବାସନାର ସଞ୍ଚାର ହୁଏ । ବିଚାରଦ୍ୱାରା ସମସ୍ତ ବାସନାର ବିଷୟରୁ ନିବୃତ୍ତ ହେବାକୁ ପଡ଼େ । ଚତୁର୍ଥ ବିଘ୍ନ ରସାସ୍ୱାଦ । ଏହା ଫଳରେ ସାଧକ ସବିକଳ୍ପକ ସମାଧିରେ ଆତ୍ମହରା ହୁଅନ୍ତି । ଏହି ସମୟରେ ବିବେକ ଓ ପ୍ରଜ୍ଞା ସାହାଯ୍ୟରେ ସେଥିରୁ ନିବୃତ୍ତ ହେବାକୁ ପଡ଼େ । ମୂଳ ସାଧନାରେ ତ୍ରୁଟି ଥିଲେ ଏହି ବିଘ୍ନ ଉପସ୍ଥିତ ହୁଏ ।

ପୁନରାୟ ଏହି ବିଚାରକୁ ତିନିଭାଗରେ ବିଭକ୍ତ କରାଯାଇଅଛି । ପ୍ରଥମେ ଅଧ୍ୟାରୋପ; ଅର୍ଥାତ୍ ସୃଷ୍ଟି-ସ୍ଥିତି-ଲୟ ପ୍ରଭୃତି କିପରି ହେଉଅଛି, ତାହା ଅବଗତ

ହୋଇ ଜ୍ଞାନଲାଭ କରିବା । ଦ୍ୱିତୀୟରେ ଅପବାଦ; ଅର୍ଥାତ୍ ଭ୍ରମ ନାଶ ହେଲେ କିପରି ପ୍ରତୀତି ହୁଏ, ତାହା ଉପଲବ୍ଧି କରିବା । ତୃତୀୟରେ ମହାବାକ୍ୟ ବିବେକ; ଅର୍ଥାତ୍ ଏହାଦ୍ୱାରା (ବେଦର ଯାହା ସାର) 'ତୁମେ କିଏ ?' ତାହାର ଆଲୋଚନା କରିବା ।

ଏହି ତିନିଗୋଟି ବିଷୟକୁ ସଂକ୍ଷେପରେ ଚାରି ପ୍ରକାର ବିଚାରରେ ପରିଣତ କରାଯାଇଅଛି । ପ୍ରଥମେ ମୁଁ କିଏ ? ଦ୍ୱିତୀୟରେ ଏ ଜଗତ ଓ ଦେହ ପ୍ରଭୃତି କେଉଁଠାରୁ ଜାତ ? ତୃତୀୟରେ ଏହାର କର୍ତ୍ତା କିଏ ? ଚତୁର୍ଥରେ ଏ ଜଗତ୍ ପ୍ରପଞ୍ଚର ଉପାଦାନ କ'ଣ ?

ଜ୍ଞନାଯୋଗ କହିଲେ ବ୍ରହ୍ମସୂତ୍ର ଅନୁସାରେ ଜ୍ଞାନଯୋଗପ୍ରତିପାଦ୍ୟ ବ୍ରହ୍ମବିଚାରକୁ ହିଁ ବୁଝାଇଥାଏ । ଏହା ଅତିଶୟ ନିର୍ମଳଚିତ୍ତ ଓ ସୂକ୍ଷ୍ମବୁଦ୍ଧିସମ୍ପନ୍ନ ବ୍ୟକ୍ତିମାନଙ୍କର ଅନୁଷ୍ଠେୟ କର୍ମ । ଏହାପରେ ରାଜଯୋଗ ନାମକ ସାଧନ ଜ୍ଞାନଯୋଗ ଓ ହଠଯୋଗର ମଧ୍ୟସ୍ଥଳରେ ଅବସ୍ଥିତ । ଏହାକୁ ନିଦିଧ୍ୟାସନର ଅଙ୍ଗ ଓ ଧ୍ୟାନଯୋଗ ମଧ୍ୟ କୁହାଯାଏ । ଏହି ଯୋଗର ବିଘ୍ନ ଆଠଗୋଟି । (୧) ଅନୁସନ୍ଧାନରାହିତ୍ୟ, (୨) ଆଳସ୍ୟ, (୩) ଭୋଗଲାଳସା, (୪) ଲୟ, (୫) ତମ, (୬) ବିକ୍ଷେପ, (୭) ରସାସ୍ୱାଦ ଓ (୮) ଶୂନ୍ୟତା ।

ଏହି ସମସ୍ତ ବିଘ୍ନ ନିବାରଣର ଉପାୟ ଶ୍ରୀଗୁରୁଦେବଙ୍କ ନିକଟରୁ ଶିକ୍ଷା କରିବା ଆବଶ୍ୟକ । ଯେଉଁମାନେ ଏଥିରେ ଅସମର୍ଥ ସେମାନଙ୍କ ନିମିତ୍ତ ହଠଯୋଗ ଅଭ୍ୟାସ କରିବାର ବ୍ୟବସ୍ଥା ଅଛି ।



# ଶଙ୍କରଙ୍କ ପଥ

ଅଦ୍ୱୈତ ତତ୍ତ୍ୱରେ ପ୍ରତିଷ୍ଠିତ ହେବାନିମିତ୍ତ ଆଚାର୍ଯ୍ୟ ଶଙ୍କର ଦୁଇଗୋଟି ପନ୍ଥା ପ୍ରଦର୍ଶନ କରିଯାଇଛନ୍ତି । ପ୍ରଥମ—କଠୋର ସନ୍ନ୍ୟାସ ଯୋଗ; ଦ୍ୱିତୀୟରେ ବ୍ରହ୍ମବିଦ୍ ଗୁରୁଙ୍କର ସେବା । ସନ୍ନ୍ୟାସ ଯୋଗୀମାନଙ୍କନିମିତ୍ତ ସେ ପ୍ରଥମେ ଆଶ୍ରମବିହିତ କର୍ମର ବ୍ୟବସ୍ଥା ଏବଂ ଦ୍ୱିତୀୟରେ ପ୍ରାୟଶ୍ଚିତ୍ତାଦି କରିବାକୁ ନିର୍ଦ୍ଦେଶ ଦେଇଛନ୍ତି । ହରିତୋଷଣ ଓ ସର୍ବଭୂତରେ ଦୟା ପ୍ରଦର୍ଶନ ମଧ୍ୟ ତାଙ୍କ ପଥର ଅନ୍ତର୍ଗତ । ଅଧିକାରୀଭେଦରେ ସେ ସାଧନପଥକୁ ତିନି ଭାଗରେ ବିଭକ୍ତ କରିଛନ୍ତି । ଉତ୍ତମ ଅଧିକାରୀମାନଙ୍କନିମିତ୍ତ ଜ୍ଞାନଯୋଗ, ମଧ୍ୟମାଧିକାରୀମାନଙ୍କ ନିମିତ୍ତ ରାଜଯୋଗ ଓ ନିମ୍ନାଧିକାରୀମାନଙ୍କ ନିମିତ୍ତ ହଠଯୋଗର ପନ୍ଥା ସେ ପ୍ରଦର୍ଶନ କରିଛନ୍ତି । ଜ୍ଞାନଯୋଗୀମାନଙ୍କୁ ପୁଣି ଚାରିଗୋଟି ପନ୍ଥାରେ ସାଧନ କରିବାପାଇଁ ବ୍ୟବସ୍ଥା କରିଛନ୍ତି । ପ୍ରଥମେ ନିତ୍ୟାନିତ୍ୟ ବସ୍ତୁ ବିବେକ, ବୈରାଗ୍ୟ, ଷଟ୍‌ସମ୍ପତ୍ତି ଓ ମୁମୁକ୍ଷୁତ୍ୱ । ଏହାପରେ ବ୍ରହ୍ମବିଚାରଦ୍ୱାରା ମଧ୍ୟ ସେ ସତ୍ୟନିର୍ଣ୍ଣୟ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି । ଏହି ବିଚାରକୁ ଆଚାର୍ଯ୍ୟଦେବ ତିନି ଭାଗରେ ବିଭକ୍ତ କରିଛନ୍ତି—(୧) ଅଧ୍ୟାରୋପ (୨) ଅପବାଦ (୩) ମହାବାକ୍ୟ ବିବେକ । ବିଚାରର କ୍ରମ ପୁଣି ତିନି ଭାଗରେ ବିଭକ୍ତ । (୧) ଶ୍ରବଣ, (୨) ମନନ, (୩) ନିଦିଧ୍ୟାସନ । ବିଚାରର ବିଷୟ ମଧ୍ୟ ଚାରିଗୋଟି । ପ୍ରଥମେ ମୁଁ କିଏ ? ଦ୍ୱିତୀୟରେ ଏ ଜଗତ ଓ ଦେହାଦିର ଜନ୍ମ କେଉଁଠାରୁ ? ତୃତୀୟରେ ଏ ସମସ୍ତର କର୍ତ୍ତା କିଏ ? ଚତୁର୍ଥରେ ଏହି ଜଗତ୍ ପ୍ରପଞ୍ଚର ଉପାଦାନ କ'ଣ ? ସ୍ଥିର ସିଦ୍ଧାନ୍ତପୂର୍ବକ ସମାଧିରେ ଅବସ୍ଥାନ କରିପାରିଲେ ଆତ୍ମସ୍ୱରୂପ ଉପଲବ୍ଧି ହୁଏ । ସମାଧିର ବିଘ୍ନ ଚାରି ପ୍ରକାର ଓ ଏହାର ନାଶନିମିତ୍ତ ଚାରି ପ୍ରକାର ପନ୍ଥାର ମଧ୍ୟ ସେ ନିର୍ଦ୍ଦେଶ ଦେଇଛନ୍ତି । (୧) ଲୟ, (୨) ବିକ୍ଷେପ, (୩) କଷାୟ ଓ (୪) ରସାସ୍ୱାଦ । ଉତ୍ସାହ, ଧୈର୍ଯ୍ୟ, ବିଚାର ଓ ପ୍ରଜ୍ଞାଦ୍ୱାରା ଉପରୋକ୍ତ ବିଘ୍ନମାନଙ୍କର ବିନାଶ ସାଧନ କରାଯାଏ । ରାଜଯୋଗ ସାଧନରେ ମଧ୍ୟ ଯମ, ନିୟମ, ତ୍ୟାଗ, ମୌନ, ଦେହସାମ୍ୟ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧିକୁ ପ୍ରବେଶ ଦ୍ୱାରସ୍ୱରୂପ ବୋଲି ସେ ବ୍ୟକ୍ତ କରିଛନ୍ତି ।

ଏହାର ବିଘ୍ନ ମଧ୍ଯ ଅନେକ । ଏଥିମଧ୍ୟରୁ ଅନୁସନ୍ଧାନରାହିତ୍ୟ, ଆଳସ୍ୟ, ଭୋଗଲାଳସା, ଲୟ, ତମଃ, ବିକ୍ଷେପ, ରସାସ୍ୱାଦ ଓ ଶୂନ୍ୟତା ପ୍ରଧାନ । ଏକମାତ୍ର ବ୍ରହ୍ମପଦାର୍ଥରେ ତନ୍ମୟ ହୋଇ ରହିପାରିଲେ ଏସବୁ ବିଘ୍ନ ସାଧକଙ୍କର କୌଣସି କ୍ଷତି କରିପାରେ ନାହିଁ ।

ହଠଯୋଗରେ ଅଭ୍ୟାସ ଓ ବୈରାଗ୍ୟ ସାହାଯ୍ୟରେ ଶ୍ରଦ୍ଧା, ବୀର୍ଯ୍ୟ, ସ୍ମୃତି, ସମାଧି ଲାଭ ହୋଇ ପ୍ରଜ୍ଞାସ୍ଥିତି ଘଟିଥାଏ । ସେଥିରେ ମଧ୍ଯ ବହୁ ବିଘ୍ନ ଉପସ୍ଥିତ ହୁଏ । ବ୍ୟାଧି, ସ୍ତ୍ୟାନ, ସଂଶୟ, ପ୍ରମାଦ, ଆଳସ୍ୟ, ଅବିରତି, ଭ୍ରାନ୍ତିଦର୍ଶନ, ଦୁଃଖ, ଦୌର୍ମ୍ମନସଃ, ଅଙ୍ଗକମ୍ପନ, ଶ୍ୱାସ ପ୍ରଭୃତି ବିଘ୍ନ ପ୍ରଧାନ । ଏସବୁ ବିଘ୍ନ ଏକତତ୍ତ୍ୱାଭ୍ୟାସ, ମୈତ୍ରୀ, କରୁଣା, ଉପେକ୍ଷା, ମୁଦିତା, ପ୍ରାଣସଂଯମ, ଶୋକହୀନତା, ମହାପୁରୁଷଙ୍କ ଚରିତଚିନ୍ତନ, ସ୍ୱପ୍ନରେ ଜ୍ଞାନ ସ୍ଥିର ରଖିବା ଓ ଧ୍ୟାନ ସାହାଯ୍ୟରେ ଦୂର ହୋଇଯାଏ । ହଠଯୋଗରେ ମଧ୍ଯ ଅଷ୍ଟାଙ୍ଗଯୋଗର ସାଧନ ଅଛି । ସେଥିରେ ମଧ୍ଯ ଅବିଦ୍ୟା, ଅସ୍ମିତା, ରାଗ, ଦ୍ୱେଷ ଓ ଅଭିନିବେଶ ପ୍ରଭୃତି ବିଘ୍ନ ବିଦ୍ୟମାନ । ଏହିସବୁ ବିଘ୍ନ ଧ୍ୟାନ, ତପ, ସ୍ୱାଧ୍ୟାୟ ଓ ପ୍ରତିପକ୍ଷ ଭାବନାଦ୍ୱାରା ଦୂର ହୋଇଯାଏ । ଅବଶେଷରେ ସାଧକ ଅଦ୍ୱୈତସ୍ୱରୂପରେ ଅବସ୍ଥାନ କରି ଜୀବନ୍ମୁକ୍ତ ହୁଅନ୍ତି ।

ଆଚାର୍ଯ୍ୟ ଶଙ୍କର ସମସ୍ତ ସାଧନପନ୍ଥାର ପ୍ରଦର୍ଶପୂର୍ବକ ଅବଶେଷରେ ସେବାପଥକୁ ହିଁ ଶ୍ରେଷ୍ଠ ସ୍ଥାନ ଦେଇ, 'ତତ୍ତ୍ୱ ଉପଦେଶ' ଗ୍ରନ୍ଥରେ ଗୁରୁ ସେବାକୁ ଶ୍ରେଷ୍ଠ ଜ୍ଞାନକରି ସାଧନ କରିବାକୁ ନିର୍ଦ୍ଦେଶ ଦେଇ ସେ କହିଛନ୍ତି—

ବିଚାରଣୀୟା ବେଦାନ୍ତା ବନ୍ଦନୀୟୋ ଗୁରୁଃ ସଦା ।
ଗୁରୁଣାଂ ବଚନଂ ପଥ୍ୟଂ ଦର୍ଶନଂ ସେବନଂ ନୃଣାମ୍ ॥
ଗୁରୁର୍ବ୍ରହ୍ମା ସ୍ୱୟଂ ସାକ୍ଷାତ୍ ସେବ୍ୟୋ ବନ୍ଦ୍ୟୋ ମୁମୁକ୍ଷୁଭିଃ ।
ନୋଦ୍‌ବେଜନୀୟ ଏବାୟଂ କୃତଜ୍ଞେନ ବିବେକୀନା ॥
ଯାବଦାୟୁସ୍ତ୍ରୟୋ ବନ୍ଦ୍ୟୋ ବେଦାନ୍ତୋ ଗୁରୁରୀଶ୍ୱରଃ ।
ମନସା କର୍ମ୍ମଣା ବାଚା ଶ୍ରୁତିରେବୈଷ ନିଶ୍ଚୟଃ ॥
ଭାବାଦ୍ୱୈତଂ ସଦା କୁର୍ଯ୍ୟାତ୍ କ୍ରିୟାଦ୍ୱୈତଂ ନ କର୍ହିଚିତ୍ ।
ଅଦ୍ୱୈତଂ ତ୍ରିଷୁ ଲୋକେଷୁ ନାଦ୍ୱୈତଂ ଗୁରୁଣା ସହ ॥

ଅର୍ଥାତ୍ ମୁମୁକ୍ଷୁ ବ୍ୟକ୍ତି ଶେଷପର୍ଯ୍ୟନ୍ତ ଶ୍ରୀଗୁରୁଦେବଙ୍କୁ ସାକ୍ଷାତ୍ ପରଂବ୍ରହ୍ମ ଜ୍ଞାନରେ ସେବାପୂଜା, ବନ୍ଦନାଦି କରିବା ବିଧେୟ । ସାଧକ ନିଜ ଅନ୍ତରରେ

ଅଦ୍ୱୈତ ଭାବ ପୋଷଣ କଲେ ମଧ୍ୟ ବାହାରେ ଦ୍ୱୈତଭାବ ପ୍ରଦର୍ଶନ କରି ଚଳିବେ । ସାଧକ ସମସ୍ତଙ୍କୁ ଅଭିନ୍ନ ମନେ କଲେ ମଧ୍ୟ ଶ୍ରୀଗୁରୁଦେବଙ୍କସହିତ ଅଦ୍ୱୈତ ବୁଦ୍ଧି ପୋଷଣ କରିବେ ନାହିଁ । ସାଧକମାନେ ନିଜକୁ ଶ୍ରୀଗୁରୁଦେବଙ୍କର ସେବକ ବୋଲି ଜ୍ଞାନ କରିବେ ।

ମୁକତିରେ ରସେ ଯା' ମନ
ଗୁରୁପଦ ଏକା ତା'ର ଧିଆନ ।୦।
ପାସୋରି ସେ ମାୟା ବନ୍ଧନ
ନିତି କରେ ଗୁରୁ ବନ୍ଦନ,
ବିବେକୀ କୃତଜ୍ଞ ନ ଆଚରେ ଯାହା
ହେବ ଗୁରୁ ମନ ତୋଷ ଭଞ୍ଜନ ।୧।
ଯେତେକାଳ ଥିବ ପରାଣ
ଶ୍ରୁତିବାଣୀ କରି ସ୍ମରଣ,
ବେଦାନ୍ତ ଶ୍ରୀଗୁରୁ ଈଶ୍ୱର ମଣି ସେ
ସେବୁଥିବ ଗୁରୁ ବେନିଚରଣ ।୨।
ଭାବରେ ଅଦ୍ୱୈତ ବିଚାର
ନିରତ କରିଥିବ ସାର,
କ୍ରିୟା ଆଚରଣେ ଅଦ୍ୱୈତ ବିଚାର
ନୁହଇ ଉଚିତ ବିଧି ବଚନ ।୩।
ତିନିଲୋକେ ଅଦ୍ୱୈତ ଭାବ
ମନୁ ତିଳେ ନ ପାସୋରିବ,
ଶଙ୍କର ଭାଷଣ ଗୁରୁ-ଶିଷ୍ୟ ଭାବେ
ନଥିବ ମାତର ଅଦ୍ୱୈତ ଭାବ ।୪।



# ଶଙ୍କରାଚାର୍ଯ୍ୟଙ୍କ ସମ୍ବନ୍ଧରେ ଶ୍ରୀଶ୍ରୀ ଠାକୁରଙ୍କ ମତ

ପରାମାରାଧ୍ୟତମ ଗୁରୁଦେବ ଶ୍ରୀମତ୍ ସ୍ୱାମୀ ନିଗମାନନ୍ଦ ସରସ୍ୱତୀ ଦେବ ତାଙ୍କର ଶିଷ୍ୟ-ଭକ୍ତମାନଙ୍କୁ ଶଙ୍କରଙ୍କ ମତରେ ଆତ୍ମବିଚାରପୂର୍ବକ ଭକ୍ତିପଥରେ ପ୍ରେମ-ଭକ୍ତି ଲାଭ କରିବାକୁ ଉପଦେଶ ପ୍ରଦାନ କରିଛନ୍ତି । ପ୍ରେମାବତାର ଗୌରାଙ୍ଗଦେବଙ୍କୁ ପ୍ରାୟ ଅଧିକାଂଶ ଜାଣନ୍ତି; ମାତ୍ର ଆଚାର୍ଯ୍ୟ ଶଙ୍କର ଓ ତଦୀୟ ଭାବଧାରା ସାଧାରଣଙ୍କ ନିକଟରେ ଏକପ୍ରକାର ଅଜ୍ଞାତ । ଯେଉଁମାନେ ଦାର୍ଶନିକ ତତ୍ତ୍ୱର ଆଲୋଚନା କରନ୍ତି ସେମାନଙ୍କ ବ୍ୟତୀତ ଅନ୍ୟକେହି ଶଙ୍କରଙ୍କ ବିଷୟରେ ବିଶେଷ ସମ୍ବାଦ ରଖନ୍ତି ନାହିଁ । ଶ୍ରୀ ଶ୍ରୀ ଠାକୁର ତାଙ୍କ ଶିଷ୍ୟ-ଭକ୍ତମାନଙ୍କୁ 'ଶଙ୍କରଙ୍କ ମତ ଓ ଗୌରାଙ୍ଗଦେବଙ୍କ ପଥ'ରେ ପରିଚାଳିତ ହେବାକୁ ଉପଦେଶ ଦେଇଛନ୍ତି । ଶଙ୍କରାଚାର୍ଯ୍ୟଙ୍କ ମହିମା ବର୍ଣ୍ଣନା କରିବାକୁ ଯାଇ ସେ ତାଙ୍କର 'ପ୍ରେମିକଗୁରୁ' ଗ୍ରନ୍ଥରେ ପ୍ରକାଶ କରିଛନ୍ତି— ''ଭଗବାନ ବୁଦ୍ଧଦେବଙ୍କ ତିରୋଧାନ ପରେ ପଥଭ୍ରଷ୍ଟ ବୌଦ୍ଧମାନଙ୍କର ଶୂନ୍ୟବାଦ ଓ ନାସ୍ତିକତାର କଠୋର କର୍କଶ ଧ୍ୱନିରେ ଦିଗ୍‌ମଣ୍ଡଳ ପ୍ରତିଧ୍ୱନିତ ହୋଇଉଠିଲା । ଜପ, ତପ, ପୁଣ୍ୟ, ଧର୍ମ, ଯଜ୍ଞ, ଶାସ୍ତ୍ରଚର୍ଚ୍ଚା ଲୋପ ପାଇଗଲା । ବ୍ରହ୍ମବାଦୀ ଋଷିମାନେ ନିଭୃତ ଗିରିକନ୍ଦରରେ ଆଶ୍ରୟ ଗ୍ରହଣ କରି ଲୋକଲୋଚନର ଅଗୋଚରରେ ତପସ୍ୟାନିରତ ହେଲେ । ସାଧାରଣ ଲୋକେ ବିଷୟର ଦାସ ହୋଇ ସଂସାରକୀଟସଦୃଶ ସ୍ୱର୍ଗସୁଖାଦି ଭୋଗ କାମନା କରୁଥିବାରୁ ଆତ୍ମସମାଧିକୁ ତୁଚ୍ଛ ଜ୍ଞାନକଲେ ଓ କର୍ମକାଣ୍ଡକୁ ଆଦର କରିବାକୁ ଲାଗିଲେ । ଭାରତ ସନ୍ତାନଗଣ ଜଗତ୍‌ପତିଙ୍କ ସେବା ତ୍ୟାଗ କରି ଜଡ଼ ଜଗତ ସେବାରେ ଆତ୍ମନିୟୋଗ କଲେ । ସଂସାରୀ ଲୋକେ ଭୋଗାସକ୍ତ ଓ ଇନ୍ଦ୍ରିୟପରାୟଣ ହୋଇ ଗୃହରୁ ନାରାୟଣଙ୍କୁ ବିଦାୟ ଦେଇ ସଂସାରକୁ ସାର ମନେ କରି ସ୍ୱାର୍ଥସେବାରେ ବ୍ରତୀ ହେଲେ । ଭାରତଭୂମିର ବୈଦିକ ପ୍ରତିଭା ଅନ୍ତର୍ହିତ ହେଲା । ବ୍ରାହ୍ମଣ୍ୟ ଧର୍ମର ଉଜ୍ଜ୍ୱଳ ହେମପ୍ରଭା କାଳର କାଳିମାରେ ମ୍ଳାନ ହୋଇପଡ଼ିଲା । ଭାରତବର୍ଷ ଅଜ୍ଞାନ ଅନ୍ଧକାରାବୃତ ହୋଇଗଲା । ଏହି ଦାରୁଣ ଦୁର୍ଦ୍ଦଶା ଅବଲୋକନ କରି ଭଗବାନଙ୍କର ଅଟଳ ସିଂହାସନ ତାଙ୍କର ଚିରପ୍ରିୟ ଭାରତବାସୀଙ୍କ ନିମିତ୍ତ କମ୍ପିତ ହୋଇଉଠିଲା । ତେଣୁ ଶିବତେଜୋବୀର୍ଯ୍ୟରେ ପ୍ରଦୀପ୍ତ ହୋଇ ଜଗତ୍‌ବିଖ୍ୟାତ, ପ୍ରାତଃସ୍ମରଣୀୟ ଭଗବାନ ଶଙ୍କରାଚାର୍ଯ୍ୟ ଭାତରେ

ଆବିର୍ଭୂତ ହେଲେ ଏବଂ ଏକମାତ୍ର ବ୍ରହ୍ମ ଯେ ସତ୍ୟବସ୍ତୁ—ଏହା ଲୋକସାଧାରଣଙ୍କୁ ଶିକ୍ଷା ଦେବାକୁ ଲାଗିଲେ । ସେ କହିଲେ, ''ଜୀବମାତ୍ରେ ବ୍ରହ୍ମ ଓ ଏହି ପରିଦୃଶ୍ୟମାନ ଜଗତ ବ୍ରହ୍ମମୟ । ବ୍ରହ୍ମ ବ୍ୟତୀତ ଏ ଜଗତରେ କିଛି ସତ୍ୟ ନୁହେ ।''

ଶଙ୍କରଙ୍କର ପ୍ରତିଭା ଓ ତପଃସମ୍ଭୂତ ତେଜ-ବୀର୍ଯ୍ୟ ସହ୍ୟ କରି ନ ପାରି ପଥଭ୍ରଷ୍ଟ ବୌଦ୍ଧମାନେ ବ୍ରହ୍ମଦେଶ, ଚୀନ୍, ତିବ୍ବତ ଓ ସିଂହଳ ପ୍ରଭୃତି ଅନାର୍ଯ୍ୟ ଦେଶରେ ଆଧିପତ୍ୟ ବିସ୍ତାର କଲେ । ମଣ୍ଡନ ମିଶ୍ର ପ୍ରଭୃତି ତତ୍କାଳୀନ ଦିଗ୍‌ବିଜୟୀ ପଣ୍ଡିତମାନେ ଶଙ୍କରଙ୍କ ପ୍ରତିଭା ନିକଟରେ ଜଡ଼ ହୋଇଗଲେ ଓ ସମସ୍ତେ ତାଙ୍କର ଶିଷ୍ୟତ୍ୱ ସ୍ୱୀକାର କରି ଦ୍ୱିଗୁଣ ଉତ୍ସାହରେ ଗୁରୁଦେବଙ୍କ କାର୍ଯ୍ୟରେ ସହାୟତା କରିବାକୁ ଲାଗିଲେ । ଅତି ଅଳ୍ପ ସମୟ ମଧ୍ୟରେ ସମସ୍ତ ଭାରତବର୍ଷ ତାଙ୍କ ଚରଣତଳେ ଲୋଟିପଡ଼ିଲା । ସେ ଲୋକଗୁରୁ ଜଗଦ୍‌ଗୁରୁରୂପରେ ଭାରତରେ ସର୍ବତ୍ର ଶାନ୍ତିର ଅମିୟଧାରା ବର୍ଷଣ କରିବାକୁ ଲାଗିଲେ । ବୌଦ୍ଧ ମନ୍ଦିରରେ ଦେବ-ଦେବୀଙ୍କର ମୂର୍ତ୍ତି ସ୍ଥାପିତ ହେଲା ଓ ବୌଦ୍ଧବିହାରଗୁଡ଼ିକ ହିନ୍ଦୁ ମଠରେ ପରିଣତ ହୋଇଗଲା । ପୁନରାୟ ଭାରତବାସୀ ବେଦ-ବେଦାନ୍ତୋକ୍ତ ବ୍ରାହ୍ମଣ୍ୟଧର୍ମର ସୁଶୀତଳ ଛାୟାରେ ଆଶ୍ରୟଲାଭପୂର୍ବକ ନବ ଜୀବନ ଲାଭକଲେ ଏବଂ ଅପୂର୍ଣ୍ଣମାନବଜୀବନର ପୂର୍ଣ୍ଣତ୍ୱ ସାଧନକରି ମର୍ତ୍ତ୍ୟରେ ଅମରତ୍ୱ ଆସ୍ୱାଦନ କଲେ ।

ଭଗବାନ ଶଙ୍କରାଚାର୍ଯ୍ୟ ହିମାଳୟରୁ କୁମାରିକା ଏବଂ ଗାନ୍ଧାରରୁ ଚଟଳ ପର୍ଯ୍ୟନ୍ତ ପ୍ରତି ଦେଶରେ ଭ୍ରମଣ କରି ବୈଦାନ୍ତିକ ବ୍ରହ୍ମଜ୍ଞାନ ପ୍ରଚାରପୂର୍ବକ ଭାରତବର୍ଷକୁ ପୁନଃ ଜାଗ୍ରତ କରିଦେଲେ । ଅଶ୍ରୁସିକ୍ତ ଭାରତମାତାଙ୍କର ମଳିନ ବଦନରେ ବିଦ୍ୟୁତ୍‌ର ଝଲକ ଦେଖା ଦେଲା । ଜଗତର ଯାବତୀୟ ଧର୍ମମତ ପ୍ରତିଷ୍ଠାତାମାନେ ଭଗବାନଙ୍କର କୌଣସି ଗୋଟିଏ ବିଶେଷ ଲକ୍ଷଣ ନିରୂପଣ କରି ତାହା ଲାଭ କରିବାର ଉପାୟ ପ୍ରଚାର କରିଯାଇଛନ୍ତି । କିନ୍ତୁ ଭଗବାନ ଶଙ୍କରାଚାର୍ଯ୍ୟ ବ୍ରହ୍ମଙ୍କର ସ୍ୱରୂପ ଲକ୍ଷଣ ନିରୂପଣ କରି ଯେଉଁ ବିଶ୍ୱବ୍ୟାପୀ ଉଦାର ମତ ପ୍ରଚାର କଲେ ସେଥିରେ ସର୍ବାଧିକାରୀ ଜନସାଧାରଣ ସ୍ଥାନଲାଭ କରି କୃତାର୍ଥ ହେଲେ । ତେଣୁ ଆଜି ହିନ୍ଦୁ, ବୌଦ୍ଧ, ବ୍ରାହ୍ମ, ଶିଖ, ଜୈନ, ପାରସିକ, ଖ୍ରୀଷ୍ଟିୟାନ, ମୁସଲମାନ ପ୍ରଭୃତି ଜଗତର ଯାବତୀୟ ଧର୍ମସମ୍ପ୍ରଦାୟମାନଙ୍କୁ ବୈଦାନ୍ତିକ ଧର୍ମର ବିଶାଳଗର୍ଭରେ ପଡ଼ି ରହିଥିବାର ଦେଖାଯାଉଅଛି । ଏପରି ସର୍ବମତ ସମନ୍ୱୟୀ ଓ ସର୍ବମତ ସାମଞ୍ଜସ୍ୟପୂର୍ଣ୍ଣ ଉଦାରମତ ବା ଧର୍ମ ଆଉ କେବେ ଅନ୍ୟ କୌଣସି ଦେଶରେ, କାହାଦ୍ୱାରା ପ୍ରଚାରିତ ହୋଇନାହିଁ । ଆଚାର୍ଯ୍ୟ ଶଙ୍କରଙ୍କ ପରି କର୍ମବୀର, ଜ୍ଞାନବୀର

ଓ ପ୍ରେମିକ ପ୍ରଚାରକ ପୃଥିବୀରେ ଆଉ ଜନ୍ମଗ୍ରହଣ କରି ନାହାନ୍ତି । ବତ୍ରିଶ ବର୍ଷ ପରମାୟୁ ମଧ୍ୟରେ ସେ ସର୍ବବିଦ୍ୟା ଓ ସର୍ବଶାସ୍ତ୍ର ବିଶାରଦ ପଣ୍ଡିତ ହୋଇ ସାଧନାଦ୍ୱାରା ବ୍ରହ୍ମସାକ୍ଷାତ୍‌କାର ଲାଭ କଲେ । ଜ୍ଞାନଲାଭ ପରେ ଉପଧର୍ମ ପରିପ୍ଲାବିତ ଭାରତବର୍ଷରେ ସେ ପଦବ୍ରଜରେ ପର୍ଯ୍ୟଟନପୂର୍ବକ ସମଗ୍ର ଦେଶରେ ସନାତନ ଧର୍ମ ପ୍ରଚାର କରିଗଲେ । କେତେ ମହାମହୋପାଧ୍ୟାୟ ପଣ୍ଡିତ ଯେ ତାଙ୍କ ବିଚାରରେ ପରାଜିତ ହୋଇ ତାଙ୍କର ଶିଷ୍ୟତ୍ୱ ସ୍ୱୀକାର କରିଥିଲେ, ତାହାର ଇୟତ୍ତା ନାହିଁ । କେତେ ଦୁର୍ବୃତ୍ତଙ୍କ କବଳରେ ପଡ଼ି ତାଙ୍କର ଜୀବନସଂଶୟ ମଧ୍ୟ ଘଟିଥିଲା ।

ସେ ମୁମୁକ୍ଷୁ ବ୍ୟକ୍ତିମାନଙ୍କ ନିମିତ୍ତ ସନ୍ନ୍ୟାସ ଓ ବ୍ରହ୍ମଜ୍ଞାନର ବ୍ୟବସ୍ଥା କରିଦେଲେ । ସାଧାରଣଙ୍କ ନିମିତ୍ତ ସଗୁଣବ୍ରହ୍ମଙ୍କର ଉପାସନା, ଦୁର୍ବଳ ଅଧିକାରୀଙ୍କ ନିମିତ୍ତ ପଞ୍ଚଦେବତାଙ୍କର ପ୍ରତୀକ ଉପାସନା ନିର୍ଦ୍ଧାରଣ କଲେ । ଚିତ୍ତଶୁଦ୍ଧି ନିମିତ୍ତ ସ୍ୱ ସ୍ୱ ବର୍ଣ୍ଣାଶ୍ରମୋଚିତ ନିଷ୍କାମକର୍ମର ବିଧିକୁ ମଧ୍ୟ ସେ ଅନୁମୋଦନ କଲେ । ତେଣୁ ସର୍ବାଧିକାରୀ ଜନସାଧାରଣ ତାଙ୍କ ପ୍ରଚାରିତ ଧର୍ମର ଉଦାର ଗର୍ଭରେ ସ୍ଥାନ ଲାଭ କରି ଧନ୍ୟ ହୋଇଗଲେ । କାଶ୍ମୀରର ଶରଦାପୀଠରେ ଆରୋହଣ ଏବଂ ସମଗ୍ର ଭାରତବର୍ଷରେ ସର୍ବାଧିକାରୀ ଜନସାଧାରଣଙ୍କ ଗୁରୁ ହେବାର ସୌଭାଗ୍ୟ ଶଙ୍କରଚାର୍ଯ୍ୟଙ୍କ ପରେ ଅନ୍ୟ କୌଣସି ପ୍ରଚାରକ ଲାଭ କରିପାରି ନାହାନ୍ତି । ତେଣୁ ଶଙ୍କରାଚାର୍ଯ୍ୟ ଜଗଦ୍‌ଗୁରୁ ନାମରେ ଆଖ୍ୟାତ । ସେ କଳିକାଳରେ ସନ୍ନ୍ୟାସାଶ୍ରମକୁ ବିଧି ଅନୁସାରେ ପୁନଃ ପ୍ରଚଳନ କରି, ଭାରତରେ ଜ୍ଞାନ ପ୍ରଚାରର ପଥ ପରିଷ୍କାର କରି ବତ୍ରିଶ ବର୍ଷ ବୟସରେ ଦେହତ୍ୟାଗ କଲେ ।

ଭଗବାନ ଶଙ୍କରାଚାର୍ଯ୍ୟ ଧର୍ମପ୍ରଚାରର ସୁବିଧା ନିମିତ୍ତ ବେଦୋକ୍ତ ଚାରିଗୋଟି ମହାବାକ୍ୟ ଅବଲମ୍ବନ କରି ଭାରତରେ ତାଙ୍କର ଚାରି ଜଣ ପ୍ରଧାନ ଶିଷ୍ୟଙ୍କୁ ଆଚାର୍ଯ୍ୟଭାବରେ ନିଯୁକ୍ତ କରି ପ୍ରତ୍ୟେକ ମଠର ସ୍ୱତନ୍ତ୍ର କ୍ଷେତ୍ର, ଦେବ-ଦେବୀ, ତୀର୍ଥ ଓ ମହାବାକ୍ୟ ନିର୍ଦ୍ଦିଷ୍ଟ କରିଦେଲେ । ତେଣୁ ପ୍ରତ୍ୟେକ ସନ୍ନ୍ୟାସୀ ନିଜ ନିଜ ମତାନୁସାରେ ସେଥିମଧ୍ୟରୁ ଗୋଟିଏ ଗ୍ରହଣ କରନ୍ତି ଏବଂ ତଦନୁଯାୟୀ ପରିଚାଳିତ ହୁଅନ୍ତି ।

ଭଗବାନ ଶଙ୍କର ଆବିର୍ଭୂତ ହୋଇ ସଚ୍ଚିଦାନନ୍ଦ ଭଗବାନଙ୍କର ଯେଉ ରୂପଲକ୍ଷଣ ସାଧାରଣଙ୍କ ନିକଟରେ ବ୍ୟକ୍ତ କରିଯାଇଛନ୍ତି, ତାହାର ଉଦାର ଗର୍ଭରେ

ସର୍ବାଧିକାରୀ ଜନସାଧାରଣ ବିଶ୍ରାମ ଲାଭ କରି କୃତାର୍ଥ ହୋଇଛନ୍ତି । କିନ୍ତୁ ଆଚାର୍ଯ୍ୟ ଯେଉଁ ଉପାୟରେ ବ୍ରହ୍ମସ୍ୱରୂପ ଲାଭ କରିବାର ପନ୍ଥା ପ୍ରକଟିତ କରିଛନ୍ତି, ତାହା ବିଶ୍ଳେଷଣ ପଥ; ଜ୍ଞାନମାର୍ଗ । ପୁଣି ମହାପ୍ରଭୁ ଗୌରାଙ୍ଗଦେବ ତାହା ଲାଭ କରିବାର ଯେଉଁ ଉପାୟ ପ୍ରଚାର କରିଛନ୍ତି, ତାହା ସଂଶ୍ଳେଷଣ ପଥ; ଭକ୍ତିମାର୍ଗ । ତେଣୁ ଶଙ୍କରାଚାର୍ଯ୍ୟ ଜ୍ଞାନାବତାର ଓ ଗୌରାଙ୍ଗଦେବ ଭକ୍ତାବତାର ନାମରେ ଅଭିହିତ ।

ଜ୍ଞାନ-ଭକ୍ତିର ସମନ୍ୱୟୀ ମାର୍ଗରେ ଗମନ ନ କଲେ କେହି ପୂର୍ଣ୍ଣାନନ୍ଦର ଅଧିକାରୀ ହୋଇପାରିବେ ନାହିଁ କିମ୍ବା ତାଙ୍କ ହୃଦୟର ସଂକୀର୍ଣ୍ଣତା ଦୂରହୋଇ ସାର୍ବଭୌମ ଉଦାରଭାବ ଜାତ ହେବ ନାହିଁ । ହନୁମାନ, ପ୍ରହ୍ଲାଦ, ଶୁକଦେବ, ଜନକ ପ୍ରଭୃତି ମହାତ୍ମାମାନେ ଜ୍ଞାନ-ଭକ୍ତିର ମିଳନରେ କୃତକୃତାର୍ଥ ହୋଇଛନ୍ତି । ରାମପ୍ରସାଦ, ତୁଳସୀଦାସ, ଗୁରୁ ନାନକ ପ୍ରଭୃତି ମହାପୁରୁଷମାନେ ମଧ୍ୟ ଜ୍ଞାନ-ଭକ୍ତିର ମିଳନରେ କୃତାର୍ଥ ହୋଇଛନ୍ତି । ଭଗବାନ୍ ଶଙ୍କରାଚାର୍ଯ୍ୟ ଓ ମହାପ୍ରଭୁ ଗୌରାଙ୍ଗଦେବଙ୍କ ମିଳନ ହିଁ ଜ୍ଞାନ-ଭକ୍ତିର ସମନ୍ୱୟ । ଯେ ଯେଉଁପରି ଭାବରେ ଉପାସନା କରନ୍ତି, ତାଙ୍କର ସେହି ଭାବରେ ମନୋରଥ ସିଦ୍ଧ ହୁଏ । ନୈଷ୍ଠିକ ଭାବ ଓ ସଂକୀର୍ଣ୍ଣତା ଏକାକଥା ନୁହେଁ । ନିଜ ଭାବରେ ରହି ସତୀନାରୀର ଆଦର୍ଶରେ ସାଧନ କର । କିନ୍ତୁ କାହାରି ଭାବ ଭଙ୍ଗ କର ନାହିଁ । ଏହା ହିଁ ସର୍ବଧର୍ମ ସମନ୍ୱୟ, ଏହା ହିଁ ଭଗବାନ ଶଙ୍କର ଓ ଗୌରାଙ୍ଗଦେବଙ୍କର ପୂର୍ଣ୍ଣମିଳନାଦର୍ଶ । ଭଗବାନ ଶଙ୍କରାଚାର୍ଯ୍ୟ ଓ ଗୌରାଙ୍ଗଦେବଙ୍କ ମିଳନ ହେଲେ ଜଗତର ଯାବତୀୟ ଭେଦଭାବ ଦୂରୀଭୂତ ହୋଇ ପ୍ରେମର ରାଜ୍ୟ ସଂସ୍ଥାପିତ ହେବ । ଯେଉଁମାନଙ୍କ ହୃଦୟରେ ଶଙ୍କର ଗୌରାଙ୍ଗଙ୍କର ମିଳିତ ସିଂହାସନ ସ୍ଥାପିତ ହୋଇଅଛି, ଅର୍ଥାତ୍ ଯାହାଙ୍କ ହୃଦୟରେ ଭକ୍ତିଗଙ୍ଗା ଜ୍ଞାନସମୁଦ୍ର ସହିତ ମିଳିତ ହୋଇଛି, ସେହିମାନେ ଜୀବନ୍ମୁକ୍ତ । ତେଣୁ ଶ୍ରୀ ଶ୍ରୀ ଠାକୁରଙ୍କ ବାଣୀ ''ଶଙ୍କରଙ୍କ ମତ ଗୌରାଙ୍ଗଙ୍କ ପଥ''ର ପ୍ରକୃତ ମର୍ମ ବୁଝି ଏହି ମହାବାଣୀର ସାଧନ କରିପାରିଲେ ସାଧକମାନେ କୃତାର୍ଥ ହେବେ ।

ଶଙ୍କରଙ୍କ ପଥ ସର୍ବସାଧାରଣଙ୍କ ନିମିତ୍ତ ଉନ୍ମୁକ୍ତ ନୁହେଁ, କାରଣ ବିଶୁଦ୍ଧ ଜ୍ଞାନପଥର ଅଧିକାରୀ ଅତିଶୟ ଦୁର୍ଲ୍ଲଭ । ସାଧନ ଚତୁଷ୍ଟୟ ସମ୍ପନ୍ନ ନହେଲେ ଜ୍ଞାନଲାଭର ଅଧିକାରୀ ହେବା ସୁକଠିନ । କିନ୍ତୁ ଭକ୍ତି ଅର୍ଥାତ୍ ଭଗବାନଙ୍କୁ ସୁଖୀ

ପାଇବାର ଅଧିକାର ସମସ୍ତଙ୍କର ଅଛି । ତେଣୁ ଶ୍ରୀଶ୍ରୀ ଠାକୁର କହିଛନ୍ତି, ''ତୁମେମାନେ ଶଙ୍କରଙ୍କ ମତ ଗ୍ରହଣ କରି ଭକ୍ତିପଥରେ ପରିଚାଳିତ ହୁଅ ।''

ଶ୍ରୀଶ୍ରୀ ଠାକୁର ପୁନରାୟ କହିଛନ୍ତି, ''ଶଙ୍କରାଚାର୍ଯ୍ୟଙ୍କ ବେଦାନ୍ତମତ ଅତି ଉଦାର ସତ; କିନ୍ତୁ ତାହାର ପ୍ରଚାରପଥ ବଡ଼ ସଂକୀର୍ଣ୍ଣ; କେବଳ ଉଚ୍ଚବର୍ଣ୍ଣମାନଙ୍କ ମଧ୍ୟରେ ସୀମାବଦ୍ଧ । ଗୌରାଙ୍ଗଦେବଙ୍କ ମତ ସଂକୀର୍ଣ୍ଣ ହେଲେ ମଧ୍ୟ ତାଙ୍କର ପ୍ରଚାରପଥ ଅତ୍ୟନ୍ତ ଉଦାର । ମୁଁ ଏହି ଉଭୟ ମତର ସାମଞ୍ଜସ୍ୟରେ 'ସାରସ୍ୱତ ମଠ' ପ୍ରତିଷ୍ଠା କରିଅଛି । ଶଙ୍କରଙ୍କ ଜୀବନର ଭାବ ବୁଝ ଓ ନିଜ ଜୀବନକୁ ସେହି ଅନୁରୂପରେ ଗଠନ କର—ଏହାହିଁ ମୋର ଆଶୀର୍ବାଦ ।''

ଭଗବାନ୍ ଶଙ୍କରାଚାର୍ଯ୍ୟ ଭାରତରେ ବର୍ତ୍ତମାନ ହିନ୍ଦୁଧର୍ମର ପ୍ରତିଷ୍ଠାତା । ବୌଦ୍ଧମାନଙ୍କର ପ୍ରବଳ ଦୌରାତ୍ମ୍ୟ ସମୟରେ ତାଙ୍କର ଆବିର୍ଭାବ । ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରମାଣ କରି ସେ ଲୁପ୍ତପ୍ରାୟ ଆର୍ଯ୍ୟଧର୍ମର ପୁନଃ ପ୍ରତିଷ୍ଠା କରିଛନ୍ତି । ଶାଳଗ୍ରାମ-ଶିଳାଠାରୁ ଆରମ୍ଭ କରି ଯେ କୌଣସି ମୂର୍ତ୍ତି ଯେ ପୂଜାର ଯୋଗ୍ୟ ନୁହେଁ ଏ କଥା ସେ କେବହେଲେ ପ୍ରଚାର କରିନାହାନ୍ତି । ତାଙ୍କ ହୃଦୟରେ ଭଗବତ୍ ବିଷୟକ ଯେଉଁସବୁ ଭାବଲହରୀ କ୍ରୀଡ଼ା କରୁଥିଲା, ତାହା ସେ ସ୍ତୋତ୍ରାକାରରେ ପ୍ରକାଶ କରିଅଛନ୍ତି । ତାଙ୍କ ସ୍ତୋତ୍ରାଦି ପାଠକଲେ ଜଣାଯିବ ଯେ, ଶଙ୍କରାଚାର୍ଯ୍ୟ କେବଳ ଜ୍ଞାନୀ ନ ଥିଲେ—ସେ ଜଣେ ପରମ ଭକ୍ତ ମଧ୍ୟ ଥିଲେ । ସେ ଗୁରୁପୂଜାକୁ ଶ୍ରେଷ୍ଠସ୍ଥାନ ପ୍ରଦାନ କରିଯାଇଛନ୍ତି ।

ଶ୍ରୀଶ୍ରୀ ଠାକୁର ସନାତନ ଧର୍ମର ପ୍ରଧାନ ପଥଚତୁଷ୍ଟୟ; ଅର୍ଥାତ୍ ତନ୍ତ୍ର, ଯୋଗ, ଜ୍ଞାନ ଓ ଭକ୍ତି ମଧ୍ୟରୁ ପ୍ରତି ପଥରେ ସାଧନ କରି ସିଦ୍ଧି ଲାଭ କରିଥିଲେ ଏବଂ ତାଙ୍କର ପରିବ୍ରାଜକ ଅବସ୍ଥାରେ ସେ ବହୁ ସମ୍ପ୍ରଦାୟଙ୍କ ସହିତ ପରିଚିତ ହୋଇ ଜଗତରେ ସାର୍ବଭୌମ ମତପ୍ରଚାରପୂର୍ବକ ଶଙ୍କରଙ୍କ ମତକୁ ଶ୍ରେଷ୍ଠସ୍ଥାନ ପ୍ରଦାନ କରିଛନ୍ତି । ଯେଉଁମାନେ ଶଙ୍କରଙ୍କର ମତ ଓ ଭକ୍ତିପଥରେ ପରିଚାଳିତ ହେବେ, ସେମାନଙ୍କର ପତନର ଆଶଙ୍କା ନାହିଁ ବୋଲି ସେ ବହୁବାର ଉପଦେଶ ପ୍ରଦାନ କରିଛନ୍ତି । ସେ କହିଛନ୍ତି, ''ଭାରତରେ ହିନ୍ଦୁ ଧର୍ମର ଅସଂଖ୍ୟ ସମ୍ପ୍ରଦାୟ ରହିଛି । କୌଣସି ଗୋଟିଏ ମତ ସହିତ ଅନ୍ୟ ମତର ମିଳନ ନାହିଁ । କିନ୍ତୁ ଯଦି 'ଗୁରୁବାଦ' ପ୍ରତିଷ୍ଠାଦ୍ୱାରା ହିଁ ନାନା ସମ୍ପ୍ରଦାୟରେ ବିଚ୍ଛିନ୍ନ ଭାରତବର୍ଷ ଦିନେ ଏକତ୍ର ହେବା ସମ୍ଭବ ହେବ, ତାହା କେବଳ ଏହି ଗୁରୁବାଦ ମାଧ୍ୟମରେ ହିଁ ସମ୍ଭବ

ହେବ । ଶଙ୍କରଙ୍କର ତ୍ୟାଗ ଭିତ୍ତିରେ ଗୌରାଙ୍ଗଦେବଙ୍କ ପଥ ଅବଲମ୍ବନ କରିବାକୁ ମଧ୍ୟ ଶ୍ରୀଶ୍ରୀ ଠାକୁର ଉପଦେଶ ପ୍ରଦାନ କରିଛନ୍ତି । ତେଣୁ ଯେ ଅଚାର୍ଯ୍ୟ ଶଙ୍କରଙ୍କ ଭିତରେ ଶ୍ରୀଗୌରାଙ୍ଗ ଓ ଶ୍ରୀଗୌରାଙ୍ଗ ମଧ୍ୟରେ ଆଚାର୍ଯ୍ୟ ଶଙ୍କରଙ୍କୁ ଦେଖିପାରୁଛନ୍ତି—କେବଳ ତାଙ୍କରି ଜୀବନ ହିଁ ପୂର୍ଣ୍ଣ ଜୀବନ । ତତ୍ତ୍ୱଜ୍ଞାନ ଭିତ୍ତିରେ ପ୍ରତିଷ୍ଠିତ ଭକ୍ତି ହିଁ ପ୍ରକୃତ ଭକ୍ତି । ଜ୍ଞାନ ହିଁ ଭଗବାନଙ୍କର ଅତିପ୍ରିୟ । ଅତି ଅଳ୍ପ ଲୋକ ଜ୍ଞାନ ଲାଭ କରି ଭଗବତ୍ ପ୍ରେମର ଅଧିକାର ଅର୍ଜନ କରିଛନ୍ତି । ଅନ୍ତତଃ ତତ୍ତ୍ୱଜିଜ୍ଞାସୁ ହୋଇ ତାଙ୍କର ଉପାସନା ଆରମ୍ଭ କଲେ ଆଚାର୍ଯ୍ୟ ଶଙ୍କରଙ୍କ ମତ ଓ ଗୌରାଙ୍ଗ ଦେବଙ୍କ ପଥରେ ପରିଚାଳିତ ହେଉଅଛି ବୋଲି ଉପଲବ୍ଧ ହେବ । ଶ୍ରୀଶ୍ରୀ ଠାକୁର ଉପଦେଶ ଛଳରେ କହିଛନ୍ତି, ‘‘ଶଙ୍କର ଓ ଗୌରାଙ୍ଗ ଏମାନେ ଦୁଇଟି ଶ୍ରେଷ୍ଠ ଆଦର୍ଶ । ଯେ ଜ୍ଞାନ ଲାଭ କରନ୍ତି, ସେ ଶଙ୍କର । ଜଣେ ଶଙ୍କର ଯାଇଛନ୍ତି ସତ୍ୟ, କିନ୍ତୁ ଆଉଜଣେ ଶଙ୍କର ଯେ ହେବେ ନାହିଁ ଏହାର ତାତ୍ପର୍ଯ୍ୟ କ'ଣ ଅଛି ? ଶଙ୍କରଙ୍କ ଜ୍ଞାନ କହିଲେ ପୋଥିଗତ ଜ୍ଞାନ ବୋଲି ମୁଁ ମନେ କରେ ନାହିଁ । ଜଗତର ଅବିଦ୍ୟା ଦୂର କରିବା ପାଇଁ ଯେଉଁମାନଙ୍କ ପ୍ରାଣରେ ବ୍ୟାକୁଳତା ଜାତ ହୋଇଅଛି, ସେହିମାନେ ହିଁ ଶଙ୍କରଙ୍କ ଜ୍ଞାନ ଲାଭ କରିଛନ୍ତି ବୋଲି ମୁଁ ମନେକରେ । ଯାହା ପ୍ରାଣକୁ ଶୀତଳ କରି ପରିପୂର୍ଣ୍ଣ ଆନନ୍ଦରେ ବିହ୍ୱଳ କରେ, ତାହାକୁ ମୁଁ ଜ୍ଞାନ ବୋଲି କହୁଛି ! କ୍ରମେ ତୁମେମାନେ ସେହି ଜ୍ଞାନର ଅଧିକାରୀ ହୁଅ, ଏହା ହିଁ ମୋର କାମନା । ଶଙ୍କର ଓ ଗୌରାଙ୍ଗଙ୍କର ଭାବ ପ୍ରତିଷ୍ଠା କରିବା ହିଁ ମୋ ଜୀବନର ଚରମ ଲକ୍ଷ୍ୟ । ଆଚାର୍ଯ୍ୟ ଶଙ୍କର ଜ୍ଞାନ-ଘନବିଗ୍ରହ ଓ ମହାପ୍ରଭୁ ଗୌରାଙ୍ଗଦେବ ପ୍ରେମ-ଘନମୂର୍ତ୍ତି । ତୁମେମାନେ ଶଙ୍କରଙ୍କ ଜ୍ଞାନକୁ ଜୀର୍ଣ୍ଣ କରି ନିଜ ଜୀବନରେ ଗୌରାଙ୍ଗଦେବଙ୍କ ପ୍ରେମକୁ ବିକଶିତ କରିଦିଅ ।

‘‘ମୋର ଶେଷକଥା—ଶଙ୍କରାଚାର୍ଯ୍ୟଙ୍କ ପରି ଜ୍ଞାନ ଲାଭ କର; କିନ୍ତୁ ଶଙ୍କରଙ୍କ ପ୍ରାଣର ବଳ, ମନର ବଳ, ସାହସ ହେଉଛି ଅସଲ କଥା । ଜ୍ଞାନଲାଭ କଲା ପରେ ଏହି ଦୈବୀଗୁଣଗୁଡ଼ିକ ଯଦି ନିଷ୍ପ୍ରଭ ହୋଇଯାଏ, ତାହାହେଲେ ଜୀବନର କୌଣସି ସାର୍ଥକତା ରହିବ ନାହିଁ । ତୁମେମାନେ ଆଚାର୍ଯ୍ୟ ଶଙ୍କରଙ୍କ ପରି ଜ୍ଞାନୀ ଓ ଗୌରଙ୍ଗଦେବଙ୍କ ପରି ହୃଦୟବାନ୍ ହୁଅ—ଏହା ହିଁ ମୋର ଆଶୀର୍ବାଦ ।’’

ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କ ତିରୋଧାନ ସଙ୍ଗେ ସଙ୍ଗେ ବୈଷ୍ଣବ ସମାଜର ଅନେକ ସ୍ଥଳରେ ତ୍ୟାଗର ଆଦର୍ଶ ଲୁପ୍ତ ହୋଇଯାଇଛି । ଅନ୍ୟଥା ପ୍ରକୃତ ବୈଷ୍ଣବ ଓ ବ୍ରହ୍ମବିଦ୍ ବ୍ରାହ୍ମଣଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ଜ୍ଞାନଚର୍ଚ୍ଚାକୁ ହେୟ ବୋଲି ପ୍ରତିପନ୍ନ କରିବାରୁ ବୈଷ୍ଣବସମାଜର ଅବନତି ଦେଖାଦେଇଛି । ଜ୍ଞାନକୁ ତିକ୍ତ ଓ ଶୁଷ୍କ ମନେ କରି ରସର ସାଧନ କରିବାକୁ ଗଲେ ଅନେକ ସାଧକଙ୍କର ପତନ ହୋଇଥାଏ । ତେଣୁ ଆଧୁନିକ ଯୁଗର ମହାପୁରୁଷମାନେ ଜ୍ଞାନ ଓ ଭକ୍ତିର ମିଳିତ ପଥକୁ ଶ୍ରେଷ୍ଠ ବୋଲି ଗ୍ରହଣ କରି ଯାଇଛନ୍ତି ।

ଶ୍ରୀଗୁରୁଦେବଙ୍କୁ ଲକ୍ଷ୍ୟ କରି ତାଙ୍କ ପ୍ରତିକୃତିରେ ପୁଷ୍ପ ଓ ଚନ୍ଦନ ଦେଇ ପୂଜାକଲେ ମଧ୍ୟ ଯଥେଷ୍ଟ କାର୍ଯ୍ୟ ସାଧିତ ହେବ । ଗୁରୁଦେବଙ୍କୁ ସୁଖପାଇଲେ ଶିଷ୍ୟମାନଙ୍କ ଭିତରେ ଗୁରୁଶକ୍ତିର କ୍ରିୟା ସଞ୍ଚାରିତ ହୋଇଥାଏ । ଯେଉଁ ଜ୍ଞାନଦୀପ୍ତିରେ ଅବିଦ୍ୟା ଦୂର ହୋଇଯାଏ, ସେହି ଜ୍ଞାନଦୀପ୍ତିରେ ତୁମମାନଙ୍କ ମଧ୍ୟରୁ ଅନ୍ତତଃ ଦୁଇ ଚାରି ଜଣ ଏହି ଜ୍ଞାନଲାଭ ନିମିତ୍ତ ବ୍ୟାକୁଳ ହୁଅ ଏବଂ କ୍ରମେ କ୍ରମେ ସେହି ଜ୍ଞାନର ଅଧିକାର ଲାଭ କର—ଏହା ହିଁ ମୋର ପ୍ରାର୍ଥନା । ଅନେକେ ଭାବନ୍ତି ଯେ, ଶଙ୍କରଙ୍କ ପରି ଆଉ କେହି ହୋଇପାରିବେ ନାହିଁ । ଏ ଧାରଣା ଭ୍ରମାତ୍ମକ । କେବଳ ଶଙ୍କର ଚରମ ନୁହନ୍ତି । ଶଙ୍କର ଗୌରାଙ୍ଗଙ୍କର ସମ୍ମିଳିତ ଆଦର୍ଶ ହିଁ ତୁମମାନଙ୍କ ଜୀବନର ଆଦର୍ଶ । କୌଣସି ଗୋଟିଏ ଦିଗକୁ ଚରମ ବୋଲି ଭାବ ନାହିଁ ।

ଶ୍ରୀ ଶ୍ରୀ ଠାକୁର ଶୃଙ୍ଗେରୀମଠ ଅନ୍ତର୍ଭୁକ୍ତ ସନ୍ନ୍ୟାସୀ ଥିଲେ ବୋଲି 'ସରସ୍ୱତୀ' ଉପାଧି ଲାଭ କରିଥିଲେ । ତାଙ୍କର ପରମହଂସ ଉପାଧି ମଧ୍ୟ ଶୃଙ୍ଗେରୀ ମଠରେ ଅଧିଷ୍ଠିତ ତତ୍କାଳୀନ ଶଙ୍କରାଚାର୍ଯ୍ୟ ତାଙ୍କୁ ପ୍ରଦାନ କରିଥିଲେ । ସୁତରାଂ ସାରସ୍ୱତ ମଠ ବା ସାରସ୍ୱତ ସଂଘ ଶଙ୍କରଙ୍କ ପ୍ରବର୍ତ୍ତିତ ମଠ ବା ସଂଘରୁ ସ୍ୱତନ୍ତ୍ର ନୁହେଁ । ଭାବ ଦିଗରୁ ସାରସ୍ୱତ ମଠର କିଛି ବୈଶିଷ୍ଟ୍ୟ ବା ସ୍ୱାତନ୍ତ୍ର୍ୟ ଥିଲେ ମଧ୍ୟ ମୂଳରେ ତାହା ଶୃଙ୍ଗେରୀ ମଠର ଅନ୍ତର୍ଗତ ଓ ଶଙ୍କରଙ୍କ ମତର ଅନୁବର୍ତ୍ତୀ ।

ବର୍ତ୍ତମାନର ବିରୋଧ ଓ ଅସାମଞ୍ଜସ୍ୟ ଯୁଗରେ ଶ୍ରୀଶ୍ରୀ ଠାକୁର ଆମକୁ ନିରପେକ୍ଷ ଭାବ ଅବଲମ୍ବନ କରି ସ୍ୱ ସ୍ୱ ଧର୍ମର ଭିତ୍ତି ଅକ୍ଷୁଣ୍ଣ ରଖି ପ୍ରାଚୀନପନ୍ଥୀ ହୋଇ ଚଳିବାକୁ ନିର୍ଦ୍ଦେଶ ଦେଇଛନ୍ତି । ଶାସ୍ତ୍ରସମ୍ମତ ତ୍ୟାଗବୈରାଗ୍ୟର ପଥକୁ ଓ ସଦାଚାରପୂର୍ଣ୍ଣ ସଂଯମପଥକୁ ଶ୍ରୀଶ୍ରୀ ଠାକୁର ସାର୍ବଭୌମ ପଥବୋଲି ବିଶ୍ଳେଷଣ

କରିଛନ୍ତି । ଗୁରୁବାକ୍ୟ, ଶାସ୍ତ୍ରବାକ୍ୟ ଓ ନିଜର ଅନୁଭୂତିକୁ ଏକ କରି ସତ୍ୟଲାଭ କରିବାପାଇଁ ସେ ବାରମ୍ବାର କହିଛନ୍ତି । ଆମେ ଯଦି ସଦ୍‌ଗୁରୁଙ୍କର ପଦାଶ୍ରିତ ହୋଇ ତାଙ୍କ କଲ୍ୟାଣପ୍ରଦ ପନ୍ଥାରେ ଚଳିପାରିବା ତାହାହେଲେ ଆମର ଇଷ୍ଟଲାଭର ପଥ ଉତ୍ତରୋତ୍ତର ପ୍ରଶସ୍ତ ଏବଂ ସୁଗମ ହୋଇଯିବ । ପରମାରାଧ୍ୟ ଶ୍ରୀଶ୍ରୀ ଗୁରୁଦେବଙ୍କ ଚରଣରେ ପ୍ରାର୍ଥନା, ସେ ସମସ୍ତଙ୍କୁ ତାଙ୍କର ମତ ଓ ପଥରେ ଜୀବନ ଗଠନ କରିବାପାଇଁ ସାହସ ପ୍ରଦାନ କରନ୍ତୁ ।

ଦୁର୍ଲ୍ଲଭ ମନୁଷ୍ୟ ଜନ୍ମ ପାଇ ମନୁଷ୍ୟତ୍ୱ, ମୁମୁକ୍ଷୁତ୍ୱ ଓ ମହାପୁରୁଷଙ୍କ ଆଶ୍ରୟ ଲାଭ କରିପାରିଲେ ଜୀବନ କୃତାର୍ଥ ହୋଇଯାଏ । ମହାପୁରୁଷଙ୍କ ଜୀବନଚରିତ ପାଠ କଲେ ଉପରୋକ୍ତ ତିନିଗୋଟି ଦୁର୍ଲ୍ଲଭ ବସ୍ତୁ ଲାଭ ହୁଏ; ତେଣୁ ପରବର୍ତ୍ତୀ ଖଣ୍ଡରେ ବିଶିଷ୍ଟାଦ୍ୱୈତବାଦର ପ୍ରବର୍ତ୍ତକ ଶ୍ରୀମତ୍ ରାମାନୁଜାଚାର୍ଯ୍ୟଙ୍କର ଜୀବନଚରିତ ପ୍ରକାଶ କରିବା ପାଇଁ ମନସ୍ଥ କରି ପାଠକମାନଙ୍କ ନିକଟରୁ ବିଦାୟ ଗ୍ରହଣ କରୁଅଛୁ ।



ଜୟଗୁରୁ

# ଶ୍ରୀମଚ୍ଛଙ୍କରାଚାର୍ଯ୍ୟକୃତ ସ୍ତୋତ୍ରମାଳା

## ଗୁର୍ବଷ୍ଟକମ୍

ଶରୀରଂ ସ୍ୱରୂପଂ ସଦା ରୋଗମୁକ୍ତଂ
ଯଶଶ୍ଚାରୁ ଚିତ୍ରଂ ଧନଂ ମେରୁତୁଲ୍ୟମ୍ ।
ଗୁରୋରଘ୍ରିଂ-ପଦ୍ମେ ମନଶ୍ଚେନ୍ନଲଗ୍ନଂ,
ତତଃ କିଂ, ତତଃ କିଂ, ତତଃ କିଂ ତତଃ କିମ୍ ।୧।

କଳତ୍ରଂ ଧନଂ ପୁତ୍ର ପୌତ୍ରାଦି ସର୍ବଂ
ଗୃହଂ ବାନ୍ଧବାଃ ସର୍ବମେତତ୍ ହି ଜାତମ୍ ।
ଗୁରୋରଘ୍ରିଂ-ପଦ୍ମେ ମନଶ୍ଚେନ୍ନ ଲଗ୍ନଂ
ତତଃ କିଂ, ତତଃ କିଂ, ତତଃ କିଂ ତତଃ କିମ୍ ।୨।

ଷଡ଼ଙ୍ଗାଦି ବେଦୋ ମୁଖେ ଶାସ୍ତ୍ରବିଦ୍ୟା
କବିତ୍ୱଞ୍ଚ ଗଦ୍ୟଂ ସୁପଦ୍ୟଂ କରୋତି ।
ଗୁରୋରଘ୍ରିଂ-ପଦ୍ମେ ମନଶ୍ଚେନ୍ନ ଲଗ୍ନଂ,
ତତଃ କିଂ, ତତଃ କିଂ, ତତଃ କିଂ, ତତଃ କିମ୍ ।୩।

ବିଦେଶେଷୁ ମାନ୍ୟଃ ସ୍ୱଦେଶେଷୁ ଧନ୍ୟଃ
ସଦାଚାରବୃତ୍ତେଷୁ ସକ୍ତସ୍ତଥାପି ।
ଗୁରେରାଘ୍ରିଂ-ପଦ୍ମେ ମନଶ୍ଚେନ୍ନ ଲଗ୍ନଂ,
ତତଃ କି, ତତଃ କିଂ, ତତଃ କିଂ, ତତଃ କିମ୍ ।୪।

କ୍ଷ୍ମାମଣ୍ଡଳେଽଶେଷ ଭୂପାଳବୃନ୍ଦୈଃ
ସଦା ସେବିତଂ ଯସ୍ୟ ପଦାରବିନ୍ଦମ୍ ।
ଗୁରୋଘ୍ରିଂ-ପଦ୍ମେ ମନଶ୍ଚେନ୍ନ ଲଗ୍ନଂ,
ତତଃ କିଂ, ତତଃ କିଂ, ତତଃ କିଂ, ତତଃ କିମ୍ ।୫।

ଯଶଶ୍ଚେଦ୍ ଗତଂ ଦିକ୍ଷୁ ଦାନପ୍ରତାପା—
ଜଗଦ୍‌ବସ୍ତୁସର୍ବଂ କରେ ଯତ୍‌ପ୍ରାସାଦାତ୍ ।
ଗୁରୋରଘ୍ରିଂ-ପଦ୍ମେ ମନଶ୍ଚେତ୍ର ଲଗ୍ନଂ
ତତଃ କିଂ, ତତଃ କିଂ, ତତଃ କିଂ, ତତଃ କିମ୍ ।୬।

ନ ଭୋଗେ ନ ଯୋଗେ ନ ବା ବାଜିମେଧେ,
ନ କାନ୍ତାସୁଖେ ନୈବ ବିତ୍ତେଷୁ ଚିତ୍ତମ୍ ।
ଗୁରୋରଙ୍ଘ୍ରିଂ-ପଦ୍ମେ ମନଶ୍ଚେନ୍ନ ଲଗ୍ନ,
ତତଃ କିଂ, ତତଃ କିଂ, ତତଃ କିଂ, ତତଃ କିମ୍ ।୭।
ଅରଣ୍ୟେ ନ ବା ସ୍ୱସ୍ୟ ଗେହେ ନ କାର୍ଯ୍ୟେ
ନ ଦେହେ ମନୋ ମେ ବର୍ତ୍ତତେ ତ୍ୱନର୍ଘ୍ୟେ ।
ଗୁରୋରଙ୍ଘ୍ରିଂ-ପଦ୍ମେ ମନଶ୍ଚେନ୍ନ ଲଗ୍ନଂ,
ତତଃ କିଂ, ତତଃ କିଂ, ତତଃ କିଂ, ତତଃ କିମ୍ ।୮।
ଗୁରୋରଷ୍ଟକଂ ଯଃ ପଠେତ୍ ପୁଣ୍ୟଦେହୀ,
ଯତିର୍ଭୂପତିର୍ବ୍ରହ୍ମଚାରୀ ଚ ଗେହୀ ।
ଲଭେଦ୍‌ବାଞ୍ଛିତାର୍ଥଂ ପଦଂ ବ୍ରହ୍ମସଂଜ୍ଞ୍ୟଂ
ଗୁରୋରୁକ୍ତବାକ୍ୟେ ମନୋ ଯସ୍ୟ ଲଗ୍ନମ୍ ।୯।

## କାହିଁକି ସେ ପାଏ ?

ହେଲେ ହୋଇଥାଉ ରୂପ ସୁନ୍ଦର
ରହିଲେ ରହୁ ନିରୋଗ ଶରୀର
ଥିଲେ ଥାଉ ଯଶ ଜଗତ ଭରି
ପୂରିଥାଉ ଧନ ପାହାଡ଼ପରି
କାହିଁକି ସେ ପାଏ, କାହିଁକି ସେ ପାଏ ?
ଗୁରୁପଦେ ଯେବେ ମତି ନ ଥାଏ ।୧।
ଯେଡ଼େ ରୂପବତୀ ହେଉ ଘରଣୀ
ଥାଉ ପୁଅ-ଝିଅ, ନାତି-ନାତୁଣୀ
ରହିଥାନ୍ତୁ ବନ୍ଧୁ-କୁଟୁମ୍ବ ଘେରି
ଘର ହେଉ ରାଜ-ନଅର ପରି,
କାହିଁକି ସେ ପାଏ, କାହିଁକି ସେ ପାଏ ?
ଗୁରୁପଦେ ଯେବେ ମତି ନ ଥାଏ ।୨।
ରଟୁପଛେ ମୁଖ ଷଡ଼ାଙ୍ଗ-ବେଦ
ଜଣାଥାଉ ଶାସ୍ତ୍ର-ବିଦ୍ୟାର ଭେଦ

ବନସ୍ତ ମଝିରେ ନ ଥାଉ ମନ
ନ ଥାଉ ତାହାର ଗୃହ-ବନ୍ଧନ
କରମେ ଆସକ୍ତି ପଛେ ନ ଥାଉ
ଅବା ସେ ନିନ୍ଦିତ-ଦେହେ ନ ରହୁ,
କାହିଁକି ସେ ପାଏ, କାହିଁକି ସେ ପାଏ ?
ଗୁରୁପଦେ ଯେବେ ମତି ନ ଥାଏ ।୮।

ହେଉ ପୁଣ୍ୟଦେହୀ ଅବା ନୃପତି
ହେଉ ବ୍ରହ୍ମଚାରୀ, ଗୃହୀ ବା ଯତି
'ଗୁରୁଅଷ୍ଟକ' ଯେ ପଠନେ ରତ
ବ୍ରହ୍ମଧାମ ତା'ର ହୁଏ ପାପତ,
ସୁଖୀ ସେ ପରାଣୀ, ସୁଖୀ ସେ ପରାଣୀ
ସତ୍ୟ ସତ୍ୟ, ସତ୍ୟ ଶଙ୍କର-ବାଣୀ ।୯।

## ଦକ୍ଷିଣାମୂର୍ତ୍ତି ସ୍ତୋତ୍ରମ

ବିଶ୍ୱଂ ଦର୍ପଣଦୃଶ୍ୟମାନନଗରୀତୁଲ୍ୟଂ ନିଜାନ୍ତର୍ଗତଂ
ପଶ୍ୟନ୍ନାତ୍ମନି ମାୟୟା ବହିରିବୋଦ୍ଭୂତଂ ଯଥା ନିଦ୍ରୟା ।
ଯଃ ସାକ୍ଷାତ୍କୁରୁତେ ପ୍ରବୋଧସମୟେ ସ୍ୱାତ୍ମାନମେବାବ୍ୟୟମ୍
ତସ୍ମୈ ଶ୍ରୀ ଗୁରୁମୂର୍ତ୍ତୟେ ନମ ଇଦଂ ଶ୍ରୀ ଦକ୍ଷିଣାମୂର୍ତ୍ତୟେ ।୧।
ବୀଜସ୍ୟାନ୍ତରିବାଙ୍କୁରୋ ଜଗଦିଦଂ ପ୍ରାଙ୍ନିର୍ବିକଳ୍ପଂ ପୁନ—
ର୍ମାୟାକଳ୍ପିତ ଦେଶକାଳକଳନା ବୈଚିତ୍ର୍ୟଚିତ୍ରୀକୃତମ୍ ।
ମାୟାବୀବ ବିଜୃମ୍ଭୟତ୍ୟପି ମହାଯୋଗୀବ ଯଃ ସ୍ୱେଚ୍ଛୟା
ତସ୍ମୈ ଶ୍ରୀ ଗୁରୁମୂର୍ତ୍ତୟେ ନମ ଇଦଂ ଶ୍ରୀ ଦକ୍ଷିଣାମୂର୍ତ୍ତୟେ ।୨।
ଯସ୍ୟୈବ ସ୍ଫୁରଣଂ ସଦାତ୍ମକମସତ୍ କଳ୍ପାର୍ଥକଂ ଭାସତେ
ସାକ୍ଷାତ୍ ତତ୍ତ୍ୱମସିତି ବେଦବଚସା ଯୋ ବୋଧୟତ୍ୟାଶ୍ରିତାନ୍
ଯତ୍‌ସାକ୍ଷାତ୍ କରଣାଭବେନ୍ନ ପୁନରାବୃତ୍ତିର୍ଭବାମ୍ଭୋନିଧୌ
ତସ୍ମୈ ଶ୍ରୀ ଗୁରୁମୂର୍ତ୍ତୟେ ନମ ଇଦଂ ଶ୍ରୀ ଦକ୍ଷିଣାମୂର୍ତ୍ତୟେ ।୩।
ନାନାଛିଦ୍ର ଘଟୋଦରସ୍ଥିତ ମହାଦୀପ ପ୍ରଭା ଭାସ୍ୱରଂ
ଜ୍ଞାନଂ ଯସ୍ୟ ତୁ ଚକ୍ଷୁରାଦିକରଣଦ୍ୱାରା ବହିଃ ସ୍ପନ୍ଦତେ ।

ତ୍ରିଭୁବନ ଗୁରୁ ମୀଶଂ ଦକ୍ଷିଣାମୂର୍ତ୍ତି ଦେବଂ
ଜନନ-ମରଣ-ଦୁଃଖଚ୍ଛେଦ ଦକ୍ଷଂ ନମାମି ।୧୧।
ଚିତ୍ରଂ ବଟତରୋର୍ମୂଲେ ବୃଦ୍ଧାଃ ଶିଷ୍ୟା ଗୁରୁର୍ଯୁବା
ଗୁରୋସ୍ତୁ ମୌନଂ ବ୍ୟାଖ୍ୟାନଂଶିଷ୍ୟାସ୍ତୁ ଛିନ୍ନସଂଶୟାଃ ।୧୨।
ଓଁ ନମଃ ପ୍ରଣବାର୍ଥାୟ ଶୁଦ୍ଧଜ୍ଞାନୈକ ମୂର୍ତ୍ତୟେ
ନିର୍ମଳାୟ ପ୍ରଶାନ୍ତାୟ ଦକ୍ଷିଣାମୂର୍ତ୍ତୟେ ନମଃ ।୧୩।
ନିଧୟେ ସର୍ବବିଦ୍ୟାନାଂ ଭିଷଜେ ଭବରୋଗିଣାମ୍
ଗୁରବେ ସର୍ବଲୋକାନାଂ ଦକ୍ଷିଣାମୂର୍ତ୍ତୟେ ନମଃ ।୧୪।
ମୌନବ୍ୟାଖ୍ୟା ପ୍ରକଟିତ ପରଂବ୍ରହ୍ମ ତତ୍ତ୍ୱଂଯୁବାନମ୍
ବାର୍ଷିଷ୍ଠାନ୍ତେବସଦୃଷିଗଣୈରାବୃତଂ ବ୍ରହ୍ମନିଷ୍ଠୈଃ
ଆଚାର୍ଯ୍ୟେନ୍ଦ୍ରଂ କରକଳିତ ଚିନ୍ମୁଦ୍ରମାନନ୍ଦରୂପଂ
ସ୍ୱାତ୍ମାରାମଂ ମୁଦିତବଦନଂ ଦକ୍ଷିଣାମୂର୍ତ୍ତିମୀଡ଼େ ।୧୫।

★★

ଦକ୍ଷିଣାମୂରତି ସେହି ଶ୍ରୀଗୁରୁଚରଣେ
ଲୋଟୁଥାଉ ଭକତିରେ ମଥା ଅନୁକ୍ଷଣେ ।୦।
ଦରପଣେ ନଗରୀର ଛାଇ ବରାବର
ଚିତ୍ତପଟେ ନିତିଘଟେ ଦରଶନ ଯାର
ପୁଣି ଏହି ବିଶ୍ୱସାରା
ଅନୁଭବ କରେ ଯେହୁ ମାୟାର ପସରା ।୧।
ଆତ୍ମାସ୍ୱରୂପ ମଣୁଥିଲେ ହେଲେ
ଯେ ଘୂମନ୍ତ ଦୃଶ୍ୟ ବୋଲି ଭାଳେ
ପୁଣି ସମାଧିକାଳରେ
ଆତ୍ମସାକ୍ଷାତ୍‌କାର ଯେ ଲଭେ ଅବହେଳେ ।୨।
ଅଙ୍କୁରଟି ଜାତ ହୁଏ ବୀଜମଧୁଁ ଯଥା
ଅବିକଳ୍ପିତ ସାରା ଜଗତକୁ ତଥା
ସୃଷ୍ଟି ନଥିବା ଆଗରୁ
କଳପନା କରନ୍ତି ଯେ ମାୟାର ବଳରୁ ।୩।

# ନିଗମ ଗ୍ରନ୍ଥମାଳା

## ୧-ଶ୍ରୀ ଶ୍ରୀ ଠାକୁର ନିଗମାନନ୍ଦ

ଏଥିରେ ଶ୍ରୀ ଶ୍ରୀ ଠାକୁରଙ୍କ ବାଲ୍ୟ-ଜୀବନ, ସାଂସାରିକ ଜୀବନ, ସାଧନ-ଜୀବନ, ତନ୍ତ୍ର, ଯୋଗ, ଜ୍ଞାନ ଓ ପ୍ରେମର ସାଧନା ଏବଂ ସିଦ୍ଧିଲାଭର ବିବରଣ, ଯୋଗୈଶ୍ୱର୍ଯ୍ୟ ଓ ଐଶ୍ୱରିକ ଶକ୍ତିର ପରିଚୟ, ସାରସ୍ୱତ ମଠ ସ୍ଥାପନ, ଗୁରୁଭାବ, ମୃତ୍ୟୁ ଓ ପରଲୋକ ସମ୍ପର୍କରେ ତାଙ୍କର ଅଭିନବ ଏବଂ ଅମୂଲ୍ୟ ବର୍ଣ୍ଣନା, ମୃତ୍ୟୁଭୟ ନିବାରଣ ନିମିତ୍ତ ତାଙ୍କର ଅଭୟବାଣୀ, ମାତୃଜାତି ପ୍ରତି ତାଙ୍କର ଅମିୟ ମଧୁର ଉଦ୍‌ବୋଧନ-ବାଣୀ, ଭବିଷ୍ୟତବାଣୀ ଓ ନୀଳାଚଳ ଧାମରେ ଅବସ୍ଥାନ କରୁଥିବାବେଳେ ସେ ଯେଉଁ ତତ୍ତ୍ୱମୟୀ ଉପଦେଶମାନ ପ୍ରଦାନ କରିଥିଲେ ଏବଂ ମହାସମାଧିଲାଭ ପୂର୍ବରୁ ସେ ଭକ୍ତ-ଶିଷ୍ୟମାନଙ୍କୁ ଭବିଷ୍ୟତ କର୍ମପନ୍ଥାରେ ଯାତ୍ରା କରିବାକୁ ଯେଉଁ ଆଦେଶ ଓ ନିର୍ଦ୍ଦେଶ ପ୍ରଦାନ କରିଛନ୍ତି, ତାହାର ଧାରାବାହିକ ବିବରଣୀ ଏଥିରେ ପ୍ରଦତ୍ତ ହୋଇଅଛି ।

## ୨-ନିଗମ ଲହରୀ

ଯୋଗଶାସ୍ତ୍ରରେ ଅଛି ଯେ, ଜପ ଅପେକ୍ଷା ଶତଗୁଣ ଫଳ ଧ୍ୟାନରେ, ଧ୍ୟାନ ଅପେକ୍ଷା ଶତଗୁଣ ଫଳ ଲୟଯୋଗ ସାଧନରେ ଏବଂ ଲୟଯୋଗଠାରୁ ଶତଗୁଣ ଫଳ ସଙ୍ଗୀତ ଓ କୀର୍ତ୍ତନରେ ଲାଭ ହୁଏ; ଅର୍ଥାତ୍ ମନୋଲୟ ପକ୍ଷରେ ସଂକୀର୍ତ୍ତନ ଗୋଟିଏ ଅତି ଆବଶ୍ୟକ ଅଙ୍ଗ । ଏହି ଭାବରେ ସଙ୍ଗୀତ ଆଧ୍ୟାତ୍ମିକ ରାଜ୍ୟରେ ଭାବସଞ୍ଚାରର ଗୋଟିଏ ପ୍ରଧାନ ଉପାୟ ହୋଇ ରହିଆସିଛି । କଳିଯୁଗରେ କୀର୍ତ୍ତନ ହିଁ ଯୁଗଧର୍ମ । ଶ୍ରୀଶ୍ରୀ ଠାକୁରଙ୍କ ଜୀବନୀ, ବାଣୀ ଓ ଉପଦେଶସମ୍ବଳିତ ଏହି ପୁସ୍ତକରେ ଅଛି କେବଳ କତିପୟ ଗୁରୁପଦାଶ୍ରିତ ଭକ୍ତଙ୍କ ପ୍ରାଣର ସରଳ ଅଭିବ୍ୟକ୍ତି ।

ଶ୍ରୀଗୁରୁପ୍ରଣାମ, ଗୁରୁବନ୍ଦନା, ଗୁର୍ବାଷ୍ଟକ ଆଦି ସାରସ୍ୱତ-ସଂଘରେ ପଠିତ ଓ ସଂକୀର୍ତ୍ତନ ହେଉଥିବା ବନ୍ଦନାଗାନ, ଶ୍ରୀଶ୍ରୀ ଠାକୁରଙ୍କ ଜୀବନୀ, ଭାବତତ୍ତ୍ୱର ଆଲୋଚନା, ଭାବସାଧନା, ବନ୍ଦନା, ଉଦ୍ଦୀପନା, ଗୁରୁକୃପା, ଶ୍ରୀ ଶ୍ରୀ ଠାକୁରଙ୍କ ଅମୃତବାଣୀ, ଅଭୟବାଣୀ ଓ 'ଜୟଗୁରୁ' ନାମମାହାତ୍ମ୍ୟ ପ୍ରଭୃତି ଏଥିରେ ସନ୍ନିବେଶିତ ହୋଇଅଛି ।

## ୩-ନିଗମ-ତତ୍ତ୍ୱ

ଶ୍ରୀଶ୍ରୀ ଠାକୁର ପରମହଂସ ନିଗମାନନ୍ଦ ସ୍ୱରସ୍ୱତୀଦେବ ବିଶ୍ୱବାସୀଙ୍କ ନିମିତ୍ତ ଯେଉଁ ଆଧାତ୍ମ୍ୟ ତତ୍ତ୍ୱରାଜିର ଅମୂଲ୍ୟ ସମ୍ପଦ ସଜାଇ ରଖିଛନ୍ତି, ସେଥିମଧ୍ୟରୁ କେତେକ ତତ୍ତ୍ୱମୟୀବାଣୀ ସଂଗ୍ରହ କରାଯାଇ ଏଥିରେ ପ୍ରକାଶିତ ହୋଇଅଛି । ଆଜକୁ ପ୍ରାୟ ପଚାଶ ବର୍ଷ ତଳେ ହିନ୍ଦୁଧର୍ମ, ହିନ୍ଦୁଧର୍ମର ସଂସ୍କାର ଓ ମାନବଜାତିର କଲ୍ୟାଣ ନିମିତ୍ତ ଯେଉଁ ନିରପେକ୍ଷ ସତ୍ୟ ତାଙ୍କ ଅନ୍ତରରେ ପ୍ରତିଭାତ ହୋଇଥିଲା, ତାହା ସେ ନିଜେ ତାଙ୍କର ସ୍ୱହସ୍ତଲିଖିତ ପୁସ୍ତକାବଳୀରେ ଓ ତତ୍କାଳୀନ 'ଆର୍ଯ୍ୟ ଦର୍ପଣ' ପତ୍ରିକାରେ ପ୍ରକାଶ କରିଥିଲେ ଏବଂ ସେହିସବୁ ଗ୍ରନ୍ଥମାନଙ୍କରୁ ସଂଗ୍ରହ କରାଯାଇ ଏହି ପୁସ୍ତକଖଣ୍ଡି ପ୍ରକାଶିତ ହୋଇଅଛି । ଏଥିରେ ବ୍ରହ୍ମ, ଆତ୍ମା, ଭଗବାନ, ଶକ୍ତି, ଲୀଳା, ଲକ୍ଷ୍ୟ, ମନ, ସଂସ୍କାର, ନାମ, ମନ୍ତ୍ର, ଗୁରୁ ଓ ଯୋଗ, ଜ୍ଞାନ, ସଂଘତତ୍ତ୍ୱ ଓ ଭବିଷ୍ୟତ ଉନ୍ନତି ବିଷୟରେ ତତ୍ତ୍ୱମୟୀ ଉପଦେଶମାନ ପ୍ରଦତ୍ତ ହୋଇଅଛି ।

## ୪-ଶ୍ରୀଶ୍ରୀ ନିଗମାନନ୍ଦ କଥାମୃତ

ଆଜକୁ ପ୍ରାୟ ପଚାଶ ବର୍ଷ ତଳେ ଶ୍ରୀଶ୍ରୀ ଠାକୁର ପରମହଂସ ନିଗମାନନ୍ଦ ସରସ୍ୱତୀଦେବ ସାରସ୍ୱତ ମଠରେ ଅନ୍ତେବାସୀ, ସନ୍ନ୍ୟାସୀ, ବ୍ରହ୍ମଚାରୀ ଆଗନ୍ତୁକ ଶିଷ୍ୟ-ଭକ୍ତମାନଙ୍କୁ ଯେଉଁ ବିବିଧ ତତ୍ତ୍ୱ ପରିପୂର୍ଣ୍ଣ ଅମୃତମୟୀ ବାଣୀ ପ୍ରଦାନ କରିଥିଲେ, ତହିଁର କେତେକ ଅଂଶ ଏହି ପୁସ୍ତକରେ ପ୍ରଦତ୍ତ ହୋଇଅଛି । ଏଥିରେ ଅନୁରାଗଭଜନ, ପଞ୍ଚଭାବ, ପୁରୁଷ-ପ୍ରକୃତିତତ୍ତ୍ୱ, ବେଦାନ୍ତ ଓ ଭଗବତ, ବିଶ୍ୱବ୍ରହ୍ମାଣ୍ଡର ଚିତ୍ର ବା ଶ୍ରୀଶ୍ରୀ ଠାକୁରଙ୍କ ସ୍ୱହସ୍ତଅଙ୍କିତ ଜ୍ଞାନଚକ୍ର ଓ ତହିଁର ଧାରଣା ସମ୍ପର୍କରେ ଉପଦେଶ, ରାଧା-କୃଷ୍ଣତତ୍ତ୍ୱ, ଭାରତର ଧର୍ମସମନ୍ୱୟ, ଭାବଦେହ ଓ ଭାବର ସାଧନା ପ୍ରଭୃତି ପ୍ରାୟ ଶତାଧିକ ବିଷୟରେ ଶ୍ରୀଶ୍ରୀ ଠାକୁରଙ୍କ ଅମୃତମୟୀ ବାଣୀ ଏଥିରେ ସ୍ଥାନ ପାଇଅଛି ।

## ୫-ନିଗମ ଉପଦେଶ

ଶ୍ରୀଶ୍ରୀ ଠାକୁର ବିଭିନ୍ନ ସ୍ଥଳରେ ବିଭିନ୍ନ ଅଧିକାରୀ ନିମିତ୍ତ ଯେଉଁସବୁ ଉପଦେଶ ପ୍ରଦାନ କରିଛନ୍ତି, ସେଥିମଧ୍ୟରୁ ତାଙ୍କର ସ୍ୱହସ୍ତଲିଖିତ ଓ ଶ୍ରୀମୁଖକଥିତ

ଉପଦେଶ ବାଣୀରୁ ସଂଗୃହୀତ ହୋଇ କେତେକ ଏଥିରେ ସନ୍ନିବେଶିତ କରାଯାଇଅଛି । ଜୀବନର ପ୍ରତିକ୍ଷେତ୍ରରେ ପ୍ରୟୋଗ ପାଇଁ ବହୁ ଉପାଦାନ ଏହି ଉପଦେଶ ମଧ୍ୟରେ ଶ୍ରୀଶ୍ରୀ ଠାକୁର ପ୍ରଦାନ କରିଛନ୍ତି । ଯେ କୌଣସି ସ୍ତରର, ଯେ କୌଣସି ଅବସ୍ଥାର, ଯେ କୌଣସି ବୟସର ଓ ଯେ କୌଣସି ଜାତିର ଲୋକ ନିଜ ନିଜ ଭାବର ଉପଯୋଗୀ ବହୁ ତଥ୍ୟ ଏହି ଉପଦେଶରୁ ଲାଭ କରିପାରିବେ । ବିଶେଷତଃ ଛାତ୍ର, ସାଧକ, କର୍ମୀ, ନେତୃସ୍ଥାନୀୟ ବ୍ୟକ୍ତି ଓ ଗୃହସ୍ଥ ସାଧକମାନେ ଏ ପୁସ୍ତକପାଠାରେ ବହୁ ଭାବରେ ଉପକୃତ ହେବେ ।

## ୬-ନୀଳାଚଳ-ବାଣୀ

ପରମାରାଧ୍ୟ ଶ୍ରୀଶ୍ରୀ ଠାକୁର ମହାରାଜ ପୁରୀଧାମରେ ଅବସ୍ଥାନ କରୁଥିବା ବେଳେ ଯେଉଁ ଅମିୟ ମଧୁରବାଣୀ ବିତରଣ କରୁଥିଲେ, ତନ୍ମଧ୍ୟରୁ କେବଳ ଶେଷ ଚାରି ବର୍ଷ ଭିତରେ ବିଭିନ୍ନ ସମସ୍ୟା ଓ ପ୍ରଶ୍ନର ସମାଧାନ କରିବାକୁ ଯାଇ ଶିଷ୍ୟ-ଭକ୍ତମାନଙ୍କୁ ସେ ଯେଉଁ ଉପଦେଶବାଣୀ ପ୍ରଦାନ କରିଛନ୍ତି, ତହିଁର ସଙ୍କଳନ ଏହି ପୁସ୍ତକରେ କରାଯାଇଅଛି । ଏଥିରେ ଗୁରୁତତ୍ତ୍ୱ, ଭଗବତ୍-ତତ୍ତ୍ୱ, ଋଷିସଂଘ ଓ ଗୁରୁ-ଶିଷ୍ୟ ସମ୍ପର୍କ, ତାଙ୍କ ଜୀବନର ବିଭିନ୍ନ ବିଶିଷ୍ଟ ଘଟଣାବଳୀର ବର୍ଣ୍ଣନା, ଭାରତର ଉନ୍ନତି ଓ ଭବିଷ୍ୟତ ବିଷୟରେ ସ୍ପଷ୍ଟ ଓ ସୁବ୍ୟକ୍ତ ନିର୍ଦ୍ଦେଶ ଏବଂ ତାନ୍ତ୍ରିକ ସାଧନାର ବିବରଣ ପ୍ରଭୃତି ବହୁ ବିଷୟରେ ଉପଦେଶ ପ୍ରଦତ୍ତ ହୋଇଅଛି ।

## ୭-ସଂସାର ପଥେ

ବର୍ତ୍ତମାନ ସମୟରେ ଗୃହସ୍ଥମାନଙ୍କ ପକ୍ଷରେ ବଡ଼ କଠିନ ସମୟ ଉପସ୍ଥିତ । ରାଷ୍ଟ୍ରରେ, ସମାଜରେ, ପରିବାରରେ, ଧର୍ମକ୍ଷେତ୍ରରେ ସବୁଆଡ଼େ ବିରୋଧ ଓ ଅସାମଞ୍ଜସ୍ୟ ଲାଗି ରହିଅଛି । ଏଣେ ମଧ୍ୟ ଦେଶର ନେତୃସ୍ଥାନୀୟ ବ୍ୟକ୍ତିମାନେ ସମାଜ ସଂସ୍କାର ନିମିତ୍ତ ପ୍ରାଣପଣେ ଉଦ୍ୟମ କରୁଛନ୍ତି । କିନ୍ତୁ ବିଧିବଦ୍ଧ ସମାଜ ନଥିବାରୁ ତହିଁର ସଂସ୍କାର ସମ୍ଭବପର ହୋଇପାରୁ ନାହିଁ । ସ୍ତ୍ରୀ ସ୍ୱାମୀର ମତାନୁସାରେ ଚଳୁ ନାହିଁ କିମ୍ବା ପୁତ୍ର ପିତାଙ୍କ କଥା ଶୁଣୁନାହାନ୍ତି । ଏପରିସ୍ଥଳେ ଯେତେ ସମାଜ ସଂସ୍କାର କଲେ ମଧ୍ୟ ସେଥିରେ ବାସ୍ତବ ସମସ୍ୟାର ପ୍ରକୃତ ସମାଧାନ ହୋଇପାରୁ ନାହିଁ ।

ସମାଜ ତଥା ଗୃହସ୍ଥମାନଙ୍କୁ ଆଦର୍ଶ ଭାବରେ ଗଠନ ନ କଲେ ସମାଜର ପ୍ରକୃତ କଲ୍ୟାଣ ସାଧିତ ହୋଇପାରିବ ନାହିଁ ବୋଲି ଶ୍ରୀଶ୍ରୀ ଠାକୁର ବିଭିନ୍ନ ସମସ୍ୟାର ସମାଧାନ କରି ଆଦର୍ଶ ଗୃହସ୍ଥ ଜୀବନ ଗଠନ ନିମିତ୍ତ ଯେଉଁସବୁ ଉପଦେଶ ଓ ସାଧନ ପ୍ରଣାଳୀ ପ୍ରଦାନ କରିଅଛନ୍ତି, ସେଥିମଧ୍ୟରୁ କେତେକ ଉପଦେଶ ଓ ସାଧନା ପ୍ରଣାଳୀ ଗୃହସ୍ଥ ଜୀବନକୁ ସୁଖମୟ କରିବା ନିମିତ୍ତ ଯେଉଁ ଧାରାରେ ଜୀବନ ଗଠନ କରିବାକୁ ହୁଏ, ତହିଁର ବିବରଣ ଏହି ଗ୍ରନ୍ଥରେ ପ୍ରକାଶିତ ହୋଇଅଛି ଓ ଏହା ଛଅ ଖଣ୍ଡରେ ବିଭକ୍ତ ହୋଇଥିଲେହେଁ ଭାବନା ପ୍ରଥମ ଓ ଦ୍ୱିତୀୟ ଭାଗ ଏକତ୍ର ଏବଂ ସଂଗ୍ରାମ ସହିତ ସାଧକ ଉପଦେଶ (ପରିଶିଷ୍ଟ) ଖଣ୍ଡକୁଏକତ୍ର କରାଯାଇ ବସ୍ତୁତଃ ଏହା ଚାରିଖଣ୍ଡରେ ବିଭକ୍ତ ହୋଇଅଛି ।

**ପ୍ରଥମ ଖଣ୍ଡ**—(ଭାବନା—୧):—ଏଥିରେ ଶ୍ରୀଶ୍ରୀ ଠାକୁରଙ୍କର ମୁଖ୍ୟ ଉଦ୍ଦେଶ୍ୟ ଆଦର୍ଶ ଗୃହସ୍ଥ ଜୀବନ ଗଠନର ଧାରା, ଗୃହସ୍ଥଙ୍କ ଅନ୍ତର ଓ ବାହ୍ୟ ଆଚରଣର ଆଦର୍ଶ, ଗୃହସ୍ଥଙ୍କ ସେବା ଓ ଆରାଧନା ପ୍ରଣାଳୀ, ଗୃହସ୍ଥ ଜୀବନରେ ସାଧନା, ଖାଦ୍ୟ, ପାରିବାରିକ, ସାମାଜିକ ଓ ଆର୍ଥିକ ପ୍ରଭୃତି ବିଭିନ୍ନ ସମସ୍ୟାର ସମାଧାନ କରିବାକୁ ଗୃହୀଙ୍କର କିଭଳି ଭାବନା ଆବଶ୍ୟକ, ତତ୍‌ସମୁଦାୟ ଏବଂ ଗୃହସ୍ଥ ଜୀବନର ଲକ୍ଷ୍ୟ ଓ ଶେଷରେ ଶ୍ରୀଶ୍ରୀ ଠାକୁରଙ୍କ ଅଭୟବାଣୀ ପ୍ରଦତ୍ତ ହୋଇଅଛି ।

**ଦ୍ୱିତୀୟ ଖଣ୍ଡ** (ଭାବନା—୨) :—ଗୃହସ୍ଥମାନେ ଆଦର୍ଶ ଜୀବନଯାପନ କରୁଥିବାବେଳେ କର୍ମଚଞ୍ଚଳତା ମଧ୍ୟରେ କିପରି ଅବିକ୍ଷୁବ୍‌ଧ ଓ ଶାନ୍ତସମାହିତ ରହି ଧର୍ମ ଜୀବନଯାପନ କରିପାରିବେ, ସେହି ସର୍ମ୍ପରେ ଶ୍ରୀମତ୍ ସ୍ୱାମୀ ରାମତୀର୍ଥଙ୍କ ଉପଦେଶ ବାଣୀ ଅବଲମ୍ବନ କରି ଅହଂତ୍ୱ ବିସର୍ଜନପୂର୍ବକ ସତ୍ୟକୁ ହୃଦୟରେ ସ୍ଥାନ ଦେବାନିମିତ୍ତ ପାଶ୍ଚାତ୍ୟ ଦେଶମାନଙ୍କରେ ସ୍ୱାମୀଜୀ ବକ୍ତୃତା ସ୍ଥଳରେ ଯେଉଁ ଉପଦେଶ ପ୍ରଦାନ କରିଥିଲେ, ସେସବୁର ସରଳ ଅନୁବାଦ ଏଥିରେ ପ୍ରଦତ୍ତ ହୋଇଅଛି । ଏଥିରେ ଆଦର୍ଶ ଗୃହସ୍ଥଜୀବନ; ଗୃହସ୍ଥଙ୍କର ବାସନାପୂରଣ, ମନସ୍ଥିର କରିବାର କୌଶଳ, ଶାସ୍ତ୍ରପାଠର ତାତ୍ପର୍ଯ୍ୟ, ଦୁଃଖ ଏବଂ ତାହାର ନିରାକରଣର ଉପାୟ, ସତ୍ୟପଥରେ ଗତି କଲାବେଳେ କିଭଳି ଦୃଢ଼ ନିଷ୍ଠା ଆବଶ୍ୟକ ଇତ୍ୟାଦିର ବିବରଣ ପ୍ରଦତ୍ତ ହୋଇଅଛି । ପରିଶେଷରେ ଧର୍ମ ନାମରେ ଯେଉଁସବୁ ଅଧର୍ମ ଓ ଅତ୍ୟାଚାର ବର୍ତ୍ତମାନ ଯୁଗରେ ଆମ ସମାଜରେ ପ୍ରଚଳିତ ହେଉଅଛି, ତହିଁର

ବିବରଣ ଏବଂ ତାହାର ନିବାରଣର ଉପାୟ ମଧ୍ୟ ବର୍ଣ୍ଣନା କରାଯାଇଅଛି ।

**ତୃତୀୟ ଖଣ୍ଡ** (ସିଦ୍ଧିଯୋଗ)—ଆଦର୍ଶ ଜୀବନଯାପନ କରିବାକୁ ହେଲେ ସ୍ୱାସ୍ଥ୍ୟରକ୍ଷା ଏକାନ୍ତ ଆବଶ୍ୟକ । କିନ୍ତୁ ଆଜିକାଲି ଲୋକଙ୍କର ସୁସ୍ଥ, ନିରୋଗ ଏବଂ ଦୀର୍ଘଜୀବୀ ହେବା ବିଷୟରେ ଅଦ୍ଭୁତ ପ୍ରକାରର ଧାରଣା ବିଦ୍ୟମାନ । ହଜାର ହଜାର ବର୍ଷ ତଳେ ଆମ ଦେଶର ଯୋଗୀ-ଋଷିମାନେ ସ୍ୱାସ୍ଥ୍ୟରକ୍ଷା ବିଷୟରେ ଗବେଷଣା କରି ସ୍ୱାସ୍ଥ୍ୟରକ୍ଷା ଓ ଦୀର୍ଘଜୀବନ ଲାଭ କରିବା ନିମିତ୍ତ ଯେଉଁସବୁ ଅମୂଲ୍ୟ ତଥ୍ୟ ଲିପିବଦ୍ଧ କରିଯାଇଛନ୍ତି, ବୈଜ୍ଞାନିକମାନେ ପରୀକ୍ଷା କରି ଆଜି ଏହି ସ୍ୱୀକାର କଲେଣି ଯେ, ପୁର୍ବତନ ଋଷିମାନଙ୍କ ତଥ୍ୟ ବିଜ୍ଞାନସମ୍ମତ । ଶ୍ରୀଶ୍ରୀ ଠାକୁର ଦେହଶୁଦ୍ଧି ଓ ରୋଗ ନିରାକରଣ ସମ୍ବନ୍ଧରେ ବିନା ଔଷଧରେ କେବଳ ଯୌଗିକ ପ୍ରକ୍ରିୟା ସାହାଯ୍ୟରେ ବିବିଧ ରୋଗ ଆକ୍ରମଣରୁ ରକ୍ଷା ପାଇବା ନିମିତ୍ତ ଯେଉଁସବୁ ସୁଖସାଧ୍ୟ ଓ ସହଜ କୌଶଳ ସିଦ୍ଧଯୋଗୀମାନଙ୍କ ଠାରୁ ଶିକ୍ଷା କରିଥିଲେ, ସେହିସବୁ କୌଶଳ ମଧ୍ୟରୁ କେତେକ ଏଥିରେ ପ୍ରଦତ୍ତ ହୋଇଅଛି । ଏଥିରେ ଯୋଗପ୍ରକ୍ରିୟାରେ ରୋଗ ନିରାମୟ, ବିଭିନ୍ନ ଉଦରଗତ ପୀଡ଼ା ଓ ତାହାର ନିରାକରଣ, ନିଃଶ୍ୱାସ ଯନ୍ତ୍ରକୁ ସୁସ୍ଥ ରଖିବା ନିମିତ୍ତ ବିଭିନ୍ନ ପ୍ରକାର ପ୍ରାଣାୟମ, ମନକୁ ସ୍ଥିର କରିବାର ବହୁବିଧ କୌଶଳ ଲିପିବଦ୍ଧ କରାଯାଇଅଛି । ଚତୁର୍ଥ ଓ ପଞ୍ଚମ ଅଧ୍ୟାୟରେ ଦିବ୍ୟଜୀବନ ଲାଭ, ଦୀର୍ଘଜୀବୀ ସୁସନ୍ତାନ ଲାଭର ଉପାୟ, ମନ୍ତ୍ର ଯନ୍ତ୍ର ସାହାଯ୍ୟରେ ରୋଗ ନିରାମୟର କୌଶଳ ବର୍ଣ୍ଣିତ ହୋଇଅଛି । ସ୍ୱରଶାସ୍ତ୍ର ବା ସ୍ୱରୋଦୟଯୋଗ, ପଞ୍ଚତନ୍ତ୍ର, ସ୍ୱର ସାହାଯ୍ୟରେ ବିନା ଔଷଧରେ ରୋଗ ଆରୋଗ୍ୟର ବିବରଣ ମଧ୍ୟ ପ୍ରଦତ୍ତ ହୋଇଅଛି । ପରିଶିଷ୍ଟରେ କେବଳ ନିତ୍ୟନୈମିତ୍ତିକ ସଦାଚାର ପାଳନ ଦ୍ୱାରା ଗୃହସ୍ଥମାନେ କିପରି ଦୀର୍ଘଜୀବନ ଲାଭ କରିପାରିବେ, ତହିଁର ବିବରଣୀ ରହିଅଛି । ଉପସଂହାରରେ ମଧ୍ୟ ବିବିଧ ମନୋବିଜ୍ଞାନ ବିଷୟରେ ଉପଦେଶ ପ୍ରଦାନ କରାଯାଇଅଛି ।

**ଚତୁର୍ଥ ଖଣ୍ଡ** (ସାଧନା)—ଗୃହସ୍ଥମାନେ କେବଳ ଶରୀରକୁ ସୁସ୍ଥସବଳ ରଖି ଦୀର୍ଘଜୀବନ ଲାଭ କଲେ ମଧ୍ୟ ମନରେ ଶାନ୍ତି ଲାଭ କରିପାରିବେ ନାହିଁ; ବରଂ ଅଶାନ୍ତ ମନ ଅନାୟତ୍ତ ହୋଇ ସ୍ୱପ୍ନାବସ୍ଥା ପରି ଅଧିକତର ଚଞ୍ଚଳ ହୋଇଉଠିବ; ତେଣୁ ଶରୀର ସୁସ୍ଥ ରଖିବା ସଙ୍ଗେ ସଙ୍ଗେ ଇନ୍ଦ୍ରିୟମାନଙ୍କ ସହିତ ମନର ଚରମ ସ୍ଥିରତା ଆନୟନ ମାନବ ଜୀବନର ପ୍ରଧାନ କର୍ତ୍ତବ୍ୟ । ଶରୀର ଓ ଇନ୍ଦ୍ରିୟର

ସ୍ଥିରତା ଆନୟନ ପୂର୍ବକ ଯେତେବେଳେ ସାଧକ ନିଜକୁ ଭୁଲି କେବଳ ମାତ୍ର ଭଗବାନଙ୍କର ପ୍ରତ୍ୟକ୍ଷ ଅନୁଭୂତି ଲାଭ କରିପାରିବେ, ସେହି ଅବସ୍ଥାରେ ଯାଇ ପ୍ରକୃତ ଶାନ୍ତି ପ୍ରତିଷ୍ଠିତ ହେବ। ପ୍ରଥମରେ ଜ୍ଞାନଲାଭ ଓ ତଧିରେ ଯୋଗସାଧନ କରିବା କର୍ତ୍ତବ୍ୟ; ନତୁବା ଜ୍ଞାନଲାଭ ପୂର୍ବରୁ ସାଧକ ଯଦି ସାଧନା ଦ୍ୱାରା ଚିତ୍ତଲୟ କରନ୍ତି, ତେବେ ସତ୍ୟଦର୍ଶନ କରି ମଧ ନାସ୍ତିକ ହୋଇଯିବାର ସମ୍ଭାବନା। ତେଣୁ ତତ୍ତ୍ୱାଲୋଚନ ପରେ ମନର ଲୟସାଧନ କରିବା ନିମିତ୍ତ ଶ୍ରୀଶ୍ରୀ ଠାକୁର ଯେଉଁସବୁ ସାଧନପ୍ରଣାଳୀ ଗୃହସ୍ଥମାନଙ୍କ ଉଦ୍ଦେଶ୍ୟରେ ଲିପିବଦ୍ଧ କରିଥିଲେ, ସେସବୁ ମଧ୍ୟରୁ ସହଜ, ସୁଖସାଧ ଓ ସାଧାରଣ ଗୃହସ୍ଥମାନଙ୍କ ପକ୍ଷରେ ଯେତିକି ଉପଯୋଗୀ, ସେହି ସମସ୍ତ ସାଧନପନ୍ଥାର ବିବରଣ ଏଥିରେ ପ୍ରକାଶିତ ହୋଇଅଛି। ଏଥିରେ ପ୍ରଥମରୁ 'ଶଙ୍କରଙ୍କ ମତ ଓ ଗୌରାଙ୍ଗଙ୍କ ପଥ' ସମ୍ପର୍କରେ ଜ୍ଞାନଲାଭ, ଲକ୍ଷ୍ୟ ସ୍ଥିର, ଲୟଯୋଗରେ ବିବିଧ ସାଧନାଙ୍ଗ, ଆସନ-ଅଭ୍ୟାସ, କୁଣ୍ଡଳିନୀଚୈତନ୍ୟ, ନାଡ଼ୀଶୋଧନ, ମନୋଲୟ ଏବଂ ମନ୍ତ୍ରଜପର ବହୁବିଧ ବୈଜ୍ଞାନିକ ପ୍ରଣାଳୀ ସନ୍ନିବେଶିତ ହୋଇଅଛି। ଶେଷରେ ଭକ୍ତିର ପଞ୍ଚବିଧ ସାଧନ—ଚିତ୍ତଶୁଦ୍ଧି, ମାନସିକ ସେବା, ସାକ୍ଷାତ୍ ଭଜନ, ସହଜ ଭଜନ, ଅପୂର୍ବ ପନ୍ଥାର ସାଧନ ପ୍ରଭୃତି ବିଶଦ ଭାବରେ ବର୍ଣ୍ଣିତ ହୋଇଅଛି।

**ପରିଶିଷ୍ଟ ଖଣ୍ଡ**—ସାଧକମାନେ ସାଧନପଥରେ ଗତି କରିବାବେଳେ ଯେଉଁସବୁ ନିୟମର ବଶବର୍ତ୍ତୀ ହୋଇ ଚଳିବା ଓ ଯେଉଁସବୁ ବିଷୟ ପ୍ରତି ଲକ୍ଷ୍ୟ ରଖିବା ନିତାନ୍ତ କର୍ତ୍ତବ୍ୟ ଅର୍ଥାତ୍ ଗୃହ-ସଂସାରରେ ରହି ସାଧକମାନେ କିଭଳି ବାହ୍ୟିକଭାବରେ ଜୀବତ୍ୱ ବଜାୟ ରଖି ଅନ୍ତରରେ ଅଦ୍ୱୈତ ଭାବ ପୋଷଣ କରି ଚଳିବେ, ସେସବୁର ଉପଦେଶ ଏଥିରେ ସନ୍ନିବେଶିତ ହୋଇଅଛି। ଏହି ଖଣ୍ଡରେ ବିଭିନ୍ନ ବିଷୟରେ ଦ୍ୱିଶତାଧିକ ଉପଦେଶ ପ୍ରଦାନ କରାଯାଇ ସାଧକମାନଙ୍କ ସାଧନ ପଥକୁ ସୁଗମ କରାଯାଇଅଛି।

**ପଞ୍ଚମ ଖଣ୍ଡ** (ସଂଗ୍ରାମ)—ସାଧନପଥରେ ଗତି କରିବାବେଳେ ସାଧକମାନଙ୍କ ସମ୍ମୁଖରେ ଯେଉଁସବୁ ବାଧାବିଘ୍ନ ଆସି ଉପସ୍ଥିତ ହୋଇ ସାଧକ ଜୀବନକୁ କଳୁଷିତ କରିଦିଏ, ସେଥିମଧ୍ୟରୁ କାମିନୀ କାଞ୍ଚନରେ ଆସକ୍ତି, ଇହକାଳସର୍ବସ୍ୱଜ୍ଞାନ ଓ ଭୋଗାସକ୍ତି ହିଁ ପ୍ରଧାନ। ମାନବର ଷଡ଼ରିପୁସମୂହ ଏବଂ ଇନ୍ଦ୍ରିୟମାନେ କିଭଳି ମାନବମାନଙ୍କୁ ସ୍ୱସ୍ୱ କର୍ତ୍ତୃତ୍ୱାଧୀନରେ ପରିଚାଳିତ କରିବାକୁ

ଇଚ୍ଛା କରନ୍ତି ଏବଂ ସାଧକ କିଭଳି ନିବୃତ୍ତିପଥ ଅବଲମ୍ବନ କରି ସେହିସବୁ ରିପୁମାନଙ୍କୁ ସ୍ୱ-ବଶରେ ରଖିପାରିବେ, ତାହାର ବିଶଦ ବିବରଣ ଏଥିରେ ପ୍ରଦତ୍ତ ହୋଇଅଛି । ରିପୁ ସଂଯତ ଓ ଇନ୍ଦ୍ରିୟ ଦମିତ ହୋଇ ନ ପାରିଲେ ମନୁଷ୍ୟର ମନୁଷ୍ୟତ୍ୱ ବିକଶିତ ହୋଇପାରେ ନାହିଁ । ଶ୍ରୀଶ୍ରୀ ଠାକୁର ପ୍ରାଚୀନ କାଳର ପ୍ରଚଳିତ ପଦ୍ଧତି ଓ ରୀତି-ନୀତିର ଆଲୋଚନା କରି ପ୍ରତ୍ୟେକ ହିନ୍ଦୁ ସନ୍ତାନ କିଭଳି ତାଙ୍କ ଆଦର୍ଶରେ ପ୍ରତିଷ୍ଠିତ ରହି ଗୃହସ୍ଥର କର୍ତ୍ତବ୍ୟ ସମ୍ପାଦନ କରିପାରିବେ, ଏହି ସତ୍‌ଶିକ୍ଷା ଲାଭ ନିମିତ୍ତ କିଭଳି ଗୁରୁଗୃହରେ ବାସ କରି ଉପଯୁକ୍ତ ଶିକ୍ଷାଲାଭ ପରେ ଉପଯୁକ୍ତ ପତ୍ନୀ ଗ୍ରହଣ ପୂର୍ବକ ଜୀବନ-ସଂଗ୍ରାମରେ ଜୟୀ ହୋଇପାରିବେ, ଶାସ୍ତ୍ର ନିର୍ଦ୍ଦିଷ୍ଟ ପନ୍ଥାରେ ଦାମ୍ପତ୍ୟ ଜୀବନଯାପନ କରିପାରିବେ ଏବଂ ଅବଶେଷରେ ପରମପଦରେ ଅବସ୍ଥାନ କରି ଚରମ ଶାନ୍ତିଲାଭ କରିବେ, ତାହା ଏଥିରେ ବିଶଦଭାବରେ ବର୍ଣ୍ଣିତ ହୋଇଅଛି । ଏଥିରେ ସିଦ୍ଧିପଥର ଶତ୍ରୁ—ଅସତ୍ୟ, ପରନିନ୍ଦା, କ୍ରୋଧ, ଅସନ୍ତୋଷ, ଉଦ୍ଧତ ସ୍ୱଭାବ, ପରଛିଦ୍ରାନ୍ୱେଷଣ, ପ୍ରାଣୀହିଂସା, ଆତ୍ମାଭିମାନ, ଅଷ୍ଟପାଶ, ଉଦାସୀନଭାବ, ସ୍ୱାର୍ଥପରତା ପ୍ରଭୃତିର ବିବରଣ ଓ ତାହାକୁ ଜୟ କରିବା ନିମିତ୍ତ ବିବେକ, ବୈରାଗ୍ୟ, ଭଗବତ୍‌ଭକ୍ତି, ନିଷ୍କାମକର୍ମ, ବ୍ୟାକୁଳତା, ଗୁରୁସେବା, ଶରଣାଗତି, ନିଷ୍ଠା, ମୈତ୍ରୀଭାବନା, ନବଧାଭକ୍ତି, ଭଗବତ୍ ସେବା, ସାଧୁସଙ୍ଗ, ସଂଘଶକ୍ତି, ନାମକୀର୍ତ୍ତନ, ବ୍ରହ୍ମଚର୍ଯ୍ୟ, ଗୀତାପାଠ, ପ୍ରାର୍ଥନା, ବନ୍ଦନା, ପୂଜା, ସଂକଳ୍ପ, ଆରାଧନା, ଯୁଗଧର୍ମାନୁସରଣ ପ୍ରଭୃତି ସାହାଯ୍ୟକରଣ ଦୈବୀବୃତ୍ତିର କିଭଳି ଅନୁଶୀଳନ କରିବା ଆବଶ୍ୟକ, ସେହି ସାଧନପନ୍ଥାଗୁଡ଼ିକ ପ୍ରଦତ୍ତ ହୋଇଅଛି ।

## ୮-ଭକ୍ତ-ସମ୍ମିଳନୀ

ଭଗବତ୍ ଗୁଣମାହାତ୍ମ୍ୟ କୀର୍ତ୍ତନ ଓ ଶ୍ରବଣ ହି କଳିଯୁଗର ଯୁଗଧର୍ମ । ଯେଉଁଠାରେ ତାଙ୍କର ଗୁଣକୀର୍ତ୍ତନ କରାଯାଏ, ସେଠାରେ ଭଗବାନ ଆବିର୍ଭୂତ ହୁଅନ୍ତି । ଭକ୍ତମାନେ ତାଙ୍କର ଗୁଣକୀର୍ତ୍ତନ କରି କିଭଳି ଭଗବତ୍ ଭକ୍ତି ଲାଭ କରିପାରିବେ, ସେଥିନିମିତ୍ତ ଶ୍ରୀଶ୍ରୀ ଠାକୁର 'ଭକ୍ତ-ସମ୍ମିଳନୀ' ନାମରେ ଗୋଟିଏ ଅନୁଷ୍ଠାନ କରିଅଛନ୍ତି । ସେହି ସମ୍ମିଳନୀର ଆଦର୍ଶ, ଉଦ୍ଦେଶ୍ୟ ଓ ଭାବଧାରାର ବିଶଦ ବିବରଣ ଏଥିରେ ପ୍ରଦତ୍ତ ହୋଇଅଛି । ପରିଶିଷ୍ଟ ଭାଗରେ ସାଧକମାନେ ବିଭିନ୍ନ ସମୟରେ ଯେଉଁ କୀର୍ତ୍ତନ ଓ ଗାନଦ୍ୱାରା ଭଗବତ୍ ଉପାସନା କରନ୍ତି,

ସେମାନଙ୍କ ଆନୁକୂଲ୍ୟରେ ପ୍ରାର୍ଥନାମୂଳକ ଗାନ ଯୋଗକରାଯାଇଅଛି । ସେଥିମଧ୍ୟରୁ ଦିବଂଗତ ଈଶ୍ୱର ସାହୁଙ୍କ ରଚିତ ଗୁରୁବନ୍ଦନାମୂଳକ ସଙ୍ଗୀତ ବିଶେଷ ଭାବରେ ପ୍ରଣିଧାନଯୋଗ୍ୟ । ଯେଉଁ ଭକ୍ତମାନେ ଶ୍ରୀଶ୍ରୀ ଠାକୁରଙ୍କୁ ବର୍ତ୍ତମାନ ମଧ୍ୟ ପ୍ରତ୍ୟକ୍ଷ କରି ତାଙ୍କର ଅମିୟ ମଧୁର ଉପଦେଶବାଣୀ ଶ୍ରବଣ କରୁଅଛନ୍ତି ସେମାନଙ୍କର ଅନୁଭୂତିର ବିବରଣ ମଧ୍ୟ ଏଥିରେ ସନ୍ନିବେଶିତ ହୋଇଅଛି । ଏତଦ୍‌ଭିନ୍ନ ଉତ୍କଳରେ ଅନୁଷ୍ଠିତ ହୋଇଥିବା ବିଗତ ସାର୍ବଭୌମ ଓ ପ୍ରାଦେଶିକ ଭକ୍ତ ସମ୍ମିଳନୀ ସମ୍ପର୍କରେ ବିଶିଷ୍ଟ ବ୍ୟକ୍ତିମାନଙ୍କ ଅଭିମତ ଏବଂ ପୁରୀଧାମରେ ଶ୍ରୀଶ୍ରୀ ଠାକୁରଙ୍କ ଅବସ୍ଥାନ ସମୟର କତିପୟ ଘଟଣାବଳୀ ଉପସଂହାର ଅଧ୍ୟାୟରେ ପ୍ରଦତ୍ତ ହୋଇଅଛି ।

## ୯-ସାରସ୍ୱତ ସଂଘନୀତି

ବର୍ତ୍ତମାନ ଯୁଗରେ ଜଗତରେ ଆଧ୍ୟାତ୍ମିକତାର ଶୀର୍ଷରେ ଥିବା ଭାରତବର୍ଷରେ ଗୋଟିଏ ମହାସନ୍ଧିକ୍ଷଣ ବା ସଙ୍କଟମୟ ସମୟ ଉପସ୍ଥିତ ହୋଇଅଛି । ସନାତନ ଧର୍ମାଶ୍ରିତ ହିନ୍ଦୁ ଆଜି ସତ୍ୟର ସ୍ୱରୂପ ବିସ୍ମୃତ ହୋଇ ନାନା ଭାବରେ ବିଭ୍ରାନ୍ତ । ବର୍ତ୍ତମାନ ଯୁଗ ସନ୍ଧିକ୍ଷଣରେ ପ୍ରତ୍ୟେକ ଭାରତବାସୀଙ୍କୁ ଭଗବାନଙ୍କ ଆହ୍ୱାନରେ ତାଙ୍କ କାର୍ଯ୍ୟନିମିତ୍ତ ପ୍ରସ୍ତୁତ ହେବାକୁ ପଡ଼ିବ । ସେହି ପୁଣ୍ୟ ଶୁଭ ମୁହୂର୍ତ୍ତରେ 'ସାରସ୍ୱତ ମଠ' ମଧ୍ୟ ନିଶ୍ଚିନ୍ତ ହୋଇ ବସି ରହିବାକୁ ସୁଖବୋଧ ନ କରି କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ତାଙ୍କ କାର୍ଯ୍ୟରେ ଆତ୍ମନିୟୋଗ କରିବା ନିମିତ୍ତ ଅଗ୍ରସର ହେଉଛନ୍ତି । 'ସାରସ୍ୱତ ମଠ' ନୀରବରେ ଲୋକଲୋଚନର ଅଗୋଚରରେ ଆତ୍ମଗୋପନପୂର୍ବକ ଦେଶ ତଥା ଜନସାଧାରଣଙ୍କ ସେବାରେ ଆତ୍ମନିୟୋଗ କରି ଆସୁଥିଲେ ମଧ୍ୟ ସାଧାରଣ ସେହି ସଂଘର ଆଦର୍ଶ, ଉଦ୍ଦେଶ୍ୟ, ନୀତି-ନିୟମ ବିଷୟରେ କିଞ୍ଚିତ୍ ଅବଗତ ହେବା ନିମିତ୍ତ ପ୍ରାଥମିକ 'ସଂଘସେବୀ'ମାନଙ୍କ ପାଇଁ କେତେଗୁଡ଼ିଏ ନୀତି-ନିୟମ, ସଂଘର ଆଦର୍ଶ, ଉଦ୍ଦେଶ୍ୟ ଏବଂ କାର୍ଯ୍ୟପଦ୍ଧତି ବିଷୟରେ ଏହି ପୁସ୍ତକରେ ଆଲୋଚନା କରାଯାଇଅଛି । ଏହି ମଠର ପ୍ରତିଷ୍ଠାତା ଶ୍ରୀଶ୍ରୀ ଠାକୁର 'ସାରସ୍ୱତ ସଂଘ' ପ୍ରତିଷ୍ଠା କରି ତାହାର ଆଦର୍ଶ, ଉଦ୍ଦେଶ୍ୟ ଏବଂ କାର୍ଯ୍ୟପଦ୍ଧତି ସମ୍ବନ୍ଧରେ ଯେତିକି ପ୍ରକାଶ କରିଛନ୍ତି, ସେଥିମଧ୍ୟରୁ କେତେକ ପୁରାତନ 'ଆର୍ଯ୍ୟ-ଦର୍ପଣ'ରୁ ସଂଗୃହୀତ ହୋଇ ଏଥିରେ ସନ୍ନିବେଶିତ କରାଯାଇଛି । ଶ୍ରୀଶ୍ରୀ ଠାକୁରଙ୍କ ବାଣୀ ଅବଲମ୍ବନରେ ନୀତି-ନିୟମ ପାଳନର ଉପକାରିତା ବୁଝାଇବାକୁ

ଯାଇ ଏଥିରେ କେବଳ ଶାସ୍ତ୍ରୀୟ ପ୍ରମାଣ ଉଦ୍ଧାର କରାଯାଇଛି । ଏତଦ୍‌ବ୍ୟତୀତ ସଂଘର ଆଦର୍ଶ ଉଦ୍ଦେଶ୍ୟକୁ କାର୍ଯ୍ୟକାରୀ କରିବା ନିମିତ୍ତ ସଂଘସେବୀ ଭକ୍ତମାନଙ୍କ ଅଭିଜ୍ଞତାପ୍ରସୂତ କେତେକ ଉପ-ନିୟମାବଳୀ ମଧ୍ୟ ଏହି ଖଣ୍ଡରେ ପ୍ରଦତ୍ତ ହୋଇଅଛି ।

## ୧୦-ନିରାଜନା

ଶ୍ରୀ ଗୁରୁଦେବ ହେଉଛନ୍ତି ଭଗବାନଙ୍କର ମୂର୍ତ୍ତବିଗ୍ରହ । ଭଗବାନଙ୍କ ନିକଟରେ କିଳଭି ପ୍ରାର୍ଥନା କରିବାକୁ ହୁଏ, ତାହା ଶ୍ରୀଶ୍ରୀ ଠାକୁର ସ୍ପଷ୍ଟ ଭାବରେ ନିର୍ଦ୍ଦେଶ ପ୍ରଦାନ କରିଛନ୍ତି । ବିଶ୍ୱାସ ଆସିଲାମାତ୍ରେ ନିର୍ଭରତା ଆପଣାମନକୁ ଉପସ୍ଥିତ ହୁଏ । ଏହି ପ୍ରାର୍ଥନା ପୁସ୍ତକରେ ସେହିସବୁ ବିଶ୍ୱାସ-ନିର୍ଭରତାମୂଳକ ବହୁବିଧ ଶାସ୍ତ୍ରୀୟ ପ୍ରାର୍ଥନା ପ୍ରଦତ୍ତ ହୋଇଅଛି । ସଂଘଶକ୍ତି ହିଁ କଳିଯୁଗର ଏକମାତ୍ର ଅବଲମ୍ବନୀୟ । ତେଣୁ ଆଦର୍ଶଜୀବନ ଗଠନପୂର୍ବକ ସମସ୍ତେ ସଂଘବଦ୍ଧ ଭାବରେ ଉପାସନା କରିବା ନିମିତ୍ତ ଶ୍ରୀଶ୍ରୀ ଠାକୁର ମହାରାଜ ସଂଘଶକ୍ତିର ପ୍ରତିଷ୍ଠାକଳ୍ପେ ଉତ୍କଳରେ 'ନୀଳାଚଳ ସାରସ୍ୱତ ସଂଘ' ପ୍ରତିଷ୍ଠା କରି ସେଥିରେ ସଂଘବଦ୍ଧ ଉପାସନା ପଦ୍ଧତି ପ୍ରଦର୍ଶନ କରିଛନ୍ତି । ସେହି ସଂଘରେ ଗୁରୁଦେବଙ୍କ ଆସନ ନିକଟରେ ବେଦ ବେଦାନ୍ତ, ସ୍ମୃତି, ପୁରାଣ ଓ ମହାପୁରୁଷଙ୍କ ବାଣୀ ଅନୁସରଣରେ ଯେଉଁସବୁ ପ୍ରାର୍ଥନା ନିୟମିତ ରୂପେ କରାଯାଏ; ସେହି ଦୁରୂହ ତତ୍ତ୍ୱଜ୍ଞାନକୁ ସହଜ-ସରଳଭାଷାରେ ସଙ୍ଗୀତାକାରରେ ରୂପ ପ୍ରଦାନ କରାଯାଇ ସଂଘସ୍ଥିତ ଶିଷ୍ୟ-ଭକ୍ତ ତଥା ଉତ୍କଳୀୟ ଭାଇ-ଭଉଣୀଙ୍କ ଉପାସନା ପଦ୍ଧତିକୁ ସହଜ, ସରଳ ଓ ସୁଗମ କରାଯାଇଅଛି । ସେଥିମଧ୍ୟରୁ କେତେକ ସଂକଳନ କରାଯାଇ ଏହି ପୁସ୍ତକରେ ସନ୍ନିବେଶିତ ହୋଇଅଛି ।

**୧୧- ସତି-ନୀତି**

**୧୨- ପିଲାଙ୍କ ନିଗମାନନ୍ଦ**

**୧୩- ପ୍ରଣତି-ଶତକ**

**ଶ୍ରୀମତୀ ନାରାୟଣୀ ଦେବୀଙ୍କ ପ୍ରଣୀତ**

'ଶ୍ରୀ ଶ୍ରୀ ନିଗମନନ୍ଦ ଜୀବନପ୍ରସଙ୍ଗ ପ୍ରଥମ ଓ ଦ୍ୱିତୀୟ ଭାଗ

## ୧୪-ସତୀ ଚରିତମାଳା

ସଂସାର କ୍ଷେତ୍ରରେ ନାରୀ ଏବଂ ପୁରୁଷ ଉଭୟଙ୍କ ଦାୟିତ୍ୱ ଅସୀମ ହେଲେ ମଧ୍ୟ କର୍ତ୍ତବ୍ୟ କର୍ମରେ କିଞ୍ଚିତ ପାର୍ଥକ୍ୟ ରହିଚି । ପୁରୁଷ ବାହ୍ୟିକ ଭାବରେ ଶ୍ରୀ

ବୃଦ୍ଧି ସାଧନପୂର୍ବକ ଧନ ଉପାର୍ଜନ କରି ପରିବାରର ରକ୍ଷଣ ନିମିତ୍ତ ତାହା ଅର୍ପଣ କରନ୍ତି । ନାରୀମାନେ ପରିବାରର ଆଭ୍ୟନ୍ତରୀଣ ଶ୍ରୀବୃଦ୍ଧି ସାଧନ ନିମିତ୍ତ ଆତ୍ମୀୟସ୍ୱଜନଙ୍କର ସୁଖ ଶାନ୍ତିବିଧାନ କରନ୍ତି । ତେଣୁ ଆଦର୍ଶ ଗୃହସ୍ଥ ଜୀବନଯାପନ କରିବାକୁ ହେଲେ ଗୃହସ୍ଥମାନଙ୍କୁ ଉପଯୁକ୍ତ ଆଦର୍ଶ ଗୃହିଣୀଙ୍କର ସାହାଯ୍ୟ ଗ୍ରହଣ କରିବାକୁ ହେବ । ଶ୍ରୀ ଶ୍ରୀ ଠାକୁର ବିଭିନ୍ନ ସ୍ଥାନରେ ତାଙ୍କ ଶିଷ୍ୟମାନଙ୍କୁ ଆଦର୍ଶ ପରିବାର ଗଠନ ଦିଗରେ ଗୃହିଣୀମାନଙ୍କ କର୍ତ୍ତବ୍ୟ ବିଷୟ ଶିକ୍ଷା ନିମିତ୍ତ ଯେଉଁସବୁ ଉପଦେଶ ଦେଇଛନ୍ତି ତାହା ଏକତ୍ର କରି ଏବଂ ହିନ୍ଦୁ ଶାସ୍ତ୍ରରୁ ସତୀଧର୍ମ ବିଷୟରେ ଗୂଢ଼ ରହସ୍ୟ, ଆଦର୍ଶ ନାରୀର କର୍ତ୍ତବ୍ୟ ଏବଂ ପତିବ୍ରତା ଧର୍ମ ସମ୍ବନ୍ଧରେ ଶ୍ରୀଶ୍ରୀ ଠାକୁରଙ୍କ ଭାବଧାରାକୁ ଅବଲମ୍ବନ କରି ସମସ୍ତ ବିଷୟ ଏଥରେ ସନ୍ନିବେଶିତ କରାଯାଇଛି ।

**ପ୍ରଥମ ଚରିତ** (ଆଦର୍ଶ ନାରୀଜୀବନ)

**ଦ୍ୱିତୀୟ ଚରିତ** (ଆଦର୍ଶ ଗୃହିଣୀ)

**ତୃତୀୟ ଚରିତ** (ନାରୀଦ୍ୱର ସାଧନା)

## ୧୫-ସାଧୁ ଚରିତମାଳା

ସାଧୁ ମହାପୁରୁଷମାନଙ୍କ ସମ୍ବନ୍ଧରେ ଆମର ଅଦ୍ଭୁତ ଓ ଅଲୌକିକ ଧାରଣା ଥିବା ଯୋଗୁ ଆମେ ସେମାନଙ୍କୁ ଚିହ୍ନିପାରୁ ନାହୁଁ । ସାଧୁମାନଙ୍କ ସମ୍ପର୍କରେ ଭ୍ରାନ୍ତଧାରଣା ଯୋଗୁଁ ଆଜିକାଲି ଜନସମାଜ ହୁଏତ ନାନା ସନ୍ଦେହର ବଶବର୍ତ୍ତୀ ହୋଇ ସେମାନଙ୍କୁ ଅଗ୍ରାହ୍ୟ କରନ୍ତି; ନଚେତ୍ ବିଭୂତିର ମାପକାଠିରେ ସାଧୁମାନଙ୍କୁ ପରୀକ୍ଷା କରିବାକୁ ଚେଷ୍ଟା କରି ସାଧୁ ଅସାଧୁ ନିର୍ଣ୍ଣୟ କରିପାରନ୍ତି ନାହିଁ । ସାଧୁମାନେ ମନୋରାଜ୍ୟର ଯେଉଁ ସ୍ତରରେ ବିଚରଣ କରନ୍ତି, ସେ ସମ୍ପର୍କରେ ଆଧୁନିକ ସମାଜର କୌଣସି ଧାରଣା ନାହିଁ । ଫଳରେ ଉନ୍ନତହୃଦୟ ସାଧୁମାନେ ଥାଇ ମଧ ଆଜି ଜନସମାଜର ଅଜ୍ଞତାରୁ ଉକ୍ତ ସାଧୁମାନେ ସେମାନଙ୍କର କୌଣସି ଉପକାର କରିପାରୁ ନାହାନ୍ତି । ଆମ୍ଭମାନଙ୍କ ନିକଟରେ ପ୍ରକୃତ ସାଧୁଚରିତ ଅଜ୍ଞାତ । ମହାପୁରୁଷମାନେ ଅଶେଷ ଦୁଃଖଯନ୍ତ୍ରଣା ଭୋଗ କରି ଜଗତକୁ ଅମୂଲ୍ୟରତ୍ନ ବିତରଣ କରିଥାନ୍ତି । ସେମାନେ ସମସ୍ତେ ଦୁଃଖ-କଷ୍ଟକୁ ବରଣ କରିନେଇ ଜନସାଧାରଣଙ୍କନିମିତ୍ତ ଆପ୍ରାଣ ଚେଷ୍ଟା କରିଯାଇଛନ୍ତି । କିନ୍ତୁ ତାଙ୍କ ଜୀବଦ୍ଦଶାରେ

ଜନସମାଜ ତାଙ୍କୁ ଚିହ୍ନି ନ ପାରି ତାଙ୍କର ସଦ୍‌ବ୍ୟବହାର କରିପାରନ୍ତି ନାହିଁ । ଏହି ଗ୍ରନ୍ଥମାଳାରେ ଶଙ୍କରାଚାର୍ଯ୍ୟ ପ୍ରଭୃତି କେତେକ ମହାପୁରୁଷଙ୍କ ଜୀବନୀ ସେହି ଦୃଷ୍ଟିରୁ ଆଲୋଚନାକରି ସାଧାରଣ ମନୁଷ୍ୟଠାରୁ ସାଧୁମାନଙ୍କର ବିଶେଷତ୍ୱ, ତାଙ୍କର ଆଚାର ବ୍ୟବହାର ଓ ତାଙ୍କର ମନୋଭାବ କିପରି ଥାଏ, ତହିଁର ସ୍ପଷ୍ଟ ଧାରଣା ଦେବାକୁ ଚେଷ୍ଟା କରାଯାଇଛି ।

**ପ୍ରଥମ ଖଣ୍ଡ—ଭଗବାନ ଶଙ୍କରାଚାର୍ଯ୍ୟ**—ଭଗବାନ ଶଙ୍କରାଚାର୍ଯ୍ୟ ବେଦାନ୍ତ ଶାସ୍ତ୍ର ଅବଲମ୍ବନ କରି ମାନବ-ଜୀବନର ଚରମ ଲକ୍ଷ୍ୟ ସମ୍ବନ୍ଧରେ ନାନା ମତବାଦର ଖଣ୍ଡନପୂର୍ବକ ଯେଉଁ ମୀମାଂସା କରିଯାଇଛନ୍ତି, ତାହାର ତୁଳନା ନାହିଁ । ଯେତେବେଳେ ବୌଦ୍ଧଧର୍ମର ପ୍ରଭାବରେ ସନାତନ ଧର୍ମର ପ୍ରଭା କ୍ରମେ କ୍ଷୀଣ ହୋଇ ଆସୁଥିଲା, ବୈଦିକଯୁଗର ପବିତ୍ର ଆଚାରସବୁ ସମ୍ପୂର୍ଣ୍ଣଭାବରେ ବିନଷ୍ଟ ହୋଇ ନାନା ଉପଧର୍ମ ଓ କୁତ୍ସିତ ଆଚାର ସୃଷ୍ଟି ହୋଇଥିଲା, ସେତିକିବେଳେ ଆଚାର୍ଯ୍ୟ ଶଙ୍କର ବିଭିନ୍ନ ସମ୍ପ୍ରଦାୟର ମତକୁ ଖଣ୍ଡନପୂର୍ବକ ଭାରତବର୍ଷକୁ ଅଦ୍ୱୈତବାଦର ଉଦାରତାରେ ଅନୁପ୍ରାଣିତ କରିବା ସଙ୍ଗେ ସଙ୍ଗେ ହିନ୍ଦୁ ସମାଜର ଏକତା ପୁନରାନୟନ କରିଥିଲେ । ଏହିସବୁ କାର୍ଯ୍ୟ ଫଳରେ ସେ ଜଗଦ୍‌ଗୁରୁ ଆସନ ଲାଭ କରିଥିଲେ । ଶଙ୍କରାଚାର୍ଯ୍ୟଙ୍କ ଏହି ଅଦ୍ଭୁତ କର୍ମମୟ ଜୀବନ, ତାଙ୍କ ବାଲ୍ୟଜୀବନ, ମାତୃଭକ୍ତିଠାରୁ ଆରମ୍ଭ କରି ଗୁରୁଲାଭ, ସାଧନା, ସିଦ୍ଧି, ବଦରିକାଶ୍ରମରେ ଭାଷ୍ୟରଚନା; ମଣ୍ଡନ-ବିଜୟ, ଶାରଦାପୀଠରେ ତାଙ୍କର ସମାଜସଂସ୍କାର, ଧର୍ମସଂସ୍କାର, ଶିଷ୍ୟପ୍ରୀତି, ଉଦାରଭାବ ଓ ଶେଷରେ ଅନ୍ତିମକାଳ ଏଥିରେ ସନ୍ନିବେଶିତ ହୋଇଅଛି । (ଏହି ପୁସ୍ତକ ୧୯୬୪ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀର ପୁରସ୍କାର ଲାଭ କରିଛି ।)



# ସାରସ୍ୱତ ଗ୍ରନ୍ଥାବଳୀ

## ୧- ବ୍ରହ୍ମଚର୍ଯ୍ୟ-ସାଧନ

ସନାତନ ହିନ୍ଦୁଧର୍ମର ଭିତ୍ତି ବ୍ରହ୍ମଚର୍ଯ୍ୟ ଉପରେ ପ୍ରତିଷ୍ଠିତ । ଏହି ପୁସ୍ତକଟିରେ ବ୍ରହ୍ମଚର୍ଯ୍ୟ-ସାଧନାର ଧାରାବାହିକ ନିୟମାବଳୀ ଓ ତାହାର ଉପକାରିତା ବିବୃତ ହୋଇଅଛି ଏବଂ ବ୍ରହ୍ମଚର୍ଯ୍ୟରକ୍ଷା (ବୀର୍ଯ୍ୟଧାରଣ)ର କେତେଗୁଡ଼ିଏ ଯୋଗୋକ୍ତ ସାଧନ ପ୍ରଣାଳୀ ବର୍ଣ୍ଣିତ ହୋଇଅଛି । ଶୁକ୍ର ସମ୍ବନ୍ଧୀୟ ରୋଗର ସ୍ୱରଶାସ୍ତ୍ରୋକ୍ତ ଓ ଅବଧୌତିକ ଔଷଧର ବ୍ୟବସ୍ଥା ମଧ୍ୟ ଏଥିରେ ଅଛି ।

## ୨-ଯୋଗୀଗୁରୁ

ପାଠକମାନଙ୍କର ଅବଗତିନିମିତ୍ତ ପୁସ୍ତକର ବିଷୟ ସୂଚୀ ନିମ୍ନରେ ସଂକ୍ଷେପରେ ପ୍ରଦତ୍ତ କରାଗଲା ।

**ଯୋଗକଳ୍ପରେ**—ଗ୍ରନ୍ଥକାରଙ୍କ ସାଧନପଦ୍ଧତି-ସଂଗ୍ରହ, ଯୋଗ କ'ଣ, ଶରୀର-ତତ୍ତ୍ୱ, ହଂସ-ତତ୍ତ୍ୱ, ଶ୍ରବଣ-ତତ୍ତ୍ୱ, କୁଳକୁଣ୍ଡଳିନୀ-ତତ୍ତ୍ୱ, କମଳକଳା-ତତ୍ତ୍ୱ, ନବଚକ୍ର, ଷୋଡ଼ଶାଧାର, ତ୍ରିଲକ୍ଷ୍ୟ, ବ୍ୟୋମପାଳକ, ଶକ୍ତିତ୍ରୟ ଓ ଗ୍ରନ୍ଥିତ୍ରୟ, ଯୋଗତତ୍ତ୍ୱ, ଯୋଗର ଆଠଗୋଟି ଅଙ୍ଗ, ଚାରିପ୍ରକାର ଯୋଗ ଓ ଗୁହ୍ୟ ବିଷୟ ଇତ୍ୟାଦି ।

**ସାଧନକଳ୍ପରେ**—ଆସନ, ସାଧନ, ତତ୍ତ୍ୱସାଧନ, ନାଡ଼ିଶୋଧନ, ତ୍ରାଟକଯୋଗ, କୁଣ୍ଡଳିନୀଚୈତନ୍ୟର କୌଶଳ, ଲୟଯୋଗ, ଶବ୍ଦଶକ୍ତି ଓ ନାଦସାଧନ, ଆତ୍ମଜ୍ୟୋତିଃ ଦର୍ଶନ, ଇଷ୍ଟଦେବତା ଦର୍ଶନ ଓ ମୁକ୍ତି ଇତ୍ୟାଦି ।

**ମନ୍ତ୍ରକଳ୍ପରେ**—ଦୀକ୍ଷାପ୍ରଣାଳୀ, ଉପଗୁରୁ, ମନ୍ତ୍ରତତ୍ତ୍ୱ, ମନ୍ତ୍ରଜାଗରଣ, ମନ୍ତ୍ରଶୁଦ୍ଧିର ସହଜ ଉପାୟ, ଭୂତଶୁଦ୍ଧି, ଜପର କୌଶଳ, ମନ୍ତ୍ରସିଦ୍ଧିର ଲକ୍ଷଣ ଇତ୍ୟାଦି ।

**ସ୍ୱରକଳ୍ପରେ**—ଶ୍ୱାସର ସ୍ୱାଭାବିକ ନିୟମ, ବାମ-ନାସିକାର ଶ୍ୱାସଫଳ, ଦକ୍ଷିଣ-ନାସିକାରେ ଶ୍ୱାସଫଳ, ସୁଷୁମ୍ନାର ଶ୍ୱାସଫଳ, ବଶୀକରଣ, ବିନା ଔଷଧରେ ରୋଗ ଆରୋଗ୍ୟ, କେତୋଟି ଆଶ୍ଚର୍ଯ୍ୟ ସଙ୍କେତ, ଚିରଯୌବନ ଲାଭର ଉପାୟ, ପୂର୍ବରୁ ମୃତ୍ୟୁ ଜାଣିବାର ଉପାୟ ଇତ୍ୟାଦି ।

## ୩-ଜ୍ଞାନୀଗୁରୁ

ଏଥିରେ ଜ୍ଞାନ ଓ ଯୋଗର ଉଚ୍ଚାଙ୍ଗସମୂହ ବିଶଦଭାବେ ଆଲୋଚିତ ହୋଇଅଛି । ପାଠକମାନଙ୍କର ଅବଗତି ନିମିତ୍ତ ନିମ୍ନରେ-ଆଂଶିକ ସୂଚନା ପ୍ରଦତ୍ତ ହେଲା—

**ନାନାକାଣ୍ଡ**—ଧର୍ମ କାହାକୁ କହନ୍ତି ? ଧର୍ମର ପ୍ରୟୋଜନୀୟତା, ଗୁରୁଙ୍କର ପ୍ରୟୋଜନୀୟତା, ଶାସ୍ତ୍ର ବିଚାର, ତନ୍ତ୍ରପୁରାଣ, ସୃଷ୍ଟିତତ୍ତ୍ୱ ଓ ଦେବତା ରହସ୍ୟ, ଏକେଶ୍ୱରବାଦ ଓ କୁସଂସ୍କାର ଖଣ୍ଡନ, ହିନ୍ଦୁଧର୍ମର ଗୌରବ, ହିନ୍ଦୁମାନଙ୍କର ଅବନତିର କାରଣ, ହିନ୍ଦୁଧର୍ମର ବିଶେଷତ୍ୱ, ଦ୍ୱୈତାଦ୍ୱୈତ ବିଚାର, କର୍ମଫଳ ଓ ଜନ୍ମାନ୍ତରବାଦ ଇତ୍ୟାଦି ।

**ଜ୍ଞାନକାଣ୍ଡ**—ଜ୍ଞାନ କାହାକୁ କହନ୍ତି ? ଜ୍ଞାନର ବିଷୟ, ସାଧନ ଚତୁଷ୍ଟୟ, ଅନନ୍ତ ରୂପର ପ୍ରମାଣ ଓ ପ୍ରତୀତି, ସମାଧି ଅଭ୍ୟାସ, ଜ୍ଞାନଯୋଗ ଏବଂ ବ୍ରହ୍ମନିର୍ବାଣ ଇତ୍ୟାଦି ।

**ସାଧନକାଣ୍ଡ**—ସାଧନାର ପ୍ରୟୋଜନ, ମାୟାବାଦ, କୁଳକୁଣ୍ଡଳିନୀ ସାଧନ, ଅଷ୍ଟାଙ୍ଗଯୋଗ ଓ ତାହାର ସାଧନ, ପ୍ରାଣାୟାମ ସାଧନ, ପ୍ରକୃତି-ପୁରୁଷ-ଯୋଗ, ଯୋନିମୁଦ୍ରା ସାଧନ, ଭୂତଶୁଦ୍ଧି ସାଧନ, ଜୀବନ୍ମୁକ୍ତ ଅବସ୍ଥା, ଯୋଗବଳରେ ଦେହତ୍ୟାଗ ଇତ୍ୟାଦି ।

## ୪-ତାନ୍ତ୍ରିକଗୁରୁ

ଆମ ଦେଶରେ ତନ୍ତ୍ରମତରେ ଦୀକ୍ଷା ଓ ନିତ୍ୟ-ନୈମିତ୍ତିକ କ୍ରିୟାକଳାପ ଅନୁଷ୍ଠିତ ହୁଏ । ସୁତରାଂ ଏହି ପୁସ୍ତକ ଯେ ସାଧାରଣଙ୍କ ନିମିତ୍ତ ବିଶେଷ ପ୍ରୟୋଜନୀୟ, ଏକଥା କହିବାକୁ ଯିବା ବାହୁଲ୍ୟ ମାତ୍ର । ସାଧାରଣଙ୍କ ଅବଗତି ନିମିତ୍ତ ନିମ୍ନରେ ସୂଚୀସମୂହ ଉଦ୍ଧୃତ ହେଲା—

**ଯୁକ୍ତିକଳ୍ପରେ**—ତନ୍ତ୍ରଶାସ୍ତ୍ର, ତନ୍ତ୍ରୋକ୍ତ ସାଧନା, ମ-କାରତତ୍ତ୍ୱ; ସପ୍ତ ଆଚାର, ଭାବତ୍ରୟ, ତନ୍ତ୍ରର ବ୍ରହ୍ମବାଦ, ଶକ୍ତି ଉପାସନା, ଦେବମୂର୍ତ୍ତିଙ୍କ ତତ୍ତ୍ୱ, ସାଧନାର କ୍ରମ ଇତ୍ୟାଦି ।

**ସାଧନକଳ୍ପରେ**—ଗୁରୁକରଣ ଓ ଦୀକ୍ଷାପଦ୍ଧତି, ଶାକ୍ତାଭିଷେକ, ପୂର୍ଣ୍ଣାଭିଷେକ,

ଅନ୍ତର୍ଯୋଗ ବା ମାନସପୂଜା, ଜପରହସ୍ୟ ଓ ସମର୍ପଣ ବିଧି, ଶ୍ମଶାନ ଓ ଚିତା ସାଧନ, ପଞ୍ଚ-ମକାରରେ କାଳୀସାଧନା, ଚକ୍ରାନୁଷ୍ଠାନ ତନ୍ତ୍ରର ବ୍ରହ୍ମସାଧନ, ତନ୍ତ୍ରୋକ୍ତ ଯୋଗ ଓ ମୁକ୍ତି ଇତ୍ୟାଦି ।

**ପରିଶିଷ୍ଟ**—ଯୋଗିନୀ ସାଧନ, ହନୁମାନ ଦେବଙ୍କର ବୀରସାଧନ, ସର୍ବଜ୍ଞତା ଲାଭ, ଦିବ୍ୟଦୃଷ୍ଟି ଲାଭ, ଅଦୃଶ୍ୟ ହେବାର ଉପାୟ, ଅନାବୃଷ୍ଟିହରଣ, ଅଗ୍ନି ନିବାରଣ, ଶୂଳରୋଗ ପ୍ରତିକାର, ଜରାଦି ସର୍ବରୋଗ ଶାନ୍ତି ଏବଂ କେତେଗୁଡ଼ିଏ ମନ୍ତ୍ରର ଆଶ୍ଚର୍ଯ୍ୟ କ୍ରିୟା ଇତ୍ୟାଦି ।

## ୫-ପ୍ରେମିକଗୁରୁ

ଏଥିରେ ଜୀବନର ପୂର୍ଣ୍ଣତମ ସାଧନା ପ୍ରେମ-ଭକ୍ତି ଓ ମୁକ୍ତିର ବିଷୟ ବିଷଦରୂପେ ବର୍ଣ୍ଣିତ ହୋଇଅଛି । ଅବଗତି ନିମିତ୍ତ ସଂକ୍ଷିପ୍ତ ସୂଚୀ ପ୍ରଦତ୍ତ ହେଲା—

**ପୂର୍ବସ୍କନ୍ଧ**—ଭକ୍ତିତତ୍ତ୍ୱ, ସାଧନଭକ୍ତି, ଭାବଭକ୍ତି, ପ୍ରେମଭକ୍ତି, ଭକ୍ତି ବିଷୟରେ ଅଧିକାରୀ, ଭକ୍ତିଲାଭର ଉପାୟ, ଭକ୍ତିର ଚତୁଃଷଷ୍ଠି ପ୍ରକାର ସାଧନା, ଚୈତନ୍ୟୋକ୍ତ ସାଧନପଞ୍ଚକ, ପଞ୍ଚଭାବର ସାଧନା, ରାଧାକୃଷ୍ଣ ଓ ଅଚିନ୍ତ୍ୟ ଭେଦାଭେଦତତ୍ତ୍ୱ, ଶାକ୍ତ ଓ ବୈଷ୍ଣବ, କିଶୋରୀ ଭଜନ, ଶୃଙ୍ଗାର ସାଧନ ଇତ୍ୟାଦି ।

**ଉତ୍ତରସ୍କନ୍ଧ**—ଭକ୍ତି ହିଁ ମୁକ୍ତିର କାରଣ, ମୁକ୍ତିର ସ୍ୱରୂପ ଲକ୍ଷଣ, ବେଦାନ୍ତୋକ୍ତ ନିର୍ବାଣମୁକ୍ତି, ମୁକ୍ତିଲାଭର ଉପାୟ, ସନ୍ନ୍ୟାସାଶ୍ରମ ଗ୍ରହଣ, ଅବଧୂତାଦି ସନ୍ନ୍ୟାସ, ସନ୍ନ୍ୟାସୀଙ୍କ କର୍ତ୍ତବ୍ୟ, ଭଗବାନ ଶଙ୍କରାଚାର୍ଯ୍ୟ ଓ ତାଙ୍କ ଧର୍ମ, ଆଚାର୍ଯ୍ୟ ଶଙ୍କର ଓ ଗୌରାଙ୍ଗଦେବ, ଭଗବାନ ରାମକୃଷ୍ଣ, ଜୀବନ୍ମୁକ୍ତି ଅବସ୍ଥା ଇତ୍ୟାଦି ।



